ପ୍ରକାଶକ
**ସ୍ୱାମୀ ଆତ୍ମପ୍ରଭାନନ୍ଦ**
ଅଧ୍ୟକ୍ଷ, ରାମକୃଷ୍ଣ ମଠ
ବିବେକାନନ୍ଦ ମାର୍ଗ
ଭୁବନେଶ୍ୱର—୭୫୧ ୦୦୨



ପ୍ରଥମ ସଂସ୍କରଣ : ଡିସେମ୍ବର ୧୯୬୩
**ସପ୍ତମ ପୁନର୍ମୁଦ୍ରଣ : ୭ ଜୁନ୍ ୨୦୧୩**
ଷୋଡ଼ଶୀ ପୂଜା
୨୦୦୦

**ମୂଲ୍ୟ– ଟ. ୧୦୦.୦୦**

ମୁଦ୍ରାକର :
ହିନ୍ଦୁସ୍ଥାନ ପ୍ରିଣ୍ଟିଙ୍ଗ୍ ଏଣ୍ଡ୍ ବାଇଣ୍ଡିଂ ୱାର୍କ୍ସ୍
ଏ/୪୮, ରାମେଶ୍ୱର ପାଟଣା
ଭୁବନେଶ୍ୱର—୭୫୧ ୦୦୨

***VIVEKANANDA CHARITA*** : by Sri Satyendranath Majoomdar; Published by Ramakrishna Math, Vivekananda Marg, Bhubaneswar - 2; 7th Reprint on 7th June 2013; **Price : ₹ Hundred only.**

## ପ୍ରଥମ ସଂସ୍କରଣର ନିବେଦନ

ସ୍ୱାମୀ ବିବେକାନନ୍ଦଙ୍କ ଆବିର୍ଭାବର ଶତବର୍ଷପୂର୍ତ୍ତି ଉପଲକ୍ଷେ ଶ୍ରୀ ସତ୍ୟେନ୍ଦ୍ରନାଥ ମଜୁମ୍‌ଦାର ମହାଶୟଙ୍କ ଲିଖିତ ଅମୂଲ୍ୟ ଜୀବନୀ ଖଣ୍ଡିକ ଓଡ଼ିଆ ଭାଷାରେ ଅନୁଦିତ କରି ଉତ୍କଳବାସୀ ପାଠକପାଠିକାମାନଙ୍କ ହାତରେ ଆମେ ଟେକି ଦେଲୁ ।

ସ୍ୱାମୀ ବିବେକାନନ୍ଦଙ୍କ ଜନ୍ମ-ଶତବର୍ଷ ସମିତି ପକ୍ଷରୁ, ଓଡିଶା ସରକାରଙ୍କୁ ଏପରି ଗୋଟିଏ ପ୍ରାମାଣିକ ଜୀବନୀ-ଗ୍ରନ୍ଥ ପ୍ରକାଶ କରିବାକୁ ଓ ଏହାର ସମୁଦାୟ ମୁଦ୍ରଣଭାର ବହନ କରିବା ଲାଗି ଅନୁରୋଧ ହୋଇଛି ।

ସ୍ୱାମୀ ବିବେକାନନ୍ଦ ଥିଲେ ଜଣେ ପୌରୁଷ ସମ୍ପନ୍ନ ପୂର୍ଣ୍ଣାଙ୍ଗ ମନୁଷ୍ୟ— ସେ ଥିଲେ ମନେପ୍ରାଣେ ସଂଗ୍ରାମୀ, ଶକ୍ତିର ଉପାସନା ଥିଲା ତାଙ୍କ ଜୀବନର ପ୍ରଧାନ ଉପାସନା । ସତ୍ୟ ଓ ନ୍ୟାୟର ସହିତ ତାଙ୍କର ପ୍ରତ୍ୟକ୍ଷ ମିଳନ ଏବଂ ଜାତିର ଓ ମାନସମାଜର ନୈତିକ, ଆଧ୍ୟାତ୍ମିକ ଉନ୍ନତି-ବିଧାନରେ ତାଙ୍କର ଜୀବନ ଉତ୍ସର୍ଗୀକୃତ । ଆଧ୍ୟାତ୍ମିକ ସାଧନାର ଉଚ୍ଚତମ ସୋପାନର ଯୋଗ୍ୟ ବ୍ୟକ୍ତି ହିଁ ପ୍ରତି ମାନବର ହୃଦୟରେ ଯଥାର୍ଥ ଶକ୍ତି ସଞ୍ଚାରର ଅଧିକାରୀ । ସେ ଥିଲେ ଜଣେ ସମ୍ପୂର୍ଣ୍ଣ ଆଧ୍ୟାତ୍ମିକ ମାନବ । ଆମର ବିଶ୍ୱାସ, ସ୍ୱାମୀଜୀଙ୍କ ଆଦର୍ଶ ଯଦି ଆମେ ମନପ୍ରାଣ ଦେଇ ଗ୍ରହଣ କରୁ, ତେବେ ନିଶ୍ଚୟ ଆମେ ସ୍ୱଦେଶକୁ ଆହୁରି ଆଗେଇଦେଇ ପାରିବୁ ।

ସ୍ୱାମୀ ବିବେକାନନ୍ଦଙ୍କର ଏହି ଜୀବନୀ, ଉଦୀୟମାନ ଯୁବକ-ଯୁବତୀମାନଙ୍କ ହୃଦୟରେ ଧ୍ରୁବତାରାର ଦୀପ୍ତିରେ ପଥ ନିର୍ଦ୍ଦେଶ କଲେ ଆମେ ଆମର ଶ୍ରମ ସାର୍ଥକ ଜ୍ଞାନ କରିବୁ ।ଇତି।

ବିନୀତ

୧୬ ଡିସେମ୍ବର ୧୯୬୩ ପ୍ରକାଶକ

## ସପ୍ତମ ପୁନର୍ମୁଦ୍ରଣର ନିବେଦନ

ସ୍ୱାମୀ ବିବେକାନନ୍ଦଙ୍କ ୧୫୦ତମ ଜନ୍ମ ଜୟନ୍ତୀ ପାଳନ ଅବସରରେ ପାଠକପାଠିକାମାନଙ୍କର ଆବଶ୍ୟକତାକୁ ଦୃଷ୍ଟିରେ ରଖି ପୁସ୍ତକଟିର ସପ୍ତମ ପୁନର୍ମୁଦ୍ରଣ ପ୍ରକାଶିତ ହେଲା । ଏହି ମୁଦ୍ରଣ ପାଇଁ ଆର୍ଥିକ ସାହାଯ୍ୟ କରିଥିବାରୁ ନୟାଗଡ଼ ନିବାସୀ ଶ୍ରୀମତୀ ହେମନଳିନୀ ମିଶ୍ରଙ୍କୁ ଆମେ ଆନ୍ତରିକ ଧନ୍ୟବାଦ ଜଣାଉଛୁ ।

ବିନୀତ

୭ ଜୁନ୍ ୨୦୧୩ ପ୍ରକାଶକ

# ଭୂମିକା

କୌଣସି ଗ୍ରନ୍ଥ ଯଦି ନିଜେ ଗୁଣରେ ପାଠକ-ସମାଜରେ ପ୍ରତିଷ୍ଠା ଲାଭ କରି ନ ପାରେ, ତେବେ ଅନ୍ୟ କୌଣସି ପ୍ରକାର କୌଶଳରେ ତାହା ସମ୍ଭବପର ନୁହେଁ । ବହୁ ଖ୍ୟାତନାମା ଲୋକ ଭୂମିକା ଲେଖି ଦେଇ ଥିଲେ ମଧ୍ୟ ଗ୍ରନ୍ଥ ବଜାରରେ ଚଳିଲା ନାହିଁ, ଏହା ନିତ୍ୟ ଦେଖାଯାଉଛି । ତାହା ଜାଣି ମଧ୍ୟ ଏହି ନବୀନ ଗ୍ରନ୍ଥକାର ମୋ ପରି ଖ୍ୟାତିହୀନ ବ୍ୟକ୍ତିଙ୍କୁ କାହିଁକି ଯେ ଏ କାର୍ଯ୍ୟରେ ବ୍ରତୀ ହେବା ପାଇଁ ଉପର୍ଯ୍ୟୁପରି ଉତ୍ପୀଡ଼ନ କରିଥିଲେ ତାହା ସେ ଜାଣନ୍ତି ।

ଗ୍ରନ୍ଥକାର ମୋର ବନ୍ଧୁ । ଆମେ ଏକ ସଙ୍ଗରେ ସ୍ୱାମୀ ବିବେକାନନ୍ଦଙ୍କ ବିଷୟ କେତେଦିନ ଆଲୋଚନା କରିଅଛୁ, ସ୍ୱାମୀଜୀଙ୍କର ଜୀବନୀ ସମ୍ବନ୍ଧରେ ସାଧାରଣ ନୂଆ ଘଟଣା, କୌଣସି ପୁସ୍ତକରେ ପାଇଲେ କିମ୍ବା ସ୍ୱାମୀଜୀଙ୍କ କୌଣସି ସତୀର୍ଥ ଗୁରୁଭାଇ ଅଥବା କୌଣସି ଶିଷ୍ୟଙ୍କ ମୁହଁରୁ ଶୁଣିଲେ, ସେ କେତେ ଦିନ ଧାଇଁ ଆସି ମୋତେ ଜଣାଇଛନ୍ତି; ସେସବୁ ତଥ୍ୟ ଜୀବନ-ଚରିତ ଲେଖିବା ପକ୍ଷରେ ଅପରିହାର୍ଯ୍ୟ ନୁହେଁ । ସ୍ୱାମୀଜୀଙ୍କ ଜୀବନର ଅତି ସାମାନ୍ୟ ଘଟଣାଗୁଡ଼ିକ ସେ ଏପରି ଭାବରେ ଉତ୍ସାହ ଓ ଆବେଗ ସହିତ କହିଯାଉଥିଲେ ଏବଂ ତତ୍‌ସଂଶ୍ଳିଷ୍ଟ ପ୍ରାସଙ୍ଗିକ ଅପ୍ରାସଙ୍ଗିକ ଏପରି ଅନେକ କଥା ତାଙ୍କ ମୁହଁରୁ ସତେଜରେ ନିର୍ଗତ ହେଉଥିଲା ଯେ, ମୋର ମନ ମଧ୍ୟରେ ଅନେକ ସମୟରେ ଆଶଙ୍କା ହେଉଥିଲା, କାଳେ ସେହି ସମସ୍ତ ଘଟଣାବଳୀ ସେ ଜୀବନ-ଚରିତରେ ଲେଖିପକାଇବେ; କିନ୍ତୁ ପରେ ଗ୍ରନ୍ଥ ଖଣ୍ଡିକ ଆଦ୍ୟପ୍ରାନ୍ତ ପଢ଼ି ଦେଖିଛି ଯେ, ମୋର ଆଶଙ୍କା ନିତାନ୍ତ ଅମୂଳକ; କାରଣ ଗ୍ରନ୍ଥାକାର ଜଣେ ପ୍ରକୃତ ଶିଳ୍ପୀ ଏବଂ ତାଙ୍କର ରଚନା ମଧ୍ୟ ସେଥିପାଇଁ ଗୋଟିଏ ସୃଷ୍ଟି ।

ଜୀବନଚରିତ ଲେଖିବାର ବହୁ ପ୍ରକାରର ନମୁନା ଗ୍ରନ୍ଥକାରଙ୍କ ସମ୍ମୁଖରେ ଥିଲା, ତାହା ମୁଁ ଜାଣେ; କିନ୍ତୁ କୌଣସି ପ୍ରକାର ନମୁନାକୁ ସେ ଅବିକଳ ଅନୁସରଣ କରିନାହାନ୍ତି, ଏହା ମୁଁ ସ୍ପଷ୍ଟ ଦେଖୁଅଛି; ସୁତରାଂ ତାଙ୍କର ଏହି ରଚନାର ଦୋଷ ଓ ଗୁଣ ପାଇଁ ଆମେ ନିଃସନ୍ଦେହରେ ତାହାଙ୍କୁ ଦାୟୀ କରିପାରୁ । ଯେ କୌଣସି ଗ୍ରନ୍ଥକାର ପକ୍ଷରେ ଏହା କମ୍ ଗୌରବର କଥା ନୁହେଁ ।

ଜୀବନଚରିତ ବଙ୍ଗ ସାହିତ୍ୟ ବିଭାଗରେ ଯେ ଖୁବ୍ ସମୃଦ୍ଧିଶାଳୀ ଏଭଳି କଥା କହିହୁଏ ନାହିଁ । ଊନବିଂଶ ଶତାବ୍ଦୀର ଧର୍ମ ଓ ସମାଜ-ସଂସ୍କାରକ ଅଥବା କବି କିମ୍ବା କୌଣସି ନିଷ୍କର୍ମା ଧନୀ ଲୋକଙ୍କର ଯେଉଁ ସମସ୍ତ ଜୀବନଚରିତ ଆମେ ଦେଖିବାକୁ ପାଉ, ସେସମସ୍ତର ବିଶେଷତ୍ୱ ଏତେ ଅଳ୍ପ ଏବଂ ସେଗୁଡ଼ିକ ମଧ୍ୟରେ ଏତେ ବେଶୀ ଅସଙ୍ଗତି ଯେ, ସେହି ଗ୍ରନ୍ଥ ସମୂହ ଜୀବନଚରିତ ବିଭାଗର ଗୌରବ

କି କଳଙ୍କ, ତାହା ବୁଝିବା କଠିନ । ତ୍ରୁଟି ସମସ୍ତ ଗ୍ରନ୍ଥରେ ହିଁ କିଛି ନା କିଛି ରହିଥାଏ, ତଥାପି ଏହି ଗ୍ରନ୍ଥ ଖଣ୍ଡିକ ଜୀବନଚରିତ ବିଭାଗରେ ଯେ ନୂତନ କରି କୌଣସି କଳଙ୍କର ଭାଗ ବୃଦ୍ଧି କରିବ ନାହିଁ, ଏ କଥା ମୁଁ ନିଃସନ୍ଦେହରେ କହିପାରିବି । ଏଥିରୁ ଅଧିକ ମଧ୍ୟ ମୁଁ କହିପାରିଥାନ୍ତି, କିନ୍ତୁ କହିଲି ନାହିଁ ।

ମୁଁ ଆଶା କରେ, ପାଠକପାଠିକାମାନେ ପ୍ରଥମତଃ ଲେଖକଙ୍କର ଖାତିରରେ ନ ହେଲେ ମଧ୍ୟ, ଅନ୍ତତଃ ସ୍ୱାମୀ ବିବେକାନନ୍ଦଙ୍କ ଖାତିରରେ ଏହି ଗ୍ରନ୍ଥଖଣ୍ଡିକ ଅବଶ୍ୟ ଥରେ ହେଲେ ପାଠ କରି ଦେଖିବେ ।

ଏହି ଗ୍ରନ୍ଥରେ ଅଧ୍ୟାୟଗୁଡ଼ିକ ଗୋଟିକ ପରେ ଗୋଟିଏ, ଯେଉଁ ଭାବରେ ସନ୍ନିବେଶିତ ହୋଇଛି, ସେଥିରେ ଆଲୋଚ୍ୟ ମହାପୁରୁଷଙ୍କ ଜୀବନ-ନାଟ୍ୟ ଆଦ୍ୟରୁ ଶେଷ ପର୍ଯ୍ୟନ୍ତ ନାଟକୀୟ ଆଲେଖ୍ୟ ପରି ଅପୂର୍ବ ବୈଚିତ୍ର୍ୟରେ ପରିସ୍ଫୁଟ ହୋଇ ଉଠିଛି । ଅଥଚ ସର୍ବତ୍ର ଏହା ସୁସମ୍ବନ୍ଧ, ଦୃଢ଼ ଓ ସୁଗଠିତ । ବିଳାପ ବା ପ୍ରଳାପର ଲେଶମାତ୍ର ଏଥିରେ ନାହିଁ ।

ବାଳକ ବିବେକାନନ୍ଦ ଉଦ୍ୟତଫଣା ସର୍ପ ସମ୍ମୁଖରେ ମୁଦ୍ରିତ ନେତ୍ରରେ ଧ୍ୟାନସ୍ଥ — ଏହି ଛବିରୁ ଆରମ୍ଭ କରି ତାଙ୍କର ଛାତ୍ର-ଜୀବନର ବିପୁଳ ଅଧ୍ୟବସାୟ, ତାଙ୍କର ବ୍ରାହ୍ମ-ସମାଜକୁ ଗମନାଗମନ, ଯୁକ୍ତିପନ୍ଥୀ ତରୁଣ ଯୁବକଙ୍କ ମନରେ ବ୍ରାହ୍ମ-ସମାଜ-କଥିତ ଈଶ୍ୱରଙ୍କ ଅସ୍ତିତ୍ୱରେ ସନ୍ଦେହ, ଧର୍ମ-ପିପାସା ଯୋଗୁଁ ଦିଗ୍‌ବିଦିଗରେ ଅନ୍ୱେଷଣ, ପରମହଂସ ଦେବଙ୍କ ସହିତ ସାକ୍ଷାତ୍, ପରମହଂସ ଦେବଙ୍କ ସମ୍ବନ୍ଧରେ ମଧ୍ୟ ବହୁ ସନ୍ଦେହ ଓ ପରୀକ୍ଷା, ତାହାପରେ ପିତୃ-ବିୟୋଗ ହେତୁ ଦାରିଦ୍ର୍ୟ ସହିତ ହୃଦୟର ରକ୍ତ ମୋକ୍ଷଣ କରୁ କରୁ ବୁଭୁକ୍ଷିତ ଯୁବକଙ୍କର ଏକ ଦାରୁଣ ସଂଗ୍ରାମ, ପରମହଂସଦେବଙ୍କ ଦେହତ୍ୟାଗ ପରେ ଭାରତଭ୍ରମଣ, କେତେ ରାଜା ମହାରାଜାଙ୍କର ତାଙ୍କ ପାଖକୁ ଆସି ଶିଷ୍ୟତ୍ୱ ଗ୍ରହଣ; ତାହାପରେ ଆମେରିକା ଗମନ, କେତେ ପ୍ରତିକୂଳ ଅବସ୍ଥା ମଧ୍ୟରେ ତାଙ୍କ ଜୀବନ ସଂଶୟାପନ୍ନ କରି କପର୍ଦ୍ଦକହୀନ ନିଃସମ୍ବଳ ସନ୍ନ୍ୟାସୀଙ୍କ ଅପ୍ରତ୍ୟାଶିତ ଅଭ୍ୟୁଦୟ, ବିଜୟୀ ବୀରଙ୍କର ଇଉରୋପୀୟ ଶିଷ୍ୟ ଓ ଶିଷ୍ୟାଗଣ ସହିତ ଭାରତକୁ ପ୍ରତ୍ୟାଗମନ, ବେଲୁଡ଼ ମଠ ସ୍ଥାପନ, ଭାରତବର୍ଷରେ ପ୍ରଚାର, କ୍ଷୀର-ଭବାନୀଙ୍କ ମନ୍ଦିରରେ ଅଦ୍ଭୁତ ଦୈବବାଣୀ ଶ୍ରବଣ ପରେ ଏକ ଆଶ୍ଚର୍ଯ୍ୟ ପରିବର୍ତ୍ତନ, ଦ୍ୱିତୀୟଥର ଇଉରୋପ ଗମନ, ପୁଣି ହଠାତ୍ ଦିନେ ରାତ୍ରିର ବେଲୁଡ଼ ମଠକୁ ପ୍ରତ୍ୟାବର୍ତ୍ତନ, ପୂର୍ବ ବଙ୍ଗରେ ପ୍ରଚାର, ସ୍ୱାସ୍ଥ୍ୟଭଙ୍ଗ ଓ ଶେଷରେ ଦିନେ ଦକ୍ଷିଣେଶ୍ୱର ଆଡ଼କୁ ମୁହଁ ରଖି ଅନନ୍ତ ଶୟନ — ଏ ସମସ୍ତ ହିଁ ଏପରି ନିପୁଣ ଭାବରେ ଅଧ୍ୟାୟ ପରେ ଅଧ୍ୟାୟରେ ଫୁଟି ଉଠିଛି ଯେ, ଏତଦ୍ୱାରା ଏକ ଦିଗରେ ପ୍ରତ୍ୟେକ ଅଧ୍ୟାୟ ଯେପରି ମନୋରମ

ହୋଇଛି, ସେପରି ଅନ୍ୟ ଦିଗରେ ସମଗ୍ର ଜୀବନର ଗୋଟିଏ ଧାରାବାହିକ ବିକାଶର ଚିତ୍ରଟି ମଧ୍ୟ ପାଠକ-ପାଠିକାଙ୍କ ସମ୍ମୁଖରେ ଉଦ୍‌ଘାଟିତ ହୋଇଛି ।

ଜୀବନର ଘଟଣାବଳୀର ଶୈଳସ୍ତୂପ ଗୋଟିଏ ଜାଗାରେ କେବଳ ସଂଗ୍ରହ କରିପାରିଲେ ଜୀବନଚରିତ ଲିପିବଦ୍ଧ କରାହୁଏ ନାହିଁ । ଗ୍ରନ୍ଥାକାର ତାହା କରି ନାହାନ୍ତି । ସେ ସ୍ୱାମୀ ବିବେକାନନ୍ଦଙ୍କ ଜୀବନର ବିବିଧ ଘଟଣାବଳୀ ଗୋଟିଏ ଜୀବନ-ସ୍ରୋତ ଉପରେ ଭସାଇ ଦେଇ ନାନାପ୍ରକାର ତରଙ୍ଗ-ଭଙ୍ଗୀରେ ସେଗୁଡ଼ିକୁ ପାଠକ-ପାଠିକାଙ୍କ ସମ୍ମୁଖରେ ତୋଳି ଧରିଛନ୍ତି, ଏହା କମ୍ ଲିପିଚାତୁର୍ଯ୍ୟର ପରିଚାୟକ ନୁହେଁ । ଖାଲି ଘଟଣା ପରେ ଘଟଣା ଆସି ଜୀବନକୁ ଆବର୍ଜନାରେ ଘୋଡ଼ାଇ ପକାଇ ନାହିଁ, ପୁଣି ଜୀବନର ପ୍ରକୃତ ଘଟଣା ସହିତ ସମ୍ପର୍କଶୂନ୍ୟ ଏକ ବସ୍ତୁତନ୍ତ୍ରହୀନ କାଳ୍ପନିକ ଜୀବନରେ ନିରର୍ଥକ ଅତି ସୂକ୍ଷ୍ମାତିସୂକ୍ଷ୍ମ ଦାର୍ଶନିକ ବିତଣ୍ଡାର ଅବତାରଣାରେ ଏହା କେବେହେଲେ ସତ୍ୟରୁ ଭ୍ରଷ୍ଟ ହୋଇ ନାହିଁ । ସ୍କୁଲ ପାଠ୍ୟ-ପୁସ୍ତକରେ ଯେଉଁ ପର୍ଯ୍ୟାୟର ନୀତି ଛାତ୍ରଛାତ୍ରୀମାନେ ମୁଖସ୍ଥ କରନ୍ତି, ସେହି ସମସ୍ତ ମାମୁଲି ନୀତିର ପର୍ଯ୍ୟାୟରେ ଜୀବନକୁ ଆଣି ଖୋଟ-ବସ୍ତା ପରି ବାନ୍ଧି ରଖିବାର ଚେଷ୍ଟା କରାହୋଇ ନାହିଁ । ଜୀବନର ଉଦ୍ଦାମ, ଏପରି କି ଉଚ୍ଛୃଙ୍ଖଳ ସ୍ୱାଧୀନତାର ଗତିକୁ ସହଜ ଓ ସ୍ୱାଭାବିକ ବିକାଶ-ପଥରେ ଛାଡ଼ି ଦେଇ ଶିଳ୍ପୀ ତାଙ୍କର ନିପୁଣ ତୂଳିକା ସହାୟତାରେ ସେହି ଜୀବନକୁ ଚିତ୍ରିତ କରିଛନ୍ତି । ଏଥିପାଇଁ ମୁଁ ତାଙ୍କୁ ଦୁଃସାହାସିକ କହିବି ଏବଂ ସର୍ବତ୍ର ସଫଳକାମ ନ ହେଲେ ମଧ୍ୟ—ଏହି ଦୁଃସାହାସ ପାଇଁ ତାଙ୍କୁ ମୁଁ ନିସନ୍ଦେହରେ ପ୍ରଶଂସା କରିବି ।

ବସ୍ତୁତଃ ଜୀବନର ଆଲେଖ୍ୟ ଲେଖନୀ-ମୁଖରେ ପ୍ରସ୍ଫୁଟିତ କରିବା ଅତ୍ୟନ୍ତ କଠିନ । ଏହି କଠିନ କାର୍ଯ୍ୟ ବଙ୍ଗ-ସାହିତ୍ୟ କ୍ଷେତ୍ରରେ ଆହୁରି କଠିନ । କାହିଁକି ନା ବଙ୍ଗଦେଶରେ ସମ୍ବାଦପତ୍ର ରହିଛି, ବକ୍ତୃତା ରହିଛି, ତତ୍‌ସଂଶ୍ଳିଷ୍ଟ ଧର୍ମ ଓ ସମାଜ-ସଂସ୍କାର ରହିଛି, ଥିଏଟର ରହିଛି, ତାହାର ଅଭିନେତା ଓ ଅଭିନେତ୍ରୀ ମଧ୍ୟ ଅଛନ୍ତି,—କିନ୍ତୁ ଜୀବନ ନାହିଁ । ଯାହା ନାହିଁ, ତାହା ଲେଖିବାକୁ ହେବ; କୌଣସି ଦେଶର ସାହିତ୍ୟିକଙ୍କର କପାଳରେ ଏତେ ବଡ଼ ଦାରୁଣ ଅଭିଶାପ ବୋଧହୁଏ ବିଧାତା ମଧ୍ୟ କଳ୍ପନା କରି ନାହାନ୍ତି । ଦୁଇଚାରି ଖଣ୍ଡି 'ଆତ୍ମ-ଜୀବନୀ', 'ମୋର ଜୀବନ' ବା 'ମୋର ଜୀବନସ୍ମୃତି' ଆମମାନଙ୍କର ଆଖି ଆଗରେ ପଡ଼ିଛି, ତାହା ଆତ୍ମ ବା ମୋର ହୋଇପାରେ, ତାହା ସ୍ମୃତି ହୋଇପାରେ; କିନ୍ତୁ ସେଗୁଡ଼ିକ ଜୀବନ ନୁହେଁ ।

ଏହି ଜୀବନହୀନ ମୃତ ଦେଶରେ ସ୍ୱାମୀ ବିବେକାନନ୍ଦ ଗୋଟିଏ ପ୍ରକୃତ ଜୀବନ ଘେନି ଆସିଥିଲେ । ସୁତରାଂ ତାଙ୍କର ଜୀବନଚରିତ ଲେଖିବା ପାଇଁ ବଙ୍ଗ

ସାହିତ୍ୟ ନିଃସନ୍ଦେହରେ ଏକ ଅତି ଗୁରୁତର ଦାୟିତ୍ୱ ଅନୁଭବ କରିଛି । ଏହି ଦାୟିତ୍ୱ ବୋଧରୁ ଗ୍ରନ୍ଥାକାର ଯେ ଜୀବନଚରିତ ଖଣ୍ଡି ଲେଖିଛନ୍ତି, ତାହା ସ୍ୱଷ୍ଟ ହିଁ ବୁଝାଯାଏ ।

(ଭୂମିକା ସମାଲୋଚନା ନୁହେଁ । ତଥାପି ହୁଏତ ଏହା ସମାଲୋଚନା ହୋଇ ପଡ଼ିଛି । ଅଭ୍ୟାସ ଦୋଷ ଗୁରୁତର ଦୋଷ । ଗ୍ରନ୍ଥକାର ହୁଏତ ଆଶା କରିଥିଲେ ମୁଁ ତାଙ୍କର ଗ୍ରନ୍ଥ ଖଣ୍ଡିକୁ ପାଠକ-ପାଠିକାଙ୍କ ନିକଟରେ ଭଲ ଭାବରେ ପରିଚୟ କରାଇ ଦେବି, କିନ୍ତୁ ତାହା ମୁଁ କରିପାରି ନାହିଁ; କାରଣ ଏହା ମୋର ସାଧ୍ୟାତୀତ । ଏହି ଗ୍ରନ୍ଥ ଲେଖିବାର ଦୁଃସାହସ ଯାହାଙ୍କର ଅଛି, ସେହି ଦୁଃସାହସ ତାହାଙ୍କର ପରିଚୟ । ଆଉ ଏହି ଗ୍ରନ୍ଥ ଲେଖି ସେ ଯାହାଙ୍କୁ ପରିଚୟ କରି ଦେବାର ଭାର ନେଇଛନ୍ତି, ତାହାଙ୍କୁ ଲେଖକ ଯେତେ ଜାଣନ୍ତି ମୁଁ ସେତେ ଜାଣି ନାହିଁ ।)

୧୯ ଆଷାଢ଼, ୧୩୨୬ ବଙ୍ଗାବ୍ଦ
ଭବାନୀପୁର, କଲିକତା

**ଶ୍ରୀ ଗିରିଜାଶଙ୍କର ରାୟଚୌଧୁରୀ**

# ସୂଚୀପତ୍ର

## ଚତୁର୍ଥ ଅଧ୍ୟାୟ—ପରିବ୍ରାଜକ ବିବେକାନନ୍ଦ (୧୮୮୬-୧୮୯୨)

**ପଞ୍ଚମ ଅଧ୍ୟାୟ — ଆଚାର୍ଯ୍ୟ ବିବେକାନନ୍ଦ (୧୮୯୩-୧୮୯୬)**

## ସପ୍ତମ ଅଧାୟ—ମାନବମିତ୍ର ବିବେକାନନ୍ଦ (୧୮୯୯–୧୯୦୨)







ବେଲୁଡ଼ ମଠରେ ଅବସ୍ଥିତ ସ୍ୱାମୀ ବିବେକାନନ୍ଦଙ୍କ ମନ୍ଦିର ଓ ପ୍ରତିକୃତି

# ପ୍ରଥମ ଅଧ୍ୟାୟ

## ବାଳକ ବିବେକାନନ୍ଦ

(୧୮୬୩ – ୧୮୮୦)

ଓଁ ନିତ୍ୟ-ଶୁଦ୍ଧ-ବୁଦ୍ଧ-ମୁକ୍ତ-ବେଦାନ୍ତାମ୍ବୁଜଭାସ୍କରମ୍ ।
ନମାମି ଯୁଗକର୍ତ୍ତାରଂ ଆର୍ତ୍ତନାଥଂ ବୀରେଶ୍ୱରମ୍ ।।

ଭଗବାନ ଶ୍ରୀଶ୍ରୀରାମକୃଷ୍ଣ ପରମହଂସଙ୍କ ମଙ୍ଗଳାଶୀଷ ମସ୍ତକରେ ଧାରଣ କରି ଯେଉଁ ମହାପୁରୁଷ ଏହି ଉନ୍ମାର୍ଗଗାମୀ, ପରାନୁକରଣ-ମୋହାଚ୍ଛନ୍ନ, ଆତ୍ମବିସ୍ମୃତ ଜାତି ମଧ୍ୟରେ ଦଣ୍ଡାୟମାନ ହୋଇ ଅଦ୍ୱୈତସିଂହନାଦରେ ସନାତନ ଧର୍ମ ପୁନଃ ପ୍ରଚାର କରିଛନ୍ତି — ଯାହାଙ୍କ ସମାଧିପୂତ ଅପୂର୍ବ ଜ୍ଞାନ, ତପଃସଂଭୂତ ଅମିତ ତେଜର ଦୀପ୍ତପ୍ରଭା ବିକିରଣ କରି ଦଶବର୍ଷ କାଳ ମଧ୍ୟାହ୍ନ ସୂର୍ଯ୍ୟଙ୍କ ପରି ସମଗ୍ର ଜଗତରେ କିରଣ ବର୍ଷଣ କରିଛି—ଯାହାଙ୍କ ଅକ୍ଳାନ୍ତ ଚେଷ୍ଟା, ନିର୍ଭୀକ ଆତ୍ମୋତ୍ସର୍ଗ ଭାରତର ଏକ ଗୌରବମୟ ଭବିଷ୍ୟତର ସୂଚନା ଦେଇଛି—କେବଳ ଭାରତ କାହିଁକି—ଯେ ବିଶ୍ୱମାନବର କଲ୍ୟାଣ କାମନାରେ ମହାନ୍ ଯୁଗାଦର୍ଶକୁ ନିଜ ଜୀବନରେ ପ୍ରକଟିତ କରି ଅବତୀର୍ଣ୍ଣ ହୋଇଥିଲେ, ସେହି ଜଗଦ୍‌ଗୁରୁ ଆଚାର୍ଯ୍ୟ ଶ୍ରୀମତ୍ ବିବେକାନନ୍ଦ ସ୍ୱାମିଜୀଙ୍କ ଆବିର୍ଭାବ ଓ ତିରୋଭାବ ଉଭୟ ଆଜି ଅତୀତର ଘଟଣା ।

ଭାରତବର୍ଷ ଇତିହାସର ଗୋଟିଏ ସଂକଟମୟ ସନ୍ଧିକ୍ଷଣରେ, ଏହି ପରାଜିତ ପତିତ ଜାତିର ଅଧଃପତନର ଚରମ ଅବସ୍ଥାରେ—ସନ୍ନ୍ୟାସର ମହାବୀର୍ଯ୍ୟକୁ ଆଶ୍ରୟ କରି ଯେଉଁ ମହାପୁରୁଷ ଧର୍ମ ସମାଜ ଓ ରାଷ୍ଟ୍ରରେ ସମଷ୍ଟି-ମୁକ୍ତିର ମହାନ୍ ଆଦର୍ଶ ପ୍ରଚାର କରିଯାଇଛନ୍ତି, ତାଙ୍କ କାର୍ଯ୍ୟ ଓ ଉପଦେଶର ଐତିହାସିକ ଗୁରୁତ୍ୱ ଏତେ ଅଳ୍ପକାଳ ବ୍ୟବଧାନରେ ପରିଷ୍କାର ରୂପେ ହୃଦୟଙ୍ଗମ କରିବା ଅତି ସୁକଠିନ ବ୍ୟାପାର । ସମାଜର ଶ୍ରେଣୀ-ବିନ୍ୟାସରେ ଯେତେବେଳେ ଉଚ୍ଚ-ନୀଚ ଭେଦଭାବ ମର୍ମାନ୍ତିକ ହୋଇଉଠେ, ଯେଉଁଠାରେ ରାଜଦଣ୍ଡ ଅନ୍ୟାୟଭାବରେ ଦୁର୍ବଳକୁ ଅଯଥା ନିପୀଡ଼ିତ କରେ, ମନୁଷ୍ୟ-ସମାଜରେ ଯେତେବେଳେ ଧର୍ମଗ୍ଲାନି ପ୍ରକଟିତ ହୁଏ ଅତ୍ୟାଚାର ଅଧୀନରେ ସର୍ବବିଧ ଦୁର୍ନୀତି ସହସ୍ରଶିର ଧାରଣ କରି ଦେଖା ଦିଏ, ଯେତେବେଳେ ଧ୍ୱଂସ ଅନିବାର୍ଯ୍ୟ ଓ ଆସନ୍ନ—ସେତେବେଳେ ପୁରାତନର ଜୀର୍ଣ୍ଣ ଶବକୁ ଶ୍ମଶାନ-ଚୁଲ୍ଲୀରେ ଭସ୍ମୀଭୂତ କରି ସେହି ଭସ୍ମସ୍ତୂପର ବେଦୀ ଉପରେ ନୂତନ ସ୍ଫୁଲିଙ୍ଗ ନେଇ ପୁନର୍ବାର ନୂତନ ସୃଷ୍ଟିର ସୂତ୍ରପାତ ଦେଖାଦିଏ । ମଧ୍ୟେ ମଧ୍ୟେ ମନୁଷ୍ୟ-ସମାଜକୁ ସଜାଡ଼ିବା ପ୍ରୟୋଜନ ହୁଏ । ସେହି ପ୍ରୟୋଜନ ବେଳେ ସ୍ୱାମୀ ବିବେକାନନ୍ଦଙ୍କ ପରି ମନୁଷ୍ୟ ମଧ୍ୟେ ମଧ୍ୟେ ଆବିର୍ଭୂତ ହୁଅନ୍ତି ।

ଏକଦା ଭାରତବର୍ଷରେ ସ୍ତ୍ରୀ-ଶୂଦ୍ର ଓ ବ୍ରାହ୍ମଣର ଭେଦ ଐକାନ୍ତିକ ହୋଇ ଉଠିଥିଲା; ଅଶ୍ୱମେଧ, ଗୋମେଧ, ନରମେଧ ଯଜ୍ଞାଡ଼ମ୍ବରରେ ଭାରତଭୂମି

ରକ୍ତାକ୍ତ ହୋଇଯାଇଥିଲା; ରାଜଚକ୍ରବର୍ତ୍ତୀ ସମ୍ରାଟ ପ୍ରଜାଶକ୍ତି କବନ୍ଧ ଉପରେ ନିଜ ବିଜୟୀ ରଥଚକ୍ରକୁ ଘର୍ଘର ଶବ୍ଦରେ ଚାଳନା କରୁଥିଲେ; ପ୍ରଜାଶକ୍ତି ପର୍ଯ୍ୟୁଦସ୍ତ ହେଉଥିଲେ । ବେଦ ଓ ଶାସ୍ତ୍ରଜ୍ଞାନ କେବଳ ବ୍ରାହ୍ମଣଶ୍ରେଣୀ ଭିତରେ ଆବଦ୍ଧ ଥିଲା । ସଭ୍ୟତା କୃତ୍ରିମ ହୋଇ ଉଠୁଥିଲା, ଏହାର ପ୍ରତିକ୍ରିୟା-ସ୍ୱରୂପ ଭଗବାନ୍ ବୁଦ୍ଧଦେବ ଆବିର୍ଭୂତ ହୋଇଥିଲେ । ବେଦ ଅସ୍ୱୀକୃତ ହେଲା, ବ୍ରାହ୍ମଣ ଦୂରକୁ ଅପସରିଗଲା, ସ୍ତ୍ରୀ-ଶୂଦ୍ର ଧର୍ମ-ନାମରେ ସଂଘବଦ୍ଧ ହେଲେ, ରାଜଚକ୍ରବର୍ତ୍ତୀ ସମ୍ରାଟ ସିଂହାସନ ଓ ରାଜଦଣ୍ଡ ଭୂମିରେ ନିକ୍ଷେପ କରି ସାମାନ୍ୟ ଭିକ୍ଷୁକ ବେଶରେ ଭାରତବର୍ଷର ପଥେ ପଥେ ଭଗବାନ୍ ବୁଦ୍ଧଦେବଙ୍କର ପଦାଙ୍କ ଅନୁସରଣ କରି ଜୀବନ-ସନ୍ଧ୍ୟାରେ ଭ୍ରମଣ କଲେ । ସଭ୍ୟତାର କୃତ୍ରିମ ଆବର୍ଜନା ଦୂରକୁ ଅପସରି ଗଲା, ଆପାମର ସାଧାରଣଙ୍କ ଭିତରେ ଜ୍ଞାନରଶ୍ମି ବିସ୍ତୃତ ହେଲା, ଭାରତବର୍ଷର ମାନବ ଗୋଟିଏ ଅତୁଳନୀୟ ସାମ୍ୟବାଦ ଆଦର୍ଶରେ ଅନୁପ୍ରାଣିତ ହୋଇ ଧର୍ମ ଓ ସମାଜକୁ ନୂତନ କରି ଗଠନ କଲା । ଏହି ସାମ୍ୟବାଦ ରାଷ୍ଟ୍ରକ୍ଷେତ୍ରରେ ମଧ୍ୟ ପ୍ରଭାବ ବିସ୍ତାର କଲା ।

ଇଉରୋପର ରଙ୍ଗ-ମଞ୍ଚରେ ବି ଦିନେ ଏହିଭଳି ଏକ ଅଭିନୟ ହୋଇ ଯାଇଛି । ଯେତେବେଳେ ରୋମ-ସାମ୍ରାଜ୍ୟରେ ଉଚ୍ଚ-ନୀଚ ଭେଦ ପ୍ରବଳ ହେଲା, ବିଳାସ ବ୍ୟଭିଚାର ସ୍ରୋତ ପରି ପ୍ରବାହିତ ହେଲା, ରୋମକ୍ ସମ୍ରାଟ୍ ଯେତେବେଳେ ସାମ୍ରାଜ୍ୟରେ ଶାସନ ନାମରେ ପୀଡ଼ନ ଆରମ୍ଭ କଲେ, ଯେତେବେଳେ ଦୁର୍ବଳ ହେଲା—ନିଷ୍ପେଷିତ ଆର୍ତ୍ତ, ଭୀତ ଓ ମୁମୂର୍ଷୁ, ଧର୍ମର ଯେତେବେଳେ ଅତ୍ୟନ୍ତ ଗ୍ଳାନି, ରୋମକ-ସାମନ୍ତଶ୍ରେଣୀ ଯେତେବେଳେ ଇନ୍ଦ୍ରିୟଲିପ୍ସୁ ଓ ଭୋଗବାଦୀ, ସେତିକିବେଳେ ସଭ୍ୟତାର ସେଇ କୃତ୍ରିମତା ବିରୋଧରେ, ସେହି ଅଧର୍ମ ବିରୋଧରେ, ଦୁର୍ବଳର ରକ୍ଷା ପାଇଁ ପ୍ରତିକ୍ରିୟା ସ୍ୱରୂପ ଅନ୍ୟ ଗୋଟିଏ ଶକ୍ତିର ସ୍ଫୁରଣ ହେଲା । ଜଣେ ଦୀନଦରିଦ୍ର ମୂର୍ଖ ସୂତ୍ରଧରପୁତ୍ର ଇଉରୋପର ଇତିହାସକୁ ଅଙ୍ଗୁଳି ହଲାଇ ପରିବର୍ତ୍ତନ କରି ଦେଇଗଲେ । ଗ୍ରୀସ୍ ଓ ରୋମ୍‌ର ସଭ୍ୟତା ପରେ ଇଉରୋପ ଯେତେବେଳେ ବର୍ବରତା-ବନ୍ୟାରେ ଭାସିଯିବାକୁ ଆରମ୍ଭ କଲା, ସେତେବେଳେ ସେହି ପ୍ରଳୟପୟୋଧିରୁ ମହାତ୍ମା ଯୀଶୁ ଇଉରୋପକୁ ରକ୍ଷା କରିଥିଲେ ।

ଆମେ ସ୍ୱାମୀ ବିବେକାନନ୍ଦଙ୍କ ଶ୍ରୀମୁଖରୁ ଶୁଣିଛୁ, ''ଏଥରକ କେନ୍ଦ୍ର ଭାରତବର୍ଷ ।'' ପୁଣି ଶୁଣିଛୁ, ''ହେ ମାନବ, ମୃତର ପୂଜା ଛାଡ଼ି ଜୀବନ୍ତର ପୂଜା କରିବା ଲାଗି ତୁମକୁ ମୁଁ ଆହ୍ୱାନ କରୁଛି । ଗତାନୁଶୋଚନା ଛାଡ଼ି ପ୍ରଯତ୍ନ ଲାଗି ଆହ୍ୱାନ କରୁଛି । ଲୁପ୍ତ ପନ୍ଥାର ପୁନରୁଦ୍ଧାର ଲାଗି ବୃଥା ଶକ୍ତି କ୍ଷୟ ନ କରି ସଦ୍ୟୋନିର୍ମିତ ବିଶାଳ ଓ ସନ୍ନିକଟ ପଥକୁ ଆହ୍ୱାନ କରୁଛି । ବୁଦ୍ଧିମାନ, ବୁଝିନିଅ । ଯେଉଁ ଶକ୍ତିର ଉନ୍ମେଷ ମାତ୍ରକେ ଦିଗଦିଗନ୍ତବ୍ୟାପୀ ପ୍ରତିଧ୍ୱନି ଜାଗି ଉଠିଛି, ତାହାର ପୂର୍ଣ୍ଣାବସ୍ଥାକୁ କଳ୍ପନାରେ ଅନୁଭବ କର ଏବଂ ବୃଥା ସନ୍ଦେହ, ଦୁର୍ବଳତା ଓ ଦାସ-

ଜାତସୁଲଭ ଈର୍ଷାଦ୍ୱେଷ ତ୍ୟାଗ କରି ଏହି ମହାଯୁଗ-ଚକ୍ର-ପରିବର୍ତ୍ତନକୁ ସାହାଯ୍ୟ କର ।''

ବିବେକାନନ୍ଦଙ୍କ ଚିନ୍ତା ଓ ଚରିତ୍ର, ମାନବସଭ୍ୟତା ରୂପାନ୍ତରର ଐତିହାସିକ ପରଂପରା ରକ୍ଷା କରି ଗୋଟିକ ପରେ ଗୋଟିଏ ସ୍ତରରେ ବିକଶିତ ହୋଇଛି । ସେହି ବିକାଶର ବୈଚିତ୍ର୍ୟ-ଜଟିଳ ଧାରା ସହିତ ସାମଞ୍ଜସ୍ୟ ରକ୍ଷା କରି ସଂଗୃହୀତ ଉପାଦାନ-ଗୁଡ଼ିକର ଯଥାଯଥ ବିନ୍ୟାସ କରିବା ଲାଗି ମୁଁ ହୁଏତ ସବୁସ୍ଥାନରେ କୃତକାର୍ଯ୍ୟ ହୋଇପାରି ନାହିଁ । ତଥାପି ଲୋକୋତ୍ତର ଚରିତ୍ର ମହାପୁରୁଷମାନଙ୍କ ଜୀବନ-କଥା ଆଲୋଚନା କଲେ ଆମମାନଙ୍କର ପ୍ରଭୂତ କଲ୍ୟାଣ ହୋଇଥାଏ — ଏହି ମହାପୁରୁଷଙ୍କ ବାକ୍ୟରେ ଶ୍ରଦ୍ଧାସମ୍ପନ୍ନ ହୋଇ ଏଭଳି ଦୁଃସାହସିକ କାର୍ଯ୍ୟରେ ଅଗ୍ରସର ହୋଇଛି ।

## ପିତୃ ପରିଚୟ

କଲିକତା ନଗରୀର ଉତ୍ତରାଞ୍ଚଳରେ ଥିବା ଶିମୁଳିଆ ପଲ୍ଲୀର ପ୍ରସିଦ୍ଧ ଦତ୍ତ ପରିବାରରେ ୰ରାମମୋହନ ଦତ୍ତ କଲିକତା ସୁପ୍ରୀମ୍‌କୋର୍ଟର ଜଣେ ପ୍ରତିଷ୍ଠାବାନ୍ ଆଇନଜୀବୀ ଥିଲେ । ପ୍ରଚୁର ଅର୍ଥୋପାର୍ଜନ କରି ରାମମୋହନ କଲିକତା ସହର ଭିତରେ ଦତ୍ତ ବଂଶର ଖ୍ୟାତି ଓ ପ୍ରତିପତ୍ତି ବଢ଼ାଇ ଦେଇଥିଲେ । ତାଙ୍କ ସୁଯୋଗ୍ୟ ପୁତ୍ର ସ୍ୱର୍ଗତ ଦୁର୍ଗାଚରଣ ସେକାଳର ପ୍ରଥାନୁସାରେ ସଂସ୍କୃତ ଓ ପାର୍ସୀ ଭାଷା ଶିଖି ପିତାଙ୍କର ପଦାଙ୍କ ଅନୁସରଣ କରି ଅତି ତରୁଣ ବୟସରେ ଆଇନ ବ୍ୟବସାୟ ଆରମ୍ଭ କରିଥିଲେ; କିନ୍ତୁ ଦୁର୍ଗାଚରଣ ପିତାଙ୍କ ପରି ବିଷୟୀ ନ ଥିଲେ । ଏହି ଉଦାର ଧର୍ମପ୍ରାଣ ଯୁବକ ସୁବିଧା ଓ ଅବସର ଅନୁସାରେ ସାଧୁସଙ୍ଗ କରୁଥିଲେ । ଅବଶେଷରେ ମାତ୍ର ପଚିଶ ବର୍ଷ ବୟସରେ ସେ ସମସ୍ତ ଐଶ୍ୱର୍ଯ୍ୟ ଓ ଯଶୋଲିପ୍‌ସା ପରିତ୍ୟାଗ କରି ଏବଂ ପତ୍ନୀ ଓ ଏକମାତ୍ର ଶିଶୁପୁତ୍ରକୁ ଛାଡ଼ି ସନ୍ନ୍ୟାସ ଅବଲମ୍ବନ କରିବା ନିମିତ୍ତ ଗୃହ ତ୍ୟାଗ କଲେ । ଏହି ସନ୍ନ୍ୟାସୀଙ୍କ ପୁତ୍ର ୰ ବିଶ୍ୱନାଥ ଦତ୍ତ ହେଉଛନ୍ତି ସନ୍ନ୍ୟାସୀ ବିବେକାନନ୍ଦଙ୍କ ଜନକ । ବିଶ୍ୱନାଥ, ରାମମୋହନଙ୍କ ପରଂପରା ବଜାୟ ରଖି ଆଇନ୍ ବ୍ୟବସାୟ କରୁଥିଲେ । ପ୍ରତିଭାଶାଳୀ ବିଶ୍ୱନାଥ ଅତି ଅଳ୍ପକାଳ ମଧ୍ୟରେ କଲିକତାର ସର୍ବତ୍ର ସୁପରିଚିତ ହୋଇଗଲେ । ସ୍ୱାଧୀନଚେତା, ବନ୍ଧୁ ବତ୍ସଳ, ଆଶ୍ରିତ-ପାଳକ ବିଶ୍ୱନାଥଙ୍କ ଧନଜନପୂର୍ଣ୍ଣ ବିଶାଳ ଭବନରେ କୌଣସି ସୁଖର ଅଭାବ ନ ଥିଲା; କିନ୍ତୁ ସ୍ୱାମୀ-ସୌଭାଗ୍ୟ-ଗର୍ବିତା ଭୁବନେଶ୍ୱରୀଙ୍କର ପୁତ୍ରସନ୍ତାନ ଜାତ ନ ହେବାରୁ ସେ ଦୁଃଖିତା ହୋଇ କାଳଯାପନ କରୁଥିଲେ । କ୍ରମେ କ୍ରମେ ଦୁଇଟି କନ୍ୟାର ଜନନୀ ହୋଇ ଶେଷରେ ପୁତ୍ରଲାଭ କାମନାରେ ତାଙ୍କ ହୃଦୟ ନିରତିଶୟ ବ୍ୟାକୁଳ ହେଲା । ପ୍ରତ୍ୟହ ଗୃହକର୍ମ ସମାପନ କରି ସେ ଗୃହଦେବତାଙ୍କ ମନ୍ଦିରରେ କାତର ଭାବରେ ଭଗବାନଙ୍କ ଚରଣରେ ପ୍ରାର୍ଥନା କରୁଥିଲେ । ସେ କଠୋର କୃଚ୍ଛବ୍ରତ ଅବଲମ୍ବନ କଲେ, କିନ୍ତୁ ତଥାପି ହୃଦୟ

ଶାନ୍ତ ହେଲା ନାହିଁ । ସେତେବେଳେ ଦତ୍ତ ପରିବାରର ଜଣେ ବୃଦ୍ଧା କାଶୀରେ ରହୁଥିଲେ । ଭୁବନେଶ୍ୱରୀ ତାଙ୍କ ନିକଟକୁ ନିଜ ମାନସିକ ଅବସ୍ଥାର ବିସ୍ତାରିତ ବର୍ଣ୍ଣନା ସହ ଗୋଟିଏ ଦୀର୍ଘ ପତ୍ର ଲେଖି ଅନୁରୋଧ କଲେ, ସେ ଯେପରି କି ତାଙ୍କ ପାଇଁ ପ୍ରତ୍ୟହ ଶ୍ରୀଶ୍ରୀବିଶ୍ୱେଶ୍ୱରଙ୍କ ନିକଟରେ ପୁତ୍ର ସନ୍ତାନ ଲାଭ ନିମିତ୍ତ ପୂଜା ଓ ପ୍ରାର୍ଥନା କରନ୍ତି । କିଛିଦିନ ପରେ ସମ୍ମତିସୂଚକ ଉତ୍ତର ପାଇ ସେ ଆନନ୍ଦ ସାଗରରେ ମଗ୍ନ ହେଲେ । ସନ୍ତାନାଭିଳାଷିଣୀ ଜନନୀଙ୍କ ଶ୍ରଦ୍ଧାମୁଗ୍ଧ ଆଶା-ଉନ୍ମୁଖ ହୃଦୟ ଦେବାଦିଦେବ ମହାଦେବଙ୍କ ଚିନ୍ତାରେ ବିଭୋର ହୋଇଗଲା ।

## ଜନନୀଙ୍କ ସ୍ୱପ୍ନ ଦର୍ଶନ

ପ୍ରଭାତରେ ଶିବ ମନ୍ଦିରରେ ଧ୍ୟାନମଗ୍ନା ଭୁବନେଶ୍ୱରୀ ! ଶୂନ୍ୟାକାଶରୁ ତପ୍ତକିରଣ ବର୍ଷଣ କରି ଭଗବାନ ମରୀଚିମାଳୀ ଅସ୍ତାଚଳଚୂଡ଼ା ଅବଲମ୍ବନ କଲେ । ସନ୍ଧ୍ୟାରେ ଧୂସର ଆଲୋକ ତାଙ୍କ ତପଃକ୍ଲିଷ୍ଟ ସଂଯମ-ପୁଣ୍ୟୋଜ୍ଜ୍ୱଳ ମୁଖମଣ୍ଡଳକୁ ସ୍ୱର୍ଗୀୟ ବିଭାରେ ମଣ୍ଡନ କରି ଧୀରେ ଧୀରେ ମିଳେଇ ଗଲା । ଗଭୀର ରଜନୀରେ ଶ୍ରାନ୍ତଦେହା ଜନନୀ ନିଦ୍ରା ଗଲେ । ବହୁଦିନରୁ ଈପ୍‌ସିତ ଆକାଙ୍‌କ୍ଷା ପୂର୍ଣ୍ଣ ହେଲା । ଭୁବନେଶ୍ୱରୀ ସ୍ୱପ୍ନରେ ଦେଖିଲେ—ତୁଷାରଧବଳ ରଜତ ଭୂଧର-କାନ୍ତି କୈଳାଶେଶ୍ୱର ତାହାଙ୍କ ସମ୍ମୁଖରେ ଦଣ୍ଡାୟମାନ ! ଧୀରେ ଧୀରେ ଦୃଶ୍ୟ ପରିବର୍ତ୍ତିତ ହେଲା; ଭକ୍ତଙ୍କ ବିସ୍ମୟମୁଗ୍ଧ ହୃଦୟକୁ ଅପୂର୍ବ ଆନନ୍ଦରେ ପରିପ୍ଲୁତ କରି ସେ ଧୀରେ ଧୀରେ କ୍ଷୁଦ୍ର ଶିଶୁ ଆକାରରେ ଜନନୀଙ୍କ କୋଳରେ ଆଶ୍ରୟ ନେଲେ ।

ଦିବ୍ୟାନନ୍ଦ-କଣ୍ଟକିତ ଦେହରେ ନିଦ୍ରାଭଙ୍ଗ ହେବାରୁ ଜନନୀ ଯେତେବେଳେ ଭୂମିଶଯ୍ୟା ତ୍ୟାଗ କଲେ, ସେ ଦେଖିଲେ ଯେ ଉଗ୍ର ଉଜ୍ଜ୍ୱଳ ସୂର୍ଯ୍ୟ କିରଣରେ ଚରାଚର ଭରିଯାଇଛି । ''ହେ ଶିବ—ହେ ଶଙ୍କର—ହେ କରୁଣାମୟ''—ଉଚ୍ଚାରଣ କରି କରି ସତୀ ଭକ୍ତି ସହକାରେ ଭୂମ୍ୟବଲୁଣ୍ଠିତା ହୋଇ ପୁନଃ ପୁନଃ ପ୍ରଣାମ କରିବାକୁ ଲାଗିଲେ ।

## ଜନ୍ମ ଓ ନାମକରଣ

୧୮୬୩ ଖ୍ରୀଷ୍ଟାବ୍ଦର ଜାନୁଆରୀ ୧୨ ତାରିଖ । କୁଜ୍‌ଝଟିକାବୃତ ହିମମଳିନ ପୌଷ ସଂକ୍ରାନ୍ତିର ପୁଣ୍ୟ ପ୍ରଭାତରେ ଦଳ ଦଳ ନର-ନାରୀ ତ୍ରସ୍ତପାଦ ଓ ସ୍ପନ୍ଦିତ ଦେହରେ ମକର ସପ୍ତମୀ ସ୍ନାନ ଲାଗି ଭାଗୀରଥି ଅଭିମୁଖେ ଚାଲିଛନ୍ତି । ଏହି ସମୟରେ, ସୂର୍ଯ୍ୟୋଦୟର ଛଅମିନିଟ ଆଗରୁ, ଛଅ ଘଣ୍ଟା ତେତିଶ ମିନିଟ ତେଇଶ ସେକେଣ୍ଡ ବେଳେ ଦେବୀ ଭୁବନେଶ୍ୱରୀ ବିଶ୍ୱବିଜୟୀ ପୁତ୍ରଙ୍କୁ ପ୍ରସବ କଲେ । ପୁଲକୋଚ୍ଛଳ ହର୍ଷକୋଳାହଳରେ ଦତ୍ତ-ଗୃହ ମୁଖରିତ ହୋଇ ଉଠିଲା । ସେଦିନ ବଙ୍ଗ ପ୍ରଦେଶର ପ୍ରତି ଘରେ ପୌଷ-ପାର୍ବଣର ଆନନ୍ଦୋତ୍ସବ । ଯେପରି କି ନବଜାତ ଶିଶୁକୁ ସାଦରେ ଅଭ୍ୟର୍ଥନା କରିବା ନିମିତ୍ତ ଲକ୍ଷ ଲକ୍ଷ ବାଳକବାଳିକାଙ୍କ

ହର୍ଷବହୁଳ କଳରବରେ, ଦୀନା ବଙ୍ଗଜନନୀଙ୍କର ପ୍ରତ୍ୟେକ ଗୃହପ୍ରାଙ୍ଗଣ ମୁଖରିତ ହୋଇ ଉଠିଛି ।

କ୍ରମେ ନାମକରଣ ଦିବସ ଉପସ୍ଥିତ ହେଲା । ବାଳକର ଚେହେରା କେତେକାଂଶରେ ନିଜର ସନ୍ନ୍ୟାସୀ ପିତାମହଙ୍କ ସଦୃଶ ଥିବାରୁ ପରିବାରର କେତେଜଣ ନବଜାତ ଶିଶୁର ନାମ 'ଦୁର୍ଗାଦାସ' ରଖିବାକୁ ଚାହୁଁଥିଲେ; କିନ୍ତୁ ଜନନୀ ନିଜ ସ୍ୱପ୍ନକୁ ମନେପକାଇ କହିଲେ, "ତାର ନାମ ବୀରେଶ୍ୱର ରଖାଯାଉ ।" ଆତ୍ମୀୟ ସ୍ୱଜନମାନେ ଏହି ନାମକୁ ସଂକ୍ଷିପ୍ତ କରି 'ବିଲେ' ବୋଲି ସମ୍ବୋଧନ କଲେ । ଶେଷରେ ଶୁଭ ଅନ୍ନପ୍ରାଶନ ବେଳେ ବାଳକର ନାମ ହେଲା ଶ୍ରୀ ନରେନ୍ଦ୍ରନାଥ । ପ୍ରତ୍ୟେକ ହିନ୍ଦୁ ସନ୍ତାନର ଦୁଇଟି ନାମ ଥାଏ; ଗୋଟିଏ ରାଶିନାମ—ଅପରଟି ସାଧାରଣରେ ପ୍ରଚଳିତ ନାମ । ସେହି ହେତୁ ଶିଶୁଟି ପର ଜୀବନରେ ଶ୍ରୀନରେନ୍ଦ୍ରନାଥ ନାମରେ ସାଧାରଣରେ ସୁପରିଚିତ ହୋଇଥିଲେ ।

## ଶୈଶବ-ଚାପଲ୍ୟ

ଅଶାନ୍ତ ନରେନ୍ଦ୍ରନାଥ ବୟସବୃଦ୍ଧି ସଙ୍ଗେ ସଙ୍ଗେ ଚପଳ ହୋଇ ଉଠିଲେ । ସ୍ୱେଚ୍ଛାଚାରୀ ବାଳକର ଅଶିଷ୍ଟ ଆଚରଣରେ ପ୍ରତ୍ୟେକ ଲୋକ ଉତ୍ୟକ୍ତ ହେଲେ । ଶାସନ-ବାକ୍ୟ ପ୍ରୟୋଗ, ଭୟ ପ୍ରଦର୍ଶନ ଇତ୍ୟାଦି କୌଣସି ଉପାୟରେ ତାଙ୍କ ମାତା ଉଦ୍ଧତ ସନ୍ତାନକୁ ସଂଯତ କରି ନ ପାରି ଗୋଟିଏ ଅଦ୍ଭୁତ ଉପାୟ ଆବିଷ୍କାର କଲେ । 'ଶିବ' 'ଶିବ' ଉଚ୍ଚାରଣ କରି ମୁଣ୍ଡ ଉପରେ କିଛି ପାଣି ଢାଳିଦେଲେ ବାଳକ ନରେନ୍ଦ୍ର ମନ୍ତ୍ରମୁଗ୍ଧ ସର୍ପ ପରି ଶାନ୍ତ ହୋଇ ଯାଉଥିଲେ । ମହାଦେବଙ୍କ ଉପରେ ପାଣି ଢାଳିଲେ ସେ ସନ୍ତୁଷ୍ଟ ହୁଅନ୍ତି—ଏହି ବିଶ୍ୱାସରେ ଜନନୀ ଏହି ଅଭିନବ କୌଶଳ ଆବିଷ୍କାର କରିଥିଲେ, ଏଥିରେ ସନ୍ଦେହ ନାହିଁ । ବାଳକଟି ଯେ ଶିବ ଅଂଶରେ ଜାତ ହୋଇଛି, ଏଥିରେ ତାଙ୍କର ଦୃଢ଼ ବିଶ୍ୱାସ ଥିଲେ ମଧ୍ୟ ବୁଦ୍ଧିମତୀ ଜନନୀ ଏ ରହସ୍ୟ କାହାରି ଆଗରେ ପ୍ରକାଶ କରୁ ନ ଥିଲେ । ଦିନେ ବାଳକର ଔଦ୍ଧତ୍ୟରେ ଅତ୍ୟନ୍ତ ବିଚଳିତ ହୋଇ ସେ କହି ପକାଇଲେ, "ମହାଦେବ ନିଜେ ନ ଆସି କେଉଁଠାରୁ ଗୋଟିଏ ଭୂତ ପଠାଇ ଦେଲେ !" ଇଚ୍ଛାନୁସାରେ କାର୍ଯ୍ୟ କରିବାବେଳେ ବାଧା ପାଇଲେ ବାଳକଟି ଏପରି କ୍ରନ୍ଦନ ଆରମ୍ଭ କରି ଦେଉଥିଲା ଯେ ପରିବାରର ସମସ୍ତେ ଅସ୍ଥିର ହୋଇ ପଡୁଥିଲେ; ସେତିକିବେଳେ ଜନନୀ ଯଦି ବିରକ୍ତ ହୋଇ କହିଦିଅନ୍ତି, "ଦେଖ୍ ବିଲେ, ତୁ ଏପରି ଦୁଷ୍ଟାମି କଲେ ମହାଦେବ ତୋତେ ଆଉ କୈଳାସ ଭିତରକୁ ପ୍ରବେଶ କରାଇ ଦେବେ ନାହିଁ," ତେବେ ଏହା ଶୁଣିବା ମାତ୍ରକେ ବାଳକ ସଭୟ ଦୃଷ୍ଟିରେ ଜନନୀଙ୍କ ମୁହଁକୁ ଚାହିଁ ସ୍ତବ୍ଧ ହେଉଥିଲା ।

ବିରକ୍ତିକର ବାଳକର ଅତ୍ୟାଚାରରେ ଅତିଷ୍ଠ ହୋଇ ବେଳେ ବେଳେ ତାଙ୍କ ଜ୍ୟେଷ୍ଠା ଭଗ୍ନୀଦ୍ୱୟ ତାଙ୍କୁ ପ୍ରହାର କରିବା ଲାଗି ଗୋଡ଼ାନ୍ତି । ଚତୁର ବାଳକ

ଦଉଡ଼ିଯାଇ ତତ୍କ୍ଷଣାତ୍ ନର୍ଦ୍ଦମାରେ ପଶି ସର୍ବାଙ୍ଗରେ କାଦୁଅ ବୋଳି ହୋଇ ଠିଆ ହୋଇଯାଏ । ଅପବିତ୍ର ହୋଇଯିବା ଆଶଙ୍କାରେ ସେମାନେ ବିଫଳ ମନୋରଥ ହୋଇ ଫେରି ଯିବାବେଳେ ଶୁଚି-ଅଶୁଚି ଜ୍ଞାନହୀନ ବାଳକ ବିଜୟ-ଗର୍ବରେ ତାଳିମାରି ହସି ହସି ପାଟି କରେ, ''କିଏ ମୋତେ ଧରୁଛ ଧର ତ !''

## ନରେନ୍ଦ୍ର ଓ କଚୁଆନ୍

ଗାଡ଼ିରେ ଚଢ଼ି ଭ୍ରମଣ କରିପାରିଲେ ବାଳକ ନରେନ୍ଦ୍ର ଅତ୍ୟନ୍ତ ଆନନ୍ଦିତ ହେଉଥିଲେ । ମାତୃକୋଳରେ ଉପବେଶନ କରି ଗାଡ଼ିର ଦୁଇପାଖରେ ବିଭିନ୍ନ ଦୃଶ୍ୟ ଦେଖି ସେ ମା'ଙ୍କୁ ପ୍ରଶ୍ନ ଉପରେ ପ୍ରଶ୍ନ ପଚାରି ବିବ୍ରତ କରି ପକାଉଥିଲେ । ସେ ଗାଡ଼ିକୁ ଏତେ ଭଲ ପାଉଥିଲେ ଯେ ଦୁଆର ମୁହଁରେ ବସି ରାସ୍ତାରେ ଯା'ଆସ କରୁଥିବା ପ୍ରତ୍ୟେକ ଗାଡ଼ିକୁ ଲକ୍ଷ୍ୟ କରୁଥିଲେ । ଦିନେ ତାଙ୍କ ପିତା ପଚାରିଲେ, ''ନରେନ୍, ତୁ ବଡ଼ ହେଲେ କଅଣ କରିବୁ ?'' ନରେନ୍ଦ୍ର ମୁଣ୍ଡ ହଲାଇ ଗମ୍ଭୀର ସ୍ୱରରେ କହିଲେ, ''ଘୋଡ଼ାର ସଇସ କିମ୍ବା କଚୁଆନ ହେବି ।'' କଚୁଆନର ସ୍ଫୀତ ବକ୍ଷରେ ବସିବାର ଭଙ୍ଗୀ, ବଲୁଆ ଘୋଡ଼ାକୁ ଦଉଡ଼ି ଟାଣି ସଂଯତ କରିବା ଭଳି ପରିଚାଳନା କୌଶଳ, ବିଶେଷତ୍ୱ-ଜ୍ଞାପକ ପୋଷାକ ପରିଚ୍ଛଦ, ଚପରାସୀର ଜରୀ ପଗଡ଼ି ଇତ୍ୟାଦି ଯେ ବାଳକ ମନରେ ବିଶେଷ ପ୍ରଭାବ ପକାଇବ ଏଥିରେ ବିଚିତ୍ରତା କ'ଣ ? କଚୁଆନ୍ ହେବା ଆଶାରେ ବାଳକଟି ପିତାଙ୍କ ବୃଦ୍ଧ ଗାଡ଼ିବାଲା ସହିତ ବନ୍ଧୁତା ସ୍ଥାପନ କରିଥିଲେ ଏବଂ ସୁଯୋଗ ପାଇଲେ ସେ ଘୋଡ଼ାଶାଳରେ ପହଞ୍ଚି ସଇସ ଓ କଚୁଆନମାନଙ୍କ କାର୍ଯ୍ୟପ୍ରଣାଳୀ ଦେଖୁଥିଲେ ।

## ରାମାୟଣ ଓ ମହାଭାରତ

ଜନନୀଙ୍କଠାରୁ ରାମାୟଣ ଓ ମହାଭାରତର ଗପ ଶୁଣିବା ଲାଗି ନରେନ୍ଦ୍ରନାଥଙ୍କୁ ଭାରି ଭଲ ଲାଗୁଥିଲା । ଭୁବନେଶ୍ୱରୀ ନୟନାନନ୍ଦ ପୁତ୍ରକୁ କୋଳରେ ବସାଇ ସୀତାରାମଙ୍କ କାହାଣୀ କହି ଅବସର ବିତାଉଥିଲେ । ଦତ୍ତ ପରିବାରରେ ପ୍ରାୟ ପ୍ରତ୍ୟହ ମଧ୍ୟାହ୍ନ ସମୟରେ ରାମାୟଣ ଓ ମହାଭାରତ ପାଠ ହେଉଥିଲା । ଜଣେ ବୃଦ୍ଧା ମହିଳା ପାଠ କରୁଥିଲେ—କେବେ ନିଜେ ଭୁବନେଶ୍ୱରୀ ପାଠ କରୁଥିଲେ—ଘରକାମ ସାରି ଅନ୍ୟ ସ୍ତ୍ରୀମାନେ ପାଠିକାଙ୍କୁ ଘେରି ବସୁଥିଲେ । ଏହି କ୍ଷୁଦ୍ର ମହିଳାସଭାରେ ଚପଳ ନରେନ୍ଦ୍ର ଶାନ୍ତ ଶିଷ୍ଟ ଭାବରେ ବସିବାର ଦେଖାଯାଉଥିଲା । ପୁରାଣ-ବର୍ଣ୍ଣିତ ଉପାଖ୍ୟାନଗୁଡ଼ିକ ଯେ ବାଳକର ମନରେ ବିଶେଷ ପ୍ରଭାବ ପକାଉଥିଲା, ଏଥିରେ ସନ୍ଦେହ ନାହିଁ । ସୁଦୂର ଅତୀତ ଯୁଗର ଧର୍ମବୀରଗଣଙ୍କ ପୂତ ଚରିତାବଳୀ ଶ୍ରବଣ କରି ତାଙ୍କ ଶିଶୁ ହୃଦୟରେ ଅଜ୍ଞାତରେ କିଭଳି ଭାବତରଙ୍ଗ ଉଠୁଥିଲା, ଯଦ୍ୱାରା ସେ ନିଜ ସ୍ୱଭାବ-ସୁଲଭ ଚଞ୍ଚଳତା ପରିତ୍ୟାଗ କରି ବହୁ ସମୟ ମୁଗ୍ଧ ହୋଇ ବସୁଥିଲେ ।

## ବିବାହ-ବିତୃଷ୍ଣା

ରାମାୟଣ ଶ୍ରବଣ କରି କରି ସରଳ ଶିଶୁ-ହୃଦୟ ଭକ୍ତିପୂର୍ଣ୍ଣ ହୋଇଯାଉଥିଲା । ଦିନେ ଜଣେ ଖେଳସାଥିକୁ ସଙ୍ଗରେ ନେଇ ନରେନ୍ଦ୍ରନାଥ ବଜାରରୁ ଶ୍ରୀଶ୍ରୀସୀତାରାମଙ୍କର ଗୋଟିଏ ଯୁଗଳମୂର୍ତ୍ତି କିଣିଆଣିଲେ । ଘରର ଛାତ ଉପରେ ଥିବା ଗୋଟିଏ ନିର୍ଜନ କକ୍ଷରେ ସେ ମୂର୍ତ୍ତିଟିକୁ ସ୍ଥାପନ କରି ମୂର୍ତ୍ତି ଆଗରେ ଧ୍ୟାନମଗ୍ନ ହୋଇ ବସି ରହୁଥିଲେ । ବାଳକର ଏହି ସୀତାରାମ ପ୍ରୀତି ଦେଖି ତାଙ୍କ ହିନ୍ଦୁସ୍ଥାନୀ କୋଚୁଆନ୍ ବନ୍ଧୁ ଅତ୍ୟନ୍ତ ଆନନ୍ଦିତ ହୋଇଥିଲା । ଶିଶୁ-ହୃଦୟର ଯେ କୌଣସି ସମସ୍ୟା, ଯେ କୌଣସି ପ୍ରଶ୍ନର ମୀମାଂସା କରିବାକୁ ସେ ବିରକ୍ତି ବା ଅବସାଦ ବୋଧ କରୁନଥିଲା । ଦିନେ କଥା ପ୍ରସଙ୍ଗରେ ବିବାହ ପ୍ରଶ୍ନ ଉଠିଲା । କୌଣସି ଅଜ୍ଞାତ କାରଣ ଯୋଗୁଁ କୋଚୁଆନ୍‌ଟି ବିବାହ ବିଷୟରେ ବିରକ୍ତ ଥିଲା, ତେଣୁ ସେ ବିବାହିତ ଜୀବନର ଅଶାନ୍ତି-ସଂକୁଳତାର ଏପରି ଗୋଟିଏ ଜୀବନ୍ତ ଚିତ୍ରର ବର୍ଣ୍ଣନା ଦେଲା ଯେ, ବାଳକ ନରେନ୍ଦ୍ରନାଥଙ୍କ ସୁକୁମାର ହୃଦୟରେ ତାହା ଗଭୀର ଭାବରେ ଅଙ୍କିତ ହୋଇଗଲା । ନାନା ଚିନ୍ତାରେ ଆକୁଳ ହୋଇ ନରେନ୍ଦ୍ର ଅଶ୍ରୁପୂର୍ଣ୍ଣ ଲୋଚନରେ ଜନନୀ ନିକଟକୁ ଫେରିଆସିଲେ । ପୁତ୍ରର ଆଖିରେ ଲୁହ ଦେଖି ଜନନୀ ବ୍ୟଗ୍ର ହୋଇ ଏହାର କାରଣ ପଚାରିଲେ । ନରେନ୍ଦ୍ର କ୍ରନ୍ଦନ-କମ୍ପିତ କଣ୍ଠରେ କୋଚୁଆନ୍‌ଠାରୁ ଯାହା ଶୁଣିଥିଲେ ତାହାର ବିସ୍ତାରିତ ବର୍ଣ୍ଣନା ଦେଇ କହିଲେ, "ମା, ମୁଁ ସୀତା-ରାମଙ୍କୁ କିପରି ପୂଜା କରିବି — ସୀତା ତ ରାମଙ୍କର ସ୍ତ୍ରୀ ଥିଲେ ?"

ସ୍ନେହବିହ୍ୱଳା ଜନନୀ ପ୍ରିୟତମ ପୁତ୍ରକୁ ଛାତି ଉପରକୁ ନେଇ ମୁଖଚୁମ୍ବନ କରି କହିଲେ, "ଯଦି ସୀତାରାମଙ୍କ ପୂଜା ନ କରିବୁ, ତେବେ କାଲିଠାରୁ ଶିବପୂଜା କର, ବାପା !"

ଜନନୀଙ୍କୁ କାର୍ଯ୍ୟବ୍ୟସ୍ତ ଦେଖି ବାଳକ ଧୀରେ ଧୀରେ ଘରୁ ବାହାରି ଗଲେ । ପ୍ରିୟତମ ଶ୍ରୀଶ୍ରୀସୀତାରାମଙ୍କ ମୂର୍ତ୍ତିକୁ ନେଇ ଅନ୍ୟମାନଙ୍କ ଅଜ୍ଞାତରେ ସେ ଛାତ ଉପରକୁ ଗଲେ । ସେତେବେଳେ ସନ୍ଧ୍ୟାର ଅନ୍ଧକାର କ୍ରମେ ନିବିଡ଼ ହୋଇ ଆସୁଥାଏ; ଉପରେ ଭ୍ରାମ୍ୟମାଣ ଅସଂଖ୍ୟ ଉଜ୍ଜ୍ୱଳ ଜ୍ୟୋତିଷ୍କମଣ୍ଡଳୀରେ ଶୋଭା ପାଉଥିବା ଧୂସର ଆକାଶ ଏବଂ ତଳେ ଆଦର୍ଶ ଦାମ୍ପତ୍ୟ ପ୍ରେମର ସର୍ବଶ୍ରେଷ୍ଠ ଆଦର୍ଶକୁ ଉଭୟ ହସ୍ତରେ ଧରି ସଂଶୟସଂକୁଳ ଚିତ୍ତରେ ଭାବୀ ସନ୍ନ୍ୟାସୀ ବିବେକାନନ୍ଦ ! ଗୋଟିଏ ଆଡ଼େ ଗଭୀର ସୀତାରାମ-ଭକ୍ତି, ଅନ୍ୟଆଡ଼େ ତୀବ୍ର ବିବାହ-ବିତୃଷ୍ଣା — ବାଳକର କ୍ଷୁଦ୍ର ହୃଦୟ ଆଲୋଡ଼ିତ ହେଲା । ଆଉ ନୁହେଁ, ବିବାହିତ ଜୀବନ ଯେତେ ଉନ୍ନତ — ଯେତେ ପବିତ୍ର ହେଉନା କାହିଁକି, ଏହା ତାଙ୍କର ଆଦର୍ଶ ନୁହେଁ । ନରେନ୍ଦ୍ର ମୂର୍ତ୍ତିଟିକୁ ଉପରୁ ଫୋପାଡ଼ି ଦେବାରୁ ତାହା ରାସ୍ତା

ଉପରେ ପଡ଼ି ଶତଧା ଚୂର୍ଣ୍ଣ ହୋଇଗଲା । ବିଜୟୀ ବୀରପରି ,ବୀରେଶ୍ୱର ଗର୍ବିତ ପଦକ୍ଷେପରେ କୋଠା ଉପରୁ ଚାଲି ଆସିଲେ ।

## ଚିରାଚରିତ ଆଚାର ଲଂଘନ ଓ ଅସ୍ପୃଶ୍ୟତା ପ୍ରତି ବିତୃଷ୍ଣା

ଶୈଶବରୁ ନରେନ୍ଦ୍ର ନାଥ ହିନ୍ଦୁ ଗୃହର ଚିରାଚରିତ ଦେଶାଚାର ଓ ଲୋକାଚାର ସମ୍ମତ କ୍ଷୁଦ୍ର କ୍ଷୁଦ୍ର ଆଚାର ନିୟମଗୁଡ଼ିକୁ ମାନି ଚଳୁନଥିଲେ । ସେଥିପାଇଁ ଜନନୀ ଗାଳିମନ୍ଦ କଲେ ସେ ତତ୍କ୍ଷଣାତ୍ ଏହି ଆଚାର ନିୟମଗୁଡ଼ିକର କାରଣ ପଚାରୁଥିଲେ । ''ଭାତ ଥାଳି ଛୁଇଁବାପରେ ଦେହରେ ହାତ ମାଇଲେ କ'ଣ ହୁଏ ?'' ''ବାଁ ହାତରେ ଗିଲାସ ଧରି ପାଣି ପିଇଲେ ହାତ ଧୋଇବି କାହିଁକି ? ହାତରେ ତ ଅଇଁଠା ଲାଗିଲା ନାହିଁ ?''—ଇତ୍ୟାଦି ପ୍ରଶ୍ନଗୁଡ଼ିକର ଯୁକ୍ତିପୂର୍ଣ୍ଣ ଉତ୍ତର ଦେବାପାଇଁ ଜନନୀ ବିବ୍ରତ ହୋଇ ଯାଉଥିଲେ । ସନ୍ତୋଷଜନକ ଉତ୍ତର ନ ପାଇଲେ ନରେନ୍ଦ୍ରର ଅନାଚାରର ମାତ୍ରା ଦ୍ୱିଗୁଣିତ ହେଉଥିଲା ।

ବିଶ୍ୱନାଥ ବାବୁଙ୍କର ଜଣେ ପେଶୱାରୀ ମୁସଲମାନ ମହକିଲ ଥିଲେ । ଏହି ଭଦ୍ରଲୋକ ନରେନ୍ଦ୍ରଙ୍କୁ ଖୁବ୍ ସ୍ନେହ କରୁଥିଲେ । ସେ ଆସିଛନ୍ତି ବୋଲି ଜାଣିଲେ ନରେନ୍ଦ୍ର ତାଙ୍କ ନିକଟରେ ପହଞ୍ଚି ଓ ତାଙ୍କ କୋଳରେ ବସି ହାତୀ ଓ ଓଟ ଉପରେ ବସୁଥିବା ପଞ୍ଜାବ ଓ ଆଫଗାନୀସ୍ଥାନ ଲୋକଙ୍କ ଅପୂର୍ବ ଭ୍ରମଣ କାହାଣୀ ମୁଗ୍ଧ ହୃଦୟରେ ଶ୍ରବଣ କରୁଥିଲେ । ଥରେ ଥରେ ବାଳକ ନରେନ୍ଦ୍ର ତାଙ୍କ ସହିତ ଉକ୍ତ ପ୍ରଦେଶମାନଙ୍କୁ ଭ୍ରମଣ ଉଦ୍ଦେଶ୍ୟରେ ଯିବେ ବୋଲି ତାଙ୍କୁ ଅନୁରୋଧ କରୁଥିଲେ । ମୁସଲମାନ ଭଦ୍ରଲୋକଟି ହସି ହସି କହୁଥିଲେ, ''ତୁମେ ଆଉ ଦୁଇ ଆଙ୍ଗୁଳି ବଢ଼ିଗଲେ ତୁମକୁ ଥରେ ନେଇଯିବି ।'' ଅତିଶୟ ବ୍ୟଗ୍ରତା ହେତୁ ବାଳକଟି ହୁଏତ ତତ୍ ପର ଦିନ କହୁଥିଲେ, ''ଆଜି ରାତିରେ ମୁଁ ଦୁଇ ଅଙ୍ଗୁଳି ବଢ଼ିଯାଇଛି, ତେଣୁ ମୋତେ ନେଇ ଚାଲନ୍ତୁ ।'' ଫଳରେ ନରେନ୍ଦ୍ର ତାଙ୍କର ଏତେ ଅନୁରକ୍ତ ହୋଇଗଲେ ଯେ ତାଙ୍କ ହାତରୁ ସନ୍ଦେଶ, ଫଳ ଇତ୍ୟାଦି ଖାଦ୍ୟଦ୍ରବ୍ୟ ଗ୍ରହଣ କରିବାକୁ ଇତସ୍ତତଃ ହେଉନଥିଲେ । ଏଥିପାଇଁ କୁଟୁମ୍ବ ଲୋକେ ତୁମୂଳ ଆନ୍ଦୋଳନ ଆରମ୍ଭ କରିଦେଲେ । ବିଶ୍ୱନାଥ ବାବୁ ମତାନ୍ଧ ହିନ୍ଦୁ ନ ଥିଲେ, ସବୁ ଜାତିର ଲୋକଙ୍କ ପ୍ରତି ତାଙ୍କର ସମାନ ପ୍ରୀତି ଓ ଶ୍ରଦ୍ଧା ଥିଲା, ସୁତରାଂ ପୁତ୍ରର ଏହି 'ଜାତିନାଶକ କଦାଚାର' ଯୋଗୁଁ ସେ ତାକୁ ଦଣ୍ଡ ଦେବା ପରିବର୍ତ୍ତେ ତାହାକୁ ହସି ଉଡ଼ାଇ ଦେଉଥିଲେ ।

ବିଭିନ୍ନ ଜାତିର ମହକିଲମାନେ ମକଦ୍ଦମା କାର୍ଯ୍ୟଯୋଗୁଁ ବାପାଙ୍କ ଘରକୁ ଆସୁଥିଲେ; ତେଣୁ ସେକାଳର ରୀତି ଅନୁଯାୟୀ ବୈଠକଖାନାର ଗୋଟିଏ କୋଣରେ କେତେଗୋଟି ରୂପାଖଞ୍ଜା ହୁକ୍କା ତିଆରି ହୋଇ ରହିଥାଏ । ମୁସଲମାନ ଭଦ୍ରଲୋକଙ୍କଠାରୁ ସନ୍ଦେଶ ଖାଇ ନରେନ୍ଦ୍ର କୁଟୁମ୍ବ ଲୋକଙ୍କଠାରୁ ଖୁବ୍ ଗାଳି ଖାଇଥିଲେ । ସେହି ଦିନଠାରୁ ସେ ଜାତିଭେଦ ସମସ୍ୟା ବିଷୟରେ

ବିଶେଷ ଚିନ୍ତିତ ହେବାକୁ ଲାଗିଲେ । ଜଣେ ମଣିଷ ଆଉ ଜଣେ ମଣିଷ ହାତରୁ ଖାଇଲେ ଦୋଷ କ'ଣ ? ଜଣେ ଲୋକ ଆଉ ଜଣେ ଅନ୍ୟ ଜାତିର ଲୋକ ହାତରୁ ଖାଇଲେ କ'ଣ ହେବ ? ତା' ମୁଣ୍ଡ ଉପରେ କ'ଣ ଘରର ଛାତ ଖସି ପଡ଼ିବ ? ସେ କ'ଣ ମରିଯିବ ? ଇତ୍ୟାଦି ବିଷୟ ଭାବି ଭାବି ନରେନ୍ଦ୍ର ବୈଠକ ଖାନାକୁ ଆସିଲେ । ସେଠାରେ ଅନ୍ୟ କେହି ଉପସ୍ଥିତ ନ ଥିବାରୁ ସେ ସାହସ ସହକାରେ ଗୋଟି ଗୋଟି କରି ସବୁଗୁଡ଼ିକ ହୁକ୍କା ପାଟିରେ ପୁରାଇଲେ । କାହିଁ, ତାଙ୍କର ତ କୌଣସି ପରିବର୍ତ୍ତନ ହେଲା ନାହିଁ ? ସେ ଆଗେ ଯେପରି ଥିଲେ ଠିକ୍ ସେହିପରି ଅଛନ୍ତି ? ହଠାତ୍ ବିଶ୍ୱନାଥ ବାବୁ ପଶିଆସି ପୁତ୍ରର କାର୍ଯ୍ୟକଳାପ ଦେଖି ପଚାରିଲେ, "କିରେ ବିଲେ, କ'ଣ କରୁଛୁ ?" ନରେନ୍ଦ୍ର ତତ୍କ୍ଷଣାତ୍ ଉତ୍ତରରେ କହିଲେ, "ମୁଁ ଜାତିଭେଦ ନ ମାନିଲେ କ'ଣ ହେବ, ପରୀକ୍ଷା କରୁଥିଲି" ପିତା ଏହା ଶୁଣି ହସି ହସି କରୁଣାର୍ଦ୍ରନୟନରେ ପୁତ୍ରକୁ ଚାହିଁ ଚିନ୍ତିତ ମନରେ ନିଜ ପାଠାଗାରକୁ ଚାଲିଗଲେ ।

## ଶିବମୂର୍ତ୍ତି ସ୍ଥାପନ ଓ ତନ୍ମୟ ଧ୍ୟାନ

ଶ୍ରୀସୀତାରାମ ମୂର୍ତ୍ତିକୁ ଭାଙ୍ଗିଦେବା ପରଦିନ ନରେନ୍ଦ୍ର ସେହି ସ୍ଥାନରେ ଗୋଟିଏ ଶିବମୂର୍ତ୍ତି ସ୍ଥାପନ କଲେ । ମାତାଙ୍କୁ ଅନୁକରଣ କରି ସେ ପ୍ରତ୍ୟହ ଶିବପୂଜା କରୁଥିଲେ । କେତେବେଳେ ପଦ୍ମାସନ କରି ଧ୍ୟାନରେ ବସୁଥିଲେ, କେତେବେଳେ ଅବା ଖେଳସାଥୀମାନଙ୍କୁ ଡାକି ସମସ୍ତେ ମିଶି ଶିବମୂର୍ତ୍ତିର ଚାରିପାଖରେ ବସି ଧ୍ୟାନ କରୁଥିଲେ । ଏହି ଖେଳଟିକୁ ସେ ଖୁବ୍ ଭଲ ପାଉଥିଲେ । ଏହିପରି ଧ୍ୟାନରେ ବସିବାବେଳେ ବାଳକ ନରେନ୍ଦ୍ର କ'ଣ ଭାବୁଥିଲେ, ତାହା ସେ ଜାଣନ୍ତି । ପରବର୍ତ୍ତୀ ଜୀବନରେ ଥରେ ସେ କଥାଛଳରେ କହିଥିଲେ, ଏହି ସମୟରେ ଥରେ ଧ୍ୟାନ କରୁ କରୁ ତାଙ୍କର ନିଜ ମାଆଙ୍କ କଥା ମନେ ପଡ଼ିଲା । ସେ ଦୁଃଖିତ ହୋଇ ଭାବିବାକୁ ଲାଗିଲେ, ସତରେ କ'ଣ ମୁଁ ଦୁଷ୍ଟ ବୋଲି ମହାଦେବ ମୋତେ ନିଜ ପାଖରୁ ଦୂର କରିଦେଲେ ? ଚିନ୍ତାମଗ୍ନ ବାଳକ ବିଷଣ୍ଣ ଚିତ୍ତରେ ମା'ଙ୍କ ନିକଟକୁ ଯାଇ କହିଲେ, "ମା, ମୁଁ ଯଦି ସାଧୁ ହୁଏ, ଶିବ କ'ଣ ମୋତେ ତାଙ୍କ ପାଖକୁ ଫେରାଇ ନେବେ ନାହିଁ ?" ଜନନୀ ସାନ୍ତ୍ୱନା ଦେଇ କହିଲେ, "ହଁ, ନିଶ୍ଚୟ ନେବେ ।" ଅନ୍ୟମନସ୍କ ଭାବରେ କଥାଟା କହିଦେଇ ଜନନୀଙ୍କ ହୃଦୟ ଗୋଟିଏ ଅନିର୍ଦ୍ଦିଷ୍ଟ ଆଶଙ୍କାରେ କମ୍ପି ଉଠିଲା । ପିତାମହଙ୍କ ପଦାଙ୍କ ଅନୁସରଣ କରି ନରେନ୍ ଯଦି ସଂସାର ତ୍ୟାଗ କରେ ! ସର୍ବଦା ଭାବଗୋପନ କରିବାରେ ଅଭ୍ୟସ୍ତା ଦୃଢ଼ହୃଦୟା ଭୁବନେଶ୍ୱରୀ ଶିବଙ୍କୁ ସ୍ମରଣ କରି ନିଜ ହୃଦୟରୁ କ୍ଷଣିକ ସ୍ନେହର ଦୁର୍ବଳତା ଦୂର କରିଦେଲେ । ଭାବିଲେ, ଭଗବାନଙ୍କର ଯାହା ଇଚ୍ଛା, ତାହା ହେବ । ମୁଁ ବାଧା ଦେବାକୁ କିଏ ?

ଦିନେ ସନ୍ଧ୍ୟାର କିଛି ଆଗରୁ ନରେନ୍ଦ୍ର ସାଙ୍ଗମାନଙ୍କ ସହିତ ନିଜ ଖେଳଘରକୁ ଗଲେ । ତାଙ୍କୁ ଦେଖି ଅନ୍ୟ ବାଳକମାନେ ଦେହରେ ପାଉଁଶ ବୋଳି ହୋଇ

ଧ୍ୟାନରେ ବସିଲେ । ଏହି ସମୟରେ ଜଣେ ବାଳକ ଆଖି ଖୋଲି ଦେଖିବା ବେଳକୁ ସମ୍ମୁଖରେ ଗୋଟିଏ ବଡ଼ ସାପ ! ବାଳକଟି ଭୟରେ 'ସାପ' 'ସାପ' ବୋଲି ଚିତ୍କାର କରି ଉଠିଲା । ବାଳକମାନେ ବ୍ୟସ୍ତ ହୋଇ ଘର ଭିତରୁ ପଳାଇଗଲେ । ସେତେବେଳେକୁ ନରେନ୍ଦ୍ର ବାହ୍ୟଜ୍ଞାନଶୂନ୍ୟ—ଚିତ୍କାର, କୋଳାହଳ, ଆହ୍ୱାନ କୌଣସିଟି ତାଙ୍କ କାନରେ ପଶିଲା ନାହିଁ । ବାଳକମାନେ ଦ୍ରୁତ ତଳକୁ ଯାଇ ସମସ୍ତଙ୍କୁ ଏ ସମ୍ବାଦ ଜଣାଇ ଦେଲେ । ନରେନ୍ଦ୍ରର ପିତାମାତା ଓ ପରିବାରର ଅନ୍ୟ ଲୋକ ସମସ୍ତେ ଛାତ ଉପରକୁ ଦଉଡ଼ିଗଲେ । ସେତେବେଳେକୁ ଆକାଶରେ ଚନ୍ଦ୍ର ଉଦୟ ହେଲାଣି ।

ନରେନ୍ଦ୍ରନାଥଙ୍କ କୈଶୋର-ଲାବଣ୍ୟ-ସ୍ନିଗ୍ଧ ତରୁଣସୁନ୍ଦର ମୁଖମଣ୍ଡଳରେ ଅଳ୍ପ ଚନ୍ଦ୍ରକିରଣ ପଡ଼ି ସ୍ୱର୍ଗୀୟ ବିଭା ବିକୀର୍ଣ୍ଣ ହେଉଥାଏ—ଦେହ ସ୍ପନ୍ଦନହୀନ, କୁମାର-ଯୋଗୀ ପଦ୍ମାସନରେ ଧ୍ୟାନମଗ୍ନ—ସମ୍ମୁଖରେ ବିଷଧର ସର୍ପ ଭୀଷଣ ଫଣା ଟେକି ମନ୍ତ୍ରମୁଗ୍ଧପରି ନିଶ୍ଚଳ । ଏହି ଭୀଷଣ ମଧୁର ଦୃଶ୍ୟ ଦେଖି ଉପସ୍ଥିତ ଦର୍ଶକବୃନ୍ଦ ଆଶ୍ଚର୍ଯ୍ୟାନ୍ୱିତ ଭାବରେ ଶଙ୍କାସ୍ତମ୍ଭିତ ହୃଦୟରେ କିଂକର୍ତ୍ତବ୍ୟ-ବିମୂଢ଼ବତ୍ ଠିଆ ହୋଇ ରହିଲେ । କିଛିକ୍ଷଣ ପରେ ସର୍ପଟି ଫଣା ଲୁଚାଇ ଚାଲିଗଲା, ଅନ୍ୱେଷଣ କଲେ ମଧ୍ୟ ସର୍ପଟି ଆଉ ଦେଖାଗଲା ନାହିଁ । ନରେନ୍ଦ୍ରଙ୍କ ଧ୍ୟାନ ଭାଙ୍ଗିବାରୁ ସେ ଆଖି ଖୋଲି ପରିବାରବର୍ଗଙ୍କୁ ସେହି ପରିସ୍ଥିତିରେ ଦେଖି ବିସ୍ମିତ ହେଲେ । ସାପ କଥା ଶୁଣି ବାଳକ ଆଶ୍ଚର୍ଯ୍ୟାନ୍ୱିତ ଭାବରେ କହିଲେ, ''ମୁଁ ସାପ କଥା କିଛି ଜାଣି ନାହିଁ, ମୁଁ ଏକପ୍ରକାର ଅପୂର୍ବ ଆନନ୍ଦ ଉପଭୋଗ କରୁଥିଲି ।''

ଏ ଘଟଣା ନିଶ୍ଚୟ ଅଦ୍ଭୁତ । ମହାପୁରୁଷମାନଙ୍କ ଜୀବନରେ ଏପରି ଅନେକ ଅଦ୍ଭୁତ ଘଟଣା ଘଟେ । ମନ୍ତବ୍ୟ ଅନାବଶ୍ୟକ । ସଦା-ଚଞ୍ଚଳ, କ୍ରୀଡ଼ାପ୍ରିୟ ନରେନ୍ଦ୍ରନାଥ ଧ୍ୟାନରେ ବସି ଆଖି ବୁଜିବା ମାତ୍ରକେ ବାହ୍ୟ ଜଗତକୁ ଭୁଲି ଯାଉଥିଲେ—ଡାକ ତ ଦୂରର କଥା, ତାଙ୍କ ଦେହରେ ହାତ ମାରିଲେ ବି ସେ ଜାଣି ପାରୁ ନ ଥିଲେ । ସଂଯତମନା ଯୋଗୀମାନଙ୍କ ବହୁ ବର୍ଷ ସାଧନାର ଫଳ ବାଳକଟି କିପରି ଲାଭ କଲେ ? ଏଭଳି ପ୍ରଶ୍ନ ମନରେ ଉଦୟ ହେବା ସ୍ୱାଭାବିକ ।

## ଜ୍ୟୋତିଃ ଦର୍ଶନ

ସ୍ମରଣାତୀତ ଶୈଶବକାଳରୁ ନରେନ୍ଦ୍ର ନାଥ ଚକ୍ଷୁ ଦୁଇଟି ବନ୍ଦ କରିବା ମାତ୍ରକେ ଦୁଇ ଭ୍ରୂଲତା ମଧ୍ୟରେ ଗୋଲାକାର ଦିବ୍ୟ ଜ୍ୟୋତିଃପିଣ୍ଡ ଦର୍ଶନ କରୁଥିଲେ । ଶୋଇବାବେଳେ ଆଖି ବୁଜିବା ସଙ୍ଗେ ସଙ୍ଗେ ଏହି ଜ୍ୟୋତିଃପିଣ୍ଡ ତାଙ୍କ ଭ୍ରୂଲତା ମଧ୍ୟରେ ଉଦ୍ଭାସିତ ହେଉଥିଲା ଏବଂ କ୍ରମେ ବିସ୍ତୃତ ହୋଇ ତାଙ୍କର ସମଗ୍ର ଶରୀରକୁ ଆଚ୍ଛନ୍ନ କରୁଥିଲା । ଚିନ୍ମୟ ଜ୍ୟୋତିସାଗରରେ ତାଙ୍କ ନିଜତ୍ୱ ବୁଡ଼ି ଯାଉଥିଲା—ବାଳକ ନିଦ୍ରା ଯାଉଥିଲେ । ଏଭଳି ଘଟଣା ପ୍ରତ୍ୟହ ଦେଖା ଯାଉଥିଲା—ତେଣୁ ସେ ଏହାକୁ ଅସାଧାରଣ କଥା ବୋଲି ମନେକରୁ ନ ଥିଲେ ।

ଦଶବର୍ଷ ବୟସ ହେବା ପର୍ଯ୍ୟନ୍ତ ତାଙ୍କର ଧାରଣା ଥିଲା ଯେ, ପ୍ରତ୍ୟେକ ବ୍ୟକ୍ତିର ନିଦ୍ରା ଆସିବା ପୂର୍ବରୁ ଏଭଳି ହୁଏ । ଏହି ଅଦ୍ଭୁତ ଜ୍ୟୋତିଃପିଣ୍ଡ ଯୋଗୁଁ ତାଙ୍କ ମନରେ ସ୍ୱାଭାବିକ ଏକାଗ୍ରତା ଆସୁଥିଲା । ତେଣୁ ମନ ସହିତ ବାସନାର ଦ୍ୱନ୍ଦ ନ ଥିବା ଯୋଗୁଁ ତାଙ୍କୁ କୌଣସି ଦିନ ଧ୍ୟାନସ୍ଥ ହେବା ପାଇଁ ପ୍ରବଳ ଚେଷ୍ଟା କରିବାକୁ ପଡୁ ନ ଥିଲା ।

## ନରେନ୍ଦ୍ରଙ୍କ ସନ୍ନ୍ୟାସୀ ପ୍ରୀତି

ବାଲ୍ୟକାଳରୁ ନରେନ୍ଦ୍ର ସାଧୁ-ସନ୍ନ୍ୟାସୀଙ୍କୁ ଦେଖିଲେ ଆନନ୍ଦିତ ହେଉଥିଲେ । ସେମାନଙ୍କ ପ୍ରାର୍ଥନା ପୂରଣ କରିବାରେ ନରେନ୍ଦ୍ର ସର୍ବଦା ମୁକ୍ତହସ୍ତ ଥିଲେ । ବେଳେବେଳେ ଲଙ୍ଗଳା ହୋଇ ନିଜ ପିନ୍ଧିବା ଲୁଗା ମଧ୍ୟ ଦାନକରି ଦେଉଥିଲେ । ଗୃହର ଦୈନନ୍ଦିନ ବ୍ୟବହାର୍ଯ୍ୟ ଦ୍ରବ୍ୟ ଦାନ କରିବା ଯୋଗୁଁ ବେଳେ ବେଳେ ଗାଳି ଖାଇଲେ ବି ସେ ତାହା ମନେରଖି ପାରୁ ନ ଥିଲେ । କେତେବେଳେ ନିଜ ପିନ୍ଧା ଲୁଗାକୁ ଚିରି କୌପୀନ ପିନ୍ଧି ସୁଠାମ ନରେନ୍ଦ୍ର 'ଶିବ' 'ଶିବ' କହି ତାଳିମାରି ଅଗଣାରେ ନୃତ୍ୟ କରୁଥିଲେ—ସେ ଅଦ୍ଭୁତ ନୃତ୍ୟ, ହାସ୍ୟପ୍ରଫୁଲ୍ଲ କମନୀୟ ମୁଖମଣ୍ଡଳ, ବିଭୂତି-ଭୂଷିତ ବାଳସନ୍ନ୍ୟାସୀଙ୍କୁ ଅତୃପ୍ତ ଦୃଷ୍ଟିରେ ଦେଖୁ ଦେଖୁ ସ୍ନେହମୁଗ୍ଧା ଜନନୀ ବାଳକକୁ ଶାସନ କରିବା କଥା ଭୁଲି ଯାଉଥିଲେ ।

ଶୈଶବରୁ ରାମାୟଣ ଓ ମହାଭାରତ କ୍ରମାଗତ ଶ୍ରବଣ କରି କରି ଅଧିକାଂଶ ତାଙ୍କର ମୁଖସ୍ଥ ହୋଇଯାଇଥିଲା । ସୁଲଳିତ କଣ୍ଠରେ ଏହାକୁ ଆବୃତ୍ତି କରି ବାଳକ ନରେନ୍ଦ୍ର ଶ୍ରୋତୃବର୍ଗଙ୍କୁ ମୁଗ୍ଧ କରି ଦେଉଥିଲେ । କେତେବେଳେ ଅବା ଭିକ୍ଷୁକ ଗାୟକଗଣଙ୍କଠାରୁ ଶିଖିଥିବା ରାଧାକୃଷ୍ଣ ବା ସୀତାରାମ ଲୀଳା ବିଷୟକ ସଙ୍ଗୀତ ବା ସଙ୍ଗୀତାଂଶ ମଧୁର କଣ୍ଠରେ ଗାଇ ପରିଜନବର୍ଗ ଏବଂ ପିତୃବନ୍ଧୁମାନଙ୍କ ଚିତ୍ତବିନୋଦନ କରୁଥିଲେ । ସଦାପ୍ରଫୁଲ୍ଲ ନରେନ୍ଦ୍ର ସମସ୍ତଙ୍କର ପ୍ରିୟପାତ୍ର ଥିଲେ । ଆଦର-ସୁହାଗରେ ବର୍ଦ୍ଧିତ ବାଳକ ସ୍ୱେଚ୍ଛାଚାରୀ ଓ ସ୍ୱାଧୀନତାପ୍ରିୟ ହେଲେ ମଧ୍ୟ ପିତା-ମାତାଙ୍କ ବିବିଧ ସଦ୍‌ଗୁଣାବଳୀ ତାଙ୍କ କୈଶୋର-ଚରିତ୍ରରେ ସ୍ଥାନ ଲାଭ କରିଥିଲା । ପଦେ ପଦେ ନୀତିଶାସ୍ତ୍ରର ଦୃଢ଼ ଅନୁଶାସନରେ ପ୍ରତିହତ ନ ହୋଇ ମଧ୍ୟ ତାଙ୍କ ଚରିତ୍ର ଲୋକ-ଲୋଚନ ଅନ୍ତରାଳରେ ନିଜ ମାଧୁର୍ଯ୍ୟରେ ସ୍ୱାଭାବିକ ଭାବରେ ପ୍ରସ୍ଫୁଟିତ ହୋଇଥିଲା ।

## ବୀରଭକ୍ତ ହନୁମାନ ଓ ନରେନ୍ଦ୍ରନାଥ

ଶ୍ରୀରାମ-କାର୍ଯ୍ୟରେ ଉତ୍ସର୍ଗୀକୃତ-ଜୀବନ ବୀରଭକ୍ତ ହନୁମାନଙ୍କ ଅଲୌକିକ କାର୍ଯ୍ୟାବଳୀ ଶ୍ରବଣ କରିବାକୁ ବାଳକ ନରେନ୍ଦ୍ରନାଥ ବଡ଼ ଭଲ ପାଉଥିଲେ । ଜନନୀଙ୍କଠାରୁ ସେ ଶୁଣିଲେ ଯେ ହନୁମାନ ଅମର, ଏବେ ମଧ୍ୟ ଜୀବିତ ଅଛନ୍ତି । ସେହିଦିନଠାରୁ ତାଙ୍କୁ ଦର୍ଶନ କରିବା ଲାଗି ନରେନ୍ଦ୍ରଙ୍କ ପ୍ରାଣ ବ୍ୟାକୁଳ ହୋଇ ଉଠିଲା । ଦିନେ ନରେନ୍ଦ୍ର କଥକତା ବା ପୁରାଣକଥା ଶୁଣିବାକୁ

ଯାଇଥିଲେ । ପୁରାଣପଣ୍ଡା ନାନାପ୍ରକାର ଅଳଙ୍କାର ମଣ୍ଡିତକରି ହାସ୍ୟରସ ସହ ହନୁମାନଙ୍କ ଚରିତ୍ର ବର୍ଣ୍ଣନା କରୁଥିଲେ; ଏହି ସମୟରେ ନରେନ୍ଦ୍ର ଧୀରେ ଧୀରେ ତାଙ୍କ ନିକଟକୁ ଯାଇ ପଚାରିଲେ, "ମହାଶୟ, ଆପଣ କହିଲେ, ଯେ ହନୁମାନ କଦଳୀ ଖାଇବାକୁ ଭଲ ପାଆନ୍ତି ଓ କଦଳୀ ବଗିଚାରେ ରହନ୍ତି; ମୁଁ ସେଠାକୁ ଗଲେ ତାଙ୍କୁ ଦେଖି ପାରିବି କି ?" କି ଗଭୀର ବିଶ୍ୱାସ !—ଯେପରି ପରିପୂର୍ଣ୍ଣ ଆନ୍ତରିକତାର ସହିତ ବାଳକ ଏହି ପ୍ରଶ୍ନ ପଚାରିଲେ, ତାହା ବୁଝିବା ଲାଗି ପୁରାଣପଣ୍ଡାଙ୍କର ଶକ୍ତି ବା ଅବସର ନ ଥିଲା । ସେ ରହସ୍ୟ କରି କହିଲେ, "ହଁ, ପୁଅ ! ତୁମେ କଦଳୀ ବଗିଚାରେ ଖୋଜିଲେ ତାଙ୍କୁ ପାଇ ପାରିବ ।"

ନରେନ୍ଦ୍ର ଆଉ ଘରକୁ ଫେରିଲେ ନାହିଁ । ସେ ସତରେ ଘରପାଖରେ ଥିବା ଗୋଟିଏ କଦଳୀ ବଗିଚାକୁ ଯାଇ ହନୁମାନଙ୍କୁ ଅପେକ୍ଷା କରି ଗଛ ତଳେ ବସି ରହିଲେ । ଅନେକ ସମୟ ଗଲା, ତଥାପି ହନୁମାନ ଆସିଲେ ନାହିଁ; ଅଗତ୍ୟା ସେ ଭଗ୍ନହୃଦୟରେ ନିଶାରାତିରେ ଘରକୁ ଫେରି ଆସିଲେ । ସେ ଅଭିମାନ ସହିତ ସବୁକଥା ମାଆଙ୍କ ଆଗରେ କହି କାରଣ ପଚାରିଲେ । ବାଳକର ବିଶ୍ୱାସ ମୂଳରେ ଆଘାତ କରିବାକୁ ବୁଦ୍ଧିମତୀ ଜନନୀ ସଙ୍ଗତ ମନେକଲେ ନାହିଁ; ତାଙ୍କର ବିଷାଦକ୍ଲିଷ୍ଟ ମୁହଁରେ ଚୁମ୍ବନ ଦେଇ କହିଲେ, "ତୁ ଦୁଃଖ କରନା, ଆଜି ହୁଏତ ହନୁମାନ ରାମଙ୍କ କାମରେ କୁଆଡ଼େ ଯାଇଥିବେ, ଆଉ ଦିନେ ଦେଖା ହେବ ।" ଆଶାମୁଗ୍ଧ ବାଳକ ଶାନ୍ତ ହେଲେ; ତାଙ୍କ ମୁହଁରେ ପୁଣି ହସ ଫୁଟିଲା । ଏହା ପରେ ବାଳକ ଆଉ କେବେ ଏପରି ଭାବରେ ହନୁମାନଙ୍କ ଦର୍ଶନ ଲାଗି ଚେଷ୍ଟା କରିଥିଲେ କି ନାହିଁ ତାହା ଆମକୁ ଜଣା ନାହିଁ; କିନ୍ତୁ ତାଙ୍କ ହୃଦୟରୁ ହନୁମାନଙ୍କ ପ୍ରତି ଗଭୀର ଶ୍ରଦ୍ଧା ଯେ ଲୋପ ପାଇ ନ ଥିଲା, ଏହା ନିଶ୍ଚିତ । ପରବର୍ତ୍ତୀ ଜୀବନରେ ସ୍ୱାମୀ ବିବେକାନନ୍ଦ ବ୍ରହ୍ମଚର୍ଯ୍ୟ-ବ୍ରତଗ୍ରହଣାଭିଳାଷୀ ଯୁବକମାନଙ୍କୁ ମହାବୀରଙ୍କ ଚରିତ୍ରକୁ ଆଦର୍ଶରୂପେ ଗ୍ରହଣ କରିବାକୁ କହୁଥିଲେ । ପର-ମଙ୍ଗଳ ପାଇଁ ଆତ୍ମତ୍ୟାଗରେ କୃତସଂକଳ୍ପ ଶିଷ୍ୟବୃନ୍ଦଙ୍କୁ ଦାସ୍ୟ-ଭକ୍ତିର ଜୀବନ୍ତବିଗ୍ରହ ହନୁମାନଙ୍କ କଥା କହିବାବେଳେ ତାଙ୍କ ମୁଖମଣ୍ଡଳ ଦୀପ୍ତ ଆବେଗରେ ରକ୍ତିମ ହୋଇଯାଉଥିଲା; ସିଂହଗର୍ଜନରେ ସେ କହୁଥିଲେ, "ଦେଶର ସର୍ବତ୍ର ହନୁମାନଙ୍କ ପୂଜା ପ୍ରବର୍ତ୍ତନ କର ଦେଖି ! ଦୁର୍ବଳ ବଙ୍ଗାଳୀ ଜାତି ଆଗରେ ଏହି ମହାବୀର୍ଯ୍ୟର ଆଦର୍ଶ ରଖ ! ଶରୀରରେ ବଳ ନାହିଁ, ହୃଦୟରେ ସାହସ ନାହିଁ—ଏହି ଜଡ଼ପିଣ୍ଡମାନଙ୍କଦ୍ୱାରା କ'ଣ ହୋଇପାରିବ ! ମୋର ଇଚ୍ଛା, ଘରେ ଘରେ ଏହି ମହାବୀରଙ୍କ ପୂଜା ହେଉ ।" ଏକଦା ସେ ବେଲୁଡ଼ ମଠରେ ମହାବୀରଙ୍କ ମୂର୍ତ୍ତି ପ୍ରତିଷ୍ଠା କରିବାକୁ ସଂକଳ୍ପ କରିଥିଲେ; କିନ୍ତୁ କାର୍ଯ୍ୟରେ ପରିଣତ କରିପାରିଲେ ନାହିଁ ।

## ଶିକ୍ଷାରମ୍ଭ ଓ ବାଳକଦଳରେ ନେତୃତ୍ୱ ଲାଭ

ପାଞ୍ଚ ବର୍ଷ ବୟସ ପୂର୍ଣ୍ଣ ହେବା ପରେ ନିୟମାନୁସାରେ ନରେନ୍ଦ୍ରନାଥଙ୍କ ବିଦ୍ୟାରମ୍ଭ ହେଲା । ନରେନ୍ଦ୍ରନାଥ ଗୃହ-ଶିକ୍ଷକ 'ଗୁରୁ ମହାଶୟ' ଏହି ଛାତ୍ରଟିକୁ ନେଇ ବଡ଼ ବିବ୍ରତ ହୋଇ ପଡ଼ିଥିଲେ । ମାରଧର କରି ପାଠ ପଢ଼ାଇବାର ଯେଉଁ ଚିରାଚରିତ ନୀତି ସେ ଅବାଧରେ ନିଜ ଛାତ୍ରମାନଙ୍କ ପ୍ରତି ପ୍ରୟୋଗ କରୁଥିଲେ, ସେଥିରେ କିଛି ସୁଫଳ ହେଲା ନାହିଁ । ଗୁରୁ ମହାଶୟ ରାଗରେ ଅଗ୍ନିଶର୍ମା ହୋଇଗଲେ ନରେନ୍ଦ୍ରନାଥ ସମ୍ପୂର୍ଣ୍ଣ ଜିଦ୍ କରି ବସୁଥିଲେ । ଅଗତ୍ୟା ଗୁରୁ ମହାଶୟ ସନାତନ ପ୍ରଥା ଛାଡ଼ି ଏହି କ୍ଷୁଦ୍ର ଛାତ୍ରଟିକୁ ମିଠା କଥାରେ ସନ୍ତୁଷ୍ଟ କରିବାକୁ ବାଧ୍ୟ ହେଉଥିଲେ । ଏହି ପ୍ରକାର ପ୍ରାଥମିକ ଶିକ୍ଷା ଶେଷ କରି ନରେନ୍ଦ୍ରନାଥ ମେଟ୍ରୋପଲିଟାନ ଇନ୍‌ଷ୍ଟିଚିଉସନକୁ ପ୍ରେରିତ ହେଲେ । ସମବୟସ୍କ ସହପାଠୀମାନଙ୍କ ସଙ୍ଗ ଲାଭ କରି ନରେନ୍ଦ୍ର ଅପରିସୀମ ଆନନ୍ଦ ଅନୁଭବ କଲେ । ନରେନ୍ଦ୍ରଙ୍କ ନେତୃତ୍ୱରେ ନୂତନ ଖେଳସାଥୀମାନଙ୍କ ଶୀଘ୍ର ଗୋଟିଏ କ୍ଷୁଦ୍ର ଦଳ ଗଠିତ ହେଲା । ପ୍ରତ୍ୟୁଷରେ ଓ ଅପରାହ୍ନରେ ଦତ୍ତଭବନର ସୁବିସ୍ତୀର୍ଣ୍ଣ ଅଗଣା ଏହି କ୍ରୀଡ଼ାମତ୍ତ ବାଳକମାନଙ୍କ କୌତୁକ କୋଳାହଳରେ ମୁଖରିତ ହେଉଥିଲା ।

ଅନ୍ୟ ଦିଗରେ ନରେନ୍ଦ୍ରନାଥ ବିଦ୍ୟାଳୟକୁ ଯାଇ ପ୍ରଥମେ ପ୍ରଥମେ ମହା ଅଡୁଆରେ ପଡ଼ିଲେ । ପଦେ ପଦେ ତାଙ୍କର ସ୍ୱାଧୀନତା ସଂକୁଚିତ ହେବାକୁ ଲାଗିଲା । ସେ ଏକପ୍ରକାର ଅବସ୍ଥାରେ ବହୁ ସମୟ ବସି ପାରୁ ନ ଥିଲେ । କେତେବେଳେ ଠିଆ ହେଉଥିଲେ, କେତେବେଳେ ଅବା ବସୁଥିଲେ, କେତେବେଳେ ଅକାରଣରେ କୋଠରୀଭିତରୁ ବାହାରକୁ ଆସୁଥିଲେ ଏବଂ ଅନ୍ୟ କେତେବେଳେ କିଛି କରିବାକୁ ନ ଥିଲେ ନିଜ ପିନ୍ଧାଲୁଗା ବା ବହିପତ୍ର ଚିରି ପକାଉଥିଲେ । ବେଳେ ବେଳେ ତାଙ୍କ ପିତାମାତାଙ୍କ ପରି ଶିକ୍ଷକମାନେ ମଧ୍ୟ ବିବ୍ରତ ହୋଇ ପଡୁଥିଲେ ଏବଂ ଦଣ୍ଡ ଦେଲେ ମଧ୍ୟ ନରେନ୍ଦ୍ରନାଥ ସଂଯତ ହେବା ପାତ୍ର ନୁହଁନ୍ତି ବୋଲି ଜାଣି ମିଠା କଥାରେ ତାଙ୍କୁ ସନ୍ତୁଷ୍ଟ କରୁଥିଲେ । ଚଞ୍ଚଳ ପ୍ରକୃତିର ବାଳକ ହେଲେ ହେଁ ବାଲ୍ୟକାଳରୁ ସାଧାରଣ ବାଳକମାନଙ୍କ ଅପେକ୍ଷା ତାଙ୍କ ଚରିତ୍ରରେ ବହୁ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୋଇଥିଲା । ଖେଳିବା ବେଳେ ସାମାନ୍ୟ କଥାରେ କେହି କଳି କଲେ ସେ ମହା ବିରକ୍ତ ହେଉଥିଲେ ଏବଂ ନିଜେ ଆଗେଇ ଯାଇ ମୀମାଂସା କରିଦେଉଥିଲେ । ଯଦି କେହି ତାଙ୍କ ଉପଦେଶ ଆଗ୍ରାହ୍ୟ କରି ମାରଧର କରୁଥିଲା, ନରେନ୍ଦ୍ରନାଥ ନିର୍ଭୀକ ଭାବରେ ତାଙ୍କ ମଝିରେ ଠିଆ ହୋଇ ସେମାନଙ୍କୁ ନିରସ୍ତ କରୁଥିଲେ । ଶାରୀରିକ ଶକ୍ତିରେ ନରେନ୍ଦ୍ରନାଥ କାହାରିଠାରୁ ନ୍ୟୂନ ନ ଥିଲେ, ବରଂ ତାଙ୍କର ଅସୀମ ସାହସିକତା ଦେଖି ଅନେକ ଚମତ୍କୃତ ହେଉଥିଲେ । ମୁଥ ମାରିବାରେ ସିଦ୍ଧହସ୍ତ ନରେନ୍ଦ୍ର ଅନେକ ଦୁଷ୍ଟ ବାଳକଙ୍କର ଭୟର ପାତ୍ର ଥିଲେ । ନ୍ୟାୟ ବିଚାରକ,

ଉଦାର, କ୍ଷମାଶୀଳ, ଶକ୍ତିମାନ, ପ୍ରତିଭାଶାଳୀ ନରେନ୍ଦ୍ରନାଥଙ୍କୁ ସହପାଠୀଗଣ ସ୍ୱତଃପ୍ରବୃତ୍ତ ହୋଇ ନେତାର ଆସନ ଦେଇଥିଲେ ।

## ସାହସର ଦୃଷ୍ଟାନ୍ତ

ବାଲ୍ୟକାଳରୁ ଭୟ କଅଣ ତାଙ୍କୁ ଜଣା ନ ଥିଲା । ତାଙ୍କୁ ଛଅବର୍ଷ ବୟସ ହେବାବେଳେ ସେ ଦିନେ ସଙ୍ଗୀମାନଙ୍କ ସହ ଚଡ଼କମେଳା ଦେଖିବାକୁ ଯାଇଥିଲେ । କେତେଗୋଟି ମୃତ୍ତିକାନିର୍ମିତ ମହାଦେବଙ୍କ ମୂର୍ତ୍ତି କିଣି ସେମାନେ ଫେରି ଆସିବାବେଳେ ଗୋଟିଏ କ୍ଷୁଦ୍ର ବାଳକ ଦଳଭ୍ରଷ୍ଟ ହୋଇ ପାଦଚଲା ରାସ୍ତାରୁ ବଡ଼ ରାସ୍ତାକୁ ଚାଲିଗଲା । ଠିକ୍ ସେହି ସମୟରେ ସାମନାପଟରୁ ଗୋଟିଏ ଘୋଡ଼ା ଗାଡ଼ି ଆସୁଥିବାର ଦେଖି ବାଳକଟି କିଂକର୍ତ୍ତବ୍ୟବିମୂଢ଼ ହୋଇଗଲା । ବାଟୋଇମାନେ ବିପଦର ଗୁରୁତ୍ୱ ବୁଝିପାରି ଚିତ୍କାର କରି ଉଠିଲେ । ଗୋଳମାଳ ଶୁଣି ପଛକୁ ଚାହିଁବା ମାତ୍ରକେ ନରେନ୍ଦ୍ରନାଥ ବିପଦ ଆସନ୍ନ ଥିବା ବୁଝିପାରିଲେ । ତିଳେମାତ୍ର ବିଳମ୍ବ ନ କରି ମହାଦେବଙ୍କ ମୂର୍ତ୍ତିଟିକୁ କାଖରେ ଜାକି ଦୌଡ଼ିଗଲେ ଏବଂ ଘୋଡ଼ା ପାଦତଳୁ ବାଳକଟିକୁ ଟାଣି ଆଣିଲେ । ମୁହୂର୍ତ୍ତେ ବିଳମ୍ବ ହୋଇଥିଲେ ବାଳକଟିର ହାଡ଼ ଯେ ଚୂନା ହୋଇଯାଇଥାନ୍ତା, ଏଥିରେ ସନ୍ଦେହ ନାହିଁ । ଜଣେ କ୍ଷୁଦ୍ର ବାଳକର ଏହି ନିର୍ଭୀକ କାର୍ଯ୍ୟ ଦେଖି ସମସ୍ତେ ମୁକ୍ତକଣ୍ଠରେ ସାଧୁବାଦ ଦେଲେ । କେହି କେହି ଅତିଶୟ ଭାବଗଦ୍‌ଗଦ ହୋଇ ପିଲାଟିର ମୁଣ୍ଡ ଉପରେ ହାତ ଥୋଇ ଆନନ୍ଦୋଚ୍ଛଳ କଣ୍ଠରେ ଆଶୀର୍ବାଦ କଲେ । ସମସ୍ତ ଘଟଣା ଅବଗତ ହୋଇ ନରେନ୍ଦ୍ରନାଥଙ୍କ ଜନନୀ ନିଜ ପଣତରେ ଆନନ୍ଦାଶ୍ରୁ ପୋଛି ପୋଛି ସନ୍ତାନକୁ କୋଳ କରି ବାଷ୍ପାକୁଳ କଣ୍ଠରେ କହିଲେ, ''ବାବା, ସବୁବେଳେ ଏହିପରି ପ୍ରକୃତ ମଣିଷର କାମ କର ।'' କିଭଳି ଭାବରେ ସନ୍ତାନକୁ ମଣିଷ କରାଯାଏ, ତାହା ତାଙ୍କୁ ଜଣା ଥିଲା । ଏହି ମହୀୟସୀ ମହିଳାଙ୍କ ସ୍ୱହସ୍ତପାଳିତ ନରେନ୍ଦ୍ର, ମହେନ୍ଦ୍ର ଓ ଭୂପେନ୍ଦ୍ର ନାମକ ତିନିପୁତ୍ରଙ୍କ ମହିମାସମୁଜ୍ଜ୍ୱଳ ଯଶରାଶି ବଙ୍ଗଳାର ଜାତୀୟ ଇତିହାସରେ ଗୋଟିଏ ଗୋଟିଏ ଗୌରବମୟ ପୃଷ୍ଠା । ଦିନେ ନିଜ ବାଲ୍ୟକାଳ ସମ୍ବନ୍ଧରେ ବର୍ଣ୍ଣନା କରୁ କରୁ ସ୍ୱାମୀଜୀ ଜଣେ ଶିଷ୍ୟକୁ କହିଥିଲେ, ''ପିଲାଟି ଦିନୁ ମୁଁ ଏକଜିଦିଆ ଭୂତଟିଏ ଥିଲି, ଆଉ କଅଣ ? ନୋହିଲେ କି କପର୍ଦ୍ଦକଶୂନ୍ୟ ଅବସ୍ଥାରେ ମୁଁ ସମସ୍ତ ଦୁନିଆଟା ବୁଲିଆସି ପାରିଥାନ୍ତି ?''

ଯେଉଁ ବାଳକମାନେ ଭୂତ ଇତ୍ୟାଦି କଥା ଶୁଣିଲେ ଭୟଭୀତ ନ ହୋଇ ଭୂତକୁ ଦେଖିବାକୁ ଚାହାଁନ୍ତି, ନରେନ୍ଦ୍ରନାଥ ଥିଲେ ସେହି ପ୍ରକାର ପିଲା । ତାଙ୍କୁ ଭୟ ଦେଖାଇ ନିରସ୍ତ କରିବା ଅସମ୍ଭବ ଥିଲା । ନରେନ୍ଦ୍ରଙ୍କର ଜଣେ ପଡ଼ୋଶୀ ଖେଳସାଥୀର ବଗିଚାରେ ଗୋଟିଏ ଚମ୍ପାଫୁଲ ଗଛ ଥିଲା । ଏହି ଗଛର ଡାଳରେ ଗୋଡ଼ ଛନ୍ଦି ମୁଣ୍ଡ ଓ ହାତ ତଳକୁ ଝୁଲାଇବା ନରେନ୍ଦ୍ରନାଥଙ୍କର ଗୋଟିଏ ପ୍ରିୟ ଖେଳ ଥିଲା । ଘରର ବୁଢ଼ାକର୍ତ୍ତା ଦିନେ ଉଚ୍ଚ ଡାଳରେ ନରେନ୍ଦ୍ରନାଥଙ୍କର ଏହି ଓହଳା

ଖେଳ ଦେଖି ଡ଼ରିଗଲେ—ବିଶେଷରେ ନରେନ୍ଦ୍ରନାଥଙ୍କ ଉତ୍ପାତ ଯୋଗୁଁ ଗଛଟି ଭାଙ୍ଗିପଡ଼ିବାର ଯଥେଷ୍ଟ ଆଶଙ୍କା ଥିଲା । ସେ ନରେନ୍ଦ୍ରଙ୍କ ସ୍ୱଭାବ ଜାଣିଥିଲେ, ଧମକ ଦେଲେ, ଫଳ ବିପରୀତ ହେବ । ତେଣୁ ମିଠା କଥାରେ କହିଲେ, ''ଛି, ଏ ଗଛ ଉପରେ ଚଢ଼ନା ।'' ନରେନ୍ଦ୍ର ପଚାରିଲେ, ''କାହିଁକି ! ଗଛରେ ଚଢ଼ିଲେ କ'ଣ ହେବ ?'' ବୃଦ୍ଧ କହିଲେ, ''ଏ ଗଛରେ ଗୋଟିଏ ବ୍ରହ୍ମଦୈତ୍ୟ ଅଛି ।'' ଏହା କହି ବୃଦ୍ଧ ବ୍ରହ୍ମଦୈତ୍ୟର ବିକଟ ଆକୃତି ବର୍ଣ୍ଣନା କଲେ ଏବଂ ସେ ଆଶ୍ରୟ ନେଇଥିବା ଗଛର ଅପମାନ ହେଲେ ସେ ଆଦୌ କ୍ଷମା କରିବ ନାହିଁ ବୋଲି ଗୋଟିଏ ଦୁଇଟି ଉଦାହରଣ ସହ ବୁଝାଇ ଦେଲେ । ନରେନ୍ଦ୍ରଙ୍କୁ ନିରୁତ୍ତର ଦେଖି ବୃଦ୍ଧ ତାଙ୍କର ଉଦ୍ଦେଶ୍ୟ ସଫଳ ହୋଇଛି ବୋଲି ଭାବିଲେ । ସେ ଚାଲିଯିବା ମାତ୍ରକେ ନରେନ୍ଦ୍ରନାଥ ପୁନର୍ବାର ଗଛଡ଼ାଳ ଉପରେ ବସିଲେ । ମନେ ମନେ ଭାବିଲେ, ବ୍ରହ୍ମଦୈତ୍ୟଙ୍କୁ ଥରେ ଦେଖିଲେ ହେବ । ନରେନ୍ଦ୍ରଙ୍କ ସାଥୀଟି ଡରିଯାଇଥିଲା, ସେ କାତର କଣ୍ଠରେ କହିଲା, ''ନାହିଁ ଭାଇ, ଅପଦେବତାଙ୍କୁ ବିଶ୍ୱାସ ନାହିଁ, କେଉଁଆଡ଼ୁ ଆସି କେତେବେଳେ ଯେ ବେକ ମୋଡ଼ିଦେବ, ତାର ଠିକଣା ନାହିଁ ।'' ନରେନ୍ଦ୍ର ହସି ହସି କହିଲେ, ''ତୁ ଗୋଟିଏ ନିପଟ ଓଲୁ । ତୋ ଜେଜେବାପା କେବଳ ଆମକୁ ଡରାଇବା ପାଇଁ ମନଗଢ଼ା କଥା କହିଲେ । ଏ ଗଛରେ ପ୍ରକୃତରେ ବ୍ରହ୍ମଦୈତ୍ୟ ଥିଲେ ସେ କେଉଁଦିନୁ ମୋ ବେକ ମୋଡ଼ି ସାରନ୍ତାଣି'' ।

ଲୋକମୁଖରୁ ଯାହା ତାହା ଶୁଣି ବିଶ୍ୱାସ କରିବା ନରେନ୍ଦ୍ରନାଥଙ୍କ ପ୍ରକୃତି ବିରୁଦ୍ଧ ଥିଲା । ବାଲ୍ୟକାଳରୁ ସେ କୌଣସି ବିଷୟରେ ପ୍ରତ୍ୟକ୍ଷ ପ୍ରମାଣ ନ ପାଇଲେ ବିଶ୍ୱାସ କରୁ ନ ଥିଲେ । ଏହି ଧାରଣାର ବଶବର୍ତ୍ତୀ ହୋଇ ସେ ଯୌବନରେ ପୋଥିଗତ ଦାର୍ଶନିକ ତତ୍ତ୍ୱଗୁଡ଼ିକର ଆଲୋଚନାରେ ତୃପ୍ତ ନ ହୋଇ ସତ୍ୟଲାଭ କରିବା ନିମିତ୍ତ ସାଧନାରେ ପ୍ରବୃତ୍ତ ହୋଇଥିଲେ ।

## ଜକା ସାଆନ୍ତଙ୍କ ଅନ୍ତିମ ଆଶୀର୍ବାଦ

ସାଧାରଣଙ୍କ ଦୃଷ୍ଟିରେ ନ ପଡ଼ିଲେ ମଧ୍ୟ କେତେକ ନରେନ୍ଦ୍ରନାଥଙ୍କ ହାବଭାବ ଦେଖି ଭାବୁଥିଲେ, ଏ ଭବିଷ୍ୟତରେ ଯେ ଜଣେ ମହତ୍‌ବ୍ୟକ୍ତି ହେବେ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ୧୮୬୯ ଖ୍ରୀଷ୍ଟାବ୍ଦରେ ତାଙ୍କ ଜକାସାଆନ୍ତ କାଳୀପ୍ରସାଦ ଦତ୍ତ ଦେହତ୍ୟାଗ କଲେ । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ ନିଜ କାଳ ପୂରିଆସୁଥିବା ଜାଣି ପରିବାରର ସମସ୍ତଙ୍କୁ ଡକାଇ ପଠାଇଲେ । ଜକାସାଆନ୍ତଙ୍କ ଶେଷ ଇଚ୍ଛା ପୂରଣ କରି ନରେନ୍ଦ୍ର ଓ ତାଙ୍କ ଭଗ୍ନୀ ମହାଭାରତ ବୋଲି ଶୁଣାଉଥିଲେ । କାଳୀପ୍ରସାଦଙ୍କ ଜୀବନୀଶକ୍ତି କ୍ରମେ କ୍ଷୀଣ ହୋଇ ଆସୁଥିଲା । ମୃତ୍ୟୁର ଠିକ୍ ପୂର୍ବରୁ ସେ ନରେନ୍ଦ୍ରନାଥଙ୍କ ଉପରେ ସସ୍ନେହ ଦୃଷ୍ଟି ପକାଇ କହିଲେ, ''ବାଳକ ! ଗୋଟିଏ ମହିମାମୟ ଭବିଷ୍ୟତ ତୋତେ ଅପେକ୍ଷା କରିଛି'' କାଳୀପ୍ରସାଦ ଚିରନିଦ୍ରାରେ ଶୋଇପଡ଼ିଲେ । ବୃଦ୍ଧଙ୍କ ମୃତ୍ୟୁକାଳୀନ ଭବିଷ୍ୟତବାଣୀ କାଳକ୍ରମେ ସଫଳ ହେଲା ।

## ଅଙ୍କ ଶାସ୍ତ୍ର ପ୍ରତି ଘୃଣା

ଅନ୍ୟ ବାଳକଙ୍କ ଅପେକ୍ଷା ନରେନ୍ଦ୍ରନାଥ ଖେଳିବା ଲାଗି ବେଶୀ ସମୟ ପାଉଥିଲେ; କାରଣ ବିଦ୍ୟାଳୟର ନିୟମିତ ପାଠ ଅଭ୍ୟାସ କରିବା ଲାଗି ତାଙ୍କୁ ଏକଘଣ୍ଟାରୁ ଅଧିକ ସମୟ ଲାଗୁ ନ ଥିଲା । ବର୍ଷର ଅଧିକାଂଶ ସମୟ ସେ ବାଲସୁଲଭ ଆମୋଦ ପ୍ରମୋଦରେ କଟାଉଥିଲେ; ପରୀକ୍ଷାର ଦୁଇ ତିନିମାସ ଆଗରୁ ଟିକିଏ ମନୋଯୋଗ ଦେଇ ପଢୁଥିଲେ—ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଲାଗି ଏହା ଯଥେଷ୍ଟ ଥିଲା । ସେ ଇଂରେଜୀ, ସଂସ୍କୃତ ଓ ଇତିହାସ ଆଗ୍ରହ ସହକାରେ ପଢୁଥିଲେ, କିନ୍ତୁ ଅଙ୍କଶାସ୍ତ୍ର ନାମ ଶୁଣିବା ମାତ୍ରକେ ବିରକ୍ତ ହେଉଥିଲେ । ପିତାଙ୍କୁ ଅନୁକରଣ କରି ସେ ନାସା ସଙ୍କୁଚିତ କରି ଅଙ୍କକୁ "ଦୋକାନୀଙ୍କ ଜୁଆଚୋରୀ ବିଦ୍ୟା" ବୋଲି ଉପହାସ କରି କହିଥିଲେ, "ଅଙ୍କ ପଢ଼ିଲେ କଅଣ ଲାଭ, ମୁଁ ତ ଦୋକାନଦାର ହେବି ନାହିଁ ?"

## ରାୟପୁର ଗମନ

ଚଉଦବର୍ଷ ବୟସ ହେବା ବେଳକୁ ନରେନ୍ଦ୍ରନାଥଙ୍କର ଉଦରାମୟ ରୋଗ ହେଲା । କ୍ରମାଗତ ବହୁଦିନ ରୋଗ ଭୋଗି ସେ ଅସ୍ଥିଚର୍ମସାର ହୋଇଗଲେ । ସେତେବେଳେ ବିଶ୍ୱନାଥ କାର୍ଯ୍ୟୋପଲକ୍ଷରେ ମଧ୍ୟପ୍ରଦେଶ ଅନ୍ତର୍ଗତ ରାୟପୁରରେ ଅବସ୍ଥାନ କରୁଥିଲେ । ଜଳବାୟୁ ପରିବର୍ତ୍ତନ ହେଲେ ସ୍ୱାସ୍ଥ୍ୟର ଉନ୍ନତି ହୋଇପାରେ ବୋଲି ଅନୁମାନ କରି ସେ ପରିବାରବର୍ଗଙ୍କୁ ରାୟପୁର ନେଇଗଲେ । ୧୮୭୭ ଖ୍ରୀଷ୍ଟାବ୍ଦରେ ନରେନ୍ଦ୍ରନାଥ ପିତାଙ୍କ ନିକଟକୁ ରାୟପୁର ଗଲେ ।

ସେତେବେଳେ ମଧ୍ୟପ୍ରଦେଶରେ ସର୍ବତ୍ର ରେଳରାସ୍ତା ହୋଇ ନ ଥିଲା । ଏଲାହାବାଦ ଓ ଜବଲପୁର ବାଟେ ନାଗପୁର ପର୍ଯ୍ୟନ୍ତ ରେଳ ଚଳାଚଳ ହେଉଥିଲା । ନାଗପୁରଠାରୁ ରାୟପୁର ଯିବାକୁ ହେଲେ ପ୍ରାୟ ପନ୍ଦର ଦିନ କାଳ ଗୋରୁଗାଡ଼ିରେ ଯିବାକୁ ପଡୁଥିଲା । ଦୀର୍ଘ ରାସ୍ତାରେ ବୁଲି ବୁଲି ଭାରତବର୍ଷର ଅର୍ଦ୍ଧେକ ଭାଗ ଅତିକ୍ରମ କରିବା ଫଳରେ ନରେନ୍ଦ୍ରନାଥଙ୍କ ତରୁଣ ମନରେ ଦେଶ-ମାତୃକାଙ୍କର ବିଚିତ୍ର ରୂପ ଗୋଟିଏ ମୋହମୟ ଇନ୍ଦ୍ରଜାଲ ବିସ୍ତାର କଲା । ଯେପରି କି ବିଶ୍ୱପ୍ରକୃତିର ଅନନ୍ତ ରୂପର ଭଣ୍ଡାର କେହି ତାଙ୍କ ଆଗରେ ସ୍ତର ସ୍ତର କରି ସଜାଇ ରଖିଲା । କିଶୋର କବି-ହୃଦୟର ପ୍ରଥମ ଜାଗ୍ରତ ସୌନ୍ଦର୍ଯ୍ୟ-ତୃଷ୍ଣା ଅନନ୍ତ ଅଫୁରନ୍ତି ଭିତରେ ତୃପ୍ତିର ଆନନ୍ଦରେ ବୁଡ଼ିଗଲା । ଏହି ଦିବ୍ୟାନୁଭୂତି ନରେନ୍ଦ୍ରନାଥ ଜୀବନରେ ଭୁଲି ପାରି ନ ଥିଲେ । ତାଙ୍କ ଗୁରୁଭାଇ ପୂଜନୀୟ ସ୍ୱାମୀ ସାରଦାନନ୍ଦ ବିବେକାନନ୍ଦଙ୍କଠାରୁ ଏ କଥା ଯେପରି ଶୁଣିଥିଲେ ତାହା ସେ 'ଲୀଳାପ୍ରସଙ୍ଗ' ରେ ବର୍ଣ୍ଣନା କରିଛନ୍ତି ।

"ସେ କହୁଥିଲେ, 'ବନମଧ୍ୟଗତ ପଥରେ ଯାଉ ଯାଉ ସେହି ସମୟରେ ଯାହା ଦେଖିଛି ଓ ଅନୁଭବ କରିଛି, ତାହା ସ୍ମୃତିପଟରେ ଚିରକାଳ ଦୃଢ଼ ଭାବରେ ଲେଖିହୋଇ ରହିବ । ବିଶେଷତଃ ଗୋଟିଏ ଦିନର କଥା । ସେଦିନ ଆମେ

ଉନ୍ନତଶୀର୍ଷ ବିନ୍ଧ୍ୟପର୍ବତର ପାଦଦେଶରେ ଯାଉଥିଲୁ । ରାସ୍ତାର ଦୁଇକଡ଼ରେ ଗିରିଶୃଙ୍ଗଗୁଡ଼ିକ ଗଗନ ସ୍ପର୍ଶ କରି ଠିଆ ହୋଇଥାନ୍ତି; ନାନାଜାତିର ବୃକ୍ଷଲତା ଫଳପୁଷ୍ପ-ସମ୍ଭାରରେ ଅବନତ ହୋଇ ପର୍ବତ ଉପରେ ଅପୂର୍ବ ଶୋଭା ସମ୍ପାଦନ କରି ରହିଥାନ୍ତି । ମଧୁର କାକଳୀରେ ଦିଗ୍‌ବିଦିଗ ମୁଖରିତ କରି ନାନାରଙ୍ଗର ବିହଙ୍ଗ କୁଞ୍ଜରୁ କୁଞ୍ଜରୁ ଉଡୁଥାନ୍ତି କିମ୍ବା ଖାଦ୍ୟ ଅନ୍ୱେଷଣରେ ତଳକୁ ଆସୁଥାନ୍ତି । ଏସବୁ ଦେଖି ଦେଖି ମନରେ ଏକପ୍ରକାର ଅପୂର୍ବ ଶାନ୍ତି ଅନୁଭବ କରୁଥାଏ । ଶଗଡ଼ଟି ଧୀର ମନ୍ଥର ଗତିରେ ଯାଉ ଯାଉ ସବୁ ଦୃଶ୍ୟ ଅତିକ୍ରମ କରି ଏପରି ଗୋଟିଏ ସ୍ଥାନରେ ପହଞ୍ଚିଲା, ଯେଉଁଠାରେ ଦୁଇଟି ପର୍ବତ-ଶୃଙ୍ଗ ଯେପରି କି ପ୍ରେମରେ ବନପଥକୁ ଆଲିଙ୍ଗନ କରୁଥିଲେ । ସେତିକିବେଳେ ମୁଁ ଶୃଙ୍ଗ ଦୁଇଟିକୁ ନିରୀକ୍ଷଣ କରି ଦେଖିଲି, ଗୋଟିଏ ପଟର ପର୍ବତରେ ଶୀର୍ଷରୁ ପାଦଦେଶ ପର୍ଯ୍ୟନ୍ତ ଗୋଟିଏ ବଡ଼ ଫାଟ ରହିଛି ଏବଂ ଏହି ଫାଟର ଅନ୍ତରାଳରେ ମହୁମାଛିଙ୍କର ଯୁଗାଯୁଗାନ୍ତ ବ୍ୟାପୀ ପରିଶ୍ରମର ନିଦର୍ଶନ-ସ୍ୱରୂପ ଗୋଟିଏ ପ୍ରକାଣ୍ଡ ମହୁଫେଣା ଝୁଲୁଛି । ସେତେବେଳେ ବିସ୍ମୟାଭିଭୂତ ହୋଇ ସେହି ମହୁମାଛି-ରାଜିର ଆଦିଅନ୍ତ କଥା ଭାବି ମନ ତ୍ରିଜଗତ୍-ନିୟନ୍ତା ଈଶ୍ୱରଙ୍କ ଅନନ୍ତ ଉପଲବ୍ଧିରେ ଏଭଳି ନିମଗ୍ନ ହେଲା ଯେ ମୁଁ କେତେ ସମୟ ପର୍ଯ୍ୟନ୍ତ ବାହ୍ୟସଂଜ୍ଞା ହରାଇ ବସିଲି । କେତେ ସମୟ ଏପରି ଭାବରେ ଶଗଡ଼ ଉପରେ ପଡ଼ି ରହିଥିଲି, ମନେ ନାହିଁ । ଚେତନା ଫେରି ଆସିବା ବେଳକୁ ଦେଖିଲି, ଆମେ ସେଠାରୁ ଅନେକ ବାଟ ଚାଲି ଆସିଲୁଣି । ଶଗଡ଼ରେ ମୁଁ ଏକା ଥିଲି ବୋଲି ଏ କଥା ଅନ୍ୟ କେହି ଜାଣିପାରି ନ ଥିଲେ ।' ପ୍ରବଳ କଳ୍ପନା ହେତୁ ଧ୍ୟାନରାଜ୍ୟରେ ଆରୂଢ଼ ହୋଇ ତନ୍ମୟ ହୋଇଯିବା ଏହି ଘଟଣାଟି ନରେନ୍ଦ୍ରନାଥଙ୍କ ଜୀବନରେ ବୋଧହୁଏ ପ୍ରଥମ ଅନୁଭୂତି ।''

## ପିତାଙ୍କଠାରୁ ଶିକ୍ଷାଲାଭ

ସେତେବେଳେ ରାୟପୁରରେ କୌଣସି ବିଦ୍ୟାଳୟ ନ ଥିଲା; ତେଣୁ ପୁତ୍ରକୁ ଶିକ୍ଷା ଦେବା ଦାୟିତ୍ୱ ନିଜେ ବିଶ୍ୱନାଥ ବହନ କଲେ । ମାଲି-ମୋକଦ୍ଦମାରେ ମୁଣ୍ଡ ଖେଳାଇବା ଏବଂ ଅଦାଲତକୁ ଦଉଡ଼ା ଦଉଡ଼ି କରିବା କାମ ନ ଥିଲା ବୋଲି ବିଶ୍ୱନାଥଙ୍କୁ ପ୍ରଚୁର ଅବସର ମିଳୁଥିଲା । ପୁତ୍ରର ପ୍ରତିଭା ତାଙ୍କୁ ଅଜଣା ନ ଥିଲା; ନିୟମିତ ବିଦ୍ୟାଳୟ ପାଠ୍ୟ ପଢ଼ାଇବା ସଙ୍ଗେ ସଙ୍ଗେ ସେ ପୁତ୍ରକୁ ଇତିହାସ, ଦର୍ଶନ ଓ ସାହିତ୍ୟ ସମ୍ବନ୍ଧରେ ନାନାବିଧ ପୁସ୍ତକ ପଢ଼ାଇଲେ । ତାଙ୍କ ଘରେ ପ୍ରତ୍ୟହ ରାୟପୁରର କୃତବିଦ୍ୟ ଲୋକେ ସମବେତ ହେଉଥିଲେ । ପ୍ରାୟ ଅଧିକାଂଶ ବେଳେ ନରେନ୍ଦ୍ରନାଥ ସେଠାରେ ଉପସ୍ଥିତ ହୋଇ ସାହିତ୍ୟ, ଦର୍ଶନ ଆଦି ବିଷୟରେ ଆଲୋଚନା ମନୋଯୋଗ ଦେଇ ଶୁଣୁଥିଲେ । ବେଳେବେଳେ ଆଲୋଚନା ଶୁଣି ମତାମତ ଦେବାଲାଗି ବିଶ୍ୱନାଥ ପୁତ୍ରକୁ ଆଦେଶ ଦେଉଥିଲେ । ବାଳକଟିର ବୟସ କମ୍ ହେଲେ ହେଁ ଉପସ୍ଥିତ ପ୍ରବୀଣମାନେ ତାଙ୍କ ଯୁକ୍ତିପୂର୍ଣ୍ଣ ମନ୍ତବ୍ୟ ଶୁଣି

ଆନନ୍ଦିତ ହେଉଥିଲେ । ବିଶ୍ୱନାଥ ମଧ୍ୟ ପୁତ୍ରର ଯୋଗ୍ୟତା ଦେଖି ଆନନ୍ଦରେ ତାଙ୍କୁ ନାନା ଭାବରେ ଉତ୍ସାହିତ କରୁଥିଲେ । ଦିନେ ପିତାଙ୍କର ବନ୍ଧୁ, ବଙ୍ଗ-ସାହିତ୍ୟର ଜଣେ ଖ୍ୟାତନାମା ଲେଖକ ବଙ୍ଗ ସାହିତ୍ୟ ସମ୍ବନ୍ଧରେ ଆଲୋଚନା କରୁଥିଲେ । ନରେନ୍ଦ୍ରନାଥ ମଧ୍ୟ ପିତାଙ୍କଦ୍ୱାରା ଆହୂତ ହୋଇ ଆଲୋଚନାରେ ଯୋଗଦେଲେ । କେତେ ସମୟ ଆଲୋଚନା ପରେ ସାହିତ୍ୟିକ ପ୍ରବର ବୁଝିପାରିଲେ ଯେ ବାଳକଟି ଅଧିକାଂଶ ପ୍ରସିଦ୍ଧ ଲେଖକଙ୍କ ଗ୍ରନ୍ଥ ଅଧ୍ୟୟନ କରି ସାରିଛନ୍ତି । ସେ ବିସ୍ମୟ ଓ ଆନନ୍ଦରେ ନରେନ୍ଦ୍ରଙ୍କୁ ଚାହିଁ କହିଲେ, ''ବତ୍ସ ! ମୋର ଆଶା, ତୁମରିଦ୍ୱାରା ଦିନେ ବଙ୍ଗଳାଭାଷା ଗୌରାବାନ୍ୱିତ ହେବ ।'' ସ୍ୱାମୀ ବିବେକାନନ୍ଦଙ୍କ ପ୍ରଣୀତ 'ବର୍ତ୍ତମାନ ଭାରତ,' 'ପରିବ୍ରାଜକ,' 'ଭାବିବାର କଥା,' 'ପ୍ରାଚ୍ୟ ଓ ପାଶ୍ଚାତ୍ୟ' ଇତ୍ୟାଦି ପୁସ୍ତକ ତାଙ୍କ ଭବିଷ୍ୟତ-ବାଣୀକୁ ଯେ ସଫଳ କରିଛି, ଏଥିରେ ସନ୍ଦେହ ନାହିଁ ।

ପୁତ୍ରର ବିକାଶୋନ୍ମୁଖ ବୁଦ୍ଧି ଓ ପ୍ରତିଭା ସହିତ ସମ୍ୟକ୍ ପରିଚୟ ଫଳରେ ବିଶ୍ୱନାଥ ନରେନ୍ଦ୍ରଙ୍କ ଶିକ୍ଷାର ଧାରାକୁ ସାମାନ୍ୟ ବଦଳାଇ ଦେଲେ । ପୋଥିଗତ ବିଦ୍ୟାଭାରରେ ପୁତ୍ରର ପ୍ରଖର ସ୍ମୃତିଶକ୍ତିକୁ କ୍ଲାନ୍ତ ନ କରି ସେ ତାଙ୍କ ସହିତ ନାନା ବିଷୟରେ ଆଲୋଚନା କରୁଥିଲେ ଏବଂ ନରେନ୍ଦ୍ରଙ୍କୁ ସ୍ୱାଧୀନ ଭାବରେ ନିଜ ମତ ପ୍ରକାଶ କରିବାର ସୁବିଧା ଦେଉଥିଲେ । ଅନ୍ୟ ଦିଗରେ ନରେନ୍ଦ୍ର ମଧ୍ୟ ପିତାଙ୍କ ଜ୍ଞାନ-ଗାରିମାର ଗଭୀରତାରେ ମୁଗ୍ଧ ହୋଇଥିଲେ । ଶ୍ରଦ୍ଧାବାନ ବ୍ୟକ୍ତି ଜଗତରେ ଚିରଦିନ ଇପ୍‌ସିତ ବସ୍ତୁ ଲାଭ କରିଥାଏ । ମୁକ୍ତ ହୃଦୟ, ଦୟାଳୁ, ପରଦୁଃଖ କାତର ବିଶ୍ୱନାଥ ପାର୍ଥିବ ସମ୍ପଦକୁ ଦୁଇ-ହାତରେ ବାଣ୍ଟି ଦେଇ ଯାଇଛନ୍ତି । ତାଙ୍କର ବହୁ କଷ୍ଟାର୍ଜିତ ଜ୍ଞାନ ସମ୍ପଦ ଅଜସ୍ର ଧାରାରେ ଯୋଗ୍ୟ ପୁତ୍ରକୁ ଦାନ କରି କୃତାର୍ଥ ହୋଇଥିଲେ । ଦୀର୍ଘ ଦୁଇବର୍ଷ କାଳ ନରେନ୍ଦ୍ରନାଥ ପିତାଙ୍କଠାରୁ କେବଳ ଜ୍ଞାନଲାଭ କରି ନ ଥିଲେ, ତାଙ୍କ କୈଶୋର ଚରିତ୍ରରେ ପିତାଙ୍କ ମହତ୍ତ୍ୱର ଛାପ ଗଭୀର ଭାବରେ ପ୍ରସ୍ଫୁଟିତ ହୋଇଥିଲା । ନରେନ୍ଦ୍ର ପିତାଙ୍କଠାରୁ ତେଜସ୍ୱିତା, ପରଦୁଃଖ-କାତରତା ଏବଂ ଆପଦ ବିପଦରେ ଧୈର୍ଯ୍ୟ ନ ହରାଇ ଅନୁଦ୍‌ବିଗ୍ନ ଚିତ୍ତ ଓ ଧୀର ଭାବରେ କାର୍ଯ୍ୟ କରିଯିବା ବିଷୟ ଶିକ୍ଷା କରିଥିଲେ । ଶିକ୍ଷା ସହିତ ପିତାଙ୍କ ଚରିତ୍ରଗତ ବୈଶିଷ୍ଟ୍ୟଗୁଡ଼ିକ ମଧ୍ୟ ନରେନ୍ଦ୍ର ଧୀରେ ଧୀରେ ଆୟତ୍ତ କରି ନେଇଥିଲେ ।

## ନରେନ୍ଦ୍ରଙ୍କ ଆତ୍ମାଭିମାନ

ମାତୃଗତପ୍ରାଣ ନରେନ୍ଦ୍ରନାଥ ପିତାଙ୍କ ପ୍ରତି କମ୍ ଶ୍ରଦ୍ଧାସମ୍ପନ୍ନ ନ ଥିଲେ । ବେଳେବେଳେ ସେ ବନ୍ଧୁମାନଙ୍କ ପାଖରେ ଜନକଙ୍କ ଗୁଣାବଳୀ କୀର୍ତ୍ତନ କରି ଗୌରବ ଅନୁଭବ କରୁଥିଲେ । ସେ ଜଣେ ମହତ୍ ବ୍ୟକ୍ତିର ପୁତ୍ର ବୋଲି ସଦମ୍ଭରେ ଘୋଷଣା କରୁଥିଲେ ଏବଂ ଏହି କାରଣରୁ ଏକପ୍ରକାର ପ୍ରବଳ ଆତ୍ମାଭିମାନ ତାଙ୍କର ପ୍ରତ୍ୟେକ ବାକ୍ୟ ଓ ଆଚରଣରେ ସୁସ୍ପଷ୍ଟ ହୋଇ ଉଠୁଥିଲା । ବାଳକ

ବୋଲି ତାଙ୍କୁ କେହି ଅବଜ୍ଞା କଲେ ସେ ଖୁବ୍ ରାଗି ଯାଉଥିଲେ । ତାଙ୍କ ଔଦ୍ଧତ୍ୟ ଓ ଅହଙ୍କାର ମଧ୍ୟରେ ଈର୍ଷା ଦ୍ୱେଷ ନ ଥିଲା—ଧନୀ, ଦରିଦ୍ର, ଉଚ୍ଚ, ନୀଚ ସବୁଶ୍ରେଣୀର ପ୍ରତିବେଶୀମାନଙ୍କୁ ସେ ସମାନ ପ୍ରୀତି ଓ ଶ୍ରଦ୍ଧା ପ୍ରଦର୍ଶନ କରୁଥିଲେ । ସତ୍ୟ ବାକ୍ୟ ଓ ସତ୍ୟ ବ୍ୟବହାର ତାଙ୍କ ଜୀବନର ମୂଳମନ୍ତ୍ର ଥିଲା—ସେ ନିର୍ଭୀକ ଭାବରେ ଲୋକଙ୍କ ଆଗରେ ବିନା ଦ୍ୱିଧାରେ ଅପ୍ରିୟ-ସତ୍ୟ କହି ଦେଉଥିଲେ । ସେହି ହେତୁ ସେ ବେଳେବେଳେ ଗାଳି ଖାଉଥିଲେ ସତ, କିନ୍ତୁ ତଥାପି ସତ୍ୟ ଗୋପନ କରି ପାରୁନଥିଲେ ।

କିଶୋରାବସ୍ଥାରେ ନିଜକୁ ଶକ୍ତିଶାଳୀ ଓ ବୁଦ୍ଧିମାନ ବୋଲି ପରିଚୟ ଦେବାକୁ ସେ ସର୍ବଦା ଚେଷ୍ଟିତ ଥିଲେ । କେହି ତାଙ୍କ ଯୁକ୍ତିପୂର୍ଣ୍ଣ କଥାଗୁଡ଼ିକୁ ବାଳୋଚିତ ଧୃଷ୍ଟତା ବୋଲି ଉପେକ୍ଷା କଲେ ନରେନ୍ଦ୍ରନାଥ କ୍ରୋଧରେ ଆତ୍ମହରା ହୋଇଯାଉଥିଲେ; ସେତେବେଳେ ତାଙ୍କର ଗୁରୁ-ଲଘୁ ଜ୍ଞାନ ରହୁ ନ ଥିଲା । ତାଙ୍କୁ ଏପରି ଅବଜ୍ଞା କରି ତାଙ୍କ ପିତାଙ୍କ ବନ୍ଧୁମାନେ ମଧ୍ୟ କଠୋର ସମାଲୋଚନାରୁ ନିଷ୍କୃତି ପାଉ ନ ଥିଲେ । ଅବଶ୍ୟ ବିଜ୍ଞ ଓ ବୟୋଜ୍ୟେଷ୍ଠ ବ୍ୟକ୍ତିମାନଙ୍କୁ ଜବତ୍ କରି ଆତ୍ମପ୍ରସାଦ ଅନୁଭବ କରିବା ଭଳି ହୀନତା ତାଙ୍କର ନ ଥିଲା । ଗଭୀର ଆଘାତ ନ ପାଇଲେ ସେ କେବଳ ଆତ୍ମପ୍ରତିଷ୍ଠାଲାଗି ଏପରି ବ୍ୟବହାର କରୁ ନ ଥିଲେ । ତାଙ୍କର ଏତାଦୃଶ ଔଦ୍ଧତ୍ୟକୁ ବିଶ୍ୱନାଥ କ୍ଷମା କରୁ ନ ଥିଲେ; ବରଂ ତାଙ୍କୁ କଠୋର ଭାବରେ ଶାସନ କରି ଭବିଷ୍ୟତ ପାଇଁ ସାବଧାନ କରି ଦେଉଥିଲେ ସତ; କିନ୍ତୁ ପୁତ୍ରର ପ୍ରବଳ ଆତ୍ମନିଷ୍ଠା ଦେଖି ସେ ଅନ୍ତରରେ ଖୁସି ହେଉଥିଲେ ।

## କଲିକତାକୁ ପ୍ରତ୍ୟାବର୍ତ୍ତନ

କେତେକ ମାସ ମଧ୍ୟରେ ନରେନ୍ଦ୍ରନାଥଙ୍କ ପୂର୍ବସ୍ୱାସ୍ଥ୍ୟ ଫେରି ଆସିଲା । ତାଙ୍କୁ ଷୋଳବର୍ଷ ହେବାବେଳେ ତାଙ୍କର ଦୀର୍ଘ, ସୁବଳିଷ୍ଠ ଦେହକୁ ଦେଖି ଅନେକେ ତାଙ୍କୁ କୋଡ଼ିଏ ବର୍ଷ ହେଲାଣି ବୋଲି ଅନୁମାନ କରୁଥିଲେ । ନିୟମିତ ଭାବରେ ଶରୀରଚାଳନା ନିମିତ୍ତ କୁସ୍ତି ଇତ୍ୟାଦିରେ ସେ ବାଲ୍ୟକାଳରୁ ଅଭ୍ୟସ୍ତ ଥିଲେ । ସେତେବେଳେ ହିନ୍ଦୁମେଳାର ପ୍ରବର୍ତ୍ତକ ଶ୍ରୀଯୁକ୍ତ ନବଗୋପାଳ ମିତ୍ର କର୍ଣ୍ଣୱାଲିସ୍ ଷ୍ଟ୍ରୀଟ୍‌ରେ ଥିବା ସିମଳା-ପଲ୍ଲୀଠାରେ ଗୋଟିଏ ବ୍ୟାୟମଶାଳା ପ୍ରତିଷ୍ଠା କରିଥିଲେ । ଏହି ଆଖଡ଼ାରେ ନରେନ୍ଦ୍ରନାଥ ନିୟମିତରୂପେ ବ୍ୟାୟାମ କରୁଥିଲେ । ପ୍ରଥମ ଯୌବନରେ ସେ ଥରେ 'Boxing' (ମୁଷ୍ଟିଯୁଦ୍ଧ) ଖେଳରେ ସର୍ବପ୍ରଥମ ହୋଇ ଗୋଟିଏ ରୁପାର ପ୍ରଜାପତି ଉପହାର ପାଇଥିଲେ । ସେକାଳର ଛାତ୍ର-ସମାଜରେ ଜଣେ ଭଲ କ୍ରିକେଟ ଖେଳାଳୀ ହିସାବରେ ମଧ୍ୟ ତାଙ୍କର ଯଥେଷ୍ଟ ସୁନାମ ଥିଲା ।

ବିଶ୍ୱନାଥ ଭଲ ରାନ୍ଧି ପାରୁଥିଲେ । ରାୟପୁରରେ ଅବସ୍ଥାନ କାଳରେ ନରେନ୍ଦ୍ରନାଥ ପିତାଙ୍କଠାରୁ ନାନାବିଧ ଭଲ ରନ୍ଧନ ପ୍ରଣାଳୀ ଶିଖି ପାରିଥିଲେ । କଲେଜରେ ପଢ଼ିବା ବେଳେ ସେ ସମୟେ ସମୟେ ବନ୍ଧୁମାନଙ୍କୁ ନିମନ୍ତ୍ରଣ କରି ନିଜ

ହାତରନ୍ଧା ଖୁଆଉଥିଲେ । ନରେନ୍ଦ୍ର ସାରା ଜୀବନ ରନ୍ଧନପ୍ରିୟ ଥିଲେ । ବିଶ୍ୱବିଖ୍ୟାତ ସ୍ୱାମୀ ବିବେକାନନ୍ଦ ଭାବରେ ମଧ୍ୟ ସେ ରନ୍ଧନପ୍ରିୟତା ଛାଡ଼ିପାରି ନ ଥିଲେ । ସେ ନାନାବିଧ ତରକାରୀ ରାନ୍ଧି ଶିଷ୍ୟମାନଙ୍କୁ ନିଜେ ପରଷି ଆନନ୍ଦ ଅନୁଭବ କରୁଥିଲେ ।

ପ୍ରାୟ ଦୁଇବର୍ଷ ପରେ ପ୍ରିୟଦର୍ଶନ ନରେନ୍ଦ୍ରନାଥ ବିଚିତ୍ର ଶାରୀରିକ ଓ ମାନସିକ ପରିବର୍ତ୍ତନ ନେଇ ରାୟପୁରରୁ ବନ୍ଧୁମେଳକୁ ଫେରି ଆସିଲେ । ବହୁଦିନ ପରେ ତାଙ୍କୁ ସାଥିରେ ପାଇ ବନ୍ଧୁମାନଙ୍କ ଆନନ୍ଦର ସୀମା ରହିଲା ନାହିଁ । ପ୍ରାୟ ଦୁଇବର୍ଷ କାଳ ଅନୁପସ୍ଥିତ ଥିବା ଯୋଗୁଁ ପ୍ରବେଶିକା ଶ୍ରେଣୀରେ ନାମ ଲେଖାଇବା ବିଷୟରେ ତାଙ୍କୁ ସାମାନ୍ୟ ଅସୁବିଧା ଭୋଗ କରିବାକୁ ପଡ଼ିଥିଲା । ଅବଶେଷରେ ତାଙ୍କ ଗୁଣମୁଗ୍ଧ ଶିକ୍ଷକଗଣ କର୍ତ୍ତୃପକ୍ଷଙ୍କଠାରୁ ବିଶେଷ ଅନୁମତି ଆଣି ତାଙ୍କୁ ଗ୍ରହଣ କଲେ । ସେ ଦୁଇବର୍ଷର ପାଠକୁ କଠୋର ପରିଶ୍ରମ ସହକାରେ ବର୍ଷକରେ ଆୟତ କରି ପ୍ରବେଶିକା ପରୀକ୍ଷା ପାଇଁ ପ୍ରସ୍ତୁତ ହେଲେ । ସେ ପ୍ରବେଶିକା ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବାରୁ ତାଙ୍କ ଆତ୍ମୀୟ-ସ୍ୱଜନବୃନ୍ଦ ଅପରିସୀମ ଆନନ୍ଦ ଅନୁଭବ କରିଥିଲେ । ବିଦ୍ୟାଳୟ କର୍ତ୍ତୃପକ୍ଷ ମଧ୍ୟ ନରେନ୍ଦ୍ରଙ୍କ କୃତକାର୍ଯ୍ୟତା ହେତୁ ଖୁବ୍ ଆନନ୍ଦିତ ହୋଇଥିଲେ; କାରଣ ସେହି ବର୍ଷ ଉକ୍ତ ବିଦ୍ୟାଳୟରୁ ସେ ଜଣେମାତ୍ର ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଅନୁଷ୍ଠାନର ଗୌରବ ରକ୍ଷା କରିଥିଲେ ।

## ବାଗ୍ମୀ ସୁରେନ୍ଦ୍ରନାଥଙ୍କ ଭବିଷ୍ୟତ-ବାଣୀ

ମେଟ୍ରୋପଲିଟାନ ଇନ୍‌ଷ୍ଟିଚ୍ୟୁସନ୍‌ରେ ଅଧ୍ୟୟନ ସମୟରେ ଜଣେ ସୁଦକ୍ଷ ପୁରାତନ ଶିକ୍ଷକ କାର୍ଯ୍ୟରୁ ଅବସର ଗ୍ରହଣ କରିବେ ବୋଲି ଶୁଣି ନରେନ୍ଦ୍ରନାଥ ପ୍ରମୁଖ କେତେଜଣ ଉଦ୍‌ଯୋଗୀ ଛାତ୍ର ତାଙ୍କୁ ବିଦାୟକାଳୀନ ଅଭିନନ୍ଦନ ଦେବାକୁ ପ୍ରସ୍ତୁତ ହେଲେ । ଆଗାମୀ ପୁରସ୍କାର-ବିତରଣୀ ସଭାରେ ଶିକ୍ଷକଙ୍କୁ ଅଭିନନ୍ଦନ ଦିଆଯିବ ବୋଲି ସ୍ଥିର ହେଲା । ସେହି ସଭାରେ ଦେଶବିଖ୍ୟାତ ବାଗ୍ମୀପ୍ରବର ସ୍ୱର୍ଗତ ସୁରେନ୍ଦ୍ରନାଥ ବାନାର୍ଜୀ ସଭାପତି ଥିଲେ । ତାଙ୍କ ସମ୍ମୁଖରେ ଠିଆ ହୋଇ କିଏ ବକ୍ତୃତା କରିବ, ଏ ବିଷୟ ଭାବି ଲଜ୍ଜାପରବଶ ବାଳକଗଣ ଶଙ୍କିତ ହେଲେ । ଅବଶେଷରେ ସମସ୍ତେ ନରେନ୍ଦ୍ରନାଥଙ୍କୁ ବକ୍ତା ନିର୍ବାଚିତ କଲେ । ସଭାମଞ୍ଚ ଉପରେ ନରେନ୍ଦ୍ରନାଥ ପ୍ରାୟ ଅଧଘଣ୍ଟା ପର୍ଯ୍ୟନ୍ତ ସ୍ୱୀୟ ସ୍ୱଭାବମଧୁରକଣ୍ଠରେ ସୁଲଳିତ ଇଂରାଜୀରେ ଏହି ଶିକ୍ଷକଙ୍କ ଗୁଣାବଳୀ ବର୍ଣ୍ଣନା କଲେ । ଶେଷରେ ଛାତ୍ରବୃନ୍ଦଙ୍କ ପକ୍ଷରେ ଏହା ଦୁଃଖ ଓ କ୍ଷୋଭର କଥା ବୋଲି କହି ସେ ଆସନ ଗ୍ରହଣ କଲେ । ତତ୍ପରେ ସୁରେନ୍ଦ୍ରନାଥ ଉଠି ଗଭୀର ପ୍ରୀତିର ସହିତ ନରେନ୍ଦ୍ରଙ୍କ ବକ୍ତୃତାକୁ ପ୍ରଶଂସା କଲେ । ଷୋହଳ କି ସତର ବର୍ଷ ବୟସ୍କ ଜଣେ କିଶୋର ପକ୍ଷରେ ବାଗ୍ମୀପ୍ରବର ସୁରେନ୍ଦ୍ରନାଥଙ୍କ ସମ୍ମୁଖରେ ଠିଆ ହୋଇ ବକ୍ତୃତା କରିବା କମ୍ ଦୃଢ଼ତା ଓ ଆତ୍ମନିର୍ଭରତାର ପରିଚାୟକ ନୁହେଁ ।

ଯେଉଁ ମହାପୁରୁଷଗଣ ଯୁଗେ ଯୁଗେ ଜନ୍ମଗ୍ରହଣ କରି ଜଗତ୍‌ର ଚିନ୍ତା-ରାଜ୍ୟରେ ଅଦ୍ଭୁତ ପରିବର୍ତ୍ତନ ଆଣିଛନ୍ତି ଏବଂ ଦେଶ ଓ ଦଶର କଲ୍ୟାଣ କାମନାରେ ଅମିତ ବୀର୍ଯ୍ୟ ସହିତ ଅକ୍ଳାନ୍ତ ପରିଶ୍ରମ କରି ଯାଇଛନ୍ତି, ସେମାନେ ପ୍ରତ୍ୟେକେ ବାଲ୍ୟକାଳରୁ ନିଜ ଅସାଧାରଣତ୍ୱ ଅଳ୍ପ ବହୁତ ଅନୁଭବ କରିଛନ୍ତି । ନରେନ୍ଦ୍ରନାଥଙ୍କର ଯେ ଏପରି ଚିନ୍ତା ବେଳେ ବେଳେ ଆସୁ ନ ଥିଲା ତାହା ନୁହେଁ; ପାରିପାର୍ଶ୍ୱିକ ଅବସ୍ଥା ଓ ଅନ୍ୟ ବାଳକମାନଙ୍କ ସହିତ ତୁଳନା କରି ସେ ବହୁ ସମୟରେ ନିଜର ଶ୍ରେଷ୍ଠତ୍ୱ ଉପଲବ୍ଧି କରୁଥିଲେ । ସେହି ହେତୁ ତାଙ୍କର ତତ୍କାଳୀନ ଆତ୍ମନିଷ୍ଠା ଓ ଦୃଢ଼ତା ସାଧାରଣ ଚକ୍ଷୁରେ ଅହଙ୍କାର ପରି ଜଣା ପଡୁଥିଲା । ଅହଙ୍କାର ହେଲେ ହେଁ ଏତଦ୍ୱାରା ଅନ୍ୟକୁ କଷ୍ଟ ସହିବାକୁ ପଡୁ ନ ଥିଲା — ଏହା ହୋଇଥିଲେ ସେ ସହପାଠୀ ଓ ପ୍ରତିବେଶୀ ଆବାଳ-ବୃଦ୍ଧ-ବନିତାଙ୍କ ହୃଦୟକୁ ଆକୃଷ୍ଟ କରିବାକୁ କେବେହେଲେ ସମର୍ଥ ହୋଇ ନ ଥାନ୍ତେ ।

## ନରେନ୍ଦ୍ର-ଜନନୀ ଭୁବନେଶ୍ୱରୀଦେବୀ

ନରେନ୍ଦ୍ରନାଥଙ୍କ ଚରିତ୍ରରେ ଯେଉଁ ମହାନ୍ ଓ ସୁନ୍ଦର ଉପାଦାନ ଥିଲା, ତାହା ତାଙ୍କ ସୁଶିକ୍ଷିତା, ମାର୍ଜିତରୁଚି ଜନନୀଙ୍କ ସୁଶିକ୍ଷା ଓ ଯତ୍ନର ଫଳ । ସନ୍ତାନମାନଙ୍କ ଚରିତ୍ରରେ କୌଣସି ପ୍ରକାର ନୀଚତା ସ୍ଥାନ ନ ପାଇବା ସମ୍ବନ୍ଧରେ ସେ ସର୍ବଦା ସାବଧାନ ଥିଲେ । ମାତୃଭକ୍ତ ନରେନ୍ଦ୍ରନାଥ କେବେହେଲେ ଜନନୀଙ୍କ ଆଦେଶ ଲଂଘନ କରି ନ ଥିଲେ । ନିଜ ସନ୍ତାନକୁ 'ମଣିଷ ପରି ମଣିଷ' କରିବାକୁ କେଉଁ ଜନନୀର ଆଗ୍ରହ ନ ହୁଏ ? କିନ୍ତୁ ସବୁ ମା'ଙ୍କୁ କିପରି ମଣିଷ ଗଠନ ହୁଏ ତାହା ଜଣା ନ ଥାଏ ! ଆଧୁନିକା ଜନନୀମାନେ ପାରିବାରିକ ଦ୍ୱନ୍ଦ୍ୱ କଳହରେ ଲିପ୍ତ ରହି ନିଜ ଅଜ୍ଞାତସାରରେ ଦୁଗ୍ଧପୋଷ୍ୟ ଶିଶୁମାନଙ୍କ ହୃଦୟ ଈର୍ଷା-ବିଷରେ କଳୁଷିତ କରିଲା ବେଳେ ଭାବିପାରନ୍ତି ନାହିଁ ଯେ, ଏଥିପାଇଁ ଭବିଷ୍ୟତ-ଦୈବଜ୍ଞ 'ଅସାଧାରଣ ଲକ୍ଷଣାକ୍ରାନ୍ତ' ବୋଲି କହିଥିବା ଜଣେ ବାଳକ ଭବିଷ୍ୟତରେ ପରଶ୍ରୀକାତର, ସଂକୀର୍ଣ୍ଣଚେତା, ହୀନବିଳାସୀ 'ବାବୁ'ରେ ପରିଣତ ହେବ ! ବଙ୍ଗଳାର ଜନକ-ଜନନୀ ସନ୍ତାନ ଉତ୍ପାଦନ ଓ ପ୍ରସବ କରିବାରେ ସୁଦକ୍ଷ; କିନ୍ତୁ ସେମାନଙ୍କୁ କିପରି ଗଠନ କରିବାକୁ ହୁଏ, ତାହା ଜାଣନ୍ତି ନାହିଁ, ଶିଖନ୍ତି ନାହିଁ କି ଭାବନ୍ତି ନାହିଁ । ଗତାନୁଗତିକ ଭାବରେ ତିନିବେଳା ଖାଇବାକୁ ଦେଇ ପରେ ବିଶ୍ୱସଂସାରରେ ଆଣ୍ଠୁମାଡ଼ି ଦୁଇ ମୁଠା ଖୁଣ୍ଟି ଖାଇବାକୁ ସନ୍ତାନମାନଙ୍କୁ ଛାଡ଼ି ଦିଅନ୍ତି — ଫଳରେ ନର-ନାରୀ ସଂଖ୍ୟା ବୃଦ୍ଧି ପାଉଛି ସତ୍ୟ; କିନ୍ତୁ କ୍ରମେ 'ମଣିଷ'ଙ୍କ ସଂଖ୍ୟା ବିରଳ ହୋଇଯାଉଛି ।

ଜନନୀ ଭୁବନେଶ୍ୱରୀ ଦେବୀ ନିଜେ ସିଂହିନୀ ଥିଲେ ବୋଲି ନରେନ୍ଦ୍ରନାଥଙ୍କ ପରି ପୁରୁଷସିଂହ ପ୍ରସବ କରିଥିଲେ । ନାରୀସୁଲଭ କୋମଳତାର ଅନ୍ତରାଳରେ ତାଙ୍କ ଚରିତ୍ରରେ ଏପରି ଦୃଢ଼ତା ଥିଲା, ଯାହା କି ଅନ୍ୟାୟ, ଅସତ୍ୟ ଓ ଅବିଚାର

ବିରୋଧରେ ସର୍ବଦା ସଦର୍ପ ଶିର ଉନ୍ନତ କରି ଦଣ୍ଡାୟମାନ ହେଉଥିଲା । ଅତୀତର ରାଜପୁତ୍ ରମଣୀଙ୍କ ପରି ମହତ୍ତମ ବ୍ରତ ଗ୍ରହଣ କରିବା ନିମିତ୍ତ ସେ ଯେପରି ନିଜ ପୁତ୍ରମାନଙ୍କୁ ଉତ୍ସାହିତ ଓ ଉତ୍ତେଜିତ କରୁଥିଲେ, ସେ କଥା ଏବେ ମଧ୍ୟ ଦେଶବାସୀ ଭୁଲି ନାହାନ୍ତି । ସ୍ୱାମୀ ବିବେକାନନ୍ଦ ଦେହତ୍ୟାଗ କରିବା ପରେ ମଧ୍ୟ ନଅବର୍ଷ ପର୍ଯ୍ୟନ୍ତ ଏହି ମହିମାମୟୀ ମହିଳା ଜୀବିତା ଥିଲେ । ସେ ତାଙ୍କ ଆଦରର ପୁତ୍ର ନରେନ୍ଦ୍ରନାଥଙ୍କୁ ସ୍ୱାମୀ ବିବେକାନନ୍ଦରେ ପରିଣତ ହେବାର ଦେଖିଥିଲେ । ଏହି ତେଜସ୍ୱିନୀ ରମଣୀ ପୁଣ୍ୟତୋୟା ଭାଗୀରଥି କୂଳରେ ନିଜ ପୁତ୍ରର ଚିତା ପାଖରେ ଠିଆହୋଇ ଅକମ୍ପିତପାଦରେ ଶେଷ ପ୍ରାର୍ଥନାରେ ଯୋଗଦାନ କରିଥିବା ଦୃଶ୍ୟ, ଜଗତ ମୁଗ୍ଧ-ବିସ୍ମୟ ସହିତ ଦେଖିଛି । ସେତେବେଳେ ତାଙ୍କ ଶୋକ-ତାପ-କ୍ଲିଷ୍ଟ ମୁଖମଣ୍ଡଳରେ ଯେଉଁ ବେଦନାର ଛବି ଫୁଟି ଉଠିଥିଲା, ତାହା କେବଳ ସନ୍ତାନମମତା ଯୋଗୁଁ ନୁହେଁ—ବିବେକାନନ୍ଦ ବଞ୍ଚି ରହିଥିଲେ ବିଶ୍ୱ-ମାନବର ପ୍ରଭୂତ କଲ୍ୟାଣ ହୋଇଥାଆନ୍ତା, ଏହି ଦୁଃଖ ହିଁ ତାଙ୍କ ହୃଦୟକୁ ଅଧିକ ବାଧିଲା । ସେ ବିବେକାନନ୍ଦଙ୍କ ଜନନୀ—ଏହି ଗୌରବ-ଗର୍ବ ତାଙ୍କ ସଂଯମ-ସାଧନାକ୍ଲିଷ୍ଟ ସୌମ୍ୟ ମୁଖମଣ୍ଡଳରେ ସର୍ବଦା ଜାଗ୍ରତ ରହି ସାଧାରଣଙ୍କ ଶ୍ରଦ୍ଧା-ବିମିଶ୍ର ସଂଭ୍ରମ ଦୃଷ୍ଟି ଆକର୍ଷଣ କରିଥିଲା । ସେ ୧୯୧୧ ଖ୍ରୀଷ୍ଟାବ୍ଦ ଜାନୁୟାରୀ ପଚିଶ ତାରିଖ ଦିନ ଦେହ ତ୍ୟାଗ କରିଥିଲେ ।

ପିତା ଓ ମାତାଙ୍କ ସ୍ନେହ-କ୍ରୋଡ଼ରେ ପ୍ରାଚୁର୍ଯ୍ୟ ମଧ୍ୟରେ ନରେନ୍ଦ୍ରନାଥଙ୍କ ଶୈଶବ ଓ କୈଶୋର-ଜୀବନ ହସ, ଆନନ୍ଦ ଓ ଖେଳ କୌତୁକରେ କଟିଛି । ତାଙ୍କ ବାଲ୍ୟଜୀବନ ଅଲୌକିକ ବା ଅସାଧାରଣ ନ ହେଲେ ବି ଅନୁପମ । ଷୋହଳ ବର୍ଷ ବୟସରେ ସେ ଯେପରି ତୀକ୍ଷ୍ଣ ବିଦ୍ୟାବୁଦ୍ଧି, ପ୍ରବଳ ଆତ୍ମନିଷ୍ଠା ଓ ଜ୍ଞାନାର୍ଜନ ପ୍ରତି ପ୍ରବଳ ଆଗ୍ରହ ଦେଖାଇଥିଲେ, ତାହା ବସ୍ତୁତଃ ଦୁର୍ଲଭ । ସେ ବାଲ୍ୟକାଳରୁ ପିତାଙ୍କଠାରୁ ସଙ୍ଗୀତ ଶିକ୍ଷା କରିଥିଲେ ଏବଂ ଗୀତବାଦ୍ୟରେ ମଧ୍ୟ ତାଙ୍କର ସେ ସମୟରେ କମ୍ ଦକ୍ଷତା ନ ଥିଲା । ଏହି ମେଧାବୀ, ତେଜସ୍ୱୀ, ଚଞ୍ଚଳ-ଚପଳ ବାଳକ ଗୋଟିଏ ଦିଗରେ ଯେପରି ପରିହାସ-ରସିକ, କ୍ରୀଡ଼ାପ୍ରିୟ ଓ ଉଗ୍ରସ୍ୱଭାବ ଥିଲେ, ଅପର ଦିଗରେ ସେପରି ଗଭୀର ଚିନ୍ତାଶୀଳ, ଧର୍ମପରାୟଣ, ଦୟାଳୁ ଓ ବନ୍ଧୁ-ବତ୍ସଳ ଥିଲେ । ତାଙ୍କ ଭାବଭଙ୍ଗୀରେ ଏପରି ଅକପଟ ସରଳତା ଥିଲା ଯେ ସେ ଆତ୍ମୀୟ ସ୍ୱଜନ ଓ ବନ୍ଧୁବାନ୍ଧବଙ୍କ ନିକଟରେ ପ୍ରିୟରୁ ପ୍ରିୟତର ହୋଇଯାଇଥିଲେ । ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଲେଜରେ ପ୍ରବେଶ କରିବା ପରଠାରୁ ଘଟଣାର ଘାତପ୍ରତିଘାତ ଫଳରେ ନରେନ୍ଦ୍ରଙ୍କ ସହଜ ଓ ସ୍ୱାଭାବିକ ଜୀବନର ଗୋଟିଏ ବିଚିତ୍ର ରହସ୍ୟ-ଜଟିଳ ଅଧ୍ୟାୟ ଆରମ୍ଭ ହେଲା ।

# ଦ୍ୱିତୀୟ ଅଧ୍ୟାୟ

# ସଂସ୍କାର ଯୁଗ

## (୧୮୦୦-୧୮୮୦)

"ସଂସ୍କାରକମାନେ ବିଫଳ-ମନୋରଥ ହୋଇଛନ୍ତି । ଏହାର କାରଣ କ'ଣ ? କାରଣ ସେମାନଙ୍କ ମଧ୍ୟରୁ ଅତି ଅଳ୍ପସଂଖ୍ୟକ ବ୍ୟକ୍ତି ନିଜର ଧର୍ମକୁ ଉତ୍ତମ ରୂପେ ଅଧ୍ୟୟନ ଓ ଆଲୋଚନା କରିଛନ୍ତି ଏବଂ ସେମାନଙ୍କ ମଧ୍ୟରୁ ଜଣେ ହେଲେ କେହି 'ସବୁଧର୍ମର ପ୍ରସୂତିକୁ' ବୁଝିବା ଲାଗି ଯେଉଁ ସାଧନାର ପ୍ରୟୋଜନ, ତାହା ଭିତର ଦେଇ ଯାଇ ନାହାନ୍ତି । ଈଶ୍ୱରଙ୍କ ଦୟାରୁ ମୁଁ ଏହି ସମସ୍ୟା ମୀମାଂସା କରିଛି ବୋଲି ଦାବି କରୁଛି ।"

—ବିବେକାନନ୍ଦ

### ଇଂଲଣ୍ଡର ଭାରତାଧିକାର

ଅଷ୍ଟାଦଶ ଶତାବ୍ଦୀର ଭାରତବର୍ଷରେ ଆଦର୍ଶଭ୍ରଷ୍ଟ ଆତ୍ମବିସ୍ମୃତ ଦୁଇଟି ମହାଜାତିର ବଂଶଧରମାନେ ନିଶ୍ଚିତ ଭାବରେ ଧର୍ମ, ସମାଜ ଓ ରାଷ୍ଟ୍ରର ଅଧଃପତନର ଶେଷ ସୀମାରେ ପହଞ୍ଚିଥିଲେ । ବିଧାତାର ଅଲକ୍ଷ୍ୟ ବିଧାନ ଅନୁସାରେ ଏହି ଦୌର୍ବଲ୍ୟ ଓ ଜଡ଼ତ୍ୱର ଶାସ୍ତି ଅତି ନିଦାରୁଣ ଭାବରେ ଦେଖାଦେଇଥିଲା । ମୋଗଲ ସମ୍ରାଜ୍ୟର ସୁପ୍ରତିଷ୍ଠିତ ମୟୂର-ସିଂହାସନ ଦସ୍ୟୁଦ୍ୱାରା ଲୁଣ୍ଠିତ ହେଲା, ନବବଳଦୃପ୍ତ ମରହଟ୍ଟା ଜାତିର ଗୌରବମୟ ଅଭ୍ୟୁତ୍‌ଥାନରୂପକ ଉନ୍ନତ ମସ୍ତକ ବିଧାତାର ନିର୍ମମ ବକ୍ରଦଣ୍ଡଦ୍ୱାରା ଚୂର୍ଣ୍ଣ ହୋଇଗଲା, ବଣିକ ଇଂରେଜର ମାନଦଣ୍ଡ ସହସା ଭାରତବାସୀଙ୍କ ମୁଣ୍ଡ ଉପରେ ରାଜଦଣ୍ଡ ରୂପେ ଦେଖା ଦେଲା, ଶିଖ-ଗରିମା-ସୂର୍ଯ୍ୟ ଉଦୟାଚଳ-ଶିଖରରେ ଲିଭିଗଲା । ଦ୍ୱାଦଶ ଶତାବ୍ଦୀର ଭାରତବର୍ଷରେ ଯେପରି ନିଃସହାୟ ହୋଇ ହିନ୍ଦୁ ଓ ବୌଦ୍ଧ ଏକସଙ୍ଗରେ ନତଶିର ହୋଇ ମୁସଲମାନ ରାଜଶକ୍ତି ସମ୍ମୁଖରେ ଠିଆ ହୋଇଥିଲେ, ଅଷ୍ଟାଦଶ ଶତାବ୍ଦୀରେ ଠିକ୍ ସେହିପରି ହିନ୍ଦୁ ଓ ମୁସଲମାନ—ଦୁଇଟି ନିରୁପାୟ ଜାତି ସମଭାବରେ ଅପ୍ରତିବାଦରେ ଇଂରେଜମାନଙ୍କ ପଦାନତ ହୋଇପଡ଼ିଲେ । ଏହି ଅଭିନବ ରାଜନୈତିକ ପରିବର୍ତ୍ତନରେ ପଶ୍ଚିମଦେଶାଗତ ବଣିକବ୍ୟାଧଗଣଙ୍କ ସୁଲଭ ମୃଗୟାକ୍ଷେତ୍ରରେ ପରିଣତ ଭାରତବର୍ଷର ଦୈନ୍ୟ ଓ ଦୌର୍ବଲ୍ୟର ପ୍ରାୟଶ୍ଚିତ୍ତ ଆରମ୍ଭ ହେଲା—ଊନବିଂଶ ଶତାବ୍ଦୀରେ ।

ଆଦର୍ଶଭ୍ରଷ୍ଟ ଛତ୍ରଭଙ୍ଗ ହିନ୍ଦୁଜାତି, ସମଗ୍ର ମୁସଲମାନ ଯୁଗରେ ମଧ୍ୟ ପ୍ରାଣପଣ କରି ଜାତୀୟ ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟ ବହୁ ପରିମାଣରେ ଅବ୍ୟାହତ ରଖି ଆତ୍ମରକ୍ଷା କରିବା ଲାଗି ସମର୍ଥ ହୋଇଥିଲା; କିନ୍ତୁ ବ୍ରିଟିଶ-ଯୁଗରେ ଗୋଟିଏ ବିପରୀତ ଶିକ୍ଷା ଓ ସଭ୍ୟତାର ସଂଘାତରେ ପ୍ରାଚୀନ ସମାଜର ପୁରାତନ ରକ୍ଷଣଶୀଳତା

ତିଷ୍ଠିପାରିଲା ନାହିଁ । ମୁସଲମାନ ଶିକ୍ଷା ଓ ସଭ୍ୟତାରୁ ଆତ୍ମରକ୍ଷା କରିବା ଲାଗି ଯେଉଁ କୌଶଳ ଅବଲମ୍ବିତ ହୋଇଥିଲା, ସେଗୁଡ଼ିକର ବିଚାରହୀନ ଅନୁକରଣ ଏହି ଅଭିନବ ଶିକ୍ଷା ଓ ସଭ୍ୟତାର ପ୍ରଭାବକୁ ବାଧା ଦେଇପାରିଲା ନାହିଁ । କାଳ ଓ ଅବସ୍ଥା ଭେଦରେ ଆତ୍ମରକ୍ଷା ଓ ଆତ୍ମପ୍ରତିଷ୍ଠା ଲାଗି ପ୍ରୟୋଜନ ଅନୁସାରେ ବ୍ୟବସ୍ଥା ଗ୍ରହଣ କରିବା ଲାଗି ଏକାନ୍ତ ଅପାରଗ ହିନ୍ଦୁ-ସମାଜ ଶତାବ୍ଦୀ-ସଞ୍ଚିତ କୁସଂସ୍କାରଭାରରେ ପ୍ରାୟ ସବୁ ଦିଗରୁ ପଙ୍ଗୁ ହୋଇଯାଇଥିଲା । ବିଜିତ ଜାତି ସହଜରେ ବିଜୟୀ ଜାତିର ଗୁଣ-ଗାରିମାରେ ଅଭିଭୂତ ହୋଇଯାଏ । କେତେ ଶତାବ୍ଦୀବ୍ୟାପୀ ପରାଧୀନତା ଫଳରେ ଆତ୍ମବିସ୍ମୃତ ହିନ୍ଦୁଜାତି ଆଗରେ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ଯେଉଁଦିନ ମରୁ-ମରୀଚିକାର ସମ୍ମୋହିନୀ ଶକ୍ତି ନେଇ ସୁରଞ୍ଜିତ ଇନ୍ଦ୍ରଧନୁ ପରି ବିବିଧ ବୈଚିତ୍ର୍ୟମୟ ଦୃଶ୍ୟରେ ଉଦ୍‌ଭାସିତ ହୋଇ ଉଠିଲା, ସେହିଦିନ ଭାରତ ଇତିହାସରେ—ବିଶେଷତଃ ବଙ୍ଗାଳୀ ଜାତିର ଇତିହାସରେ ଗୋଟିଏ ନୂତନ ଅଧ୍ୟାୟ ଆରମ୍ଭ ହେଲା । ବଙ୍ଗାଳୀମାନଙ୍କ କଥା ବିଶେଷ ରୂପେ କହିବାର ଉଦ୍ଦେଶ୍ୟ ହେଉଛି ଏହି ଯେ ସେମାନଙ୍କ ପରି ଅନ୍ୟ କୌଣସି ଭାରତୀୟ ଜାତି ଏତେ ଅସଂଯତ ଭାବରେ ପାଶ୍ଚାତ୍ୟ-ସଭ୍ୟତାର ସ୍ରୋତରେ ଭାସିଯିବାକୁ ଚେଷ୍ଟା କରିନାହାନ୍ତି । ଫଳରେ ପାଶ୍ଚାତ୍ୟ ଆଦର୍ଶ ସହିତ ପ୍ରାଚ୍ୟ ଆଦର୍ଶର ସଂଘର୍ଷ ଯୋଗୁଁ ଯେଉଁ ପ୍ରତିକ୍ରିୟା ଆରମ୍ଭ ହେଲା, ଦାସ-ସୁଲଭ ପରାନୁକରଣ ପ୍ରବୃତ୍ତିର ଚପଳତା ସାମାଜିକ ଜୀବନରେ ଯେଉଁ ଚାଞ୍ଚଲ୍ୟ ସୃଷ୍ଟି କଲା, ତାହା ବଙ୍ଗ ପ୍ରଦେଶରେ ପ୍ରବଳାକାର ଧାରଣ କରିଥିଲା ଏବଂ ଏହି ଆନ୍ଦୋଳନର କେନ୍ଦ୍ରସ୍ଥଳ ହେଲା—ଭାରତର ନବପ୍ରତିଷ୍ଠିତ ରାଜଧାନୀ କଲିକତା ନଗରୀ ।

## ଖ୍ରୀଷ୍ଟିଆନ ମିଶନାରୀମାନଙ୍କ ଧର୍ମ ଓ ଶିକ୍ଷାପ୍ରଚାର

ଏ ଦେଶରେ ଇଂରେଜ ରାଜତ୍ୱ ସୁପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ଖ୍ରୀଷ୍ଟିଆନ ମିଶନାରୀମାନେ ନିରୁଦ୍‌ବେଗରେ 'ହିଦେନ'(ପାମର)-ମାନଙ୍କୁ ଅନ୍ଧକାର ମଧ୍ୟରୁ ଆଲୋକରୁ ଆଣିବା ଲାଗି ପଡ଼ି-ଉଠି ଲାଗିଗଲେ; ମିଶନାରୀମାନେ ଦଳ ଦଳ ହୋଇ ଏ ଦେଶକୁ ଆସିଲେ । ଧର୍ମପ୍ରଚାର କରିବାକୁ ଆସି ସେମାନଙ୍କୁ ପ୍ରଥମେ ବଙ୍ଗଳା ଭାଷା ଶିଖିବାକୁ ହେଲା । କ୍ରମେ ଧର୍ମପ୍ରଚାର ପଥରେ ଥିବା ପ୍ରତିବନ୍ଧକ ବିଷୟ ଚିନ୍ତା କରି ସେମାନେ ସ୍ଥିର କଲେ ଯେ, ଶିକ୍ଷା-ବିସ୍ତାର ସଙ୍ଗେ ସଙ୍ଗେ ଖ୍ରୀଷ୍ଟଧର୍ମ ପ୍ରଚାର ଆରମ୍ଭ କଲେ ପ୍ରଚାରକାର୍ଯ୍ୟ ଅପେକ୍ଷାକୃତ ସହଜ ହେବ । ଏହି ନୀତି ଅନୁସରଣ କରି ସେମାନେ ସ୍ଥାନେ ସ୍ଥାନେ ବିଦ୍ୟାଳୟ ପ୍ରତିଷ୍ଠା କଲେ ଏବଂ ଶିକ୍ଷା ଛଳରେ କୋମଳମତି ବାଳକ ବା ସରଳମତି ଯୁବକମାନଙ୍କ ହୃଦୟରେ ଖ୍ରୀଷ୍ଟଧର୍ମର ମହିମା ମୁଦ୍ରିତ କରିବାକୁ ପ୍ରାଣପଣେ ପ୍ରୟାସୀ ହେଲେ । ଅବଶ୍ୟ ଜଣେ ଜଣେ ଉଦାରହୃଦୟ ମିଶନାରୀ ବା ଇଂରେଜ କେବଳ ଶିକ୍ଷା ବିସ୍ତାର ଲାଗି ଶିକ୍ଷା ପ୍ରଦାନ କରିବାକୁ ଉଦ୍ୟତ ହୋଇଥିଲେ ଏବଂ ତଦୁଦ୍ଦେଶ୍ୟରେ ବାଧା ଓ ବିପତ୍ତି

ବିରୋଧରେ ଯଥେଷ୍ଟ ସଂଗ୍ରାମ କରିଥିଲେ — ବଙ୍ଗାଳୀ ଜାତି ଏତେ ଅକୃତଜ୍ଞ ନୁହେଁ ଯେ, ସେମାନଙ୍କର ପୁଣ୍ୟସ୍ମୃତି ସହଜରେ ଜାତୀୟ ଇତିହାସରୁ ଲିଭାଇ ଦେବ ।

୧୮୦୦ ଖ୍ରୀଷ୍ଟାବ୍ଦରେ କଲିକତା ସହରରେ ପ୍ରଥମେ ଫୋର୍ଟଉଇଲିୟମ୍ କଲେଜ ସ୍ଥାପିତ ହେଲା । ଠିକ୍ ସେହିବର୍ଷ ଆଧୁନିକ ଶିକ୍ଷାର ଅନ୍ୟତମ ଜନକ ଡେଭିଡ୍ ହେଆର ବଙ୍ଗପ୍ରଦେଶକୁ ଆସିଲେ । ଏହି ମହାପୁରୁଷ ନାସ୍ତିକ ହେଲେ ହେଁ ବିବିଧ ସଦ୍‌ଗୁଣାବଳୀର ଆଧାର ଥିଲେ । କିଛିଦିନ ପରେ ସେ ବିଷୟକର୍ମ ପରିତ୍ୟାଗ କରି ଏକମାତ୍ର ଶିକ୍ଷାପ୍ରଚାର ଲାଗି ଆତ୍ମନିୟୋଗ କଲେ ।

## ରାଜା ରାମମୋହନ ରାୟ

ଖ୍ରୀଷ୍ଟିଆନ ମିଶନାରୀମାନେ କ୍ରମେ କ୍ରମେ ସାହସ ପାଇ ଧର୍ମବିଦ୍ୱେଷ-ବିଷ ଉଦ୍‌ଗୀରଣ କରିବାରେ ଲାଗିଲେ । ପ୍ରାଚୀନ, ସ୍ଥବିର, ଜଡ଼ପିଣ୍ଡତୁଲ୍ୟ ହିନ୍ଦୁସମାଜ କାନ ଡେରି ଶୁଣିଲେ ଯେ ହିନ୍ଦୁମାନଙ୍କ ଆଚାର ବ୍ୟବହାର, ରୀତିନୀତି ସବୁ ଖରାପ — ଭୟାବହ ପୈଶାଚିକତାପୂର୍ଣ୍ଣ । ଏହାର ଫଳସ୍ୱରୂପ ସେମାନେ ଇହଲୋକର ସର୍ବବିଧ ସୁଖଭୋଗରୁ ବଞ୍ଚିତ ହେବେ ଏବଂ ପରଲୋକରେ ନର୍କକୁ ଯିବେ । ଯେତେ ପ୍ରକାର ନିନ୍ଦା କରାଯାଇପାରେ, ମିଶନାରୀମାନେ ସେଥିରୁ କୌଣସିଟି ପ୍ରୟୋଗ କରିବାକୁ ବାକି ରଖିଲେ ନାହିଁ । ଜଣେ ଇଂରେଜ-ମହିଳା ମିଶନାରୀ ହିନ୍ଦୁଧର୍ମକୁ ଗାଳି ଓ ଅଭିଶାପ ଦେବା ଲାଗି ଭାଷା ଖୋଜି ନ ପାଇବାରୁ ଅବଶେଷରେ ପ୍ରାଣର ଜ୍ୱାଳା ମେଣ୍ଟାଇବା ନିମିତ୍ତ ଅନେକ ଗବେଷଣା ପରେ ସ୍ଥିର କଲେ — Crystallized immorality and Hinduism are same thing.'' ଅର୍ଥାତ୍ ସ୍ଫଟିକାକାରରେ ଘନୀଭୂତ ଅପବିତ୍ରତା ଓ ହିନ୍ଦୁଧର୍ମ ଏକା ଜିନିଷ । ପ୍ରାଚୀନ ସମାଜ ତଥାପି ନିଶ୍ଚଳ — କୌଣସି ଉତ୍ତର ଦେଲା ନାହିଁ । ନୀରବରେ ମୁଣ୍ଡ ପୋତି ସବୁପ୍ରକାର ଗାଳି ଓ ଅଭିଶାପ ସହିଲା । ଉତ୍ତର ଦେବା ବା ପ୍ରତିବାଦ କରିବାର କ୍ଷମତା ପ୍ରାଚୀନ ସମାଜ ବୋଧହୁଏ ହରାଇଥିଲା । କଲିକତାର ବାବୁମାନେ ବାରବନିତାର ସେବା ଅଶ୍ଳୀଳ ଆମୋଦ-ପ୍ରମୋଦ, ବାବୁଗିରି ଇତ୍ୟାଦିରେ ବିଭୋର — ଏବଂ ବ୍ରାହ୍ମଣ ପଣ୍ଡିତମାନେ ବଡ଼ଲୋକଙ୍କର ଉପାସନା, ଦେଶାଚାର, ଲୋକାଚାର, ସ୍ତ୍ରୀ-ଆଚାର ପ୍ରଭୃତି ଯଥାଯଥରୂପେ ପ୍ରତିପାଳନ କରି ନିଶ୍ଚିନ୍ତ ଆଳସ୍ୟରେ ଜୀବନଯାପନ-ପରାୟଣ ହେଲେ । ଏହି ସମୟରେ ଜଣେ ମେଧାବୀ ମହାପୁରୁଷ ଆବିର୍ଭୁତ ହେଲେ — ତନ୍ଦ୍ରାଚ୍ଛନ୍ନ ବଙ୍ଗାଳୀ ଜାତି ଆଖି ଖୋଲି ଦେଖିଲା — ଧୂମକେତୁର ବିଭୀଷିକା ଘେନି ଉଠୁଥିବା ପାଶ୍ଚାତ୍ୟ ସଭ୍ୟତାର ଉଦ୍ଭ୍ରାନ୍ତ ଆଲୋକରେ ମଣ୍ଡିତ — ମହାମନୀଷୀ ରାଜା ରାମମୋହନ ରାୟ ।

## ରାମମୋହନଙ୍କ ଧର୍ମ-ସଂସ୍କାର

୧୮୧୪ ଖ୍ରୀଷ୍ଟାବ୍ଦରେ ରାମମୋହନ ରଙ୍ଗପୁରରୁ କଲିକତା ଆସି 'ଆତ୍ମୀୟ ସଭା' ସ୍ଥାପନ କରି ବେଦାନ୍ତ ଆଲୋଚନାର ସୂତ୍ରପାତ କଲେ । ବଙ୍ଗ ପ୍ରଦେଶରେ

ବହୁଦିନରୁ ବିଲୁପ୍ତ ହୋଇଥିବା ବେଦାନ୍ତ ଆଲୋଚନାର ଏହା ହେଲା ପ୍ରଥମ ପୁନରୁଦ୍ଧାର—ଏ କଥା ଅତିରଞ୍ଜନ ନ କରି କୁହାଯାଇପାରେ । ରାମମୋହନ ଦେଶର ଅବସ୍ଥା ଓ ସ୍ୱଭାବ ବୁଝି ଅନୁକୂଳ ଓ ପ୍ରତିକୂଳ ସମାଲୋଚନାରେ ବିଚଳିତ ନ ହୋଇ କର୍ତ୍ତବ୍ୟ କାର୍ଯ୍ୟ ଆରମ୍ଭ କଲେ ।

ଅନ୍ୟ ଦିଗରେ ଧର୍ମ-ସଂସ୍କାର ଲାଗି ବେଦାନ୍ତ ପ୍ରଚାର କରିବାକୁ ଯାଇ ରାମମୋହନ ମୂର୍ତ୍ତିପୂଜାର ପ୍ରୟୋଜନୀୟତା ଅସ୍ୱୀକାର କଲେ ଏବଂ ନିଜକୁ ଏକେଶ୍ୱରବାଦୀ ବୋଲି ଘୋଷଣା କଲେ; ଫଳରେ ପ୍ରାଚୀନ ହିନ୍ଦୁସମାଜ ଅସହିଷ୍ଣୁ ହୋଇ ଉଠିଲା । ରାମମୋହନଙ୍କ ପଦାଙ୍କ ଅନୁସରଣ କରି ଉଇଲିୟମ ଆଡାମ୍ ନାମକ ଜନୈକ ମିଶନାରୀ ୧୮୨୧ରେ ଖ୍ରୀଷ୍ଟିୟ ତ୍ରିତ୍ୱବାଦ ପରିତ୍ୟାଗ କରି ଏକେଶ୍ୱରବାଦ ଗ୍ରହଣ କଲେ । ଏଇ ଘଟଣାରେ ମିଶନାରୀ ସମାଜରେ ଗୋଟିଏ ଉତ୍ତେଜନାର ସୃଷ୍ଟି ହେଲା । ମିଶନାରୀମାନେ ଦେଖିଲେ, 'ପୌତ୍ତଳିକତା' ବା ତଥାକଥିତ ଆଚାର-ବ୍ୟବହାର ଉପରେ ହିନ୍ଦୁଧର୍ମ ପ୍ରତିଷ୍ଠିତ ନୁହେଁ; ବେଦାନ୍ତଦର୍ଶନ ହେଉଛି ଏହାର ମୂଳଭିତ୍ତି । ମ୍ୟାର୍ସମ୍ୟାନ୍, କେରୀ ପ୍ରଭୃତି ଶ୍ରୀରାମପୁରସ୍ଥ ମିଶନାରୀମାନେ ଦିଗ୍‌ବିଦିଗ ଜ୍ଞାନଶୂନ୍ୟ ହୋଇ ବେଦାନ୍ତ ଦର୍ଶନକୁ ଆକ୍ରମଣ କଲେ । ରାମମୋହନ ଏଥିପାଇଁ ପ୍ରସ୍ତୁତ ଥିଲେ । ସେ ଧୀର ଭାବରେ ସେମାନଙ୍କ ଅଯୌକ୍ତିକ ମତଗୁଡ଼ିକୁ ଗୋଟି ଗୋଟି କରି ଖଣ୍ଡନ କଲେ । ଏହି ବିଖ୍ୟାତ ବେଦାନ୍ତଯୁଦ୍ଧ ଗୋଟିଏ ଐତିହାସିକ ଘଟଣା । ବଙ୍ଗାଳୀମାନଙ୍କୁ ଖ୍ରୀଷ୍ଟିୟାନ କରିବା ଲାଗି ମିଶନାରୀମାନଙ୍କ ପ୍ରାଣପଣ ଚେଷ୍ଟା ବିରୋଧରେ ରାଜା ରାମମୋହନ ଏକାକୀ ଦଣ୍ଡାୟମାନ ହୋଇଥିଲେ । କହିବା ବାହୁଲ୍ୟ ଯେ ସେତେବେଳେର ହିନ୍ଦୁସମାଜ ତାଙ୍କ ପଛରେ ରହି ସମର୍ଥନ କରିବା ତ ଦୂରର କଥା, ବରଂ ତାଙ୍କର ବିରୁଦ୍ଧାଚରଣ କଲେ । ଗୋଟିଏ ପାଖରେ ନିଜ ଜାତିର ଶତାବ୍ଦୀ-ସଞ୍ଚିତ କୁସଂସ୍କାର, ଅନ୍ୟଦିଗରେ ଖ୍ରୀଷ୍ଟିଆନୀ ଧର୍ମାନ୍ଧତାପ୍ରସୂତ ହିନ୍ଦୁଧର୍ମ ଓ ଦର୍ଶନର ଭ୍ରାନ୍ତ ବ୍ୟାଖ୍ୟା—ଏହି ଉଭୟ ଶତ୍ରୁ ବିରୋଧରେ ଯୁଗପତ୍ ରାମମୋହନଙ୍କୁ ଶାସ୍ତ୍ର ଓ ଯୁକ୍ତି ପ୍ରୟୋଗ କରିବାକୁ ହେଲା ।

ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଅସୀମ ଶକ୍ତିଶାଳୀ ରାମମୋହନଙ୍କ ଚିନ୍ତା ଓ ଚରିତ୍ର ସମାଜର ଅଭ୍ୟସ୍ତ ଜଡ଼ତା ଉପରେ ପୁନଃ ପୁନଃ ଆଘାତ କରି ଗୋଟିଏ ନବଜୀବନର ଚମକ ସୃଷ୍ଟିକଲା । ଅଧଃପତିତ ଜାତିର ଧର୍ମ, ସମାଜ ଓ ରାଷ୍ଟ୍ରକୁ ହୀନତାର ପଙ୍କଶଯ୍ୟା ଭିତରୁ ଟାଣିଆଣିବା ଲାଗି ରାଜା ରାମମୋହନ ସବୁପ୍ରକାର ପ୍ରତିକୂଳ ଶକ୍ତି ବିରୋଧରେ ଏକାକୀ ସଂଗ୍ରାମ କରି ଯେଉଁ ଅସାଧ ସାଧନ କରିଥିଲେ, ଏବେ ଗୋଟିଏ ଶତାବ୍ଦୀ ପରେ ସେ ସମ୍ବନ୍ଧରେ ସମ୍ୟକ୍ ଧାରଣା କରିବା କଷ୍ଟସାଧ ।

## 'ବ୍ରହ୍ମସଭା' ଓ 'ଧର୍ମସଭା'

ନିୟମିତ ଭାବରେ ବେଦାନ୍ତ ଆଲୋଚନା ଲାଗି ରାମମୋହନ କେତେଜଣ ବନ୍ଧୁଙ୍କ ସହଯୋଗରେ ୧୮୨୯ ଖ୍ରୀଷ୍ଟାବ୍ଦରେ 'ବ୍ରହ୍ମସଭା' ସ୍ଥାପନ କଲେ । ଅଦ୍ୱୟ ବ୍ରହ୍ମତତ୍ତ୍ୱର ଆଲୋଚନା ସଙ୍ଗେ ସଙ୍ଗେ ଶିକ୍ଷାସଂସ୍କାର ଇତ୍ୟାଦି ଆନ୍ଦୋଳନ ମଧ୍ୟ ଚାଲିଲା । ରାମମୋହନଙ୍କ ନେତୃତ୍ୱରେ ଗଠିତ ସଂସ୍କାରକ ଦଳର ଚିନ୍ତାଧାରାରୁ ସମାଜକୁ ରକ୍ଷାକରିବା ନିମିତ୍ତ ରକ୍ଷଣଶୀଳଦଳ ସାର୍ ରାଧାକାନ୍ତ ଦେବଙ୍କ ନେତୃତ୍ୱରେ ଗୋଟିଏ 'ଧର୍ମସଭା' ପ୍ରତିଷ୍ଠା କଲେ । ସେମାନେ ରାମମୋହନଙ୍କୁ ନାନା ପ୍ରକାର ବାଧା ଦେଇ ସୁଦ୍ଧା ନିରୁତ୍ସାହିତ କରିପାରିଲେ ନାହିଁ । ୧୮୨୯ ସାଲ ଡିସେମ୍ବର ମାସ ଚାରି ତାରିଖ ଦିନ ରାମମୋହନଙ୍କ ଚେଷ୍ଟା ଫଳରେ ସତୀଦାହ-ପ୍ରଥା ନିବାରଣ ଲାଗି ଆଇନ ପ୍ରଣୀତ ହେଲା । ଲର୍ଡ ଉଇଲିୟମ ବେଣ୍ଟିକ୍ ରାଜା ରାମମୋହନଙ୍କ ଯୁକ୍ତିର ସାରବତ୍ତା ହୃଦୟଙ୍ଗମ କଲେ । ରାଜାଙ୍କ ପରାମର୍ଶ ଅନୁସାରେ ବଡ଼ଲାଟ ବାହାଦୂର ଗଙ୍ଗାସାଗରରେ 'ସନ୍ତାନ-ବିସର୍ଜନ' ପ୍ରଥାକୁ ମଧ୍ୟ ଆଇନ୍‌ଦ୍ୱାରା ବନ୍ଦ କରାଇଦେଲେ । ବିଧବାମାନଙ୍କୁ ଜୀଅନ୍ତା ପୋଡ଼ି ମାରି ନ ପାରିବାରୁ ପ୍ରାଚୀନ ସମାଜ 'ହିନ୍ଦୁଧର୍ମ ନଷ୍ଟ ହୋଇଗଲା' ବୋଲି ଚିତ୍କାର ଆରମ୍ଭ କଲା । ବଙ୍ଗାଳୀ ଜାତିର ଲଲାଟରୁ ରାମମୋହନଙ୍କ ଚେଷ୍ଟାରେ ଦୁଇଟି ଦୁରପନେୟ କଳଙ୍କରେଖା ଲିଭିଗଲା । ସାର୍ ରାଧାକାନ୍ତ ଦେବଙ୍କ ଦଳ ରାମମୋହନଙ୍କ ବିରୋଧରେ ପ୍ରତିବାଦସ୍ୱରୂପ ମୂର୍ତ୍ତିପୂଜାକୁ ସମର୍ଥନ କଲେ । ଏହି ବାଦାନୁବାଦ ଫଳରେ ଆଉ ଯାହା ହେଉନା କାହିଁକି, ହିନ୍ଦୁମାନଙ୍କ ବିସ୍ମୃତ ଶାସ୍ତ୍ରଗୁଡ଼ିକ ନାନାଭାବରେ ଆଲୋଚିତ ହେଲା । ଉପନିଷଦ୍‌ର ନିଗୂଢ଼ ମର୍ମ-କଥା ବୟାନ କରି ଅଦ୍ୱୈତ-ବେଦାନ୍ତ ପ୍ରଚାର ଅପେକ୍ଷା ରାମମୋହନଙ୍କୁ ମୂର୍ତ୍ତିପୂଜା ଅସ୍ୱୀକାର ଏବଂ ସମାଜ-ସଂସ୍କାର ଚେଷ୍ଟା ପ୍ରାଚୀନ ରକ୍ଷଣଶୀଳ ସମାଜକୁ ଅତ୍ୟଧିକ ଚଞ୍ଚଳ କଲା, ଅଥଚ ସେକାଳର ରକ୍ଷଣଶୀଳ ଦଳଙ୍କ ଆନ୍ଦୋଳନରେ ବି ସଂସ୍କାର-ଇଚ୍ଛା ଥିଲା । ସେ ସମୟରେ ରାମମୋହନଙ୍କ ପ୍ରତିଦ୍ୱନ୍ଦୀ ସାର୍ ରାଧାକାନ୍ତ ମଧ୍ୟ ସ୍ତ୍ରୀ-ଶିକ୍ଷା ବିଷୟରେ ଆନ୍ଦୋଳନ କରିଥିଲେ ।

## ପାଶ୍ଚାତ୍ୟ-ଶିକ୍ଷାର କୁଫଳ ଓ ଡି'ରୋଜିଓ

ପାଶ୍ଚାତ୍ୟ ପ୍ରଣାଳୀରେ ଇଂରେଜୀ ଭାଷା ସାହାଯ୍ୟରେ ଶିକ୍ଷାଦାନ ଲାଗି ବିଦ୍ୟାଳୟ ଆଦି ସ୍ଥାପନ କରିବା ନିମିତ୍ତ ଆନ୍ଦୋଳନ କରି ରାଜା ରାମମୋହନ ତତ୍‌କାଳୀନ ରାଜପୁରୁଷମାନଙ୍କର ଆନୁକୂଲ୍ୟ ଓ ସହାନୁଭୂତି ଲାଭ କରିଥିଲେ; କେତେଜଣ ମହାନୁଭବ ଭାରତୀୟ ମଧ୍ୟ ତାଙ୍କୁ ଯଥୋଚିତ ସାହାଯ୍ୟ କରିଥିଲେ । ତାହାର ଫଳସ୍ୱରୂପ ଯେତେବେଳେ ୧୮୧୭ରେ ତାଙ୍କ ଚେଷ୍ଟାରେ ହିନ୍ଦୁ କଲେଜ ସ୍ଥାପିତ ହେଲା, ସେତେବେଳେ ପ୍ରାଚୀନପନ୍ଥୀମାନେ ରାମମୋହନଙ୍କୁ ଏହାର ସଭ୍ୟ କରିବାକୁ ଅସ୍ୱୀକୃତ ହେଲେ । ମହାନୁଭବ ରାଜା ଅମ୍ଳାନ ବଦନରେ ଦେଶର

ମୁହଁକୁ ଚାହିଁ ସେ ଅପମାନକୁ ସହ୍ୟ କରିନେଲେ । ସେ କେବଳ କହିଲେ, ''ସେ କିପରି କଥା ? ମୋ ନାଁଟା ରହିବା ଏଡ଼େ ବଡ଼ ବ୍ୟାପାର ଯେ ସେଥିପାଇଁ ଗୋଟିଏ ଭଲ କାର୍ଯ୍ୟକୁ ନଷ୍ଟ କରିବାକୁ ହେବ ?'' ଇଂରେଜୀ ଶିକ୍ଷା ପ୍ରଚଳନ ବିରୋଧରେ ଅନେକ ଲୋକ ଆନ୍ଦୋଳନ କରିଥିଲେ ସତ, କିନ୍ତୁ ତାହା ତିଷ୍ଠିଲା ନାହିଁ ।

କାଳକ୍ରମେ ହିନ୍ଦୁ କଲେଜର ଛାତ୍ରବୃନ୍ଦ ପାଶ୍ଚାତ୍ୟ ଶିକ୍ଷା ଦୀକ୍ଷା ଯୋଗୁଁ ସ୍ୱେଚ୍ଛାଚାରୀ ହେଲେ, ସ୍ୱାଧୀନତା ନାମରେ ଉଚ୍ଛୃଙ୍ଖଳତା ଆରମ୍ଭ ହେଲା । ଅଖାଦ୍ୟ ଭକ୍ଷଣ, ସୁରାପାନ, ପ୍ରକାଶ୍ୟ ସ୍ଥାନରେ ମୁସଲମାନ ଦୋକାନରୁ ମାଂସାଦି କ୍ରୟ କରି ଭକ୍ଷଣ ଇତ୍ୟାଦି ସତ୍‌ସାହସର ଦୃଷ୍ଟାନ୍ତ ରୂପେ ବିବେଚିତ ହେଲା । କଲିକତାର ଏହି କ୍ଷୁଦ୍ର ସାମାଜିକ ବିପ୍ଳବରେ ସହାୟତା କଲେ— କଲେଜର ଖ୍ରୀଷ୍ଟିଆନ ଅଧ୍ୟାପକବୃନ୍ଦ ! ଏହି ସମୟରେ ଅଷ୍ଟାଦଶ ଶତାବ୍ଦୀରେ ଫରାସୀବିପ୍ଳବ-ସାଗରମନ୍ଥିତ ଗରଳ ଘେନି ଆସିଲେ—ପ୍ରତିଭାଶାଳୀ ଶିକ୍ଷକ ଡି'ରୋଜିଓ । ସେ ଜାତିରେ ଇଉରେସିଆନ୍; ତାଙ୍କ ଧର୍ମ କ'ଣ ଥିଲା, ତାହା ସ୍ଥିର କରି କହିବା କଠିନ । ତାଙ୍କର ମୂଳମନ୍ତ୍ର ଥିଲା—ଅପ୍ରତିହତ ବ୍ୟକ୍ତିଗତ ସ୍ୱାଧୀନତା ସର୍ବତୋଭାବରେ ଉପଭୋଗ କରିବାକୁ ହେବ ।

ଦୃଢ଼ହୃଦୟ ଶକ୍ତିଶାଳୀ ଶିକ୍ଷକ ଡି'ରୋଜିଓଙ୍କୁ ନେତାରୂପେ ପାଇ ହିନ୍ଦୁ କଲେଜର ଛାତ୍ରବୃନ୍ଦ ଉତ୍ସାହରେ ଅଧୀର ହୋଇ ପଡ଼ିଲେ । ସେମାନଙ୍କ ଆଚାର ବ୍ୟବହାର କ୍ରମେ ସମାଜର ସମସ୍ତଙ୍କ ପକ୍ଷରେ ଅସହନୀୟ ହୋଇଗଲା । ହିନ୍ଦୁର ସବୁପ୍ରକାର ଆଚାର, ଏପରିକି ହିନ୍ଦୁତ୍ୱକୁ କୁସଂସ୍କାର ବୋଲି ଅଦ୍ଭୁତ ଧାରଣା କରି ସେମାନେ ''କୁସଂସ୍କାର ଭଞ୍ଜନ ଓ ଚରିତ୍ରର ଉନ୍ନତି ସାଧନର ଗୋଟିଏ ପ୍ରଧାନ ଉପାୟ'' ସ୍ୱରୂପ ଅବାଧ ସୁରାପାନ ସ୍ରୋତରେ ନିଜକୁ ବୁଡ଼ାଇ ଦେଲେ । ହିନ୍ଦୁ କଲେଜର କୃତବିଦ୍ୟ ଛାତ୍ରଗଣ କ୍ରମେ ବଙ୍ଗ ପ୍ରଦେଶର ବିଭିନ୍ନ ନଗରୀକୁ ଯାଇ ଏହି ଆଦର୍ଶ ପ୍ରଚାର କଲେ । ସେମାନଙ୍କର ହଇଗୋଳ ଓ ଉଚ୍ଛୃଙ୍ଖଳତା କ୍ରମେ ଧୈର୍ଯ୍ୟର ସୀମା ଲଂଘନ କଲା । ଇତିମଧ୍ୟରେ ୧୮୩୦ ଖ୍ରୀଷ୍ଟାବ୍ଦରେ ପାଦ୍ରି ଆଲେକ୍‌ଜାଣ୍ଡର ଡଫ୍ କଲିକତାରେ ପହଞ୍ଚିଲେ । ରାମମୋହନ ତାଙ୍କ ପାଇଁ ଗୋଟିଏ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଏଥିପୂର୍ବରୁ ରାମମୋହନଙ୍କ ବନ୍ଧୁ ଆଡାମ ସାହେବ ମଧ୍ୟ ଗୋଟିଏ ବିଦ୍ୟାଳୟ ବସାଇ ଦେଲେ । ହିନ୍ଦୁ କଲେଜରେ ଧର୍ମଶିକ୍ଷା ଦିଆଯାଉ ନ ଥିଲା । ଛାତ୍ରମାନଙ୍କ ନୈତିକ ଚରିତ୍ରର ମେରୁଦଣ୍ଡ ଭାଙ୍ଗିଯାଉଥିବାର ଦୁରବସ୍ଥା ଦେଖି ରାମମୋହନ ଶିକ୍ଷାକୁ ଧର୍ମାନୁଗତ କରିବା ଲାଗି ଚେଷ୍ଟିତ ହେଲେ । ଏହି ସମୟରେ ରାମମୋହନଙ୍କୁ ନାନା କାର୍ଯ୍ୟ ଲାଗି ବିଲାତ ଯିବାକୁ ହେଲା । ଭାରତବର୍ଷରୁ ସର୍ବପ୍ରଥମ ହିନ୍ଦୁ-ସନ୍ତାନ ରାମମୋହନ ବିଲାତ ଗଲେ ଏହା ଗୋଟିଏ ଐତିହାସିକ ଘଟଣା ହେଲା ଏବଂ ଏଥିରେ ରାମମୋହନଙ୍କ ଦୁଃସାହସର ସୀମା ନ ଥିଲା !

ହିନ୍ଦୁ କଲେଜର ଛାତ୍ରମାନଙ୍କର ଭୟାବହ ପୈଶାଚିକ ଆଚାର-ବ୍ୟବହାର—ତାଙ୍କର ବଡ଼ ଆଦରର ପାଶ୍ଚାତ୍ୟ ଶିକ୍ଷାର ବିଷମୟ ବିକୃତ ପରିଣାମ ପର୍ଯ୍ୟବେକ୍ଷଣ କରି ରାମମୋହନ ବ୍ୟଥିତ ହେଲେ । ତାଙ୍କ ଜୀବନୀ-ଲେଖକ ଲେଖିଛନ୍ତି—"ରାମମୋହନ ପ୍ରଥମ ଜୀବନରେ ସ୍ୱଦେଶବାସୀମାନଙ୍କର ଅତ୍ୟଧିକ ବିଶ୍ୱାସପ୍ରବଣତା ଦେଖି ହୃଦୟରେ ଗଭୀର ବେଦନା ଅନୁଭବ କରୁଥିଲେ ଏବଂ ଏହା ବିରୋଧରେ ସମୁଦାୟ ଶକ୍ତି ନିୟୋଜିତ କରିଥିଲେ; କିନ୍ତୁ ପରବର୍ତ୍ତୀ କାଳରେ ସେ ବୁଝିପାରିଲେ ଯେ, ଏତେ ସାଂଘାତିକ ନ ହେଲେ ବି ଅତ୍ୟନ୍ତ ବିଶ୍ୱାସ ମଧ୍ୟ ବିପଜ୍ଜନକ । କଲିକତାରେ ବିଶେଷତଃ ଯୁବକମାନଙ୍କଦ୍ୱାରା ଗଠିତ ଗୋଟିଏ ଦଳ ବିଷୟରେ ସେ ଏହା କ୍ଷୋଭର ସହିତ ଉଲ୍ଲେଖ କରୁଥିଲେ । ସେ ଯୁବକମାନଙ୍କ ମଧ୍ୟରୁ କେହି କେହି ମଧ୍ୟ ବୁଦ୍ଧିମାନ ଥିଲେ ଏବଂ ସର୍ବତୋଭାବରେ ସନ୍ଦେହବାଦୀ ହୋଇ ଉଠିଲେ । ସେ କହୁଥିଲେ, ଏହି ଦଳ ହିନ୍ଦୁ ଓ ଫିରିଙ୍ଗୀ ଯୁବକମାନଙ୍କଦ୍ୱାରା ଗଠିତ ହୋଇଛି; ସେମାନେ ଅଭିନବ ଶିକ୍ଷାପ୍ରଣାଳୀ ପ୍ରଭାବରେ ନିଜ ଧର୍ମମତ ବର୍ଜନ କରୁଥିଲେ, କିନ୍ତୁ ଅନ୍ୟ କୌଣସି ଧର୍ମ ଗ୍ରହଣ କରୁ ନ ଥିଲେ । ଏହିଭଳି କୌଣସି ଧର୍ମ ପ୍ରତି ଆସ୍ଥାହୀନତା ଜଣେ କୁସଂସ୍କାରାଚ୍ଛନ୍ନ ହିନ୍ଦୁର ଅବସ୍ଥାନଠାରୁ ଅଧିକତର ଶୋଚନୀୟ ଏବଂ ସେମାନଙ୍କ ମତବାଦ ସର୍ବବିଧ ନୈତିକ ଉନ୍ନତିର ପରିପନ୍ଥୀ ।"

(ରାଜା ରାମମୋହନ ରାୟଙ୍କ ଜୀବନଚରିତ, ଲଣ୍ଡନ—୧୮୩୩-୩୪)

## ରାମମୋହନଙ୍କ ଆଦର୍ଶ

ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ପ୍ରଚଣ୍ଡ ତରଙ୍ଗାଭିଘାତରେ ଗୋଟିଏ ସୁପ୍ରାଚୀନ ସଭ୍ୟତାର ବଂଶଧରଗଣ ଯେପରି ଏକପ୍ରକାର ଅସହାୟ ଭାବରେ ଭାସି ନ ଯାଆନ୍ତି, ଯଦ୍ୱାରା ଯୁଗୋପଯୋଗୀ ଉପାୟ ଅବଲମ୍ବନଦ୍ୱାରା ଜାତୀୟ ଜୀବନାଦର୍ଶ ରକ୍ଷା କରି ଜୀବନ-ସଂଗ୍ରାମରେ ବଞ୍ଚିରହି ପାରନ୍ତି, ଏହି ମହତ୍ ଭାବର ପ୍ରେରଣାରେ ରାଜା ରାମମୋହନ ଧର୍ମ ଓ ସମାଜ ସଂସ୍କାରରେ ବ୍ରତୀ ହୋଇଥିଲେ; କିନ୍ତୁ ସେ ନିଜେ ଆରମ୍ଭ କରିଥିବା କାର୍ଯ୍ୟକୁ ପ୍ରତିଷ୍ଠିତ କରିବା ଲାଗି ସମୟ ପାଇଲେ ନାହିଁ; ସେହି କାରଣରୁ ତାଙ୍କର ଆଦର୍ଶ ସମ୍ୟକ୍ ରୂପେ ପରିସ୍ଫୁଟ ହୋଇପାରିଲା ନାହିଁ । ଦେଶର ଦୁର୍ଭାଗ୍ୟକୁ ସେ ଇଂଲଣ୍ଡରୁ ଆଉ ଫେରିଲେ ନାହିଁ । ୧୮୩୩ ଖ୍ରୀଷ୍ଟାବ୍ଦ ନଭେମ୍ବର ୨୭ ତାରିଖ ଦିନ ତାଙ୍କ ଦେହାନ୍ତ ହୋଇଗଲା । ତାଙ୍କ ପ୍ରତିଷ୍ଠିତ 'ବ୍ରହ୍ମସଭା' ଆଚାର୍ଯ୍ୟ ରାମଚନ୍ଦ୍ର ବିଦ୍ୟାବାଗୀଶଙ୍କ ଚେଷ୍ଟାରେ କୌଣସିମତେ ବଞ୍ଚି ରହିଥିଲା ମାତ୍ର ! ଯେଉଁମାନେ ସେକାଳରେ ରାଜାଙ୍କ ସହକର୍ମୀ ଥିଲେ, ସେମାନଙ୍କ ମଧ୍ୟରୁ କେହି ହେଲେ ଏହି ପ୍ରଚଣ୍ଡ ଭାବଧାରାକୁ ବହନ କରିବା ନିମିତ୍ତ ସେପରି ଭାବରେ ଅଗ୍ରସର ହେଲେ ନାହିଁ । ରାମମୋହନଙ୍କ ଶିକ୍ଷାରେ ତିନିଗୋଟି ମୂଳସୂତ୍ର ଥିଲା ବୋଲି ସ୍ୱାମୀ ବିବେକାନନ୍ଦ କହୁଥିଲେ । ସେଗୁଡ଼ିକ ହେଉଛି—

ତାଙ୍କ ବେଦାନ୍ତ-ଗ୍ରହଣ, ସ୍ୱଦେଶପ୍ରେମ ପ୍ରଚାର ଏବଂ ହିନ୍ଦୁ ଓ ମୁସଲମାନଙ୍କ ପ୍ରତି ସମଦୃଷ୍ଟି । ଏହି ବିଷୟମାନଙ୍କରେ ରାଜା ରାମମୋହନ ରାୟଙ୍କ ଉଦାରତା ଓ ଭବିଷ୍ୟ-ଦର୍ଶିତା ଯେଉଁ କାର୍ଯ୍ୟପ୍ରଣାଳୀର ସୂଚନା ଦେଇଥିଲା, ସେ ନିଜେ କେବଳ ତାହାକୁ ଅବଲମ୍ବନ କରି ଅଗ୍ରସର ହୋଇଥିଲେ ବୋଲି ଦାବି କରୁଥିଲେ ।

ହିନ୍ଦୁଧର୍ମର ସଂସ୍କାରରେ ପ୍ରବୃତ୍ତ ହୋଇ ରାମମୋହନ ଶଙ୍କର-ଅଦ୍ୱୈତବାଦର ଭିତ୍ତି ଉପରେ ଦଣ୍ଡାୟମାନ ହେଲେ । ଉପନିଷଦ ଓ ତନ୍ତ୍ରାଦି ଶାସ୍ତ୍ରର ପ୍ରମାଣକୁ ଯେପରି ଭାବରେ ଗ୍ରହଣ କରି ଓ ବେଦକୁ ଯେଭଳି ମର୍ଯ୍ୟାଦା ଦେଇ ରାମମୋହନ ହିନ୍ଦୁଧର୍ମର ବ୍ୟାଖ୍ୟା କରିଯାଇଛନ୍ତି, ସେ ସମ୍ବନ୍ଧରେ ନାନାବିଧ ମତଭେଦ ଥିବା ସତ୍ତ୍ୱେ ଏକଥା ଅତ୍ୟନ୍ତ ଦୁଃଖର ସହିତ କହିବାକୁ ହେଉଛି ଯେ, ତାଙ୍କ ସିଦ୍ଧାନ୍ତକୁ ତାଙ୍କ ନିଜର ଅନୁବର୍ତ୍ତୀମାନେ ଠିକ୍‌ରୂପେ ଗ୍ରହଣ କରି ନ ଥିଲେ ବା କରିପାରି ନ ଥିଲେ । ଅଥଚ ହିନ୍ଦୁଧର୍ମ ସମ୍ବନ୍ଧରେ ରାମମୋହନ ସବୁ ଦିଗରୁ ଯେ ଅଭ୍ରାନ୍ତ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ, ଏକଥା ମଧ୍ୟ ସାହସର ସହିତ କୁହାଯାଇ ପାରିବ ନାହିଁ । ତାଙ୍କ ଚରିତ ଗ୍ରନ୍ଥାବଳୀର ପ୍ରାୟ ଏକ-ତୃତୀୟାଂଶ ସମ୍ପୂର୍ଣ୍ଣ ବିଲୁପ୍ତ ହୋଇଯାଇଛି; ଯେଉଁଗୁଡ଼ିକ ଅଦ୍ୟାପି ଅଛି, ତାହା ନିରପେକ୍ଷ ଭାବରେ ଆଲୋଚନା କଲେ ଅର୍ଥାତ୍ ପରବର୍ତ୍ତୀ ବ୍ରାହ୍ମ-ସଂସ୍କାରକମାନଙ୍କ ଦୃଷ୍ଟିରେ ନ ଦେଖିଲେ ମୋଟାମୋଟି ବୁଝାଯାଏ ଯେ,—

(୧) ବଙ୍ଗଳାର ଶାକ୍ତ ଓ ବୈଷ୍ଣବ, ଏହି ପ୍ରଧାନ ସମ୍ପ୍ରଦାୟଦ୍ୱୟ କାଳକ୍ରମେ ନାନାଭାଗରେ ବିଚ୍ଛିନ୍ନ ଓ ବିଭକ୍ତ ହୋଇ ବିକୃତ ହୋଇ ଯାଇଥିଲା — ଦେଶର ଜନସାଧାରଣ ଧର୍ମ କହିଲେ କେତେଗୋଟି ପ୍ରଥା ଓ ନିୟମର ବିଚାରହୀନ ଅନୁସରଣ ବୋଲି ବୁଝୁଥିଲେ । ପୁନରାୟ କ୍ଷୁଦ୍ର କ୍ଷୁଦ୍ର ସମ୍ପ୍ରଦାୟଗୁଡ଼ିକ ମଧ୍ୟରେ ପରସ୍ପର ପ୍ରତି ବିରୋଧ ଓ ବିଦ୍ୱେଷର ସୀମା ନ ଥିଲା । ବେଦାନ୍ତକୁ ଅବଲମ୍ବନ କରି ସେ ଏହି ବିଭକ୍ତ ଓ ବିଚ୍ଛିନ୍ନ ସମ୍ପ୍ରଦାୟଗୁଡ଼ିକ ଗୋଟିଏ ଐକ୍ୟମୂଳକ ଦାର୍ଶନିକ ଭିତ୍ତି ଉପରକୁ ଆଣିବାକୁ ଚେଷ୍ଟା କରିଥିଲେ; କିନ୍ତୁ ଏହି ଚେଷ୍ଟା ମାଧ୍ୟମରେ ରାମମୋହନ ଶାକ୍ତ ଓ ବୈଷ୍ଣବ ସମ୍ପ୍ରଦାୟର ଇତିହାସ, ସାହିତ୍ୟ, ଦର୍ଶନ, ଗୁରୁ ଓ ଅବତାରବାଦ, ମନ୍ତ୍ର, ସାଧନା ଓ ସିଦ୍ଧି ପ୍ରତି ସୁବିଚାର କରି ପାରି ନ ଥିଲେ । ବୈଷ୍ଣବ-ଆଦର୍ଶକୁ ଅଶ୍ଳୀଳ ବୋଲି ମନେ କରି ସେ ଏକପ୍ରକାର ଉପେକ୍ଷା କରିଥିଲେ । ନିଜେ ତନ୍ତ୍ରପ୍ରତି ବିଶେଷ ଅନୁରକ୍ତ ହୋଇ ମଧ୍ୟ, ତାନ୍ତ୍ରିକ ସାଧକମାନଙ୍କ ଶିଷ୍ୟ ହେବା ସତ୍ତ୍ୱେ ଏବଂ ତନ୍ତ୍ରୋକ୍ତ ଚକ୍ରର ସାଧନାଦ୍ୱାରା ଶକ୍ତିଗ୍ରହଣ ଓ ଶୈବ ବିବାହ ସମର୍ଥନ କରି ସୁଦ୍ଧା ସେ ତନ୍ତ୍ରର ମାତୃଭାବ ପରିତ୍ୟାଗ କରିଥିଲେ ।

(୨) ହିନ୍ଦୁ ଶାସ୍ତ୍ରଗୁଡ଼ିକ ଆଲୋଚନା କରି ରାଜା ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ, ହିନ୍ଦୁମାନେ ଧର୍ମତତ୍ତ୍ୱ ନିରୂପଣ ବିଷୟରେ ଉନ୍ନତିର ଚରମ ଶିଖରରେ ଆରୋହଣ କରିଥିଲେ ହେଁ ନୀତି ଦୃଷ୍ଟିରୁ ଅତ୍ୟନ୍ତ ଅବନତ ଥିଲେ । ହିନ୍ଦୁ ଧର୍ମନୀତି ତୁଳନାରେ ଖ୍ରିଷ୍ଟାନ୍ ଧର୍ମନୀତିକୁ ସେ ଉତ୍କୃଷ୍ଟତର ବିବେଚନା କରୁଥିଲେ ଏବଂ

ହିନ୍ଦୁଜାତିର ପୁନରୁତ୍‌ଥାନ ଲାଗି ଖ୍ରିସ୍ତାନୀ ନୀତିମାର୍ଗର ପଥିକ ହେବା ବ୍ୟତୀତ ଉପାୟାନ୍ତର ନାହିଁ ବୋଲି ସେ ମୁକ୍ତ କଣ୍ଠରେ ପ୍ରଚାର କରୁଥିଲେ ।

(୩) ବେଦାନ୍ତୋକ୍ତ ନିରାକାର ନିର୍ଗୁଣ ବ୍ରହ୍ମ-ଉପାସନା ପ୍ରଚାର କରି ରାମମୋହନ ହିନ୍ଦୁମାନଙ୍କ ସାମ୍ପ୍ରଦାୟିକ ବିରୋଧ ଊଣା କରିବା ନିମିତ୍ତ ଚେଷ୍ଟା କରିଥିଲେ ।

(୪) ରାଜାଙ୍କ ମତରେ ହିନ୍ଦୁମାନଙ୍କ ଜାତିଭେଦ, ମାଂସ ଆହାର ଲାଗି ଅନିଚ୍ଛା, ବାଲ୍ୟବିହାହ, ବହୁବିବାହ, ମୂର୍ତ୍ତିପୂଜା, ବିଦେଶ ଗମନ ଲାଗି ଅନିଚ୍ଛା, ସମୁଦ୍ର ଯାତ୍ରାରେ ପାପବୋଧ ଇତ୍ୟାଦି ସେମାନଙ୍କ ଜାତୀୟ ଅବନତିର କାରଣ ଥିଲା ଏବଂ ଏହି ସମସ୍ତ ପ୍ରଥା ବିରୋଧରେ ତୀବ୍ରଭାବରେ ଲେଖନୀ ଚାଳନା କରିବାରେ କୌଣସି ପ୍ରକାର ପ୍ରତିକୂଳ ସମାଲୋଚନାକୁ ସେ ଭୟ କରି ନ ଥିଲେ ।

(୫) ଦେଶରେ ସ୍ୱାଧୀନ ଚିନ୍ତା ଓ ବିଚାର-ବୁଦ୍ଧିର ଉନ୍ମେଷ ଲାଗି ଇଂରେଜୀ ଶିକ୍ଷା ପ୍ରଚଳନ କରିବାକୁ ରାଜା ପ୍ରାଣପଣେ ଚେଷ୍ଟା କରିଥିଲେ । ଶିକ୍ଷା ମାଧ୍ୟମରେ ସେ ସଂସ୍କାରର ପକ୍ଷପାତୀ ଥିଲେ । ଗଣିତ, ପଦାର୍ଥବିଦ୍ୟା, ରସାୟନ ଶାସ୍ତ୍ର, ଶରୀରବିଜ୍ଞାନ ଇତ୍ୟାଦି ବିଷୟଗୁଡ଼ିକ ନବପ୍ରତିଷ୍ଠିତ ଶିକ୍ଷାନୁଷ୍ଠାନମାନଙ୍କରେ ଶିକ୍ଷା ଦିଆଯିବା ନିମିତ୍ତ ସେ ଚେଷ୍ଟା କରିଥିଲେ । ବଙ୍ଗଳା ଗଦ୍ୟରେ ଉତ୍କୃଷ୍ଟତର ପ୍ରଣାଳୀ ଅବଲମ୍ବନ କରି ମାତୃଭାଷାର ଉନ୍ନତି ସାଧନ ନିମିତ୍ତ ରାମମୋହନ କମ୍ ଉଦ୍ୟମ କରି ନ ଥିଲେ ।

ଫଳତଃ ରାମମୋହନଙ୍କ ସର୍ବତୋମୁଖୀ ପ୍ରତିଭାର ପ୍ରଖର ଦୃଷ୍ଟି ଜାତୀୟ ଜୀବନର ସବୁ ବିଭାଗ ଉପରେ ପଡ଼ିଥିଲା । ସ୍ୱଧର୍ମାନୁରାଗୀ, ଜାତୀୟତାବୋଧର ପ୍ରଥମ ପୁରୋହିତ ରାଜା ରାମମୋହନ ହିଁ ସର୍ବପ୍ରଥମ ନବଜାଗରଣର ଭେରୀ-ନିନାଦରେ ଦେଶକୁ ଜାଗ୍ରତ ହେବା ନିମିତ୍ତ ଆବାହନ କରିଥିଲେ । ଅଥଚ ଏହି ମହାପୁରୁଷଙ୍କ ଚିନ୍ତା ଓ ଚରିତ୍ର ନିରପେକ୍ଷ ଭାବରେ ଏ ପର୍ଯ୍ୟନ୍ତ ଆଲୋଚନା ହୋଇନାହିଁ । ସାହସର ସହିତ କୁହାଯାଇପାରେ ଯେ ବ୍ରାହ୍ମ ସଂସ୍କାରକଗଣ ସାମ୍ପ୍ରଦାୟିକ ସଂକୀର୍ଣ୍ଣତାବଶତଃ ରାମମୋହନଙ୍କ ଉଦାର ସାର୍ବଭୌମିକ ଆଦର୍ଶ ସମ୍ବନ୍ଧରେ ଭ୍ରାନ୍ତ ଧାରଣା କରିବାର ସୁଯୋଗ ଦେଇଥିବାରୁ ଆଜି ବଙ୍ଗାଳୀ ଜାତିର ଏହି ମହାପୁରୁଷଙ୍କ ସମ୍ବନ୍ଧରେ ନ ଜାଣିବାର ଦୁର୍ଭାଗ୍ୟ ଅପେକ୍ଷା ଭୁଲ କରି ଜାଣିବାର ଦୁର୍ଭାଗ୍ୟ ହିଁ ଅଧିକ । ଆଶା କରାଯାଉଛି, ଏହି ଜାତୀୟ ଜାଗରଣ ଯୁଗରେ କୌଣସି ମନୀଷୀ ଅଗ୍ରସର ହୋଇ ରାମମୋହନଙ୍କ ସମ୍ପର୍କରେ ଦେଶର ଭ୍ରାନ୍ତ ଧାରଣା ଦୂର କରି ବଙ୍ଗାଳୀ ଜାତିର କୃତଜ୍ଞତା ଓ ଶ୍ରଦ୍ଧା ଅର୍ଜନ କରିବେ ।

## ମହର୍ଷି ଦେବେନ୍ଦ୍ରନାଥଙ୍କ ବ୍ରାହ୍ମଧର୍ମ

'ଆତ୍ମା ଓ ପରମାତ୍ମାର ଅଭେଦ ଚିନ୍ତନରୂପକ ମୁଖ୍ୟ ଉପାସନା'କୁ ଭିତ୍ତି କରି ରାମମୋହନ ଧର୍ମ ଓ ସମାଜ-ସଂସ୍କାର କାର୍ଯ୍ୟରେ ପ୍ରବୃତ୍ତ ହୋଇଥିଲେ । ନାନା

ତ୍ରୁଟି-ବିଚ୍ୟୁତି ମଧ୍ୟରେ ରାମମୋହନ ଭାରତର ସନାତନ ସାଧନା ଓ ସଭ୍ୟତାର ମର୍ମ ଉପଲବ୍ଧି କରିବାକୁ ସକ୍ଷମ ହୋଇଥିଲେ ବୋଲି କେତେଗୁଡ଼ିଏ ପ୍ରଚଳିତ ଲୋକାଚାର ଏବଂ କର୍ମକାଣ୍ଡ ବିରୋଧରେ ପ୍ରତିବାଦ କରି ସୁଦ୍ଧା କୌଣସି ନୂତନ ଧର୍ମ ବା ସମ୍ପ୍ରଦାୟ ପ୍ରତିଷ୍ଠା କରି ନ ଥିଲେ । ଯେଉଁ 'ବ୍ରାହ୍ମଧର୍ମ' ରାମମୋହନଙ୍କ ନାମାଙ୍କ ଗ୍ରହଣ କରି ଏତେଦିନ ଚଳି ଆସିଛି, ତାହାର ପ୍ରଣେତା ହେଉଛନ୍ତି ମହର୍ଷି ଦେବେନ୍ଦ୍ରନାଥ — ରାଜା ରାମମୋହନ ନୁହଁନ୍ତି । ଏବେ ମଧ୍ୟ ଦେଶରେ ଅନେକ ଲୋକଙ୍କର ରାମମୋହନ ବ୍ରାହ୍ମଧର୍ମର ପ୍ରବର୍ତ୍ତକ ବୋଲି ଭ୍ରାନ୍ତ ଧାରଣା ଥିବା ହେତୁ ଏ ବିଷୟରେ ସଂକ୍ଷେପରେ କିଛି ଆଲୋଚନା କରିବା ଆବଶ୍ୟକ ।

୧୮୪୩ ଖ୍ରୀଷ୍ଟାବ୍ଦରେ ପୌଷ ସପ୍ତମ ଦିବସରେ ମହର୍ଷି ଦେବେନ୍ଦ୍ରନାଥ କୋଡ଼ିଏ ଜଣ ବନ୍ଧୁଙ୍କ ସହ 'ବ୍ରାହ୍ମଧର୍ମ'ରେ ଦୀକ୍ଷା ଗ୍ରହଣ କରିଥିଲେ । ଏହି 'ବ୍ରାହ୍ମଧର୍ମ' ରାମମୋହନଙ୍କ ଈପ୍ସିତ ପଥରେ ବିକଶିତ ହୋଇନାହିଁ । ବ୍ରାହ୍ମସମାଜର ଅନ୍ୟତମ ପ୍ରଚାରକ ମନୀଷୀ ଶ୍ରୀଯୁକ୍ତ ବିପିନ୍ ଚନ୍ଦ୍ର ପାଲ ରାମମୋହନ ଓ ଦେବେନ୍ଦ୍ରନାଥଙ୍କ ଆଦର୍ଶ ଆଲୋଚନା କରି ନିମ୍ନ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ-

"**ରାଜା ରାମମୋହନ ଏକାନ୍ତ ଭାବରେ ଶାସ୍ତ୍ରୀୟ ପ୍ରମାଣ ବର୍ଜନ କରି ନ ଥିଲେ । ମହର୍ଷି ଦେବେନ୍ଦ୍ରନାଥ ବେଦର ପ୍ରାମାଣ୍ୟ ମର୍ଯ୍ୟାଦା ଭ୍ରଷ୍ଟ କରି ଶୁଦ୍ଧ ବ୍ୟକ୍ତିଗତ ବିଚାରବୁଦ୍ଧି ଉପରେ ହିଁ ଏକାନ୍ତ ଭାବରେ ସତ୍ୟାସତ୍ୟ ଓ ଧର୍ମାଧର୍ମ ମୀମାଂସାର ଭାଗ ଅର୍ପଣ କରିଥିଲେ । ଧର୍ମସାଧନ ଲାଗି ଗୁରୁଙ୍କର ବିଶେଷ ସ୍ଥାନ ଅଛି ବୋଲି ରାଜା କେବେହେଲେ ଅସ୍ୱୀକାର କରି ନାହାନ୍ତି । ମହର୍ଷି ଦେବେନ୍ଦ୍ରନାଥ ଯେପରି ଶାସ୍ତ୍ର, ସେହିପରି ଗୁରୁଙ୍କୁ ବର୍ଜନ କରି ପ୍ରତ୍ୟକ୍ଷ ଆତ୍ମଶକ୍ତି ଓ ଅପ୍ରତ୍ୟକ୍ଷ ବ୍ରହ୍ମ-କୃପା ଉପରେ ସାଧନାରେ ଯଥାଯୋଗ୍ୟ ସିଦ୍ଧିଲାଭର ସମ୍ଭାବନାକୁ ପ୍ରତିଷ୍ଠିତ କରିଥିଲେ । କି ତତ୍ତ୍ୱାଙ୍ଗ, କି ସାଧନାଙ୍ଗ, ଧର୍ମର କୌଣସିଟି ଅଙ୍ଗରେ ରାଜା ସ୍ୱଦେଶର ସନାତନ ସାଧନା ସଙ୍ଗେ ନିଜ ଧର୍ମସଂସ୍କାରର ପ୍ରାଣଗତ ଯୋଗ ନଷ୍ଟ କରିନାହାନ୍ତି । ମହର୍ଷି ଏକପ୍ରକାର ସ୍ୱଦେଶିକତାର ଏକାନ୍ତ ଅନୁରାଗୀ ହୋଇ ମଧ୍ୟ ପ୍ରକୃତ ପକ୍ଷରେ ଏହି ଯୋଗ ରକ୍ଷା କରିନାହାନ୍ତି, କରିବାକୁ ଚେଷ୍ଟା ମଧ୍ୟ କରିନାହାନ୍ତି । ରାଜା ବେଦାନ୍ତ ଉପରେ ନିଜ ତତ୍ତ୍ୱ-ସିଦ୍ଧାନ୍ତ ପ୍ରତିଷ୍ଠା କରିଥିଲେ । ମହର୍ଷି ପ୍ରକୃତ ପକ୍ଷରେ ଅଷ୍ଟାଦଶ ଶତାବ୍ଦୀର ଇଉରୋପୀୟ ଯୁକ୍ତିବାଦ ଉପରେ ହିଁ ତାଙ୍କ ବ୍ରାହ୍ମଧର୍ମକୁ ଗଢ଼ିଥିଲେ । ରାଜା ବେଦାନ୍ତ-ପ୍ରତିପାଦ୍ୟ ଧର୍ମକୁ ହିଁ ବ୍ରାହ୍ମଧର୍ମ ବୋଲି ପ୍ରଚାର କରିଥିଲେ । ମହର୍ଷି ତାଙ୍କ ନିଜ ଆତ୍ମପ୍ରତ୍ୟୟ ବା ସ୍ୱାନୁଭୂତି ପ୍ରତିପାଦ୍ୟ ଧର୍ମକୁ ବ୍ରାହ୍ମଧର୍ମ ରୂପେ ପ୍ରତିଷ୍ଠା କରିଥିଲେ ।"

"** ମହର୍ଷିଙ୍କ ବ୍ରାହ୍ମଧର୍ମଗ୍ରନ୍ଥରେ କେବଳ ଉପନିଷଦର ଉପଦେଶ ଉଦ୍ଧୃତ ଓ ବ୍ୟାଖ୍ୟା ହୋଇଛି ସତ୍ୟ, କିନ୍ତୁ ଏହି ସବୁ ଉଦ୍ଧୃତ ଉପଦେଶର ପ୍ରାମାଣ୍ୟ-ମର୍ଯ୍ୟାଦା ଶ୍ରୁତି ପ୍ରତିଷ୍ଠିତ ନୁହେଁ, ମହର୍ଷିଙ୍କ ନିଜ ସ୍ୱାନୁଭୂତି-ପ୍ରତିଷ୍ଠିତ ମାତ୍ର, ଉପନିଷଦର ଯେଉଁ ଶ୍ରୁତିଗୁଡ଼ିକ ମହର୍ଷିଙ୍କୁ ସତ୍ୟ ବୋଲି ଜଣାଯାଇଛି, ସେ ସେହିଗୁଡ଼ିକ ବାଛି

ନିଜ ବ୍ରାହ୍ମ-ଧର୍ମଗ୍ରନ୍ଥରେ ନିବଦ୍ଧ କରିଛନ୍ତି—ଋଷିମାନେ କାହାକୁ ସତ୍ୟ ବୋଲି ଦେଖିଥିଲେ ବା ଜାଣିଥିଲେ, ସେ ତାହାର ସନ୍ଧାନ କରିନାହାନ୍ତି । କେଉଁ ଶ୍ରୁତିର ଉତ୍ତରାର୍ଦ୍ଧ, କାହାର ବା ପୂର୍ବାର୍ଦ୍ଧ, ଯାହାର ଯେତିକି ତାଙ୍କ ନିଜର ମନୋମତ ହୋଇଛି, ସେତିକି କାଣ୍ଡଛାଣ୍ଟ କରି ନିଜ ବ୍ରାହ୍ମଧର୍ମ ଗ୍ରନ୍ଥରେ ଯୋଡ଼ି ଦେଇଛନ୍ତି । ଅତଏବ ମହର୍ଷିଙ୍କ ବ୍ରାହ୍ମ-ଧର୍ମଗ୍ରନ୍ଥରେ ଅନେକ ଶ୍ରୁତି ଉଦ୍ଧୃତ ହୋଇଥିଲେ ମଧ୍ୟ ଏ ଗ୍ରନ୍ଥ ତାଙ୍କ ନିଜସ୍ୱ; ମତାମତ ତାଙ୍କ ନିଜର, ପ୍ରାଚୀନ ଋଷିମାନଙ୍କର ନୁହେଁ । ସଂସ୍କୃତ ଶ୍ଳୋକ ଉଦ୍ଧାର ନ କରି କେବଳ ବଙ୍ଗଳା ଭାଷାରେ ଏହି ମତାମତଗୁଡ଼ିକ ଲିପିବଦ୍ଧ କଲେ ବି ତା'ର ଯେତେ ମର୍ଯ୍ୟାଦା ଥାଆନ୍ତା, ଉପନିଷଦରୁ ଉଦ୍ଧୃତ ହେବାଦ୍ୱାରା ଏହା ତଦପେକ୍ଷା ବେଶୀ ମର୍ଯ୍ୟାଦା ଲାଭ କରିନାହିଁ ।''

(ପଣ୍ଡିତ ଶିବନାଥ ଶାସ୍ତ୍ରୀ ଓ ବ୍ରାହ୍ମସମାଜରୁ ଉଦ୍ଧୃତ)

ଯାହା ହେଉ, ରାଜାଙ୍କ ଆଦର୍ଶ ସହିତ ପ୍ରଭୃତ ଅନୈକ୍ୟ ସତ୍ତ୍ୱେ ବି ''ବ୍ୟକ୍ତିତ୍ୱାଭିମାନୀ ଇଉରୋପୀୟ ଯୁକ୍ତିବାଦ ଉପରେ ପ୍ରତିଷ୍ଠିତ ବ୍ରାହ୍ମଧର୍ମର'' ପ୍ରତିଷ୍ଠା ଓ ପ୍ରଚାର କରିବା ନିମିତ୍ତ ମହର୍ଷି ସମସ୍ତ ଶକ୍ତି ନିୟୋଜିତ କରିଥିଲେ । ଏହି କାର୍ଯ୍ୟରେ ତାଙ୍କର ସହାୟକ ଥିଲେ ବିଖ୍ୟାତ ସାହିତ୍ୟିକ ବଙ୍ଗ-ଭାଷାର ଅନ୍ୟତମ ସ୍ରଷ୍ଟା ଅକ୍ଷୟ କୁମାର ଦତ୍ତ ଏବଂ ମନୀଷୀ ରାଜନାରାୟଣ ବସୁ ।

ମହର୍ଷି ଦେବେନ୍ଦ୍ରନାଥ, ପ୍ରିନ୍ସ ଦ୍ୱାରକାନାଥ ଠାକୁରଙ୍କ ପୁତ୍ର । ଜୋଡ଼ାଶାଙ୍କୋ ଠାକୁର ପରିବାରର କଲିକତା ଧନୀ-ସମାଜରେ ସୁପ୍ରତିଷ୍ଠିତ ଆଭିଜାତ୍ୟ ମର୍ଯ୍ୟାଦା ଥିଲା । ଋଣଗ୍ରସ୍ତ ପୈତୃକ ସମ୍ପତ୍ତି ମହର୍ଷିଙ୍କ ସଂଯମ ଓ ସତ୍ୟବତ୍ତା ଯୋଗୁଁ ଋଣମୁକ୍ତ ହେଲା । ସେ ପୁନରାୟ କଲିକତା ଧନୀ-ସମାଜର ଅଗ୍ରଣୀ ହେଲେ ଏବଂ ତାଙ୍କ ଅର୍ଥାନୁକୂଲ୍ୟ ଓ ସବିଶେଷ ଚେଷ୍ଟା ଯୋଗୁଁ ବ୍ରାହ୍ମଧର୍ମର ପ୍ରଚାର କାର୍ଯ୍ୟ ଚଳିପାରିଲା । ମହର୍ଷିଙ୍କ ଧନବଳ ଓ ଜନବଳ ସାହାଯ୍ୟରେ ବ୍ରାହ୍ମ-ସମାଜ ଅଳ୍ପ ସମୟ ମଧ୍ୟରେ ଶିକ୍ଷିତ ସମ୍ପ୍ରଦାୟର ଦୃଷ୍ଟି ଆକର୍ଷଣ କରିବାକୁ ସକ୍ଷମ ହେଲା ।

ପ୍ରତିମା ପୂଜା ଆଦି କ୍ରିୟାକାଣ୍ଡ ବର୍ଜନ କରି ମଧ୍ୟ ମହର୍ଷି ପ୍ରକୃତ ପ୍ରସ୍ତାବ ଅନୁସାରେ ସମାଜ-ସଂସ୍କାର କାର୍ଯ୍ୟରେ ପ୍ରବୃତ୍ତ ହୋଇ ନ ଥିଲେ, ବରଂ ହିନ୍ଦୁସମାଜ ସହିତ ଆପୋଷ ଭାବ ରଖି ରକ୍ଷଣଶୀଳ ଦେବେନ୍ଦ୍ରନାଥ ତାଙ୍କ ଅଭିନବ ଧର୍ମର ପ୍ରଚାରରେ ବ୍ରତୀ ହୋଇଥିଲେ ।

ପାଦ୍ରୀ ଅଲେକ୍‌ଜାଣ୍ଡର ଡଫ୍‌ଙ୍କ ଅକ୍ଳାନ୍ତ ଚେଷ୍ଟା ଯୋଗୁଁ ହିନ୍ଦୁ କଲେଜର ଛାତ୍ରମାନଙ୍କ ମଧ୍ୟରୁ ନାସ୍ତିକତା ଭାବ କ୍ରମଶଃ କମି ଆସିଲା । ସେ ଆଶା କରିଥିଲେ ଯେ ଏହିପରି ଶିକ୍ଷିତ ବଙ୍ଗାଳୀମାନଙ୍କୁ ସେମାନେ ଖ୍ରୀଷ୍ଟାନ୍ ଧର୍ମରେ ଦୀକ୍ଷିତ କରିବାକୁ ସମର୍ଥ ହେବେ;ଏହି ସମୟରେ ସେହିମାନଙ୍କର ସଂକଳ୍ପ-ସିଦ୍ଧି ପଥରେ ପ୍ରବଳ ଅନ୍ତରାୟ ସ୍ୱରୂପ ମହର୍ଷିଙ୍କ ପ୍ରଚାରିତ ବ୍ରାହ୍ମଧର୍ମ ଠିଆ ହେଲା । ପାଦ୍ରୀ ଡଫ୍‌ଙ୍କ ଚେଷ୍ଟାରେ ଇତିପୂର୍ବରୁ ଡି'ରୋଜିଓଙ୍କ ଶିଷ୍ୟମାନଙ୍କ ମଧ୍ୟରୁ ମହେଶଚନ୍ଦ୍ର ଘୋଷ, କୃଷ୍ଣମୋହନ ବନ୍ଦୋପାଧ୍ୟାୟ, ଜ୍ଞାନେନ୍ଦ୍ରମୋହନ ଠାକୁର ପ୍ରଭୃତି ଖ୍ରୀଷ୍ଟାନ୍

ହୋଇଯାଇଥିଲେ; ସେମାନଙ୍କ ପଦାଙ୍କ ଅନୁସରଣ କରି ଆହୁରି ଅନେକେ ଖ୍ରିଷ୍ଟାନ୍ ହୋଇଗଲେ । କେହି କେହି ଖ୍ରିଷ୍ଟାନ୍ ହେବାଲାଗି ମନସ୍ଥ କରୁଥିଲେ-ଏହି ସମୟରେ ''ଯୀଶୁଙ୍କ ସ୍ୱର୍ଗରାଜ୍ୟକୁ ଆଣିବାର'' ଦ୍ୱାରରୋଧ କରିବାକୁ ବ୍ରାହ୍ମଧର୍ମ ଉଦ୍ୟତ ହେଲା । ପୁଣି ବେଦାନ୍ତ-ଯୁଦ୍ଧର ସୂତ୍ରପାତ ହେଲା । ବେଦାନ୍ତ ପକ୍ଷକୁ ସମର୍ଥନ କରି ମହର୍ଷିଙ୍କ ପ୍ରତିଷ୍ଠିତ 'ତତ୍ତ୍ୱବୋଧିନୀ' ପତ୍ରିକାରେ ପ୍ରବନ୍ଧ ପ୍ରକାଶିତ ହେବାକୁ ଲାଗିଲା; ଡଫ୍ ସାହେବ ମଧ୍ୟ ପ୍ରାଣପଣେ ସଦଳବଳେ ବେଦାନ୍ତକୁ ଆକ୍ରମଣ କଲେ । ଏହି ଆନ୍ଦୋଳନ ଯୋଗୁଁ କଲିକତା ନଗରୀ ଉତ୍ତେଜିତ ହୋଇ ଉଠିଲା । ଡଫ୍ ସାହେବ ହିନ୍ଦୁ ଧର୍ମ ଓ ସମାଜ ପ୍ରତି କଟୂକ୍ତି ବର୍ଷଣ କରୁଛନ୍ତି ଦେଖି ହିନ୍ଦୁ-କଲେଜର ନେତୃବୃନ୍ଦ ଛାତ୍ରମାନଙ୍କୁ ଡଫ୍ ଓ ଡିରୋଜିଓଙ୍କ ବକ୍ତୃତା ଶୁଣିବାକୁ ନିଷେଧ କଲେ । ଫଳରେ କାଳର ଗତିରୋଧ କରିବାକୁ ଅକ୍ଷମ ହୋଇ ପାଦ୍ରୀ ଡଫ୍ ଭଗ୍ନହୃଦୟରେ ୧୮୬୩ ଖ୍ରୀଷ୍ଟାବ୍ଦରେ ସ୍ୱଦେଶକୁ ଫେରିଗଲେ ।

୧୮୫୦ ଖ୍ରୀଷ୍ଟାବ୍ଦରେ ଅକ୍ଷୟକୁମାର ଓ ରାଜନାରାୟଣଙ୍କ ପରାମର୍ଶରେ ମହର୍ଷି ବାଧହୋଇ ବେଦର ଅପୌରୁଷେୟତା ଓ ଅଭ୍ରାନ୍ତତା ବ୍ରାହ୍ମସମାଜରୁ ପରିତ୍ୟାଗ କଲେ । ଫଳରେ ସବୁଦିନ ପାଇଁ ବ୍ରାହ୍ମସମାଜ ହିନ୍ଦୁଧର୍ମଠାରୁ ପୃଥକ୍ ହୋଇଗଲା । ଯାହାହେଉ, ଏମାନଙ୍କ ଅକ୍ଳାନ୍ତ ଚେଷ୍ଟାରେ ବଙ୍ଗ-ପ୍ରଦେଶର ବିଭିନ୍ନ ସ୍ଥାନରେ ବ୍ରାହ୍ମ-ସମାଜ ପ୍ରତିଷ୍ଠିତ ହେଲା — ସମାଜର କାର୍ଯ୍ୟ ବିସ୍ତୃତ ହୋଇଗଲା ।

## ଈଶ୍ୱରଚନ୍ଦ୍ର ବିଦ୍ୟାସାଗର

ଏହି ସମୟରେ ଆଉ ଜଣେ ଶକ୍ତିଶାଳୀ ପୁରୁଷ ବଙ୍ଗ-ସମାଜରେ ଆବିର୍ଭୂତ ହେଲେ — ସେ ହେଉଛନ୍ତି ବୀରସିଂହ ଗ୍ରାମର ସିଂହଶିଶୁ ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର । ଗୋଟିଏ ଦିଗରେ ପରାନୁକରଣ-ମୋହ, ଅନ୍ୟ ଦିଗରେ ଆତ୍ମ-ବିସ୍ମରଣକୁ — ଡାହାଣ ଓ ବାମରେ ରଖି ବଙ୍ଗାଳୀ-ଦୁର୍ଲଭ ବିବିଧ ସଦ୍‌ଗୁଣମଣ୍ଡିତ ଏହି ଚିରସ୍ମରଣୀୟ ଚରିତ୍ରରେ ମନୁଷ୍ୟତ୍ୱର ଗୋଟିଏ ଅତ୍ୟୁଜ୍ଜ୍ୱଳ ମୂର୍ତ୍ତି ଅତି ଆଶ୍ଚର୍ଯ୍ୟ ଭାବରେ ଆତ୍ମପ୍ରକାଶ କଲା । ବଙ୍ଗଭାଷାର ସ୍ରଷ୍ଟା ଓ ପାଳକ ବିଦ୍ୟାସାଗର, ଶିକ୍ଷାପ୍ରଚାରରେ ବ୍ରତୀ ବିଦ୍ୟାସାଗର, ଦୀନ ଦରିଦ୍ର ଦୁଃଖୀ ଓ ଆର୍ତ୍ତର ସେବାରେ ଆତ୍ମୋତ୍ସର୍ଗକାରୀ ବିଦ୍ୟାସାଗର — ସର୍ବୋପରି ସ୍ୱଦେଶୀ ସମାଜର ଦୁର୍ଗତି ଓ ଦୁର୍ନୀତି ପରିହାର କରାଇବାରେ ଉଦ୍‌ଯୋଗୀ ବିଦ୍ୟାସାଗରଙ୍କ ଅତୁଳନୀୟ କୀର୍ତ୍ତି-କାହାଣୀ ନବ୍ୟବଙ୍ଗଳା-ଇତିହାସର ଅକ୍ଷୟ ସମ୍ପଦ ।

ବିଦ୍ୟାସାଗର ଲେଖିଛନ୍ତି, ''ବିଧବା-ବିବାହ-ପ୍ରବର୍ତ୍ତନ ମୋ ଜୀବନର ସର୍ବପ୍ରଧାନ ସତ୍‌କର୍ମ; ଏ ଜନ୍ମରେ ଏହାଠାରୁ ଅଧିକ ଆଉ କୌଣସି ସତ୍‌କର୍ମ କରିପାରିବି, ତାହାର ସମ୍ଭାବନା ନାହିଁ; ଏଥିଯୋଗୁଁ ସର୍ବସ୍ୱାନ୍ତ ହୋଇଛି ଏବଂ ଆବଶ୍ୟକ ହେଲେ ପ୍ରାଣ ଦେବାକୁ ମଧ୍ୟ ପରାଙ୍‌ମୁଖ ନୁହେଁ ।''

ବାଳବିଧବାର ବ୍ରହ୍ମଚର୍ଯ୍ୟ ଏବଂ ନାରୀର ସତୀଧର୍ମ ମହିମାକୀର୍ତ୍ତନରେ ମୁଖରିତ ଭାରତଭୂମିରେ ହତଭାଗ୍ୟ ଅବଳାଜାତି ଉପରେ ଯୁଗାନ୍ତ-ସଞ୍ଚିତ ଅତି ପୈଶାଚିକ ଅତ୍ୟାଚାର ବିରୋଧରେ ଯେଉଁଦିନ ବିଦ୍ୟାସାଗର ଦଣ୍ଡାୟମାନ ହେଲେ, "ସେଦିନ ଦେଶର ପୁରୁଷମାନେ ବିଦ୍ୟାସାଗରଙ୍କ ପ୍ରାଣନାଶ ନିମିତ୍ତ ଗୋପନ ଆୟୋଜନ କରୁଥିଲେ ଏବଂ ଦେଶର ପଣ୍ଡିତବର୍ଗ ଶାସ୍ତ୍ର ମନ୍ଥନ କରି କଟୂକ୍ତି ଓ ଭାଷା ମନ୍ଥନ କରି କୁ-ଯୁକ୍ତି, ବିଦ୍ୟାସାଗରଙ୍କ ମୁଣ୍ଡ ଉପରେ ବର୍ଷଣ କରୁଥିଲେ ।" କିନ୍ତୁ ମାତୃ-ପଦଧୂଳି ଓ ଆଶୀର୍ବାଦ ନେଇ ପୌରୁଷର ପ୍ରଚଣ୍ଡ ଅବତାର ବିଦ୍ୟାସାଗର ବାଳବିଧବାର ଦୁଃଖମୋଚନ-ବ୍ରତ ଗ୍ରହଣ କରିଥିଲେ । ସେ ଚକିତ ବା ବିକ୍ଷୁବ୍ଧ ହୋଇ ନ ଥିଲେ—'ସଂସ୍କୃତ ଶ୍ଳୋକ ଏବଂ ବଙ୍ଗଳା ଗାଳି ମିଶ୍ରିତ ତୁମୂଳ କଳକୋଳାହଳ ଖଣ୍ଡନ କରି, ବ୍ରାହ୍ମଣ-ବୀର ବିଜୟୀ ହୋଇ ବିଧବାବିବାହ ଶାସ୍ତ୍ରସମ୍ମତ ବୋଲି ପ୍ରମାଣ କଲେ ଏବଂ ତାଙ୍କ ଐକାନ୍ତିକ ଚେଷ୍ଟା ଫଳରେ ବିଧବାବିବାହ ଆଇନ ପ୍ରଣୀତ ହେଲା ।

ବିଗତ ଶତାବ୍ଦୀର ମଧ୍ୟ ଭାଗରେ ପ୍ରଚଣ୍ଡ ମାର୍ତ୍ତଣ୍ଡଙ୍କ ପରି ଏହି ଏକାକୀ ନିଃସଙ୍ଗ ମହାପୁରୁଷ ଆଲୋକ ଓ ଉତ୍ତାପ ବିକିରଣ କରି ସମଗ୍ର ସମାଜର ଅଜ୍ଞତା, ରକ୍ଷଣଶୀଳତା ଓ କୁସଂସ୍କାର ସହିତ ଅବିଶ୍ରାନ୍ତ ସଂଗ୍ରାମ କରି, କ୍ଷୁଧିତ, ଦୁଃସ୍ଥ, ରୋଗୀର ଲୋତକ ପୋଛି, କୃତଘ୍ନ ଲୋକଙ୍କ ସବୁପ୍ରକାର ଔଦ୍ଧତ୍ୟ ମାର୍ଜନା କରି, "ନିଜ ପୁଷ୍ପ-କୋମଳ ଓ ବଜ୍ରକଠିନ ବକ୍ଷରେ ଦୁଃସହ ବେଦନା-ଶଲ୍ୟ ବହନ କରି ନିଜ ଆତ୍ମନିର୍ଭରଶୀଳ ଉନ୍ନତ ବଳିଷ୍ଠ ଚରିତ୍ରର ମହାନ୍ ଆଦର୍ଶ ବଙ୍ଗାଳୀ ଜାତି ମନରେ ଚିରାଙ୍କିତ କରି ଦେଇ ୧୨୯୮ ସାଲର ଶ୍ରାବଣ ତେରଦିନ ରାତ୍ରକାଳରେ ଇହଲୀଳା ସମ୍ବରଣ କଲେ ।"

"ହାୟ, ଭାରତବର୍ଷୀୟ ମାନବଗଣ ! ଅଭ୍ୟାସ ଦୋଷରୁ ତୁମ୍ଭମାନଙ୍କର ବୁଦ୍ଧିବୃତ୍ତି ଓ ଧର୍ମପ୍ରବୃତ୍ତି ଏଭଳି କଳୁଷିତ ହୋଇଯାଇଛି ଓ ଅଭିଭୂତ ହୋଇ ରହିଛି ଯେ, ହତଭାଗ୍ୟ ବିଧବାମାନଙ୍କ ଦୁରାବସ୍ଥା ଦର୍ଶନ କରି ତୁମମାନଙ୍କ ଚିରଶୁଷ୍କ ହୃଦୟରେ କରୁଣା ସଞ୍ଚାର ହେବା କଠିନ ଏବଂ ବ୍ୟଭିଚାର-ଦୋଷ ଓ ଭ୍ରୁଣହତ୍ୟା ପାପର ପ୍ରବଳ ସ୍ରୋତରେ ଦେଶ ଭାସି ଯାଉଥିବାର ଦେଖି ମଧ୍ୟ ମନରେ ଘୃଣା ସୃଷ୍ଟି ହେବା ଅସମ୍ଭାବିତ । x x x ତୁମେମାନେ ଭାବୁଛ ଯେ, ପତି ବିୟୋଗ ହେଲେ ସ୍ତ୍ରୀ-ଜାତିର ଶରୀର ପାଷାଣମୟ ହୋଇଯାଏ; 'ଦୁଃଖ' ଆଉ ଦୁଃଖ ବୋଲି ମନେହୁଏ ନାହିଁ; 'ଯନ୍ତ୍ରଣା' ଆଉ ଯନ୍ତ୍ରଣା ବୋଲି ବୋଧହୁଏ ନାହିଁ । x x x ହାୟ, କି ପରିତାପର ବିଷୟ ! ଯେଉଁ ଦେଶରେ ପୁରୁଷ ଜାତିର ଦୟା ନାହିଁ, ଧର୍ମ ନାହିଁ, ନ୍ୟାୟ ଅନ୍ୟାୟ ବିଚାର ନାହିଁ, ହିତାହିତ ବୋଧ ନାହିଁ, ସତ୍ ଅସତ୍ ବିବେଚନା ନାହିଁ, କେବଳ ଲୌକିକତା ରକ୍ଷା କରିବା ପ୍ରଧାନ କର୍ମ ଓ ପରମ ଧର୍ମ ହୋଇଛି, ଆଉ ଯେପରି ସେ ଦେଶରେ ହତଭାଗ୍ୟ ଅବଳାମାନେ ଜନ୍ମଗ୍ରହଣ ନ କରନ୍ତି !"

ବିଧବାମାନଙ୍କ ଦୁଃଖରେ ଏଡ଼େ ବଡ଼ ମହତ୍ତ୍ୱ ଓ ପୌରୁଷର ବାଣୀ ବଙ୍ଗ ଦେଶରେ ଆଉ ଶୁଣାଯାଇ ନାହିଁ । ଦିନେ ଯେପରି ଅକସ୍ମାତ୍ ହରଜଟାଜାଳନିର୍ମୁକ୍ତ ଭୁବନପାବନ ଭାଗୀରଥି ମର୍ତ୍ତ୍ୟକୁ ଓହ୍ଲାଇ ଆସି ଅଜସ୍ର ଧାରାରେ ମୁକ୍ତି ବୁହାଇ ଦେଇଥିଲା, ଠିକ ସେହିପରି ଦିନେ ଭାରତର ଅଭିଶପ୍ତ ନାରୀଜାତି ଓ ବିଧବାର ଅପମାନ ଓ ଦୁଃଖ ଉପରେ ବଙ୍ଗଜ ବିଦ୍ୟାସାଗରଙ୍କ ବଳିଷ୍ଠ ଦୟାର ଅଭୟ ଆଶୀର୍ବାଦ କରୁଣାବିଗଳିତ ଭାବଧାରାରେ ରହି ଯାଇଥିଲା ! ବଙ୍ଗଳାର ନବଯୁଗର ସାଧନା ଓ ସିଦ୍ଧିର ମୂର୍ତ୍ତ-ବିଗ୍ରହ ଠାକୁର ଶ୍ରୀରାମକୃଷ୍ଣ ଦିନେ ବିଦ୍ୟାସାଗରଙ୍କ ପାଖକୁ ଆସି କହିଥିଲେ, ''ଏତେଦିନ ଖାଲି ଗାଡ଼ିଆ, ପୋଖରୀ ଦେଖୁଥିଲି, ଆଜି ସମୁଦ୍ର ଦେଖିଲି ।'' ସତରେ ବିଦ୍ୟାସାଗର ମନୁଷ୍ୟତ୍ୱର ମହାପାରାବାର ଥିଲେ । କବିଗୁରୁ ରବୀନ୍ଦ୍ରନାଥଙ୍କ ଭାଷାରେ, ''ତାଙ୍କପରି ଲୋକ ପାରମାର୍ଥିକତାଭ୍ରଷ୍ଟ ବଙ୍ଗପ୍ରଦେଶରେ ଜାତ ହୋଇଥିଲେ ବୋଲି, ଚତୁର୍ଦ୍ଦିଗର ଜଡ଼ ପାଷାଣଖଣ୍ଡଗୁଡ଼ିକରେ ବାରମ୍ବାର ଘାତ-ପ୍ରତିଘାତ ହୋଇଥିଲା ବୋଲି ବିଦ୍ୟାସାଗର ନିଜ କର୍ମସଂକୁଳ-ଜୀବନ ଯେପରି କି ଚିରଦିନ ବ୍ୟଥିତ ଓ କ୍ଷୁବ୍ଧ ଭାବରେ କଟାଇଥିଲେ । ସେ ଯେପରି କି ସୈନ୍ୟହୀନ ବିଦ୍ରୋହୀଙ୍କ ପରି ନିଜ ଚତୁଃପାର୍ଶ୍ୱକୁ ଅବଜ୍ଞା କରି ଜୀବନ-ରଙ୍ଗଭୂମିର ପ୍ରାନ୍ତ ପର୍ଯ୍ୟନ୍ତ ଜୟଧ୍ୱଜା ନିଜ କାନ୍ଧ ଉପରେ ଏକାକୀ ବହନ କରିଥିଲେ । ସେ କାହାକୁ ଡାକି ନ ଥିଲେ, ସେ କାହାଠାରୁ ସାହାଯ୍ୟ ପାଇ ନ ଥିଲେ, ଅଥଚ ସେ ପଦେ ପଦେ ବାଧାର ସମ୍ମୁଖୀନ ହୋଇଥିଲେ । x x x ସେ ଯେଉଁ ଶବ ସାଧନାରେ ପ୍ରବୃତ୍ତ ଥିଲେ, ତାହାର ଉତ୍ତର-ସାଧକ ସେ ନିଜେ ଥିଲେ ।''

## ବ୍ରହ୍ମାନନ୍ଦ କେଶବଚନ୍ଦ୍ର

୧୮୫୯ ଖ୍ରୀଷ୍ଟାବ୍ଦରେ ଯେଉଁଦିନ କେଶବଚନ୍ଦ୍ର ସେନ୍ ନିଜ ବନ୍ଧୁମାନଙ୍କ ସହ ବ୍ରାହ୍ମସମାଜରେ ଯୋଗଦାନ କଲେ, ସେଦିନ ସଂସ୍କାର-ଯୁଗର ଗୋଟିଏ ନୂତନ ଅଧ୍ୟାୟ ଆରମ୍ଭ ହେଲା । କେଶବଚନ୍ଦ୍ର ଅସାଧାରଣ ପ୍ରତିଭାର ଅଧିକାରୀ ହୋଇ ଜନ୍ମଗ୍ରହଣ କରିଥିଲେ । ମହର୍ଷି ଦେବେନ୍ଦ୍ରନାଥଙ୍କ ପରି ଧନବାନ୍ ନ ହେଲେ ମଧ୍ୟ ଆଭିଜାତ୍ୟ-ମର୍ଯ୍ୟାଦାରେ କେଶବଚନ୍ଦ୍ର ନ୍ୟୂନ ନ ଥିଲେ । ଜୋଡ଼ାଶାଙ୍କୋର ଠାକୁର ପରିବାର ପରି କଲୁଟୋଲାର ବିଖ୍ୟାତ ସେନ୍‌ବଂଶ ମଧ୍ୟ କଲିକତା ଅଭିଜାତ ସମାଜରେ ଅଗ୍ରଣୀ ଥିଲା । କେଶବଚନ୍ଦ୍ର ପ୍ରଥମ ଜୀବନରେ ଖ୍ରୀଷ୍ଟଧର୍ମ, ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ପ୍ରତି ଅତିମାତ୍ରାରେ ଆକୃଷ୍ଟ ହୋଇପଡ଼ିଥିଲେ । କେଶବଙ୍କର ଅନୁପମ ବାକ୍‌ବିଭୂତି ଥିଲା । ସେତେବେଳେ ତାଙ୍କ ପରି ଆଉ କେହି ଇଂରାଜୀ ଭାଷାରେ ବକ୍ତୃତା ଦେଇ ପାରୁ ନ ଥିଲେ । ଏହି କାରଣରୁ ସେ ଅନେକ ଉଚ୍ଚପଦସ୍ଥ ଶ୍ୱେତାଙ୍ଗ ରାଜକର୍ମଚାରୀମାନଙ୍କ ପ୍ରଶଂସାଭାଜନ ହୋଇଥିଲେ । ସେକାଳରେ ଇଂରେଜମାନଙ୍କ ମୁହଁରୁ ଯେଉଁମାନଙ୍କ ପ୍ରଶଂସା ଶୁଣାଯାଉଥିଲା, ଲୋକସମାଜରେ

ସେମାନଙ୍କର ଖ୍ୟାତି ଓ ସମ୍ମାନର ଅନ୍ତ ନ ଥିଲା । ଏହି କାରଣରୁ କେଶବଚନ୍ଦ୍ର ସହଜରେ ଶିକ୍ଷିତ ସମାଜ ଉପରେ ଅସାମାନ୍ୟ ପ୍ରଭାବ ବିସ୍ତାର କରିବାକୁ ସକ୍ଷମ ହୋଇଥିଲେ । ଶ୍ରଦ୍ଧେୟ ଶ୍ରୀଯୁକ୍ତ ବିପିନଚନ୍ଦ୍ର କହିଛନ୍ତି, ''ଶାସ୍ତ୍ରର ପ୍ରାଚୀନ ଅଧିକାର ବିରୋଧରେ ବ୍ୟକ୍ତିଗତ ବିଚାର-ବିବେଚନା ସ୍ୱତ୍ୱପ୍ରତିଷ୍ଠା, ଗୁରୁଙ୍କ ପ୍ରାଚୀନ ଅଧିକାର ବିରୋଧରେ ଅସଂସ୍କୃତ ଓ ଅସିଦ୍ଧ ସ୍ୱାଭିମତର ସ୍ୱତ୍ୱପ୍ରତିଷ୍ଠା, ସମାଜର ବିଧି-ନିଷେଧ ଆଦି ବିରୋଧରେ ବ୍ୟକ୍ତିଗତ ରୁଚି ଓ ପ୍ରବୃତ୍ତିର ସ୍ୱତ୍ୱପ୍ରତିଷ୍ଠା-ଏହା ହିଁ କେଶବଚନ୍ଦ୍ରଙ୍କ ପ୍ରଥମ ଜୀବନରେ କର୍ମ ଚେଷ୍ଟାର ମୂଳସୂତ୍ର ଥିଲା ।''

ମହର୍ଷି ଦେବେନ୍ଦ୍ରନାଥଙ୍କ ଆତ୍ମପ୍ରତ୍ୟୟ ଓ ସହଜ ଜ୍ଞାନ ଉପରେ ପ୍ରତିଷ୍ଠିତ ବ୍ରାହ୍ମଧର୍ମ ସାଧନା ଓ ସମାଜ-ସଂସ୍କାର ଉପରେ ଡେଭିଡ୍ ହେଅର୍ ଓ ଡି' ରୋଜିଓଙ୍କ ଅଷ୍ଟାଦଶ ଶତାବ୍ଦୀର ପାଶ୍ଚାତ୍ୟ ସ୍ୱେଚ୍ଛାଚାରୀ ବ୍ୟକ୍ତି-ସ୍ୱାତନ୍ତ୍ର୍ୟବାଦ—ଏହି ଉଭୟଧାରାକୁ ଆତ୍ମସାତ୍ କରି କେଶବ ଓ ତାଙ୍କ ସାଙ୍ଗମାନେ ବ୍ରାହ୍ମସମାଜକୁ ପାଶ୍ଚାତ୍ୟ ସମାଜ ଆଦର୍ଶ ଅନୁସାରେ ଗଢ଼ିବାକୁ ଚେଷ୍ଟା କଲେ । ସ୍ତ୍ରୀ-ସ୍ୱାଧୀନତା, ଉପବୀତହୀନ ଆଚାର୍ଯ୍ୟମାନଙ୍କଦ୍ୱାରା ବ୍ରାହ୍ମସମାଜର ଉପାସନା, ଅସବର୍ଣ୍ଣ ବିବାହ ଇତ୍ୟାଦି ନୂଆ ନୂଆ କଥା ବ୍ରାହ୍ମସମାଜରେ ପ୍ରଚଳନ କରିବାକୁ ଉଦ୍ୟମ କରିଥିଲେ । ସାମାଜିକ ବିଧି ନିଷେଧକୁ ଭାଙ୍ଗି ଏହି ନବୀନ-ସମାଜର ସଭ୍ୟମାନେ ଏକତ୍ର ପାନଭୋଜନ କରିବାକୁ ଆରମ୍ଭ କଲେ । ବାଗ୍ମୀଶ୍ରେଷ୍ଠ କେଶବଙ୍କ ବକ୍ତୃତାର ବାତ୍ୟାରେ କଲିକତା ନଗରୀ କମ୍ପିଉଠିଲା । କୃଷ୍ଣନଗରରେ ତା'ର ପ୍ରତିଧ୍ୱନି ହେଲା । ତାଙ୍କ ପ୍ରତିଭାଦ୍ୱାରା ପ୍ରଭାବିତ ହୋଇ ନ ଥିବା ଶିକ୍ଷିତ ଯୁବକ ସେତେବେଳେ ବିରଳ ଥିଲେ । ଅନେକ ଯୁବକ ବ୍ରାହ୍ମସମାଜରେ ଯୋଗ ଦେଲେ; ଅନେକ ମଧ୍ୟ ଅଳ୍ପ ବହୁତ ବ୍ରାହ୍ମଭାବାପନ୍ନ ହେଲେ । ମହର୍ଷି ଦେବେନ୍ଦ୍ରନାଥ ସାମାଜିକ ବ୍ୟାପାରରେ ରକ୍ଷଣଶୀଳ ଥିଲେ । କେଶବଚନ୍ଦ୍ରଙ୍କର ଏହିସବୁ ସଂସ୍କାର-ଚେଷ୍ଟା ସହିତ ସମତାଳରେ ପାଦ ପକାଇ ଚାଲିବା ତାଙ୍କ ପକ୍ଷରେ ଅସମ୍ଭବ ହୋଇପଡ଼ିଲା; ବିଦ୍ରୋହୀ ପୁତ୍ରପ୍ରତିମ କେଶବଚନ୍ଦ୍ରଙ୍କ ଯୁକ୍ତିର ଶରବର୍ଷଣ ଅତି ଧୈର୍ଯ୍ୟର ସହିତ ସହ୍ୟ କରି ମହର୍ଷି ନିଜ ଚିନ୍ତାରେ ଅଟଳ ରହିଲେ । ଅବଶେଷରେ ମହର୍ଷି ପଇତାଧାରୀ ଆଚାର୍ଯ୍ୟମାନଙ୍କୁ ବେଦୀ କାମରୁ ତଡ଼ିଦେବା ଲାଗି ଅସ୍ୱୀକୃତ ହେବାରୁ ଗୁରୁ ଦେବେନ୍ଦ୍ରନାଥଙ୍କୁ ଉପେକ୍ଷା କରି ବ୍ରହ୍ମାନନ୍ଦ କେଶବଚନ୍ଦ୍ର ନିଜର ସ୍ୱତନ୍ତ୍ର ଦଳ ଗଢ଼ିଲେ; ୧୮୬୬ ଖ୍ରୀଷ୍ଟାବ୍ଦରେ ବ୍ରାହ୍ମସମାଜ ଦୁଇଭାଗରେ ବିଭକ୍ତ ହୋଇଗଲା । ମହର୍ଷିଙ୍କ ସମାଜର ନାମ ହେଲା—'ଆଦିସମାଜ' ଏବଂ କେଶବ, ବିଜୟକୃଷ୍ଣ ପ୍ରଭୃତି ଯେଉଁ ନୂତନ ସମାଜ ପ୍ରତିଷ୍ଠା କଲେ, ତାହାର ନାମ 'ଭାରତବର୍ଷୀୟ ବ୍ରାହ୍ମସମାଜ' ରହିଲା । କେଶବ ବ୍ରାହ୍ମସମାଜରୁ ଜାତିଭେଦ-ପ୍ରଥା ଉଠାଇ ଦେଲେ, ଅସବର୍ଣ୍ଣବିବାହ-ପ୍ରଥା ପ୍ରବର୍ତ୍ତନ କରାଇଲେ ଏବଂ ଏହି ବିବାହକୁ ଆଇନସମ୍ମତ କରାଇବା ଲାଗି ତୁମୂଳ ଅନ୍ଦୋଳନ ଚଳାଇଲେ । ୧୮୭୨ ଖ୍ରୀଷ୍ଟାବ୍ଦରେ ତୃତୀୟ ଆଇନ୍ ଅନୁସାରେ ଗୋଟିଏ ପ୍ରକାର ଅସବର୍ଣ୍ଣ ବିବାହ ଆଇନରେ ସ୍ୱୀକୃତ ହେଲା ।

ବିଲାତୀ ଢଙ୍ଗରେ ଗଠିତ ବ୍ରାହ୍ମସମାଜଙ୍କୁ ଅନୁକରଣ କରି ପ୍ରାଚୀନ ସମାଜ 'ହରିସଭା', 'ଧର୍ମସଭା' ଇତ୍ୟାଦି ସ୍ଥାପନ କରି ହିନ୍ଦୁ ଧର୍ମ ରକ୍ଷା କରିବାକୁ ଚେଷ୍ଟା ଚଳାଇଲେ । ବକ୍ତୃତା, ଭୂରିଭୋଜନ, ସଂକୀର୍ତ୍ତନ, ଦାନ, ପଇସା ଦେଇ ବକ୍ତା ଆଣିବା ଇତ୍ୟାଦିଦ୍ୱାରା ଧର୍ମ ଚୂଡ଼ାନ୍ତ ହୋଇଗଲା । ବାରବର୍ଷର ଶିଶୁମାନେ ମଧ୍ୟ ହରିସଭା ବେଦୀ ଉପରେ ହରିଭକ୍ତିର ମହିମା ସମ୍ବନ୍ଧରେ ବକ୍ତୃତା କରିବାକୁ ଲାଗିଲେ ଏବଂ ଦର୍ଶକମାନେ କରତାଳି ଦେଇ ତାଙ୍କୁ ମତାଇବାରେ ରହିଲେ । ଅନ୍ୟ ଦିଗରେ ବ୍ରାହ୍ମସମାଜର ବେଦୀରୁ ଆଚାର୍ଯ୍ୟ, ଉପାଚର୍ଯ୍ୟମାନେ ହିନ୍ଦୁଧର୍ମର ମୁଣ୍ଡ ଉପରେ ଅଗ୍ନିମୟ ଅଭିଶାପ ବର୍ଷଣ କଲେ । ଉଭୟ ଦଳର ବାଦ-ପ୍ରତିବାଦ ଫଳରେ ଏକପ୍ରକାର ଜଘନ୍ୟ, ଅଶ୍ଳୀଳ, କୁରୁଚିପୂର୍ଣ୍ଣ ସାହିତ୍ୟର ସୃଷ୍ଟି ହେଲା, ଯାହା କି ବଙ୍ଗ ସାହିତ୍ୟରେ ଗୋଟିଏ ଦୁରପନେୟ କଳଙ୍କରୂପେ ରହିଛି ।

## ଶ୍ରୀଶ୍ରୀରାମକୃଷ୍ଣ ଦେବ

ଏହି ପ୍ରକାର ଆନ୍ଦୋଳନ ଏବଂ କ୍ରିୟା-ପ୍ରତିକ୍ରିୟା ଯୋଗୁଁ କଲିକତା ସହର ଏବଂ ବଙ୍ଗଦେଶ ବିକ୍ଷୁବ୍ଧ ଓ ଆଲୋଡ଼ିତ ହେଉଥିବା ବେଳେ ଏହି ସହର ଉପକଣ୍ଠରେ ଥିବା ଦକ୍ଷିଣେଶ୍ୱରର ରାସମଣି-ଦେବାଳୟରେ ଜଣେ ଅଖ୍ୟାତ, ଅଜ୍ଞାତ, ପୂଜାରୀ-ବ୍ରାହ୍ମଣ ଲୋକଲୋଚନ ଅନ୍ତରାଳରେ ତ୍ରୈଲୋକ୍ୟକମ୍ପନକାରୀ ଅଦ୍ଭୁତ ଶକ୍ତି ସହ ଜଗଦମ୍ବାଙ୍କ କୃପା ହେତୁ ମସ୍ତକୋତ୍ତୋଳନ କରୁଥିଲେ । — ସେ ହେଉଛନ୍ତି ଶ୍ରୀଶ୍ରୀରାମକୃଷ୍ଣ ପରମହଂସ ଦେବ । ବିଲାତ-ଫେରନ୍ତା ପ୍ରଖ୍ୟାତନାମା ବାଗ୍ମୀ, ଧର୍ମପ୍ରଚାରକ, ସମାଜ-ସଂସ୍କାରକଗଣଙ୍କ ଅଗ୍ରଣୀ, ଭକ୍ତଚୂଡ଼ାମଣି କେଶବଚନ୍ଦ୍ର ଯେତେବେଳେ ଏହି ମହାପୁରୁଷଙ୍କ ଚରଣତଳେ ଉପସ୍ଥିତ ହେଲେ ଏବଂ ମୂର୍ତ୍ତିପୂଜାବିରୋଧୀ ଦୃଢ଼ହୃଦୟ କେଶବଚନ୍ଦ୍ର ଯେତେବେଳେ ପ୍ରସ୍ତରମୂର୍ତ୍ତି ସମ୍ମୁଖରେ ଦଣ୍ଡାୟମାନ ହୋଇ ଭକ୍ତିମିଶା ସ୍ୱରରେ ଚିତ୍କାର କରି ଉଠିଲେ, "ଏ କଣ ଦେଖୁଛି ! ମୃଣ୍ମୟୀ ଆଧାରରେ ଚିନ୍ମୟୀ ପ୍ରତିମା ।" ସେହିଦିନଠାରୁ ସଂସ୍କାରଯୁଗର ଅନ୍ୟ ଗୋଟିଏ ଅଭିନବ ଅଧ୍ୟାୟ ଆରମ୍ଭ ହେଲା । ବ୍ରହ୍ମାନନ୍ଦ କେଶବଚନ୍ଦ୍ର, ପ୍ରତାପଚନ୍ଦ୍ର ମଜୁମଦାର, ବିଜୟକୃଷ୍ଣ ଗୋସ୍ୱାମୀ ପ୍ରଭୃତି ବ୍ରାହ୍ମସମାଜର ରଥୀବୃନ୍ଦ—ଏହି ଅଭିନବ ମହାପୁରୁଷଙ୍କ ପୂତ ପ୍ରଭାବରେ ପ୍ରଭାବାନ୍ୱିତ ହୋଇଥିଲେ ।

୧୮୭୯ ଖ୍ରୀଷ୍ଟାବ୍ଦରେ "Theistic Quarterly Review"ର ଅକ୍ଟୋବର ସଂଖ୍ୟାରେ ନବବିଧାନ ସମାଜର ପ୍ରଚାରକ ରେଭରେଣ୍ଡ ପ୍ରତାପଚନ୍ଦ୍ର ମଜୁମ୍‌ଦାର ମହାଶୟ ଶ୍ରୀରାମକୃଷ୍ଣଙ୍କ ସମ୍ବନ୍ଧୀୟ ଗୋଟିଏ ସୁଦୀର୍ଘ ପ୍ରବନ୍ଧରେ ଲେଖିଥିଲେ —

"ମୋ ମନ ଏବେ ମଧ୍ୟ ଗୋଟିଏ ଉଜ୍ଜ୍ୱଳ ଜ୍ୟୋତିର୍ମୟ ରାଜ୍ୟରେ ବିଚରଣ କରୁଛି, ଯାହା ସେହି ରହସ୍ୟମୟ ପୁରୁଷ ଯେଉଁ ସ୍ଥାନକୁ ଯାଉଛନ୍ତି, ସେ ସ୍ଥାନରେ ତାଙ୍କ ଚତୁର୍ଦ୍ଦିଗରେ ବିକୀର୍ଣ୍ଣ କରନ୍ତି । ତାଙ୍କ ସହିତ ଦେଖା ହେବା ମାତ୍ରକେ ସେ

ଅନିର୍ବଚନୀୟ, ରହସ୍ୟପୂର୍ଣ୍ଣ ଭାବନିଚୟଦ୍ୱାରା ମୋ ହୃଦୟ ପୂର୍ଣ୍ଣ କରିଦିଅନ୍ତି; ତାଙ୍କ ପ୍ରଭାବରୁ ମୋ ମନ ଏପର୍ଯ୍ୟନ୍ତ ମୁକ୍ତ ହୋଇପାରିନାହିଁ ।''

''ତାଙ୍କ ଏବଂ ମୋ ମଧ୍ୟରେ କଅଣ ସାଦୃଶ୍ୟ ଅଛି ? ମୁଁ ଇଉରୋପୀୟ ଭାବାପନ୍ନ, ସଭ୍ୟ ଆତ୍ମାଭିମାନୀ, ଅର୍ଦ୍ଧସନ୍ଦେହବାଦୀ ଓ ତଥାକଥିତ ଶିକ୍ଷିତ ଯୁକ୍ତିବାଦୀ ଏବଂ ସେ ଜଣେ ଦରିଦ୍ର, ବର୍ଣ୍ଣଜ୍ଞାନହୀନ, ଅମାର୍ଜିତ-ରୁଚିବିଶିଷ୍ଟ, ଅର୍ଦ୍ଧ-ପୌତ୍ତଳିକ, ବନ୍ଧୁହୀନ, ହିନ୍ଦୁ ଭକ୍ତ । ମୁଁ କାହିଁକି ତାଙ୍କ କଥା ଶୁଣିବା ଲାଗି ବହୁ ସମୟ ବସି ରହେ ? ମୁଁ ତ ଡିସରାଇଲ୍, ଫସେଟ୍, ଷ୍ଟେନଲୀ, ମ୍ୟାକ୍ସମୁଲର୍ ଏବଂ ପାଶ୍ଚାତ୍ୟଜଗତର ସବୁ ମନୀଷୀ ଓ ଧର୍ମପ୍ରଚାରକଗଣଙ୍କ ଉପଦେଶ ଶୁଣିଛି; ମୁଁ ତ ପୁଣି ଯିଶୁଖ୍ରୀଷ୍ଟଙ୍କର ଜଣେ ଏକାନ୍ତ ଭକ୍ତ ଓ ଅନୁଚର, ଉଦାରହୃଦୟ ଖ୍ରିଷ୍ଟାନ୍ ମିଶନାରୀମାନଙ୍କ ବନ୍ଧୁ ଓ ସମର୍ଥକ, ଯୁକ୍ତିପନ୍ଥୀ ବ୍ରାହ୍ମସମାଜର ଅନୁଗତ ଭକ୍ତ ଓ କର୍ମୀ, କାହିଁକି ମୁଁ ତାଙ୍କ ବାଣୀ ଶୁଣିବା ମାତ୍ରକେ ମନ୍ତ୍ରମୁଗ୍ଧ ହୋଇଯାଏ ? ଏବଂ ଏକା ମୁଁ ନୁହେଁ, ମୋ ପରି ବହୁ ବ୍ୟକ୍ତି ଏପରି ହୋଇଥାଆନ୍ତି । x x x''

''କିନ୍ତୁ ଯେତେଦିନ ସେ ଆମ ପାଖରେ ଜୀବିତ ଅଛନ୍ତି, ସେତେଦିନ ଆମେ ଆନନ୍ଦରେ ତାଙ୍କ ଚରଣତଳେ ବସି ତାଙ୍କଠାରୁ ପବିତ୍ରତା, ବୈରାଗ୍ୟ, ସଂସାର ଅନାସକ୍ତି, ଆଧ୍ୟାତ୍ମିକତା ଏବଂ ଭଗବତ୍-ପ୍ରେମୋନ୍ମତ୍ତତା ସମ୍ବନ୍ଧରେ ଉପଦେଶ ଶ୍ରବଣ କରିବୁ ।''

ଶ୍ରୀଯୁକ୍ତ ମଜୁମଦାର ଉଲ୍ଲିଖିତ ମନ୍ତବ୍ୟରେ ଆତ୍ମପରିଚୟ ଦେବାକୁ ଯାଇ ସରଳ ଭାବରେ ଯେଉଁ ମତ ବ୍ୟକ୍ତ କରିଛନ୍ତି, ତାହା ପାଠ କଲେ ବ୍ରାହ୍ମସମାଜ କେତେଦୂର ପାଶ୍ଚାତ୍ୟ ଭାବଧାରାରେ ପ୍ରଭାବିତ ଓ ଅନୁପ୍ରାଣିତ ହୋଇଥିଲା, ତାହା ବୁଝିବାକୁ ଡେରି ହେବ ନାହିଁ ଏବଂ ସେହି କାରଣରୁ ଶ୍ରୀରାମକୃଷ୍ଣଙ୍କ ଚରିତ୍ର ଓ ସାଧନାର ପ୍ରଭାବ ପ୍ରଥମେ ବ୍ରାହ୍ମସମାଜ ଉପରେ ପଡ଼ି ପରାନୁକରଣ-ମୋହକୁ ଅନେକ ପରିମାଣରେ ଦୂର କରିପାରିଥିଲା ।

ସେଥିପାଇଁ ଗୋଟିଏ ଜୀବନ୍ତ, ଜାଗ୍ରତ ଜାତିର ଯୁଗଯୁଗାନ୍ତରର ଚିରପୋଷିତ ଆଶା, ଆଦର୍ଶସମୂହର ଜୀବନ୍ତ ଘନ-ବିଗ୍ରହ ରୂପକୁ ତତ୍କାଳୀନ ବଙ୍ଗୀୟ-ସମାଜ ବିସ୍ମୟରେ ଦେଖିଲା — ସେ ହେଉଛନ୍ତି ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଭାଗୀରଥି କୂଳରେ ଥିବା ପଞ୍ଚବଟୀ ମୂଳରେ ଉପବିଷ୍ଟ, ଶକ୍ତି-ସାଧକ,-ନିର୍ବିକଳ୍ପ ସମାଧିସ୍ଥ-ମହାଯୋଗୀ, ଭକ୍ତଚୂଡ଼ାମଣି-ବୈଷ୍ଣବ, ଶାକ୍ତ, ଖ୍ରିଷ୍ଟାନ୍, ମୁସଲମାନ ଆଦି ବିଭିନ୍ନପ୍ରକାର ଧର୍ମସାଧନରେ ସିଦ୍ଧ ପୁରୁଷ — ଶ୍ରୀଶ୍ରୀରାମକୃଷ୍ଣ ପରମହଂସ ଦେବ । ତାଙ୍କ ସମ୍ବନ୍ଧରେ ଉତ୍ତରକାଳରେ ବିବେକାନନ୍ଦ ଲେଖିଛନ୍ତି —

''କାଳର ପ୍ରଭାବରୁ ସଦାଚାରଭ୍ରଷ୍ଟ, ବୈରାଗ୍ୟବିହୀନ, ଏକମାତ୍ର ଲୋକାଚାରନିଷ୍ଠ ଓ କ୍ଷୀଣବୁଦ୍ଧି ଆର୍ଯ୍ୟସନ୍ତାନ, x x x ସ୍ଥୂଳରୂପେ ବୈଦାନ୍ତିକ ସୂକ୍ଷ୍ମ ତତ୍ତ୍ୱର ପ୍ରଚାରକାରୀ ପୁରାଣାଦି ତନ୍ତ୍ରଗୁଡ଼ିକର ମର୍ମ ଗ୍ରହଣ କରିବାକୁ ଅସମର୍ଥ ହୋଇ, ଅନନ୍ତଭାବ-ସମଷ୍ଟି ଅଖଣ୍ଡ ସନାତନ ଧର୍ମକୁ ବହୁଖଣ୍ଡରେ ବିଭକ୍ତ କରି,

ସାମ୍ପ୍ରଦାୟିକ ଈର୍ଷା ଓ କ୍ରୋଧ ପ୍ରଜ୍ୱଳିତ କରି ସେଥିମଧ୍ୟରେ ପରସ୍ପରକୁ ଆହୁତି ଦେବା ନିମିତ୍ତ ସତତ ଚେଷ୍ଟିତ ରହି ଯେତେବେଳେ ଏହି ଧର୍ମଭୂମି ଭାରତବର୍ଷକୁ ପ୍ରାୟ ନରକଭୂମିରେ ପରିଣତ କରିଥିଲେ—ସେତେବେଳେ ଆର୍ଯ୍ୟ ଜାତିର ପ୍ରକୃତ ଧର୍ମ କ'ଣ ଏବଂ ସତତ ବିବାଦମାନ, ଆପାତପ୍ରତୀୟମାନ ବହୁଧାବିଭକ୍ତ, ସର୍ବଥାବିପରୀତ ଆଚାର-ସଂକୁଳ ସମ୍ପ୍ରଦାୟରେ ସମାଚ୍ଛନ୍ନ, ସ୍ୱଦେଶୀର ଭ୍ରାନ୍ତିସ୍ଥାନ ଓ ବିଦେଶୀର ଘୃଣାସ୍ପଦ ହିନ୍ଦୁଧର୍ମ ନାମକ ଯୁଗଯୁଗାନ୍ତରବ୍ୟାହୀ ବିଖଣ୍ଡିତ ଓ ଦେଶକାଳ ଯୋଗରେ ଇତସ୍ତତଃ ବିକ୍ଷିପ୍ତ ଧର୍ମଖଣ୍ଡ-ସମଷ୍ଟି ମଧ୍ୟରେ ଯଥାର୍ଥ ଏକତା କାହିଁ, ତାହା ଦେଖାଇଦେବା ନମିତ୍ତ—ଏବଂ କାଳକ୍ରମେ ନଷ୍ଟ ଏହି ସନାତନ ଧର୍ମର ସାର୍ବଲୌକିକ ଓ ସାର୍ବଦୈଶିକ ସ୍ୱରୂପ ସ୍ୱୀୟ ଜୀବନରେ ନିହିତ କରି ସନାତନ ଧର୍ମର ଜୀବନ୍ତ ଉଦାହରଣ ସ୍ୱରୂପ ଲୋକହିତ ପାଇଁ ସର୍ବସମକ୍ଷରେ ନିଜ ଜୀବନ ପ୍ରଦର୍ଶନ କରିବା ପାଇଁ ଭଗବାନ ଶ୍ରୀରାମକୃଷ୍ଣ ଅବତୀର୍ଣ୍ଣ ହୋଇଥିଲେ ।''

## ବ୍ରାହ୍ମସମାଜରେ ଦଳାଦଳି

ରାମକୃଷ୍ଣ ପରମହଂସଙ୍କ ସଂସ୍ପର୍ଶରେ ଆସି କେଶବଙ୍କ ଧର୍ମଜୀବନ ବିଚିତ୍ରରୂପେ ପରିବର୍ତ୍ତିତ ହୋଇଥିଲା । ସେ ନିଜେ ଆଧୁନିକ ଶିକ୍ଷିତ-ସମାଜରେ ସର୍ବପ୍ରଥମେ ପରମହଂସଙ୍କ ଉପଦେଶ ପ୍ରଚାର କରିବାକୁ ପ୍ରବୃତ୍ତ ହୋଇଥିଲେ । ସେ ନିଜ ଅନୁଗତ ସାଧକମାନଙ୍କୁ ଏହି ମହାପୁରୁଷଙ୍କ ଆଦର୍ଶରେ ଜୀବନ ଗଠନ କରିବା ଲାଗି ଉପଦେଶ ଦେଉଥିଲେ । ଶ୍ରୀରାମକୃଷ୍ଣଙ୍କ ପ୍ରଭାବ ଯୋଗୁଁ କେଶବଚନ୍ଦ୍ରଙ୍କ ଧର୍ମପ୍ରବଣ ମନରେ ବୈରାଗ୍ୟର ସୃଷ୍ଟି ହେଲା, ସେ ବ୍ରାହ୍ମସମାଜରେ ବୈରାଗ୍ୟ ଓ ସଂଯମସାଧନା ପ୍ରବର୍ତ୍ତନ କରିବାକୁ ପ୍ରୟାସୀ ହେଲେ ଏବଂ ନିଜେ ନାନାପ୍ରକାର ଦୈହିକ କଠୋରତା, ସ୍ୱପାକଭୋଜନ ଆଦି ଆରମ୍ଭ କଲେ । କ୍ରମେ 'ଭାରତବର୍ଷୀୟ ବ୍ରାହ୍ମସମାଜ'ରେ ଗୃହବିବାଦର ସୂତ୍ରପାତ ହେଲା । ଅନେକେ କେଶବଙ୍କ ଭକ୍ତିର ଆତିଶଯ୍ୟ, ଅତ୍ୟଧିକ ଖ୍ରୀଷ୍ଟପ୍ରୀତି, ବିଶେଷ ସାଧନଭଜନ, ଯୋଗ, ଧ୍ୟାନ ଇତ୍ୟାଦି ପସନ୍ଦ କଲେ ନାହିଁ । ଅବଶେଷରେ ୧୮୭୮ ଖ୍ରୀଷ୍ଟାବ୍ଦରେ କେଶବଙ୍କ ନାବାଳିକା କନ୍ୟା ସହିତ କୁଚ୍‌ବିହାର ମହାରାଜାଙ୍କର ବିବାହ ହେଲା । ଏହି ବିବାହ ଉପଲକ୍ଷ୍ୟରେ କେଶବ ବ୍ରାହ୍ମସମାଜ ସ୍ୱରଚିତ ନିୟମାବଳୀର ମର୍ଯ୍ୟାଦା ରକ୍ଷା କରିପାରିଲେ ନାହିଁ । ବିଶେଷତଃ କେଶବଙ୍କୁ ବାଧ୍ୟ ହୋଇ ହିନ୍ଦୁମତାନୁସାରେ କନ୍ୟା ସମ୍ପ୍ରଦାନ କରିବାକୁ ହୋଇଥିଲା । ଏଥିପାଇଁ ବ୍ରାହ୍ମ ସମାଜରେ ତୁମୂଳ ଆନ୍ଦୋଳନ ଆରମ୍ଭ ହୋଇଗଲା; ଦଳେ ବ୍ରାହ୍ମ କେଶବଚନ୍ଦ୍ରଙ୍କୁ ଆଚାର୍ଯ୍ୟ ଓ ସମ୍ପାଦକ ପଦରୁ ବାହାର କରିବାକୁ ଚେଷ୍ଟା କରିଥିଲେ । ଏହି ବିବାଦ ଫଳରେ ଲଜ୍ଜାକର ଆତ୍ମ-ଦୌର୍ବଲ୍ୟ ପ୍ରକଟକରି ବ୍ରାହ୍ମସମାଜ ପୁନର୍ବାର ଦୁଇଭାଗରେ ବିଭକ୍ତ ହୋଇଗଲା; ପ୍ରତିବାଦ କରିଥିବା ବ୍ରାହ୍ମମାନେ ବିଜୟକୃଷ୍ଣ, ଶିବନାଥ ପ୍ରଭୃତି ନେତୃବୃନ୍ଦଙ୍କୁ ଆଗରେ ରଖି 'ସାଧାରଣ ବ୍ରାହ୍ମସମାଜ' ପ୍ରତିଷ୍ଠା କଲେ ।

## ବ୍ରାହ୍ମସମାଜ ଉପରେ ଶ୍ରୀରାମକୃଷ୍ଣଙ୍କ ପ୍ରଭାବ

ଅପର ଦିଗରେ କେଶବ ଶ୍ରୀରାମକୃଷ୍ଣ-କଥିତ 'ସର୍ବଧର୍ମ ହିଁ ସତ୍ୟ', 'ଯେତେ ମତ, ସେତେ ପଥ' — ଇତ୍ୟାଦି ଉପଦେଶ ଆଂଶିକ ଭାବରେ ଉପଲବ୍ଧି କରି 'ନବବିଧାନ' ନାମ ଦେଇ ଗୋଟିଏ ସ୍ୱତନ୍ତ୍ର ସମାଜ ସ୍ଥାପନ କଲେ ଏବଂ ହିନ୍ଦୁ ଓ ଖ୍ରୀଷ୍ଟଧର୍ମ ଶାସ୍ତ୍ରଗୁଡ଼ିକୁ ଅବଲମ୍ବନ କରି ନୂତନ ବିଧି-ନିଷେଧ, ସାଧନପ୍ରଣାଳୀ, ସାମାଜିକ ଆଚାର ନିୟମ ଇତ୍ୟାଦି ପ୍ରଣୟନରେ ପ୍ରବୃତ୍ତ ହେଲେ ।

'ନବବିଧାନ' ସମାଜରେ କେଶବବାବୁ ପରମହଂସ ଦେବଙ୍କର ଆଦର୍ଶ ଅନୁସାରେ 'ମା' ନାମ ଚଳାଇଦେଲେ; ନିଜେ ମଧ୍ୟ ମାତୃଭାବରେ ଭଗବାନଙ୍କ ସାଧନାରେ ଅଗ୍ରସର ହେଲେ । ମାତୃଭାବରେ ଭଗବାନଙ୍କ ଉପାସନା କରିବା ନୀତି କେଶବବାବୁ ପରମହଂସ ଦେବଙ୍କଠାରୁ ପାଇଥିବା ବିଷୟ ଅସ୍ୱୀକାର କରି ବହୁଦିନ ପରେ ଏହି ସମାଜର ପ୍ରଚାରକଗଣ ପ୍ରବନ୍ଧାଦି ଲେଖିଥିଲେ । ଅଧ୍ୟାପକ ମ୍ୟାକ୍ସମୁଲରଙ୍କଦ୍ୱାରା ପ୍ରଣୀତ ରାମକୃଷ୍ଣ-ଜୀବନୀରେ କେଶବଙ୍କ ଧର୍ମଜୀବନର ପରିବର୍ତ୍ତନ, ଉନ୍ନତି, ସାଧନାକାଙ୍କ୍ଷାର ପ୍ରଧାନ କାରଣ ଏହି ମହାପୁରୁଷ ବୋଲି ଲେଖା ହୋଇଥିବାରୁ ସେମାନଙ୍କ ଆଚାର୍ଯ୍ୟ ଛୋଟ ହୋଇଗଲେ, ଏହି ଧାରଣାର ବଶବର୍ତ୍ତୀ ହୋଇ ସେମାନେ ବିଦ୍ୱେଷ-ବିଷଯୁକ୍ତ ପ୍ରବନ୍ଧ ଓ ପୁସ୍ତିକା ଲେଖି ପ୍ରଚାର କରିବାକୁ ଲାଗିଲେ ଯେ ରାମକୃଷ୍ଣ ପରମହଂସ ନିଜେ କେଶବଙ୍କ ଶିଷ୍ୟତ୍ୱ ଗ୍ରହଣ କରି ଧର୍ମଜୀବନରେ ଉନ୍ନତି କରିବାକୁ ସମର୍ଥ ହୋଇଥିଲେ, ଇତ୍ୟାଦି ଇତ୍ୟାଦି । କେଶବଙ୍କ ପରବର୍ତ୍ତୀ ଶିଷ୍ୟ ବୋଧହୁଏ ଅବଗତ ନ ଥିଲେ ଯେ, ନବବିଧାନ ସମାଜର ଅନ୍ୟତମ ପ୍ରଚାରକ ବାବୁ ଗିରିଶଚନ୍ଦ୍ର ସେନ୍ ବହୁ ଆଗରୁ ଲେଖିଥିଲେ -

''ଭଗବାନଙ୍କ ମାତୃଭାବ ସମ୍ବନ୍ଧୀୟ ଧାରଣା ବ୍ରାହ୍ମସମାଜ ପରମହଂସଙ୍କ ଜୀବନରୁ ପାଇଥିଲେ । ବିଶେଷତଃ ଆମମାନଙ୍କ ଆଚାର୍ଯ୍ୟ (କେଶବଚନ୍ଦ୍ର ସେନ୍) ତାଙ୍କ ନିକଟରୁ ଈଶ୍ୱରଙ୍କୁ 'ମା' ବୋଲି ଡାକିବାକୁ ଏବଂ ଶିଶୁସୁଲଭ ସରଳତା ଓ ଅଭିମାନସହ ବ୍ୟବହାର ପ୍ରଦର୍ଶନ କରି ପ୍ରାର୍ଥନା କରିବାକୁ ଶିକ୍ଷା କରିଥିଲେ । ଏଥିପୂର୍ବରୁ ବ୍ରାହ୍ମଧର୍ମ ଜ୍ଞାନପ୍ରଧାନ ଓ ଶୁଷ୍କ ଯୁକ୍ତିତର୍କରେ ପୂର୍ଣ୍ଣ ଥିଲା । ପରମହଂସଙ୍କ ଜୀବନାଦର୍ଶ ବ୍ରାହ୍ମଧର୍ମରୁ ଶୁଷ୍କତା ଦୂର କରି ଏହାକୁ ଅଧିକ ପ୍ରିୟତମ ଏବଂ ଭକ୍ତିମୟ କରିଥିଲା ।''

(ଧର୍ମତତ୍ତ୍ୱ — ପହିଲା ଆଶ୍ୱିନ, ୧୮୦୯ ଶକ)

## ସନାତନ-ଧର୍ମ ପ୍ରଚାର ଓ ରାଜନୈତିକ ଆନ୍ଦୋଳନର ଆରମ୍ଭ

ଉଦାରଭାବ ଓ ସାର୍ବଜନୀନ ଧର୍ମ ଇତ୍ୟାଦିର ଦ୍ୱାହି ଦେଇ ବ୍ରାହ୍ମସମାଜରେ ଯେଉଁ ଲଜ୍ଜାକର ଦଳାଦଳି ଆରମ୍ଭ ହୋଇଥିଲା — ସେଥିଯୋଗୁଁ ବ୍ରାହ୍ମଧର୍ମର ପ୍ରଭାବ ଅତିମାତ୍ରାରେ ଖର୍ବ ହୋଇଗଲା ।

ଅନ୍ୟ ଦିଗରେ ୧୮୭୦ ଖ୍ରୀଷ୍ଟାବ୍ଦଠାରୁ ବ୍ରାହ୍ମସମାଜ ବିରୋଧରେ ସନାତନପନ୍ଥୀମାନଙ୍କ ଆନ୍ଦୋଳନ ଫଳପ୍ରସୂ ହେବାକୁ ଲଗିଲା । ଏଥିମଧ୍ୟରେ ପ୍ରଚାରକ ଶ୍ରୀକୃଷ୍ଣପ୍ରସନ୍ନ ସେନଙ୍କ ଚେଷ୍ଟା, ବକ୍ତୃତାଶକ୍ତି ଏବଂ କର୍ମୋତ୍ସାହ ବିଶେଷରୂପେ ଉଲ୍ଲେଖଯୋଗ୍ୟ । ବିଭିନ୍ନ ସ୍ଥାନରେ ଭ୍ରମଣ କରି ଏହି ପରିବ୍ରାଜକ ସନ୍ନ୍ୟାସୀ ସନାତନ ଧର୍ମ ପ୍ରଚାର କରି ବ୍ରାହ୍ମଭାବାପନ୍ନ ଶିକ୍ଷିତ ବ୍ୟକ୍ତିମାନଙ୍କୁ ପୁନରାୟ ସ୍ୱମତକୁ ଫେରାଇ ଆଣୁଥିବାର ଦେଖି ବ୍ରାହ୍ମପ୍ରଚାରକଗଣ ଭଗ୍ନୋତ୍ସାହ ହୋଇପଡ଼ିଲେ । ପଣ୍ଡିତ ଶଶଧର ତର୍କଚୂଡ଼ାମଣିଙ୍କ ହିନ୍ଦୁଶାସ୍ତ୍ର ବ୍ୟାଖ୍ୟା ମଧ୍ୟ କଲିକତା ସହରରେ କମ୍ ଚାଞ୍ଚଲ୍ୟ ସୃଷ୍ଟି କରିନଥିଲା । ଇତିପୂର୍ବରୁ ଶୋଭାବଜାରର ରାଜା କମଳକୃଷ୍ଣ ବାହାଦୂରଙ୍କଦ୍ୱାରା ପ୍ରତିଷ୍ଠିତ 'ସନାତନଧର୍ମ-ରକ୍ଷିଣୀ' ସଭାରେ ମଧ୍ୟ ନୂତନ ଶକ୍ତି ସଞ୍ଚାରିତ ହେଲା । ପ୍ରାଚୀନ ଶାସ୍ତ୍ରବ୍ୟାଖ୍ୟା, ସାତ୍ତ୍ୱିକାଚାର ପ୍ରତିଷ୍ଠା ଓ ହିନ୍ଦୁଧର୍ମର ଶ୍ରେଷ୍ଠତ୍ୱ ସମ୍ବନ୍ଧରେ ବକ୍ତୃତା, ଆଲୋଚନା ଓ ପ୍ରବନ୍ଧାଦି ପାଠ ଆରମ୍ଭ ହେଲା । ଏହି ସମୟରୁ ଦେଶର ଶିକ୍ଷିତସମାଜ ଉପରୁ ବ୍ରାହ୍ମସମାଜ ପ୍ରଭାବ ହ୍ରାସ ହେବାକୁ ଲାଗିଲା । ସୁରେନ୍ଦ୍ରନାଥ ବନ୍ଦୋପାଧ୍ୟାୟ ଓ ଆନନ୍ଦମୋହନ ବସୁଙ୍କ ଚେଷ୍ଟାରେ ରାଜନୈତିକ ଆନ୍ଦୋଳନ ବେଶ୍ ତେଜି ଉଠିବାରୁ କେଶବଙ୍କ ୧୮୬୦-୬୧ ଖ୍ରୀଷ୍ଟାବ୍ଦର 'ୟଙ୍ଗ୍ ବେଙ୍ଗଲ୍' (ତରୁଣ ବଙ୍ଗ) ସେହି ଆଡ଼କୁ ଢ଼ଳିଲା । ତଥାକଥିତ ଧର୍ମ ଓ ସମାଜ-ସଂସ୍କାର ମାଧ୍ୟମରେ ଜାତୀୟ ଜୀବନ-ସମସ୍ୟାର ମୀମାଂସା ଖୋଜି ନ ପାଇ ଶିକ୍ଷିତ ବ୍ୟକ୍ତିଗଣ ରାଜନୀତି ସାହାଯ୍ୟରେ ମୀମାଂସା କରିବାକୁ ଉଦ୍ୟତ ହେଲେ ।

## ବିବେକାନନ୍ଦ ଓ ସଂସ୍କାରଯୁଗ

ଏହି ସମୟରେ—''ଊନବିଂଶ ଶତାବ୍ଦୀର ଶେଷଭାଗରେ—ଯେତେବେଳେ ଆମେମାନେ ସଂସ୍କାରର ଆବର୍ତ୍ତନରେ ପଡ଼ି କେଉଁ ରାସ୍ତାରେ ଯିବା, ତାହା ବୁଝିପାରୁ ନ ଥିଲୁ, ଯେତେବେଳେ ପାଶ୍ଚାତ୍ୟ ଜଗତ୍‌ର ପ୍ରଖର ବିଦ୍ୟୁତାଲୋକରେ ଆମ ଆଖି ଝଲସି ଯାଉଥିଲା, ଯେତେବେଳେ ସମଗ୍ର ଜାତି ଦିଗଭ୍ରାନ୍ତ ହେବାକୁ ଆରମ୍ଭ କରିଥିଲା, ଯେତେବେଳେ ଜାତି ସମ୍ମୁଖରେ ପ୍ରଶ୍ନ ଉପରେ ପ୍ରଶ୍ନ ଓ ସନ୍ଦେହ ପରେ ସନ୍ଦେହ ପୁଞ୍ଜୀଭୂତ ହୋଇଉଠିଥିଲା, ବିଜାତୀୟ ପଥରେ ସ୍ୱଜାତିର ସଂସ୍କାର-ରଥ ଯେତେବେଳେ ଆଉ ଚଳି ନ ପାରି ଅଟକିଯିବାକୁ ବସିଥିଲା, ଦୀର୍ଘ ଏକଶତ ବର୍ଷର ସଂସ୍କାରଫଳ ଚିନ୍ତା କରି ଯେତେବେଳେ ଆମେ ଏକପ୍ରକାର ହତାଶ ହୋଇ ଯାଇଥିଲୁ, କିନ୍ତୁ କ'ଣ କରିବାକୁ ହେବ, ଜାଣିପାରୁ ନ ଥିଲୁ, ସେତେବେଳେ ସେହି ସଂସ୍କାର-ଝଡ଼ରେ ଆଲୋଡ଼ିତ ଓ ମଥିତ ବଙ୍ଗୀୟ-ସମାଜର ଗର୍ଭରୁ ଆବିର୍ଭୂତ ହେଲେ—ସ୍ୱାମୀ ବିବେକାନନ୍ଦ ।''

ସଂସ୍କାର-ଯୁଗପ୍ରବର୍ତ୍ତକ ରାମମୋହନଙ୍କ କଥା ଛାଡ଼ିଦେଲେ ଏକାଳ ପର୍ଯ୍ୟନ୍ତ ତାଙ୍କ ପରବର୍ତ୍ତୀ ସଂସ୍କାରକଗଣ ଧ୍ୱଂସନୀତି ଅନୁସରଣ କରି ଏତେ ବେଶୀ

ଶକ୍ତି କ୍ଷୟ କଲେ ଯେ, ଗଢ଼ି ତୋଳିବା ସେମାନଙ୍କ ପକ୍ଷରେ ଅସମ୍ଭବ ଓ ଅସାଧ ହୋଇଗଲା । ଏପରିକି ଅବଶେଷରେ ସେମାନେ ଧ୍ୱଂସ କରିବା ଲାଗି ପ୍ରବଳ ଆଗ୍ରହରେ ନିଜ ଶରୀରକୁ ମଧ୍ୟ ତିନିଭାଗରେ ବିଭକ୍ତ କରି ଶକ୍ତିହୀନ ଓ ଦୁର୍ବଳ ହୋଇଗଲେ । ଅନୁବାଦ ଧର୍ମମତ ପ୍ରଚାର, ପାଶ୍ଚାତ୍ୟ ସଭ୍ୟତାର ଅନ୍ଧ ଅନୁକରଣ ଏବଂ ପ୍ରାଚୀନ ସମାଜ ଓ ଧର୍ମ ଉପରେ ଅକାରଣ ଅଭିଶାପ ବର୍ଷଣ — ପରବର୍ତ୍ତୀ ଯୁଗର ଶକ୍ତିହୀନ ଦୁର୍ବଳ ସଂସ୍କାରକଗଣଙ୍କ ଏକମାତ୍ର ବ୍ୟବସାୟ ହେଲା । ଅନ୍ୟ ଗୁରୁତର କାରଣ ସହିତ ବିଶେଷତଃ ଏହିସବୁ କାରଣ ଯୋଗୁଁ ବିଜୟକୃଷ୍ଣ ଗୋସ୍ୱାମୀ 'ଗଣ୍ଡି' ଛାଡ଼ି ବିଶ୍ୱ-ବୈକୁଣ୍ଠ ପଥରେ ବାହାରି ପଡ଼ିଲେ । ବ୍ରାହ୍ମସମାଜ ବହୁତ ଭାବିଚିନ୍ତି ତାଙ୍କ ନାମ କାଟିଦେଲା ।

ବିଗତ ଶତାବ୍ଦୀର ସଂସ୍କାରକମାନଙ୍କ ମଧ୍ୟରୁ କୌଣସି କୌଣସି ବ୍ୟକ୍ତିଙ୍କ ପ୍ରତି ଶ୍ରଦ୍ଧା ପ୍ରଦର୍ଶନ କରୁଥିଲେ ମଧ୍ୟ ମୋଟ ଉପରେ ବିବେକାନନ୍ଦ ସଂସ୍କାରଯୁଗକୁ ଶ୍ରଦ୍ଧାପୂର୍ଣ୍ଣ ଦୃଷ୍ଟିରେ ଦେଖିପାରି ନ ଥିଲେ । ବିବେକାନନ୍ଦ ଧ୍ୱଂସର ବିରୋଧୀ ଥିଲେ । ତାଙ୍କର ମୂଳମନ୍ତ୍ର ଥିଲା — ସଂଗଠନ । ଅଥଚ ସଂସ୍କାରକମାନଙ୍କ ଆଦର୍ଶରେ ଯେ ଗଠନମୂଳକ ପ୍ରସ୍ତାବ ଏକାବେଳକେ ନ ଥିଲା, ଏ କଥା କହିଲେ ସେମାନଙ୍କର ପ୍ରତି ଅବିଚାର ହେବ ଏବଂ ବିବେକାନନ୍ଦଙ୍କ ଆଦର୍ଶ ଓ କାର୍ଯ୍ୟପ୍ରଣାଳୀରେ ଆବର୍ଜନାଗୁଡ଼ିକୁ ପରିହାର କରିବା ଲାଗି ଯେ ଚେଷ୍ଟା ହୋଇ ନ ଥିଲା — ଏହା କହିଲେ ତାହା ମିଥ୍ୟା ହେବ । ତଥାପି ବ୍ରାହ୍ମସଂସ୍କାର-ଯୁଗ ବିରୋଧରେ ଗୋଟିଏ ତୀବ୍ର ପ୍ରତିବାଦ ସ୍ୱରୂପ ବିବେକାନନ୍ଦ ଦଣ୍ଡାୟମାନ ହେଲେ । କିଏ କହିବ ଯେ ଏହି ପ୍ରତିବାଦର ଆବଶ୍ୟକତା ନ ଥିଲା ? ଯାହା ବିରୋଧରେ ପ୍ରତିବାଦ ହୁଏ, ମଣିଷ ସେ ବିଷୟରେ ବିଶେଷରୂପେ ସଜାଗ ଥାଏ । ସେହି ହିସାବରେ ବିବେକାନନ୍ଦ ବ୍ରାହ୍ମଯୁଗ ସମ୍ବନ୍ଧରେ ବିଶେଷରୂପେ ସଚେତନ ଥିଲେ ଏବଂ ଏପରି ସଚେତନ ଥିଲେ ବୋଲି ଗୋଟିଏ ଦିଗରେ ରାମମୋହନ, ବିଦ୍ୟାସାଗର, କେଶବଚନ୍ଦ୍ରଙ୍କ ସଂସ୍କାରର ପ୍ରଭାବ ଓ ପ୍ରତିବାଦ ଯେପରି ତାଙ୍କଠାରେ ଦେଖାଯାଇଥିଲା, ସେହିପରି ଅନ୍ୟ ଦିଗରେ ରାଜନାରାୟଣ, ବଙ୍କିମ ଓ ଭୂଦେବଙ୍କ ଚିନ୍ତା ମଧ୍ୟ ସାହିତ୍ୟ ମାଧ୍ୟମରେ ତାଙ୍କଠାରେ ସଞ୍ଚାରିତ ହୋଇଥିଲା । ଅଥଚ ସବୁଦିଗରୁ ତାଙ୍କ ବ୍ୟକ୍ତିତ୍ୱ ଓ ସ୍ୱାତନ୍ତ୍ର୍ୟ ଅତ୍ୟନ୍ତ ପ୍ରଖର ଭାବରେ ଫୁଟି ଉଠିଥିଲା — ସେ ଗୋଟିଏ ଅତି ଅନୁପମ ଭାସ୍ୱର ଦୀପ୍ତିରେ ଇତିହାସକୁ ଆଲୋକିତ କରିଯାଇଛନ୍ତି । ତାଙ୍କ ମାନସିକ ବିକାଶର ଇତିହାସରେ ଆମେ ଦେଖିବାକୁ ପାଉ ଯେ ସେ ତାଙ୍କ ପୂର୍ବବର୍ତ୍ତୀ ସଂସ୍କାର ଯୁଗକୁ ସମ୍ପୂର୍ଣ୍ଣଭାବେ ଗ୍ରାସ କରି ଅଗ୍ରସର ହୋଇଥିଲେ । ପ୍ରତ୍ୟେକ ପରବର୍ତ୍ତୀ ଯୁଗପ୍ରବର୍ତ୍ତକଙ୍କୁ ହିଁ ତାହା କରିବାକୁ ପଡ଼େ ।

# ତୃତୀୟ ଅଧ୍ୟାୟ

# ସାଧକ ବିବେକାନନ୍ଦ

## (୧୮୮୦-୧୮୮୬)

''ଆଜିକାଲି ଏହା ଗୋଟିଏ ପ୍ରଚଳିତ କଥା ହୋଇଯାଇଛି ଏବଂ ଆଉ ସମସ୍ତେ ବିନା ଆପତ୍ତିରେ ସ୍ୱୀକାର କରିଯାଇଛନ୍ତି ଯେ, ପୌତ୍ତଳିକତା ଗୋଟିଏ ଦୋଷ । ମୁଁ ମଧ୍ୟ ଦିନେ ଏହିପରି ଭାବୁଥିଲି ଏବଂ ଏହାର ଶାସ୍ତିସ୍ୱରୂପ ମୋତେ ଏପରି ଜଣେ ବ୍ୟକ୍ତିଙ୍କ ପାଦତଳେ ବସି ଶିକ୍ଷାଲାଭ କରିବାକୁ ହୋଇଥିଲା ଯେ କି ପିତୁଳା ପୂଜାରୁ ସବୁ କଥା ପାଇଥିଲେ ।''

-ବିବେକାନନ୍ଦ

## ଛାତ୍ର-ଜୀବନର ଦ୍ୱିତୀୟ ସ୍ତର

୧୮୭୯ ଖ୍ରୀଷ୍ଟାବ୍ଦରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ନରେନ୍ଦ୍ରନାଥ କଲେଜରେ ପ୍ରବେଶ କରିବା ବେଳକୁ ସେ ଜଣେ ଅଠରବର୍ଷ ବୟସ୍କ ବାଳକ ମାତ୍ର ଥିଲେ । ପରୀକ୍ଷା ପାଇଁ ପ୍ରସ୍ତୁତ ହେବା ସମୟରେ ତିନିବର୍ଷର ପାଠ୍ୟକୁ ଗୋଟିଏ ବର୍ଷରେ ଶେଷ କରିବାକୁ ଯାଇ ନରେନ୍ଦ୍ରନାଥଙ୍କୁ ଗୁରୁତର ମାନସିକ ପରିଶ୍ରମ କରିବାକୁ ହୋଇଥିଲା । ସେ ପ୍ରେସିଡେନ୍‌ସୀ କଲେଜରେ ଅଧ୍ୟୟନ କଲେ ସତ, କିନ୍ତୁ ମେଲେରିଆ ଜ୍ୱରରେ ଆକ୍ରାନ୍ତ ହେବାରୁ ତାଙ୍କୁ ସେ ବର୍ଷ କଲେଜ ଛାଡ଼ିବାକୁ ପଡ଼ିଥିଲା । ପରବର୍ଷ ସେ ଜେନେରାଲ ଆସେମ୍ବ୍‌ଲି ଇନ୍‌ଷ୍ଟିଚିଉସନ୍‌ରେ ନାମ ଲେଖାଇ ପଢ଼ିଲେ ।

ପ୍ରଖର ବ୍ୟକ୍ତିତ୍ୱଶାଳୀ ନରେନ୍ଦ୍ରନାଥ ଅତି ସହଜରେ ସହପାଠୀମାନଙ୍କ ମଧ୍ୟରେ ପ୍ରତିଷ୍ଠା ଲାଭ କରିପାରିଲେ । ନିଜ ଶକ୍ତି ଉପରେ ଗଭୀର ବିଶ୍ୱାସପ୍ରସୂତ ଶ୍ରେଷ୍ଠତ୍ୱର ଅଭିମାନ ତାଙ୍କ ଚରିତ୍ରର ଦେଦୀପ୍ୟମାନ ବୈଶିଷ୍ଟ୍ୟରୂପେ ସମପରିମାଣରେ ସହପାଠୀ ଓ ଅଧ୍ୟାପକବୃନ୍ଦଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । କଲେଜରେ ନରେନ୍ଦ୍ରଙ୍କ ବହୁତ ବନ୍ଧୁ ଓ ଅନୁରକ୍ତ ଭକ୍ତ ଜୁଟିଥିଲେ । ସେମାନେ ଯେ କେବଳ ତାଙ୍କ ପ୍ରତିଭା ଓ ସୂକ୍ଷ୍ମବୁଦ୍ଧି ଦେଖି ଆକୃଷ୍ଟ ହୋଇଥିଲେ, ଏହା କୁହାଯାଇ ପାରିବ ନାହିଁ । ପ୍ରତିଭା, ପାଣ୍ଡିତ୍ୟ, ତର୍କଶକ୍ତି ଇତ୍ୟାଦି ମାନସିକ ଗୁଣାବଳୀ ଅପେକ୍ଷା ନରେନ୍ଦ୍ରଙ୍କ ମଧୁର ସଙ୍ଗୀତର ମୋହିନୀଶକ୍ତି ଏବଂ ଦୃଢ଼-ସବଳ ନାତିଦୀର୍ଘ ସୁଠାମ ଶରୀର ସହଜରେ ଭାବପ୍ରବଣ ଯୁବକମାନଙ୍କ ହୃଦୟକୁ ଆକର୍ଷଣ କରିଥିଲା । ଆମେ ଶୁଣିଛୁ, ତାଙ୍କର ପୌରୁଷ-ଦୃପ୍ତ ମୁଖମଣ୍ଡଳର ସ୍ନିଗ୍ଧସୌନ୍ଦର୍ଯ୍ୟ ଏବଂ ସର୍ବୋପରି ଉଜ୍ଜ୍ୱଳ ମର୍ମଭେଦୀ ଦୃଷ୍ଟିପୂର୍ଣ୍ଣ ବିଶାଳ ନେତ୍ରଦ୍ୱୟ ଦେଖି ମୁଗ୍ଧ ନ ହେଉଥିବା ଛାତ୍ର କଲେଜରେ ଅତି ଅଳ୍ପ ଥିଲେ ।

## ନରେନ୍ଦ୍ରଙ୍କ ଚରିତ୍ରର ବୈଶିଷ୍ଟ୍ୟ

ନରେନ୍ଦ୍ର କେବେ ଶାନ୍ତ-ଶିଷ୍ଟ ନ ଥିଲେ ; ଲୋକ-ବ୍ୟବହାର ବିଷୟରେ ତତ୍କାଳୀନ ଖ୍ରିସ୍ତାନ୍ ବନାମ ବ୍ରାହ୍ମ-ନୀତିମାର୍ଗର ପଥିକ ମଧ୍ୟ ନ ଥିଲେ । ତାଙ୍କ ନିକଟରେ ଜୀବନ ଥିଲା—ଗୋଟିଏ ସ୍ୱଚ୍ଛନ୍ଦ ଅବିରାମ ପ୍ରବାହ; ତଥାକଥିତ ନୀତିଶାସ୍ତ୍ରର ବିଧି-ନିଷେଧରେ ବାନ୍ଧି ହୋଇ ପଙ୍ଗୁଭାବରେ 'ଭଲ ମଣିଷ' ସାଜିବାର ଗତାନୁଗତିକତା ତାଙ୍କ ଜୀବନର ସହଜ ପ୍ରବଳ ଗତିପଥରେ କୌଣସି ବାଧା ସୃଷ୍ଟି କରି ନ ଥିଲା । ସେ ପରଚର୍ଚ୍ଚା କରିବାକୁ କୁଣ୍ଠାବୋଧ କରୁ ନ ଥିଲେ; କିନ୍ତୁ କେବେହେଲେ କାହା ପଶ୍ଚାତ୍‌ରେ କୌଣସି କଥା କହୁ ନ ଥିଲେ । ଯାହାକୁ ଯାହା କହିବା କଥା, ସେ ତାହା ନିର୍ବିଚାରରେ ମୁହଁ ଉପରେ କହି ଦେଉଥିଲେ । ବାଲସୁଲଭ ସରଳତାରେ ସେ ଯେତେବେଳେ ବ୍ୟକ୍ତିବିଶେଷଙ୍କ ଚରିତ୍ର ସମାଲୋଚନା କରିବାକୁ ଯାଇ ତୀବ୍ର ଶ୍ଳେଷ ବାକ୍ୟରେ ତାଙ୍କ ଅନ୍ତରକୁ ଜର୍ଜରିତ କରି ଦେଉଥିଲେ, ସେତେବେଳେ ବନ୍ଧୁମାନଙ୍କ ଆଗରେ ଅପ୍ରତିଭ ହୋଇ ଉକ୍ତ ବ୍ୟକ୍ତି ସାମୟିକ ଭାବରେ ତାଙ୍କ ଉପରେ ବିରକ୍ତ ହେଲେ ହେଁ ପର ମୁହୂର୍ତ୍ତରେ ତାହା ଭୁଲି ଯାଉଥିଲେ । କାରଣ ଏଭଳି ସମାଲୋଚନା କଠୋର ଓ ନିର୍ଭୀକ ହେଲେ ହେଁ ସେଥିରେ ଈର୍ଷା ବା ଅନ୍ୟ କୌଣସି ନୀଚ ଅଭିସନ୍ଧି ନ ଥିଲା । ଯୁବକ ବା ବାଳକମାନଙ୍କ ଗୋଟିଏ ଅପରାଧ ନରେନ୍ଦ୍ରଙ୍କ ଦୃଷ୍ଟିରେ ଅମାର୍ଜନୀୟ ଥିଲା—ଅପାଙ୍ଗଦୃଷ୍ଟିରେ ଚାହିଁବା, ମୃଦୁହାସ୍ୟ ସହକାରେ ଲଳିତ-ଭଙ୍ଗୀରେ କଥୋପକଥନ ଏବଂ ଆଖିରେ ଆଖି ମିଳିଗଲେ ଲଜ୍ଜାରେ ମୁହଁ ତଳକୁ କରିବା, କୋମଳ ଅଙ୍ଗଭଙ୍ଗୀ, ମନ୍ଥରଗମନ ଇତ୍ୟାଦି ଅଭ୍ୟାସ କରି ପୁରୁଷ ଚେଷ୍ଟା କରି ସ୍ତ୍ରୀ-ଲୋକଙ୍କ ଭଳି ହେବା, ଏହା ତାଙ୍କ ପକ୍ଷରେ ଅସହ୍ୟ ଥିଲା । ତା'ପରେ କୌଣସି ଛାତ୍ର ଅନାବଶ୍ୟକ ବିଳାସଦ୍ରବ୍ୟାଦି ବ୍ୟବହାର କଲେ ନରେନ୍ଦ୍ରଙ୍କ କଠୋର ସମାଲୋଚନାମୂଳକ ତୀକ୍ଷ୍ଣ ବାକ୍ୟ ଯୋଗୁଁ ମୁଣ୍ଡ ପୋତି ନିଜ ଦୋଷ ସ୍ୱୀକାର କରିବା ବ୍ୟତୀତ ଗତ୍ୟନ୍ତର ନ ଥିଲା ।

ଦଣ୍ଡ, କୁସ୍ତି, କ୍ରିକେଟ୍ ଖେଳ ଇତ୍ୟାଦିରେ ତାଙ୍କର ବିଶେଷ ଆଗ୍ରହ ଦେଖାଯାଉଥିଲା । ଦୈହିକ ଶକ୍ତିରେ ନରେନ୍ଦ୍ରନାଥ ସମବୟସ୍କମାନଙ୍କ ମଧ୍ୟରେ ଯେ କୌଣସି ବାଳକଠାରୁ ନ୍ୟୁନ ନ ଥିଲେ ।

ଶକ୍ତିମାନ ଓ ପ୍ରତିଭାଶାଳୀ ନରେନ୍ଦ୍ରନାଥ ପାଠଶ୍ରାନ୍ତ ମସ୍ତିଷ୍କକୁ ବିଶ୍ରାମ ଦେବାକୁ ବେଳେ ବେଳେ ବନ୍ଧୁମାନଙ୍କ ସହିତ ଥଟ୍ଟା ପରିହାସରେ ମାତି ଯାଉଥିଲେ । ଆମୋଦ-ପ୍ରମୋଦ କରିବା ଲାଗି ନୂତନ ଉପାୟ ଉଦ୍ଭାବନ କରିବା ବିଷୟରେ ନରେନ୍ଦ୍ରନାଥ ସିଦ୍ଧହସ୍ତ ଥିଲେ । ତାଙ୍କର ଏହିସବୁ ବ୍ୟବହାର ଓ ଉଚ୍ଛୃଙ୍ଖଳ ପରି ଜଣା ପଡୁଥିବା ଆଚରଣର କାରଣ ବୁଝି ନ ପାରି ଅନେକେ ନାନାପ୍ରକାର ଧାରଣା କରୁଥିଲେ, କେହି କେହି ତିକ୍ତ ମନ୍ତବ୍ୟ ଦେଉଥିଲେ । ତେଜସ୍ୱୀ, ସ୍ୱାଧୀନଚେତା

ନରେନ୍ଦ୍ର ନିନ୍ଦା ଶୁଣି କେବେହେଲେ ବିଚଳିତ ହେଉ ନ ଥିଲେ, ଏପରିକି ଅବଜ୍ଞାସୂଚକ ହସରେ ଉଡ଼ାଇଦେବା ବ୍ୟତୀତ କେବେହେଲେ କୌଣସି ପ୍ରକାର ପ୍ରତିବାଦ କରିବାକୁ ଯାଉ ନ ଥିଲେ । ତୀକ୍ଷ୍ଣବୁଦ୍ଧି ନରେନ୍ଦ୍ରନାଥ ଅଳ୍ପ ସମୟ ଭିତରେ ନିର୍ଦ୍ଦିଷ୍ଟ ପାଠ ଶେଷ କରି ପାରୁଥିଲେ ବୋଲି ସଙ୍ଗୀତ, ହାସ୍ୟ ପରିହାସ ଇତ୍ୟାଦି କରିବା ନିମିତ୍ତ ଯଥେଷ୍ଟ ଅବସର ପାଉଥିଲେ; ଅନେକ ହୀନବୁଦ୍ଧି ବାଳକ ତାଙ୍କୁ ଅନୁକରଣ କରିବାକୁ ଯାଇ ନିଜର ସର୍ବନାଶକୁ ଡାକି ଆଣୁଥିଲେ । ଚପଳ-ଚଟୁଳ-ବାକ୍ୟ-ବିନ୍ୟାସ-ପଟୁ ସୁରସିକ ନରେନ୍ଦ୍ରନାଥଙ୍କ ବାହ୍ୟ ଆଚରଣଦ୍ୱାରା ବିଚାର କରି ଯେଉଁମାନେ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି, କହିବା ବାହୁଲ୍ୟ ଯେ, ସେମାନେ ଏହି ଅଦ୍ଭୁତ ବାଳକଙ୍କର ପ୍ରକୃତ ପରିଚୟ ଅତି ନିକଟରେ ଥାଇ ମଧ୍ୟ ଅତିକମ୍ ପାଇଛନ୍ତି ।

## ପାଠାନୁରାଗ

କବିସୁଲଭ ଉଦ୍ଦାମ କଳ୍ପନା-ପ୍ରବଣ ଅଧୀର ପ୍ରତିଭାର ଅଧିକାରୀ ହୋଇ ନରେନ୍ଦ୍ରନାଥ ନିବିଷ୍ଟମନରେ ଦର୍ଶନଶାସ୍ତ୍ର ବା ଉଚ୍ଚାଙ୍ଗ ସାହିତ୍ୟ ବିଷୟକ ଗ୍ରନ୍ଥାଦି ପାଠ କରିବାବେଳେ ଜଣେ ସ୍ୱତନ୍ତ୍ର ମଣିଷପରି ଜଣା ପଡୁଥିଲେ । ଏଫ.ଏ. ପରୀକ୍ଷା ଦେବା ଆଗରୁ ସେ ମିଲ୍ ପ୍ରମୁଖ ପାଶ୍ଚାତ୍ୟ ନୈୟାୟିକଗଣଙ୍କ ମତବାଦ ସହିତ ପରିଚିତ ହୋଇଥିଲେ ଏବଂ ହିଉମ୍ ଓ ହାରବାର୍ଡ଼ ସ୍ପେନ୍‌ସରଙ୍କ ଦାର୍ଶନିକ ଗ୍ରନ୍ଥମାନ ପଢ଼ିବାକୁ ଆରମ୍ଭ କରିଥିଲେ ।

ଜେନେରାଲ୍ ଆସେମ୍ବ୍ଲି କଲେଜର ଅଧ୍ୟକ୍ଷ ଉଇଲିୟମ ହେଷ୍ଟି ଏକାଧାରରେ ସୁପଣ୍ଡିତ, କବି ଓ ଦାର୍ଶନିକ ଥିଲେ । ନରେନ୍ଦ୍ରନାଥ ଓ ପରବର୍ତ୍ତୀ ଯୁଗର ବିଖ୍ୟାତ ଦାର୍ଶନିକ ଶ୍ରୀଯୁକ୍ତ ବ୍ରଜେନ୍ଦ୍ରନାଥ ଶୀଲ ପ୍ରଭୃତି କେତେଜଣ ପ୍ରତିଭାଶାଳୀ ଛାତ୍ର ତାଙ୍କର ସମଧିକ ପ୍ରିୟ ଥିଲେ । ଏମାନେ ତାଙ୍କ ପାଖରୁ ନିୟମିତ ଭାବରେ ଦର୍ଶନଶାସ୍ତ୍ର ଅଧ୍ୟୟନ କରୁଥିଲେ । ହେଷ୍ଟି ସାହେବ ନରେନ୍ଦ୍ରଙ୍କୁ ଏତେ ବେଶୀ ସ୍ନେହ କରିଥିଲେ ଯେ, ଦିନେ ଉକ୍ତ କଲେଜର 'ଆଲୋଚନା ସଭାରେ' ନରେନ୍ଦ୍ରଙ୍କ ଦାର୍ଶନିକ ମତ ବିଶ୍ଳେଷଣରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ମନ୍ତବ୍ୟ ପ୍ରକାଶ କରିଥିଲେ — "He is an excellent philosophical student. In all the German and English Universities, there is not one student so brilliant as he." (ସେ ଜଣେ ଉତ୍କୃଷ୍ଟ ଦାର୍ଶନିକ ଛାତ୍ର । ଜର୍ମାନୀ ଓ ଇଂଲଣ୍ଡର ସମସ୍ତ ବିଶ୍ୱବିଦ୍ୟାଳୟରେ ତାଙ୍କପରି ଜଣେ ମେଧାବୀ ଛାତ୍ର ମିଳିବେ ନାହିଁ ।)

ପାଶ୍ଚାତ୍ୟ ବିଜ୍ଞାନ ଏବଂ ଦର୍ଶନଶାସ୍ତ୍ରାଦି ଆଲୋଚନା ଫଳରେ ତାଙ୍କ ହୃଦୟରେ ଗୋଟିଏ ତୁମୂଳ ଝଡ଼ର ସୃଷ୍ଟି ହେଲା । ତାଙ୍କ ଜନ୍ମଗତ ସଂସ୍କାର ଓ ଧର୍ମମତ ବିଶ୍ୱାସ ଚଉଦିଗର ପାରିପାର୍ଶ୍ୱିକ ଅବସ୍ଥା ସହିତ ସଂଘର୍ଷରେ ଆସି ବିଚଳିତ ପ୍ରାୟ ହୋଇଗଲା । ଭିତରର ମଣିଷଟିର ଅନ୍ତର୍ନିହିତ ଭାବଧାରା ସହିତ ଏହି ପ୍ରବଳ

ଯୁକ୍ତ ସ୍ଥୂଳଦୃଷ୍ଟିସମ୍ପନ୍ନ ଛାତ୍ରବୃନ୍ଦଙ୍କ ଧାରଣାତୀତ ଥିଲା । ଡକ୍ଟର ବ୍ରଜେନ୍ଦ୍ରନାଥ ଶୀଲ ପ୍ରମୁଖ କେତେଜଣ ଅନ୍ତରଙ୍ଗ ବନ୍ଧୁ ଏ ସମ୍ବନ୍ଧରେ ଅବଗତ ଥିଲେ ।

ଡେକାଟେଙ୍କ ଅହଂବାଦ, ହିଉମ୍ ଓ ବେନ୍‌ଙ୍କ ନାସ୍ତିକତା, ଡାରଉଇନଙ୍କ ଅଭିବ୍ୟକ୍ତିବାଦ—ସର୍ବୋପରି ସ୍ପେନ୍‌ସରଙ୍କ ଅଜ୍ଞେୟବାଦ ଇତ୍ୟାଦି ବିଭିନ୍ନ ଦାର୍ଶନିକମାନଙ୍କ ଚିନ୍ତାରଣ୍ୟରେ ପଥହରା ହୋଇ ନରେନ୍ଦ୍ରନାଥ ପ୍ରକୃତ ସତ୍ୟଲାଭ ନିମିତ୍ତ ବ୍ୟାକୁଳ ହେଲେ । ବ୍ରଜେନ୍ଦ୍ରନାଥ ନିଜ ପ୍ରିୟତମ ବନ୍ଧୁଙ୍କର ଏହି ସମୟର ମାନସିକ ଅବସ୍ଥା ବର୍ଣ୍ଣନା କରି ୧୯୦୭ ସାଲର 'ପ୍ରବୁଦ୍ଧ ଭାରତ' ପତ୍ରିକାରେ ଯେଉଁ ପ୍ରବନ୍ଧ ଲେଖିଥିଲେ, ତାହା ପାଠ କଲେ ନରେନ୍ଦ୍ରନାଥଙ୍କ ମାନସିକ ଅଶାନ୍ତି ଓ ବିପ୍ଳବ ସମ୍ବନ୍ଧରେ ଗୋଟିଏ ଯୁକ୍ତିପୂର୍ଣ୍ଣ ବିବରଣ ମିଳେ । ବ୍ରଜେନ୍ଦ୍ରନାଥ ତାଙ୍କୁ ଶେଲୀଙ୍କ କବିତା, ହେଗେଲଙ୍କ ଦର୍ଶନ ଓ ଫରାସୀ-ବିପ୍ଳବର ଇତିହାସ ଇତ୍ୟାଦି ପଢ଼ିବାକୁ ପରାମର୍ଶ ଦେଲେ । କ୍ରମ-ବର୍ଦ୍ଧମାନ ଜ୍ଞାନପିପାସା ନେଇ ନରେନ୍ଦ୍ରନାଥ ଯେତେ ଅଗ୍ରସର ହେବାକୁ ଲାଗିଲେ, ସେତେ ସେ ଦେଖିବାକୁ ପାଇଲେ ଯେ ଚରମ ସତ୍ୟଲାଭ କରିବାକୁ ହେଲେ କେବଳ ମାତ୍ର ବୁଦ୍ଧି-ବିଚାର ସାହାଯ୍ୟରେ ଦାର୍ଶନିକ ସୂକ୍ଷ୍ମତତ୍ତ୍ୱ ମୀମାଂସାରେ ବ୍ୟାପୃତ ରହିଲେ ଚଳିବ ନାହିଁ । କିନ୍ତୁ ଉପାୟ କ'ଣ ?

## 'ଅଥାତୋ ବ୍ରହ୍ମ-ଜିଜ୍ଞାସା'

ଏହି ପଞ୍ଚେନ୍ଦ୍ରିୟଗ୍ରାହ୍ୟ ଜଡ଼-ଜଗତର ଅନ୍ତରାଳରେ ଏପରି କୌଣସି ଶକ୍ତିମାନ ପୁରୁଷ ଅଛନ୍ତି କି ନାହିଁ, ଯାହାଙ୍କ ଇଙ୍ଗିତରେ ଏହି ଜଡ଼-ସମଷ୍ଟି ପରିଚାଳିତ ହେଉଛି ? ଏହି ମାନବ-ଜୀବନର ଉଦ୍ଦେଶ୍ୟ କ'ଣ ? ଏବଂବିଧ ଅତୀନ୍ଦ୍ରିୟରାଜ୍ୟର ରହସ୍ୟପୂର୍ଣ୍ଣ ପ୍ରଶ୍ନଗୁଡ଼ିକ ପର୍ଯ୍ୟାୟକ୍ରମେ ତାଙ୍କ ମାନସପଟରେ ଉଦିତ ହୋଇ ତାଙ୍କୁ ଉନ୍ମତ୍ତ-ପ୍ରାୟ କରି ଦେଉଥିଲା । ପାଶ୍ଚାତ୍ୟ ବିଜ୍ଞାନ ଓ ଦର୍ଶନଶାସ୍ତ୍ରସମୂହ ଯୁକ୍ତି ଓ ବିଚାର ସାହାଯ୍ୟରେ ତତ୍ତ୍ୱ-ନିରୂପଣ କରିବାକୁ ଯାଇ ଏହାକୁ ଅଧିକତର ଜଟିଳ କରି ପକାଉଛି ବୋଲି ସେ ବୁଝିପାରିଲେ । ଫଳରେ ସେ ନିଜ ସତ୍ୟାନୁସନ୍ଧିତ୍ସୁ ପ୍ରବୃତ୍ତିକୁ କେବଳ ମାତ୍ର ଦର୍ଶନ, ସାହିତ୍ୟ, ବିଜ୍ଞାନ ଓ ଇତିହାସ ଆଲୋଚନାରେ ନିଯୁକ୍ତ ନ ରଖି ବହିର୍ଜଗତର ଜୀବନ୍ତ ଆଦର୍ଶ ଅନୁସନ୍ଧାନ କରିବାକୁ ପ୍ରବୃତ୍ତ ହେଲେ । କୌଣସି ଧର୍ମପ୍ରଚାରକ ଧର୍ମ ବା ଈଶ୍ୱରଙ୍କ ସମ୍ବନ୍ଧରେ ବକ୍ତୃତା କରିବା ସମୟରେ ନରେନ୍ଦ୍ରନାଥ ନିଜ ଅଶାନ୍ତ ହୃଦୟର ବ୍ୟାକୁଳତା ସହିତ ପ୍ରଶ୍ନ କରୁଥିଲେ, ''ମହାଶୟ ! ଆପଣ ଈଶ୍ୱରଙ୍କୁ ଦେଖିଛନ୍ତି କି ?''

ଆଧ୍ୟାତ୍ମିକ-ତତ୍ତ୍ୱ ବ୍ୟାଖ୍ୟା କରୁଥିବା ପ୍ରଚାରକ ଏହି 'ଅଦ୍ଭୁତ' ପ୍ରଶ୍ନକର୍ତ୍ତାଙ୍କ ଉଦ୍‌ଗ୍ରୀବ ମୁଖମଣ୍ଡଳକୁ ଚାହିଁ ଉତ୍ତରରେ 'ହଁ' କି 'ନା' କୌଣସିଟି କହି ନ ପାରି, ନାନାପ୍ରକାର ପ୍ରବୋଧ-ବାକ୍ୟରେ ତାଙ୍କୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରୁଥିଲେ । ତେଣୁ ବହୁ ଚେଷ୍ଟା କରି ସେ ଜଣେ ହେଲେ ପ୍ରତ୍ୟକ୍ଷଦର୍ଶୀଙ୍କୁ ଦେଖି ପାରିଲେ

ନାହିଁ; କେବଳ ପୋଥିଗତ ବିଦ୍ୟାର ଆବୃତ୍ତିକାରୀ ଅଥବା ପରଧର୍ମଛିଦ୍ରାନ୍ୱେଷୀ କେତେଜଣ ବ୍ୟକ୍ତିଙ୍କ ସାକ୍ଷାତ୍ ଲାଭ କରିଥିଲେ ମାତ୍ର। ଧର୍ମପ୍ରଚାରକମାନଙ୍କର ଏଭଳି ଦୁର୍ଦ୍ଦଶା ଦେଖି ସେ ପ୍ରବଳ ସନ୍ଦେହବାଦୀ ହୋଇଥିଲେ; କିନ୍ତୁ ଧର୍ମପ୍ରଚାରକମାନଙ୍କ ଅନ୍ତଃସାରଶୂନ୍ୟତା ଏବଂ ପାଶ୍ଚାତ୍ୟ ଜଡ଼ବିଜ୍ଞାନ ଓ ଦର୍ଶନର ପ୍ରବଳ ଯୁକ୍ତି ସମୂହ କୌଣସିଟି ତାଙ୍କ ସତ୍ୟଲାଭର ଆକାଙ୍କ୍ଷାକୁ ଉନ୍ମୀଳିତ କରିପାରିଲା ନାହିଁ । ସେ ପ୍ରାଣେ ପ୍ରାଣେ ବୁଝିଥିଲେ :-

''ଅବିଦ୍ୟାୟାମନ୍ତରେ ବର୍ତ୍ତମାନାଃ ସ୍ୱୟଂ ଧୀରାଃ ପଣ୍ଡିତଂ ମନ୍ୟମାନାଃ ।
ଜଂଘନ୍ୟମାନାଃ ପରିୟନ୍ତି ମୂଢ଼ା ଅନ୍ଧେନୈବ ନୀୟମାନା ଯଥାନ୍ଧାଃ ।''
ମୂଢ଼ ବିଦ୍ୟା ଅଭିମାନୀ, ଅବିଦ୍ୟା ମଧ୍ୟରେ ଜ୍ଞାନୀ ଭାବେ ଆପଣାରେ
ଅସାର ଜ୍ଞାନର ଗର୍ବେ ଅନ୍ଧନୀତ ଅନ୍ଧସମ ଭ୍ରାମ୍ୟମାଣ ହା'ରେ !

## ବ୍ରାହ୍ମସମାଜରେ ଯୋଗଦାନ

ସତ୍ୟଲାଭର ପ୍ରେରଣା ଯୋଗୁଁ ତାଙ୍କୁ ବ୍ରାହ୍ମସମାଜରେ ଯୋଗ ଦେବାକୁ ହୋଇଥିଲା । ଏହି ଯୁକ୍ତିପନ୍ଥୀ, ସନ୍ଦେହବାଦୀ ଅଥଚ ସତ୍ୟକାମ ଯୁବକ ଆଗ୍ରହ ସହକାରେ ବ୍ରାହ୍ମ-ଆଚାର୍ଯ୍ୟମାନଙ୍କ ଉପଦେଶ ଗ୍ରହଣ କରୁଥିଲେ । ଶେଷରେ କେତେଜଣ ବନ୍ଧୁଙ୍କ ସହ ସେ 'ସାଧାରଣ ବ୍ରାହ୍ମସମାଜ'ର ସଭ୍ୟ ହେଲେ; କିନ୍ତୁ କେତେଗୁଡ଼ିଏ ଧରାବନ୍ଧା ମତବାଦ ଏବଂ ପ୍ରଣାଳୀ ବଦ୍ଧ ଉପାସନା ଇତ୍ୟାଦିରେ ତାଙ୍କର ଅଦ୍ଭୁତ ଆଧ୍ୟାତ୍ମିକ ପିପାସା ତୃପ୍ତ ହେଲା ନାହିଁ ।

ବ୍ରାହ୍ମସମାଜରେ ଯୋଗଦାନ କରିବା ଆଗରୁ ସେ ରାଜା ରାମମୋହନ ରାୟଙ୍କଦ୍ୱାରା ଲିଖିତ ପୁସ୍ତକ ଓ ପ୍ରବନ୍ଧଗୁଡ଼ିକ ସହିତ ପରିଚିତ ହେଲେ । 'ସାଧାରଣ ବ୍ରାହ୍ମସମାଜ' ର ସଭ୍ୟ ହୋଇ ସୁଦ୍ଧା ସେ ମହର୍ଷି ଦେବେନ୍ଦ୍ରନାଥ ଓ କେଶବଚନ୍ଦ୍ରଙ୍କ ନିକଟକୁ ତତ୍ତ୍ୱାଲୋଚନା ନିମିତ୍ତ ଗମନାଗମନ କରୁଥିଲେ । ଅଦ୍ୱିତୀୟ ବକ୍ତା ଓ ଶକ୍ତିଶାଳୀ ପୁରୁଷ କେଶବଚନ୍ଦ୍ର ଅନୁରାଗୀ ହୋଇ ମଧ୍ୟ ନବପ୍ରତିଷ୍ଠିତ 'ନବବିଧାନ ସମାଜ' ରେ ଯୋଗଦାନ ନ କରି ସେ କାହିଁକି 'ସାଧାରଣ ବ୍ରାହ୍ମସମାଜ' ରେ ଯୋଗଦାନ କଲେ, ତାହାର ଚାରିଗୋଟି କାରଣ ଅଛି ।

(୧) ବାଲ୍ୟକାଳରୁ ସେ ଜାତିଗତ ଅଧିକାର ବୈଷମ୍ୟକୁ ଘୃଣା କରୁଥିଲେ । ସାଧାରଣ ବ୍ରାହ୍ମସମାଜର ପ୍ରଚାରକବୃନ୍ଦ ଏହି ସମୟରେ ଜାତିଭେଦ-ପ୍ରଥାର ଉଚ୍ଛେଦସାଧନକଳ୍ପେ ପ୍ରାଣପଣେ ଚେଷ୍ଟା କରୁଥଲେ; ଏଥିରେ ତାଙ୍କର ପୂର୍ଣ୍ଣ ସମ୍ମତି ଥିଲା ।

(୨) ନାରୀମାନଙ୍କୁ ଧର୍ମକାର୍ଯ୍ୟ ଓ ସମାଜ-ଜୀବନରେ ପୁରୁଷ ପରି ସମାନ ଅଧିକାର ପ୍ରଦାନ କରି ସୁଶିକ୍ଷିତ କରିବା ନିମିତ୍ତ ସଂକଳ୍ପ ମଧ୍ୟ ତାଙ୍କର ହୃଦୟଗ୍ରାହୀ ହୋଇଥିଲା ।

(୩) 'ନବବିଧାନ ସମାଜ'ର ବ୍ରାହ୍ମମାନଙ୍କ ଭାବାବେଶ, କ୍ରନ୍ଦନ ଓ ଭକ୍ତିର ଆତିଶଯ୍ୟ ହେତୁ କେଶବଚନ୍ଦ୍ରଙ୍କୁ ପ୍ରେରିତ-ପୁରୁଷରୂପେ ବର୍ଣ୍ଣନା ଆଦି ତାଙ୍କୁ ଭଲ ଲାଗୁ ନ ଥିଲା ।

(୪) ରାଜା ରାମମୋହନଙ୍କ ଆଦର୍ଶ ସହିତ ବ୍ରାହ୍ମ-ସମାଜର କେତେକ ସାମଞ୍ଜସ୍ୟ ଥିଲେ ସୁଦ୍ଧା ଏହା ଯେ ରାଜାଙ୍କ ଈପ୍‌ସିତ ପନ୍ଥାରେ ବିକଶିତ ହୋଇନାହିଁ, ଏହା ସେ ସ୍ପଷ୍ଟ ବୁଝି କୌଣସି ବିଶେଷ ସମାଜର ପୂର୍ଣ୍ଣ ଆନୁଗତ୍ୟ ସ୍ୱୀକାର କରି ନ ଥିଲେ ।

## ବ୍ରାହ୍ମସମାଜ ଓ ନରେନ୍ଦ୍ରଙ୍କ ବ୍ୟକ୍ତି-ସ୍ୱାତନ୍ତ୍ର୍ୟ

ବ୍ରାହ୍ମସମାଜରେ ଯୋଗ ଦେଇ ସୁଦ୍ଧା ସେ ଉପାସନା ବିଷୟରେ ସମାଜର ଅନ୍ୟାନ୍ୟ ସଭ୍ୟମାନଙ୍କ ସହିତ ଏକମତ ହୋଇପାରି ନ ଥିଲେ । ମେଧାବୀ, ଦୃଢ଼ଚେତା ନରେନ୍ଦ୍ରନାଥ ଅପରର ମତାମତକୁ ନିର୍ବିଚାରରେ ଗିଳିପକାଇବା ପରି ଯୁବକ ନ ଥିଲେ; ତେଣୁ କେହି ତାଙ୍କୁ ନିଜ ମତକୁ ଆଣିବା ନିମିତ୍ତ ତର୍କ କଲେ ସେ ପାଶ୍ଚାତ୍ୟ ସଂଶୟବାଦୀ ଦାର୍ଶନିକମାନଙ୍କ ଯୁକ୍ତିଗୁଡ଼ିକ ନିଜ ଅସାଧାରଣ ପ୍ରତିଭା ବଳରେ ଏପରି ଭାବରେ ପ୍ରକାଶ କରୁଥିଲେ ଯେ, ପ୍ରତିପକ୍ଷ ନିରସ୍ତ ହୋଇ ଯାଉଥିଲେ । ନିର୍ଭୀକ ଓ କଠୋର ସମାଲୋଚକ ହେଲେ ମଧ୍ୟ ବ୍ରାହ୍ମସମାଜର ନେତୃବୃନ୍ଦ ତାଙ୍କୁ ସମଧିକ ସ୍ନେହ କରୁଥିଲେ । ରବିବାସରୀୟ ଉପାସନାବେଳେ ନରେନ୍ଦ୍ରନାଥ ମଧୁର କଣ୍ଠରେ ବ୍ରହ୍ମ-ସଙ୍ଗୀତ ଗାଇ ସଭ୍ୟମାନଙ୍କ ଚିତ୍ତବିନୋଦନ କରୁଥିଲେ ଏବଂ ଉପାସନାରେ ଯୋଗ ଦେଉଥିଲେ; କିନ୍ତୁ ତାଙ୍କର "ସ୍ୱାଭାବିକ ବୈରାଗ୍ୟପ୍ରବଣ ମନ, ବ୍ରାହ୍ମସମାଜର ପ୍ରଣାଳୀ-ବଦ୍ଧ ଉପାସନାରେ ତ୍ୟାଗ ଓ ଜ୍ୱଳନ୍ତ ଧର୍ମବୁଦ୍ଧିର ଅଭାବ ହେତୁ ତୃପ୍ତି ଲାଭ କରୁ ନ ଥିଲା ।"

ବାଲ୍ୟକାଳରୁ ନରେନ୍ଦ୍ରନାଥ ଧ୍ୟାନାନନ୍ଦରେ ତନ୍ମୟ ହୋଇଯାଉଥିଲେ । ସେ ଚେଷ୍ଟା କରି ମନସଂଯମ କରୁ ନ ଥିଲେ । ଦିନେ ମହର୍ଷି ଦେବେନ୍ଦ୍ରନାଥ ଠାକୁର ନରେନ୍ଦ୍ରଙ୍କୁ ଧ୍ୟାନ କରିବା ଲାଗି ଉପଦେଶ ଦେଲେ । କହିଲେ, ତୁମ ଶରୀରରେ ଯୋଗୀଜନୋଚିତ ଚିହ୍ନ ବିଦ୍ୟମାନ । ତୁମେ ଧ୍ୟାନକଲେ ଶାନ୍ତି ଓ ସତ୍ୟ ଲାଭ କରିବ । ପୂତଚରିତ ମହର୍ଷିଙ୍କ ପ୍ରତି ନରେନ୍ଦ୍ରନାଥ ଶ୍ରଦ୍ଧାବାନ ଓ ଭକ୍ତିମାନ ଥିଲେ; ତେଣୁ ତାଙ୍କ କଥାରେ ନରେନ୍ଦ୍ରଙ୍କ ଅନୁରାଗ ଦ୍ୱିଗୁଣିତ ହେଲା । କେବଳ ତାହା ନୁହେଁ— ସେ କଠୋର ବ୍ରହ୍ମଚର୍ଯ୍ୟ ପାଳନରେ ଆଗେଇ ଗଲେ । ନିରାମିଷ ଓ ପରିମିତ ଆହାର, ଭୂମିଶଯ୍ୟାରେ ଶୟନ, ସାଦା ଧୋତି ଓ ଚଦର ପରିଧାନ ଇତ୍ୟାଦି ବାହ୍ୟ କଠୋରତା ମଧ୍ୟ ଅବଲମ୍ବନ କରୁଥିଲେ । ନରେନ୍ଦ୍ରନାଥ ନିଜ ଘର ପାଖରେ ଥିବା ମାତାମହୀଙ୍କ ଭଡ଼ାଘରର ଗୋଟିଏ କୋଠରୀରେ ରହୁଥିଲେ । ସ୍ଥାନଟି କୋଳାହଳହୀନ ଓ ନିର୍ଜନ ହୋଇଥିବାରୁ ତାଙ୍କର ସାଧନ-ଭଜନ ଲାଗି ସୁବିଧା ହେଉଥିଲା । ଘରର ଲୋକେ ଭାବିଥିଲେ ଯେ, ହଟ୍ଟଗୋଳ ଯୋଗୁଁ ପଢ଼ାପଢ଼ିରେ

ବାଧା ହେବ ବୋଲି ନରେନ୍ଦ୍ରନାଥ ଘରେ ରହିବାକୁ ଚାହୁଁ ନ ଥିଲେ । ପୁତ୍ରର ସ୍ୱାଧୀନତାରେ ହସ୍ତକ୍ଷେପ କରିବାଲାଗି ଅନିଚ୍ଛୁକ ବିଶ୍ୱନାଥବାବୁ ମଧ୍ୟ ଏ ବିଷୟରେ କେବେ କିଛି କହି ନ ଥିଲେ; ତେଣୁ ନରେନ୍ଦ୍ରନାଥ ଏକାକୀ ପଢ଼ାଶୁଣା, ସଙ୍ଗୀତଚର୍ଚ୍ଚା ଆଦି କରି ଅବଶିଷ୍ଟ ସମୟତକ ସାଧନ-ଭଜନରେ ବ୍ୟୟ କରୁଥିଲେ ।

ଏହିପରି ଭାବରେ ଯେତେଦିନ ଅତିବାହିତ ହେବାକୁ ଲାଗିଲା, ତାଙ୍କର ସତ୍ୟସନ୍ଧାନ ଇଚ୍ଛା ତ ତୃପ୍ତ ହେଲା ନାହିଁ, ବରଂ ଉତ୍ତରୋତ୍ତର ବଢ଼ିବାରେ ଲାଗିଲା । କ୍ରମେ ସେ ବୁଝିଲେ ଯେ, ଅତୀନ୍ଦ୍ରିୟ ସତ୍ୟ ଲାଭ କରିବାକୁ ହେଲେ ସତ୍ୟ ସହିତ ସାକ୍ଷାତ୍କାର କରିଥିବା ଜଣେ ବ୍ୟକ୍ତିଙ୍କ ଚରଣତଳେ ଶିକ୍ଷା ଲାଭ କରିବା ପ୍ରୟୋଜନ । ସେ ପ୍ରାଣେ ପ୍ରାଣେ ବୁଝିଲେ ଯେ, ଏ ଜୀବନରେ ସତ୍ୟଲାଭ କରିବାକୁ ହେବ, ନଚେତ୍ ସେହି ଚେଷ୍ଟାରେ ପ୍ରାଣ ଦେବାକୁ ପଡ଼ିବ—ତା' ନ ହେଲେ ଏ ଅଶାନ୍ତିସଂକୁଳ ଜୀବନ ଧାରଣ କରିବାରେ ଲାଭ କ'ଣ ? ପାରିପାର୍ଶ୍ୱିକ ପ୍ରଭାବରେ ଆକଣ୍ଠ ନିମଗ୍ନ ହୋଇ ମଧ୍ୟ, ପାଶ୍ଚାତ୍ୟ ଦାର୍ଶନିକଗଣଙ୍କ ଚିନ୍ତାରାଶିଦ୍ୱାରା ଆଲୋଡ଼ିତ ହୋଇ ସୁଦ୍ଧା ଏବଂ ଯୁକ୍ତିପନ୍ଥୀ ବ୍ରାହ୍ମ ହୋଇ ମଧ୍ୟ ସେ ସଦ୍‌ଗୁରୁ ଲାଭ ନିମିତ୍ତ ବ୍ୟାକୁଳ ହେଲେ । ଗୋଟିଏ ମହତ୍ ଆଧ୍ୟାତ୍ମିକ କ୍ଷୁଧାର ତାଡ଼ନାରେ ସେ ଦିବାରାତ୍ର ଭାବିବାକୁ ଲାଗିଲେ, କିଏ ତାଙ୍କୁ କହିଦେବ, ଶାନ୍ତି କେଉଁଠାରେ:—

"କସ୍ମିନ୍ନୁ ଭଗବୋ ବିଜ୍ଞାତେ ସର୍ବମିଦ୍ଂ ବିଜ୍ଞାତଂ ଭବତୀତି ?"

କିନ୍ତୁ କେଉଁଠି ସେ ଏଭଳି ଜଣେ ତତ୍ତ୍ୱଦର୍ଶୀ ମହାପୁରୁଷଙ୍କ ସାକ୍ଷାତ୍ ପାଇବେ—ଯେ ନିଜ ଜୀବନ ଓ ଜଗତର ସମସ୍ୟା ମୀମାଂସା କରିଛନ୍ତି, ଯେ ଜଗତ୍କାରଣ ସେହି ଭୂମାକୁ ଜାଣିଛନ୍ତି, ଯାହାଙ୍କ ଜ୍ଞାନ-ପିପାସା ତୃପ୍ତ ହୋଇଛି ଏବଂ ଯେ ଅନ୍ୟକୁ ତୃପ୍ତ କରିବାକୁ ସକ୍ଷମ ?

## ପ୍ରଥମ ଶ୍ରୀରାମକୃଷ୍ଣ ଦର୍ଶନ

ଦିନେ କଲିକତାର ଶିମିଳାପଲ୍ଲୀରେ ରହୁଥିବା ସୁରେନ୍ଦ୍ରନାଥ ମିତ୍ର ଶ୍ରୀରାମକୃଷ୍ଣଦେବଙ୍କୁ ନିଜ ଗୃହକୁ ଡାକି ଆଣିଥିଲେ ଏବଂ ଗୋଟିଏ ଆନନ୍ଦ ଉତ୍ସବର ଆୟୋଜନ କରିଥିଲେ । ଜଣେ ସୁକଣ୍ଠ ଗାୟକ ଅଭାବ ହେବାରୁ ସେ ନିଜ ପଡ଼ୋଶୀ ନରେନ୍ଦ୍ରନାଥଙ୍କୁ ଡାକିଥିଲେ । ଠାକୁରଙ୍କ ସହିତ ନରେନ୍ଦ୍ରନାଥଙ୍କର ଏହା ହିଁ ପ୍ରଥମ ପରିଚୟ । ସେଦିନ ସେ ନରେନ୍ଦ୍ରନାଥଙ୍କ ସଙ୍ଗୀତ ଶ୍ରବଣ କରି ସମଧିକ ପ୍ରୀତ ହୋଇଥିଲେ ଓ ପୁଙ୍ଖାନୁପୁଙ୍ଖରୂପେ ତାଙ୍କ ପରିଚୟ ଆଗ୍ରହ ସହକାରେ ଗ୍ରହଣ କରି ବିଦାୟ କାଳରେ ଦିନେ ଦକ୍ଷିଣେଶ୍ୱର ଯିବା ନିମିତ୍ତ ନରେନ୍ଦ୍ରନାଥଙ୍କୁ ଅନୁରୋଧ କରିଥିଲେ ।

ଇତିମଧ୍ୟରେ ଏଫ୍.ଏ. ପରୀକ୍ଷା ଯୋଗୁଁ ବ୍ୟସ୍ତ ରହି ନରେନ୍ଦ୍ରନାଥ ଦକ୍ଷିଣେଶ୍ୱର ଯିବା କଥା ପ୍ରାୟ ଭୁଲିଯାଇଥିଲେ । ଏହି ପରୀକ୍ଷା ଶେଷ ହେବା ପରେ ତାଙ୍କ ପିତା ବିବାହ କରିବା ନିମିତ୍ତ ତାଙ୍କୁ କହିଲେ, କାରଣ ତାଙ୍କର

ସଂଗତିସଂପନ୍ନ ଭାବୀ ସମୃଦ୍ଧି ବିବାହର ଯୌତୁକ ସ୍ୱରୂପ ଦଶହଜାର ଟଙ୍କା ଦେବାଲାଗି ପ୍ରତିଶ୍ରୁତି ଦେଇଥିଲେ । ଆଜନ୍ମ ବିବାହ-ବିତୃଷ୍ଣ ନରେନ୍ଦ୍ର ଏହି ପ୍ରସ୍ତାବ ବିଷୟରେ ଭୀଷଣ ଆପତ୍ତି ଉତ୍ଥାପନ କଲେ । କାହାର ବ୍ୟକ୍ତିଗତ ସ୍ୱାଧୀନତାରେ ହସ୍ତକ୍ଷେପ କରିବା ବିଶ୍ୱନାଥବାବୁଙ୍କର ପ୍ରକୃତିବିରୁଦ୍ଧ ଥିଲା; କିନ୍ତୁ ସେ ନିଜେ ପୁତ୍ରଙ୍କୁ ଅନୁରୋଧ ନ କରିଥିଲେ ମଧ୍ୟ ନରେନ୍ଦ୍ରଙ୍କୁ ସମ୍ମତ କରାଇବା ଲାଗି ଚେଷ୍ଟା କରିବା ନିମିତ୍ତ ଅନ୍ୟାନ୍ୟ ଆତ୍ମୀୟମାନଙ୍କୁ ଅନୁରୋଧ କରିଥିଲେ । ଶ୍ରୀରାମକୃଷ୍ଣଙ୍କ ଗୃହୀ-ଭକ୍ତମାନଙ୍କ ମଧ୍ୟରୁ ଅନ୍ୟତମ ପ୍ରସିଦ୍ଧ ଡାକ୍ତର ୰ରାମଚନ୍ଦ୍ର ଦତ୍ତ ବିଶ୍ୱନାଥବାବୁଙ୍କ ଗୃହରେ ପ୍ରତିପାଳିତ ହୋଇଥିଲେ ଏବଂ ନିଜେ ମଧ୍ୟ ଜଣେ ଦୂରସମ୍ପର୍କୀୟ ଆତ୍ମୀୟ ଥିଲେ । ଦିନେ ବିବାହ ପ୍ରସଙ୍ଗ ଆଲୋଚନାବେଳେ ନରେନ୍ଦ୍ର ତାଙ୍କୁ ନିଜ ଅନ୍ତରର ଅଶାନ୍ତି ସମ୍ବନ୍ଧରେ ମନ ଖୋଲି କହି ବିବାହର ଅନ୍ତରାୟଗୁଡ଼ିକୁ ବୁଝାଇଦେଲେ । ସେ ନରେନ୍ଦ୍ରନାଥଙ୍କ ଯୁକ୍ତି ଶୁଣିବାପରେ କହିଲେ, ''ଯଦି ପ୍ରକୃତ ସତ୍ୟଲାଭ କରିବା ଲାଗି ଇଚ୍ଛା ଥାଏ, ତେବେ ବ୍ରାହ୍ମସମାଜ ଇତ୍ୟାଦି ସ୍ଥାନରେ ନ ବୁଲି ଦକ୍ଷିଣେଶ୍ୱର ପରମହଂସଦେବଙ୍କ ନିକଟକୁ ଯାଅ ।'' ନରେନ୍ଦ୍ରନାଥ କ'ଣ ଭାବି ସମ୍ମତ ହେଲେ ଏବଂ କେତେଦିନ ପରେ ଦୁଇଚାରିଜଣ ବନ୍ଧୁଙ୍କ ସହିତ ଦକ୍ଷିଣେଶ୍ୱରରେ ଉପସ୍ଥିତ ହେଲେ ।

## ନରେନ୍ଦ୍ରଙ୍କ ଦକ୍ଷିଣେଶ୍ୱର ଆଗମନ

ନରେନ୍ଦ୍ରନାଥଙ୍କୁ ଦେଖିବାମାତ୍ରକେ ଠାକୁର ତାଙ୍କ ସହିତ ଜଣେ ଚିରପରିଚିତ ଲୋକପରି ସରଳଭାବରେ ଆଳାପ କରିବାକୁ ଲାଗିଲେ । ସଙ୍ଗୀତ ଓ କଥୋପକଥନ ସମାପ୍ତ ହେବା ମାତ୍ରେ ଠାକୁର ତାଙ୍କୁ ଗୋଟିଏ ଏକାନ୍ତ ସ୍ଥାନକୁ ଡାକିନେଲେ । ଭାବବିହ୍ୱଳ ହୋଇ ସେ ନରେନ୍ଦ୍ରଙ୍କ ହାତ ଧରି ସ୍ନେହଗଦ୍‌ଗଦ ସ୍ୱରରେ କହିଲେ, ''ତୁ କିପରି ଏତେକାଳ ମୋତେ ଭୁଲିଯାଇଥିଲୁ ? ତୁ ଆସିବୁ ବୋଲି ମୁଁ କେତେ ଦିନ ହେଲା ବାଟ ଚାହିଁ ବସିଛି ! ବିଷୟୀ ଲୋକମାନଙ୍କ ସଙ୍ଗେ କଥା କହିକହି ମୋ ମୁହଁ ପୋଡ଼ିଗଲାଣି । ଆଜିଠାରୁ ତୋ' ଭଳି ଜଣେ ଯଥାର୍ଥ ତ୍ୟାଗୀ ସହିତ କଥା କହି ଶାନ୍ତି ପାଇବି ।''—ଏହା କହୁ କହୁ ତାଙ୍କ ଚକ୍ଷୁ ଅଶ୍ରୁସିକ୍ତ ହୋଇଗଲା । ବିସ୍ମୟ-ବିମିଶ୍ର ବିହ୍ୱଳ ଦୃଷ୍ଟିରେ ନରେନ୍ଦ୍ରନାଥ ଏହି ଅଦ୍ଭୁତ ସନ୍ନ୍ୟାସୀଙ୍କୁ ଚାହିଁ ରହିଲେ—କ'ଣ କହିବେ, ଭାବିପାରିଲେ ନାହିଁ ।

ଚାହୁଁ ଚାହୁଁ ପରମହଂସ କୃତାଞ୍ଜଳି ହୋଇ ସସମ୍ଭ୍ରମେ ତାଙ୍କୁ ଲକ୍ଷ୍ୟ କରି କହିବାକୁ ଲାଗିଲେ, ''ମୁଁ ଜାଣେ, ତୁମେ ସପ୍ତର୍ଷିମଣ୍ଡଳର ଜଣେ ଋଷି—ନରରୂପୀ ନାରାୟଣ; ଜୀବର କଲ୍ୟାଣ କାମନା କରି ଦେହଧାରଣ କରିଛ''—ଇତ୍ୟାଦି ।

ଏ' କିଭଳି ଅଦ୍ଭୁତ ଉନ୍ମତ୍ତତା ! ମୁଁ ତ ବିଶ୍ୱନାଥ ଦତ୍ତଙ୍କ ପୁତ୍ର ନରେନ୍ଦ୍ର—ଏ'ସବୁ କି କଥା !—ନରେନ୍ଦ୍ର ଏପରି ଭାବୁଥାନ୍ତି ।

ତା'ପରେ ଯେତେବେଳେ ଠାକୁର ପୁନରାୟ ଭକ୍ତବୃନ୍ଦଙ୍କ ନିକଟକୁ ଫେରିଯାଇ ସହଜ ଭାବରେ ଆଳାପ ଆରମ୍ଭ କଲେ, ସେତେବେଳେ ନରେନ୍ଦ୍ରନାଥ ବିଶେଷଭାବରେ ପରୀକ୍ଷା କରି ଦେଖିଲେ, ତାଙ୍କ ହାବଭାବ, ଚାଲିଚଳନରେ ଲେଶମାତ୍ର ଉନ୍ମତ୍ତତା ନାହିଁ । ଠାକୁରଙ୍କ କଥାଗୁଡ଼ିକୁ ଅସମ୍ଭବ ପ୍ରଳାପୋକ୍ତି ବୋଲି ଉଡ଼ାଇଦେବା ସହଜ ନୁହେଁ; କିନ୍ତୁ ତା'ଭିତରେ କି ପ୍ରକାର ଗଭୀର ରହସ୍ୟ ନିହିତ ଅଛି, ତାହା ଭାବି ଭାବି ସେ ଘରକୁ ଫେରିଆସିଲେ ।

## ଶ୍ରୀରାମକୃଷ୍ଣଙ୍କ ଆକର୍ଷଣ

ନରେନ୍ଦ୍ରଙ୍କ ବିଚାରକ୍ଷମ ସୂକ୍ଷ୍ମବୁଦ୍ଧି ଏହି ଅଲୌକିକ ଦେବ-ମାନବଙ୍କ ଚରିତ୍ର ବିଶ୍ଳେଷଣ କରିବାକୁ ଯାଇ ପରାସ୍ତ ହେଲା । ଯାହାଙ୍କ ପବିତ୍ର ସଂସର୍ଗରେ ଆସି କେଶବଚନ୍ଦ୍ର ସେନ୍, ବିଜୟ ଗୋସ୍ୱାମୀ ପ୍ରଭୃତି ଶକ୍ତିମାନ ଆଚାର୍ଯ୍ୟଗଣଙ୍କ ଧର୍ମଜୀବନ ଅଦ୍ଭୁତ ଭାବରେ ପରିବର୍ତ୍ତିତ ହୋଇଯାଇଥିଲା, ତାଙ୍କୁ ଜଣେ ଉନ୍ମତ୍ତ ଲୋକ ବୋଲି ଭାବିବା ନିର୍ବୁଦ୍ଧିତାର ପରିଚାୟକ । ଏହି ବିଷମ ସମସ୍ୟାରେ ପଡ଼ି ନରେନ୍ଦ୍ରନାଥ ସହସା କୌଣସି ସିଦ୍ଧାନ୍ତରେ ଉପନୀତ ନ ହୋଇପାରି ମନେ ମନେ ସଂକଳ୍ପ କଲେ—ତାଙ୍କୁ ଭଲରୂପେ ପରୀକ୍ଷା ନ କରି କେବେହେଲେ ଈଶ୍ୱରଦର୍ଶୀ ମହାପୁରୁଷ ବୋଲି ମାନିନେବେ ନାହିଁ; କିନ୍ତୁ ଏହି ଘଟଣା ପରେ ପରେ ସେ ଏପରି ପ୍ରବଳ ଆକର୍ଷଣ ଅନୁଭବ କଲେ ଯେ, ତାହାଙ୍କୁ ମଝିରେ ମଝିରେ ବାଧ ହୋଇ ଦକ୍ଷିଣେଶ୍ୱରର ସେହି ପାଗଳ ପୂଜାରୀଙ୍କ ପଦତଳେ ପହଞ୍ଚିବାକୁ ପଡୁଥିଲା । ଠାକୁରଙ୍କ ଅପୂର୍ବ ତ୍ୟାଗ, ଶିଶୁସୁଲଭ ଅଭିମାନଶୂନ୍ୟ ସରଳ ବ୍ୟବହାର, ବିନୟ-ନମ୍ର ମଧୁର ବାକ୍ୟ, ସର୍ବୋପରି ରହସ୍ୟମୟ ନିଷ୍କାମ ସ୍ନେହ ନରେନ୍ଦ୍ରନାଥଙ୍କ ହୃଦୟରେ ଅଳ୍ପ ସମୟ ମଧ୍ୟରେ ଯଥେଷ୍ଟ ପ୍ରଭାବ ବିସ୍ତାର କଲା । ନରେନ୍ଦ୍ର ଲକ୍ଷ୍ୟ କଲେ ଯେ, ଏହି ଦେବ-ମାନବଙ୍କ କୃପାରେ ବହୁଲୋକଙ୍କ ଜୀବନ କୃତାର୍ଥ ଓ ଧନ୍ୟ ହୋଇଛି; କିନ୍ତୁ ତଥାପି ସହସା ଏହି ପାଗଳଙ୍କୁ ଜୀବନର ଆଦର୍ଶରୂପେ ଗ୍ରହଣ କରିପାରିଲେ ନାହିଁ—ଏପରି କି, କ୍ରମାଗତ ତିନିବର୍ଷ କାଳ ତାଙ୍କୁ ନାନା ପ୍ରକାର ପରୀକ୍ଷା କରିସାରିବା ପରେ ଶେଷରେ ସମ୍ପୂର୍ଣ୍ଣରୂପେ ଆତ୍ମସମର୍ପଣ କରିଥିଲେ ।

## ନିରାକାର ଉପାସନାରେ ନିଷ୍ଠା

ସେହିହେତୁ ଦେଖାଯାଇଥିଲା ଯେ ଠାକୁରଙ୍କ ନିକଟକୁ ଯା'ଆସ କରି ମଧ୍ୟ ନରେନ୍ଦ୍ରନାଥ ବ୍ରାହ୍ମସମାଜର ନିୟମିତ ଉପାସନା ଇତ୍ୟାଦିରେ ଯୋଗଦାନ କରୁଥିଲେ । ରାଖାଲଚନ୍ଦ୍ର ଘୋଷ (ପରବର୍ତ୍ତୀ ସ୍ୱାମୀ ବ୍ରହ୍ମାନନ୍ଦ) ନରେନ୍ଦ୍ରଙ୍କ ସହିତ ଏକ ସମୟରେ ବ୍ରାହ୍ମସମାଜର ସଭ୍ୟ ହୋଇଥିଲେ । ସେ ନରେନ୍ଦ୍ରନାଥଙ୍କ କିଛିଦିନ ଆଗରୁ ଦକ୍ଷିଣେଶ୍ୱରକୁ ଯିବାଆସିବା କରୁଥିଲେ । ଠାକୁର ତାଙ୍କୁ ପୁତ୍ରବତ୍ ସ୍ନେହ କରି ସର୍ବଦା ପାଖେ ପାଖେ ରଖୁଥିଲେ । ଦିନେ ନରେନ୍ଦ୍ର ରାଖାଲଙ୍କୁ ଠାକୁରଙ୍କ ପଛେ ପଛେ ଯାଇ ଦେବମନ୍ଦିରର ପ୍ରତିମାକୁ ପ୍ରଣାମ କରିଥିବାର ଦେଖି ବିଶେଷ

କ୍ରୁଦ୍ଧ ହେଲେ ଏବଂ ଠାକୁରଙ୍କ ସମ୍ମୁଖରେ ତାଙ୍କୁ 'ମିଥ୍ୟାଚାରୀ' ଇତ୍ୟାଦି କହି ଭର୍ତ୍ସନା କଲେ । କାରଣ ରାଖାଲ ମଧ୍ୟ 'ଏକମାତ୍ର ନିରାକାର ବ୍ରହ୍ମଙ୍କୁ ଉପାସନା କରିବି' ବୋଲି ସମାଜର ପ୍ରତିଜ୍ଞାପତ୍ରରେ ସ୍ୱାକ୍ଷର କରିଥିଲେ । ଅପ୍ରତିଭ ରାଖାଲଙ୍କୁ ଲଜ୍ଜାରେ ଅଧୋବଦନ ହେବା ଦେଖି ଠାକୁର ତାଙ୍କୁ ସମର୍ଥନ କରି କହିଲେ, ''ତା'ର ଯଦି ସାକାରରେ ଭକ୍ତି ହୁଏ, ତାହେଲେ ସେ କ'ଣ କରିବ ? ତୁମକୁ ଭଲ ନ ଲାଗିଲେ ତୁମେ ନ କର । ଏହା ବୋଲି ଅନ୍ୟର ଭାବ ନଷ୍ଟ କରିବାରେ ତୁମର କି ଅଧିକାର ଅଛି ?'' ନରେନ୍ଦ୍ର ଚିନ୍ତିତ ଭାବେ ନିରସ୍ତ ହେଲେ; କିନ୍ତୁ ଏହି ଘଟଣାରୁ ବୁଝାଯାଏ ଯେ, ସେତେବେଳେ ମଧ୍ୟ ନରେନ୍ଦ୍ରନାଥଙ୍କର ବ୍ରାହ୍ମସମାଜ ପ୍ରତି ଗଭୀର ଶ୍ରଦ୍ଧା ଥିଲା ।

ନିରାକାର-ଧ୍ୟାନ ନରେନ୍ଦ୍ରଙ୍କୁ ଭଲ ଲାଗୁଥିଲା । ଠାକୁର ତାଙ୍କୁ ସେହିପରି ଉପଦେଶ ଦେଇଥିଲେ । କେବେ ହେଁ ଜୋର୍ କରି ତାଙ୍କୁ ସାକାରରେ ବିଶ୍ୱାସ କରିବା ନିମିତ୍ତ ଅନୁରୋଧ କରି ନ ଥିଲେ; ଏପରି କି ସେ କୌଣସି ଦିନ ନରେନ୍ଦ୍ରନାଥଙ୍କୁ ବ୍ରାହ୍ମସମାଜକୁ ଯିବା ଲାଗି ନିଷେଧ କରି ନ ଥିଲେ । ସେ କେବେ ହେଁ କାହାର ସ୍ୱାଧୀନ ଧର୍ମାଚରଣରେ ହସ୍ତକ୍ଷେପ କରୁ ନ ଥିଲେ । ଅନ୍ତର୍ଦୃଷ୍ଟିସମ୍ପନ୍ନ ମହାପୁରୁଷ ଦର୍ଶନମାତ୍ରେ କାହା ଭିତରେ କ'ଣ ଅଛି ବୁଝି ନେଉଥିଲେ ଏବଂ ସ୍ୱସ୍ୱ ଭାବାନୁଯାୟୀ ବିଶେଷ ସାଧନ-ପ୍ରଣାଳୀ ଅବଲମ୍ବନ କରିବାକୁ ଉପଦେଶ ଦେଉଥିଲେ । ଜୋର୍ କରି କାହାର ଭାବ ନଷ୍ଟ କରିବା ତାଙ୍କର ଅଭିପ୍ରାୟ ନ ଥିଲା ।

## ଶ୍ରୀରାମକୃଷ୍ଣଙ୍କ ଅନୁଭୂତି—ନରେନ୍ଦ୍ର ଯୁଗଧର୍ମ-ପ୍ରଚାରକ

ଠାକୁର ପ୍ରଥମରୁ ବୁଝିପାରିଥିଲେ ଯେ, ଏହି ଯୁବକଙ୍କୁ କାଳକ୍ରମେ ଜଗତର ଶତଶତ ଧର୍ମପିପାସୁ ନରନାରୀଙ୍କ ଆଧ୍ୟାତ୍ମିକ କ୍ଷୁଧା ମେଣ୍ଟାଇବାକୁ ହେବ—ଲୁପ୍ତ ପ୍ରାୟ ସନାତନ ପନ୍ଥାରେ ପାଶ୍ଚାତ୍ୟ ସଭ୍ୟତାର ଅନୁକରଣଗର୍ବରେ ଅନ୍ଧ ଦେଶବାସୀଙ୍କୁ ଫେରି ଆସିବା ଲାଗି ଆହ୍ୱାନ ଦେବାକୁ ହେବ—ସର୍ବୋପରି ନିଜ ଜୀବନରେ ପ୍ରକଟିତ 'ଯେତେ ମତ ସେତେ ପଥ' ରୂପକ ସାର୍ବଭୌମିକ ଆଦର୍ଶର ପ୍ରଚାର କାର୍ଯ୍ୟ କରିବାକୁ ନରେନ୍ଦ୍ରନାଥ ହିଁ ସମଧିକ ଉପଯୁକ୍ତ ଅଧିକାରୀ । ଭବିଷ୍ୟତ ବୁଝିପାରି ଠାକୁର ତାଙ୍କୁ ସର୍ବମତଗ୍ରାସୀ ବେଦାନ୍ତ-କଥିତ ସାଧନମାର୍ଗରେ ପରିଚାଳିତ କରିବାକୁ ପ୍ରୟାସୀ ହେଲେ ସତ୍ୟ, କିନ୍ତୁ ନରେନ୍ଦ୍ରନାଥ ସଗୁଣ ନିରାକାର ଧ୍ୟାନରେ ନିମଗ୍ନ ଥିଲେ ବୋଲି ଅନେକ ବିଳମ୍ବରେ ଅଦ୍ୱୈତବାଦ ଗ୍ରହଣ କରିଥିଲେ । ବ୍ରାହ୍ମସମାଜର ଧର୍ମମତ ଅନୁସାରେ ସେ ଠାକୁରଙ୍କ କଥାର ପ୍ରତିବାଦ କରି କହିଲେ, ''ମୁଁ ନିଜେ ବ୍ରହ୍ମ—ଏହା କହିବାଠାରୁ ବଡ଼ ପାପ ଆଉ କିଛି ନାହିଁ ।''

ବାରମ୍ବାର ଶୁଣିଲେ ମଧ୍ୟ ନରେନ୍ଦ୍ରନାଥ ଯେ ଅଧିକାରିକ ପୁରୁଷ ଏବଂ ଜଗଦମ୍ବାଙ୍କ ବିଶେଷ କାର୍ଯ୍ୟସାଧନ କରିବା ଉଦ୍ଦେଶ୍ୟରେ ଯେ ସେ ଅବତୀର୍ଣ୍ଣ

ହୋଇଛନ୍ତି, ଏକଥା ନିଜେ ନରେନ୍ଦ୍ରନାଥ ବିଶ୍ୱାସ କରି ନ ଥିଲେ । ଦିନେ ଦକ୍ଷିଣେଶ୍ୱରଠାରେ କେଶବ, ବିଜୟ ପ୍ରଭୃତି ବ୍ରାହ୍ମ-ନେତୃବୃନ୍ଦ ଉପସ୍ଥିତ ଥିଲେ, ନରେନ୍ଦ୍ର ମଧ୍ୟ ସେଠାରେ ଥିଲେ । ଠାକୁର ଭାବସ୍ଥ ହୋଇ ସେମାନଙ୍କ ଆଡ଼େ ଚାହିଁଲେ; ଶେଷରେ କେଶବ ଓ ବିଜୟ ଚାଲିଯିବା ପରେ ସେ ଭକ୍ତବୃନ୍ଦଙ୍କୁ ସମ୍ବୋଧନ କରି କହିଲେ — ''ଧ୍ୟାନାବସ୍ଥିତ ଭାବରେ ଦେଖିଲି ଯେ କେଶବ ଯେଉଁ ଶକ୍ତି ବଳରେ ପ୍ରତିଷ୍ଠା ଲାଭ କରିଛି, ନରେନ୍ଦ୍ରଠାରେ ତାହାର ଅଠର ଗୁଣ ଶକ୍ତି ଅଛି । କେଶବ ଓ ବିଜୟଠାରେ ଜ୍ଞାନର ପ୍ରଦୀପ ଜଳୁଛି ମାତ୍ର — ଏହା ମଧ୍ୟରେ ଜ୍ଞାନର ସୂର୍ଯ୍ୟ ରହିଛି ।''

ଏପରି ଅଯାଚିତ ପ୍ରଶଂସାରେ ସାଧାରଣ ମଣିଷ ଅହଙ୍କାରରେ ସ୍ଫୀତବକ୍ଷ ହୋଇ ଉଠେ, ଏଥିରେ ସନ୍ଦେହ ନାହିଁ; କିନ୍ତୁ ନରେନ୍ଦ୍ରନାଥ ତତ୍କ୍ଷଣାତ୍ ପ୍ରତିବାଦ କରି କହିଲେ, ''କ'ଣ କହୁଛନ୍ତି ? କେଉଁଠି ଜଗତ-ବିଖ୍ୟାତ କେଶବ ସେନ, ଆଉ କେଉଁଠି ଜଣେ ନଗଣ୍ୟ ସ୍କୁଲ ଛାତ୍ର ନରେନ୍ଦ୍ର — ଲୋକେ ଶୁଣିଲେ ଆପଣଙ୍କୁ ପାଗଳ ବୋଲି କହିବେ ।'' ଠାକୁର ଈଷତ୍ ହସି ସରଳ ଭାବରେ ଉତ୍ତର ଦେଲେ, ''କ'ଣ କରିବି କହ, ମା' ଯାହା ଦେଖାଇ ଦେଲେ, ମୁଁ ତାହା ହିଁ କହୁଛି ।''

ଜଗନ୍ମାତାଙ୍କ ଦୁହାଇ ଦେଇ ମଧ୍ୟ ଠାକୁର ନରେନ୍ଦ୍ରନାଥଙ୍କ ସମାଲୋଚନାରୁ ନିଷ୍କୃତି ପାଇ ନ ଥିଲେ; କାରଣ ନରେନ୍ଦ୍ରନାଥ ଠାକୁରଙ୍କର ଏସବୁ ଅଦ୍ଭୁତ ଦର୍ଶନ ଇତ୍ୟାଦି ପ୍ରତି ସେପର୍ଯ୍ୟନ୍ତ ବିଶେଷ ଶ୍ରଦ୍ଧାବାନ ହୋଇ ପାରି ନ ଥିଲେ । ସେ ସନ୍ଦିଗ୍ଧ ହୋଇ କହିଲେ, ''ମା' ଦେଖାଇ ଦେଲେ ନା ଆପଣଙ୍କ ମସ୍ତିଷ୍କର ଖିଆଲ — କିପରି ବୁଝିବି ? ମୋର ମଧ୍ୟ ଏପରି ଦର୍ଶନ ହେଲେ ମନର ଖିଆଲ ପରି ମନେହୁଏ ।''

ପାଶ୍ଚାତ୍ୟ ଦାର୍ଶନିକଗଣଙ୍କ ସ୍ୱାଧୀନ ଚିନ୍ତାର ପରିପୋଷକ ମତସମୂହ ସହିତ ଘନିଷ୍ଠ ପରିଚୟ ଥିବା ହେତୁ ସେ ପ୍ରଥମେ ପ୍ରଥମେ ଠାକୁରଙ୍କ ଜଗନ୍ମାତାଙ୍କ ସହିତ ବାକ୍ୟାଳାପ ଏବଂ ଐଶ୍ୱରିକ ରୂପଦର୍ଶନ ଆଦିକୁ ମସ୍ତିଷ୍କର ଭ୍ରମ ବୋଲି ଉଲ୍ଲେଖ କରନ୍ତେ ଅନ୍ୟାନ୍ୟ ଭକ୍ତବୃନ୍ଦ ତାଙ୍କ ସହିତ ତର୍କ କରୁଥିଲେ । ଏହି ତର୍କବେଳେ ଅନେକେ ତାଙ୍କ ତୀକ୍ଷ୍ଣ ଯୁକ୍ତି ସମ୍ମୁଖରେ ନିରୁତ୍ତର ହୋଇ ମନ କ୍ଷୁଣ୍ଣ କରୁଥିଲେ ।

## ଶ୍ରୀରାମକୃଷ୍ଣ ଓ ଶିବନାଥ ବାବୁ

ଭାରତବର୍ଷୀୟ ବ୍ରାହ୍ମ-ସମାଜର କେଶବ, ପ୍ରତାପ, ଚିରଞ୍ଜୀବ ଆଦି ବ୍ରାହ୍ମ-ନେତୃବୃନ୍ଦଙ୍କର ଠାକୁରଙ୍କ ସଂସର୍ଗରେ ଆସି ଭାବାନ୍ତର ଜାତ ହୋଇଥିବା କଥା କୁହାଯାଇଛି । ବ୍ରାହ୍ମ-ସମାଜର ଅନ୍ୟାନ୍ୟ ଭକ୍ତବୃନ୍ଦ ମଧ୍ୟ ଠାକୁରଙ୍କ ଠାରୁ ଧର୍ମତତ୍ତ୍ୱ ଶୁଣିବେ ବୋଲି ଦକ୍ଷିଣେଶ୍ୱର ଯା'ଆସ କରୁଥିଲେ; କିନ୍ତୁ ଯେତେବେଳେ ବିଜୟ ଗୋସ୍ୱାମୀ ନିଜ ଧର୍ମମତ ପରିବର୍ତ୍ତନ କରି ସାଧାରଣ ସମାଜଠାରୁ ସମ୍ବନ୍ଧ ଛିନ୍ନ କଲେ, ସେତେବେଳେ ଶିବନାଥ ପ୍ରମୁଖ କେତେଜଣ ବ୍ରାହ୍ମନେତା ଶ୍ରୀରାମକୃଷ୍ଣଙ୍କ

ପାଖକୁ ଯିବା ଆସିବା ବନ୍ଦ କରିଦେଲେ । ସେମାନଙ୍କର ଭୟ ହେଲା, କାଳେ ଶ୍ରୀରାମକୃଷ୍ଣଙ୍କ ପ୍ରଭାବ ହେତୁ ସେମାନଙ୍କ ଧର୍ମମତ ମଧ୍ଯ ବଦଳି ଯିବ ! ଶିବନାଥ ବ୍ରାହ୍ମମାନଙ୍କୁ ଠାକୁରଙ୍କ ନିକଟକୁ ଯିବା ଲାଗି ନିଷେଧ କଲେ । ନରେନ୍ଦ୍ରନାଥ ମଧ୍ୟ ଶ୍ରୀରାମକୃଷ୍ଣଙ୍କ ନିକଟକୁ ଯିବା ଆସିବା କରୁଥିବା ବିଷୟ ଶିବନାଥଙ୍କୁ ଅଜଣା ନ ଥିଲା । ସେ ନରେନ୍ଦ୍ରଙ୍କୁ ଦକ୍ଷିଣେଶ୍ୱର ଯିବା ଲାଗି ନିଷେଧ କରିଥିଲେ ଏବଂ କହିଥିଲେ, ''ସେସବୁ ସମାଧି, ଭାବ ଇତ୍ୟାଦି ଯାହା ଦେଖୁଛ ସେ ସମସ୍ତ ସ୍ନାୟବିକ ଦୁର୍ବଳତା ମାତ୍ର; ଅତ୍ୟଧିକ ଶାରୀରିକ କଠୋରତା ଅଭ୍ୟାସ କରିବା ଫଳରେ ପରମହଂସଙ୍କର ମସ୍ତିଷ୍କ-ବିକୃତି ଘଟିଛି ।''

ନରେନ୍ଦ୍ର ନିରୁତ୍ତର ହୋଇ ଶିବନାଥବାବୁଙ୍କ ଉପଦେଶ ଶ୍ରବଣ କରିଥିଲେ । ତାଙ୍କ ଅନ୍ତରରେ ସେତେବେଳେ ପ୍ରବଳ ଝଡ଼ ଉଠିଥିଲା !—ଏହି ତ୍ୟାଗୀକୁଳ-ଚୂଡ଼ାମଣି, ସରଳ, ଉଦାର, ପ୍ରେମିକ ପୁରୁଷ—ବିକୃତମସ୍ତିଷ୍କ ? କିନ୍ତୁ ସେ କ'ଣ ? ସେ କିଏ ? କାହିଁକି ସେ ମୋଭଳି ଜଣେ ସାମାନ୍ୟ ଲୋକ ବିଷୟରେ ସର୍ବଦା ଚିନ୍ତିତ ରହନ୍ତି ? ଶ୍ରୀଠାକୁରଙ୍କ ଅଦ୍ଭୁତ ନିଷ୍କାମ ସ୍ନେହର କାରଣ ଅନୁସନ୍ଧାନ କରିବାକୁ ଯାଇ ସେ କୌଣସି ଯୁକ୍ତି ଖୋଜି ପାଇଲେ ନାହିଁ ! ଏ କି ରହସ୍ୟମୟ ସମସ୍ୟା—ନରେନ୍ଦ୍ର ସଂଶୟ ଓ ଦ୍ୱନ୍ଦ୍ୱରେ ଆଲୋଡ଼ିତ ଚିତ୍ତରେ ଗଭୀର ଚିନ୍ତାମଗ୍ନ ହେଲେ ।

ସେ ବ୍ରାହ୍ମ-ସମାଜର ଅଧିକାଂଶ ନେତାଙ୍କ ସହିତ ପରିଚିତ ଥିଲେ ଏବଂ ସେମାନଙ୍କ ଚରିତ୍ରର ଦୃଢ଼ତା, ପାଣ୍ଡିତ୍ୟ ପ୍ରଭୃତି ଦର୍ଶନ କରି ଅକପଟ ଭାବରେ ଶ୍ରଦ୍ଧା କରୁଥିଲେ; କିନ୍ତୁ ଏତେ ଦିନ ବ୍ରାହ୍ମସମାଜରେ ଉପାସନା ପ୍ରାର୍ଥନା ଇତ୍ୟାଦି କରି ସୁଦ୍ଧା ତାଙ୍କ ହୃଦୟ ପ୍ରଶାନ୍ତ ହେଲା ନାହିଁ କାହିଁକି ?

## 'ମହାଶୟ, ଆପଣ କ'ଣ ଈଶ୍ୱରଦର୍ଶନ କରିଛନ୍ତି ?'

ଦିନେ ଈଶ୍ୱରଙ୍କୁ ଲାଭ କରିବା ନିମିତ୍ତ ଅତି ବ୍ୟାକୁଳ ହୋଇ ନରେନ୍ଦ୍ର ଘରୁ ପଳାଇ ଗଲେ । ମହର୍ଷି ସେତେବେଳେ ଗଙ୍ଗା-ବକ୍ଷରେ ନୌକାରେ ବାସ କରୁଥିଲେ । ନରେନ୍ଦ୍ର ଗଙ୍ଗା କୂଳରେ ପହଞ୍ଚି ଦ୍ରୁତ ପଦରେ ନୌକା ଆରୋହଣ କଲେ । ତାଙ୍କ ବଳିଷ୍ଠ କରାଘାତରେ କକ୍ଷଦ୍ୱାର ଉନ୍ମୁକ୍ତ ହୋଇଗଲା । ମହର୍ଷି ସେତେବେଳେ ଧ୍ୟାନମଗ୍ନ ଥିଲେ, ସହସା ଶବ୍ଦ ଶୁଣି ଚମକି ପଡ଼ି ଦେଖିଲେ ଯେ, ସମ୍ମୁଖରେ ଉନ୍ମତ୍ତଙ୍କ ପରି ତୀବ୍ର ଦୃଷ୍ଟି ପକାଇ ନରେନ୍ଦ୍ରନାଥ ଦଣ୍ଡାୟମାନ ! ମହର୍ଷିଙ୍କୁ କ୍ଷଣମାତ୍ର ଚିନ୍ତା ବା ପ୍ରଶ୍ନ କରିବା ଲାଗି ଅବସର ନ ଦେଇ ସେ ଆବେଗ-ଆକୁଳିତ କଣ୍ଠରେ କହିଲେ, ''ମହାଶୟ, ଆପଣ କ'ଣ ଈଶ୍ୱରଦର୍ଶନ କରିଛନ୍ତି ?'' ବିସ୍ମୟ-ସ୍ତବ୍ଧ ମହର୍ଷି ଗୋଟିଏ କିଛି ଉତ୍ତର ଦେବାକୁ ଦୁଇଥର ଚେଷ୍ଟା କଲେ; କିନ୍ତୁ ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ । ଅବଶେଷରେ ସେ କହିଲେ, ''ନରେନ୍ଦ୍ର, ତୁମ ଆଖିରୁ ମୁଁ ବୁଝିପାରୁଛି, ତୁମେ ଯୋଗୀ ।'' ସେ ନରେନ୍ଦ୍ରଙ୍କୁ ନାନା ଆଶ୍ୱାସନା

ଦେଇ କହିଲେ, ସେ ଯଦି ନିୟମିତ ରୂପେ ଧ୍ୟାନାଭ୍ୟାସ କରନ୍ତି, ସେ ନିଶ୍ଚୟ ବ୍ରହ୍ମଜ୍ଞାନର ଅଧିକାରୀ ହେବେ, ଇତ୍ୟାଦି ।

ନରେନ୍ଦ୍ର ନିଜ ପ୍ରଶ୍ନର ସଦୁତ୍ତର ନ ପାଇ ଭଗ୍ନହୃଦୟରେ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ଯଦି ମହର୍ଷିଙ୍କ ପରି ଭକ୍ତିମାନ ଈଶ୍ୱରପ୍ରେମିକ ଏ ପର୍ଯ୍ୟନ୍ତ ଈଶ୍ୱରଙ୍କୁ ଦେଖି ନ ଥାନ୍ତି, ତାହାହେଲେ ସେ କାହା ପାଖକୁ ଯିବେ ? ତେବେ ଏ ସବୁ କ'ଣ ମିଥ୍ୟା—ଧର୍ମ, ଈଶ୍ୱର ପ୍ରଭୃତି କ'ଣ ମଣିଷର କଳ୍ପନାସୃଷ୍ଟ—ଆକାଶକୁସୁମ ପରି ଅଳୀକ ?

ଘରକୁ ଫେରିଆସି ନରେନ୍ଦ୍ରନାଥ ଦର୍ଶନଶାସ୍ତ୍ର ଓ ଧର୍ମସମ୍ବନ୍ଧୀୟ ପୁସ୍ତକଗୁଡ଼ିକୁ ଦୂରକୁ ଫିଙ୍ଗି ଦେଲେ । ଯଦି ଏ ବହିଗୁଡ଼ିକ ତାଙ୍କୁ ଈଶ୍ୱରଙ୍କୁ ଲାଭ କରିବା ଲାଗି ସାହାଯ୍ୟ ନ କଲା, ତେବେ ଅନର୍ଥକ ଏହାକୁ ପାଠ କରିବାରେ ଫଳ କ'ଣ ? ବିନିଦ୍ର ନୟନରେ ନରେନ୍ଦ୍ରନାଥ ନାନା କଥା ଭାବିବାରେ ଲାଗିଲେ । ସହସା ତାଙ୍କର ଦକ୍ଷିଣେଶ୍ୱରର ସେହି ଅଦ୍ଭୁତ ପ୍ରେମିକଙ୍କ କଥା ମନେ ପଡ଼ିଲା । ସମଗ୍ର ରଜନୀ ଅସହନୀୟ ଉତ୍କଣ୍ଠା ସହିତ ଯାପନ କରି ନରେନ୍ଦ୍ର ସକାଳୁ ଦକ୍ଷିଣେଶ୍ୱରକୁ ଦଉଡ଼ିଲେ । ଶ୍ରୀଶ୍ରୀଗୁରୁଙ୍କ ପାଦତଳେ ପହଞ୍ଚି ଦେଖିଲେ, ସେହି ସଦାନନ୍ଦମୟ ପୁରୁଷ ଭକ୍ତବୃନ୍ଦଙ୍କଦ୍ୱାରା ପରିବେଷ୍ଟିତ ହୋଇ ଅମୃତ-ମଧୁର ଉପଦେଶ ଦେଉଛନ୍ତି !

ନରେନ୍ଦ୍ରଙ୍କ ହୃଦୟରେ ସମୁଦ୍ର ମନ୍ଥନ ଆରମ୍ଭ ହେଲା । ଯଦି ସେ 'ନା' କହିବେ—ତାହାହେଲେ ଉପାୟ କ'ଣ ? ଆଉ କାହା ପାଖକୁ ଯିବେ ? ଅନ୍ତଃପ୍ରକୃତି ସହିତ ଯଥେଷ୍ଟ ସଂଗ୍ରାମ କରି ସାରି ଶେଷରେ ସେ ଯେଉଁ ପ୍ରଶ୍ନଟିକୁ ବହୁ ଧର୍ମାଚାର୍ଯ୍ୟଙ୍କୁ ପଚାରିଥିଲେ, କିନ୍ତୁ ଏ ପର୍ଯ୍ୟନ୍ତ କେହି ଯେଉଁ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେବାକୁ ସମର୍ଥ ହୋଇ ନ ଥିଲେ, ସେହି ପ୍ରଶ୍ନର ପୁନରାବୃତ୍ତି କରି କହିଲେ, "ମହାଶୟ ! ଆପଣ କ'ଣ ଈଶ୍ୱରଦର୍ଶନ କରିଛନ୍ତି ?"

ମୃଦୁହାସ୍ୟ-ରଞ୍ଜିତ ମହାପୁରୁଷଙ୍କ ପ୍ରଶାନ୍ତ ବଦନମଣ୍ଡଳ ଅପୂର୍ବ ଶାନ୍ତି ଓ ପୁଣ୍ୟବିଭାରେ ଉଦ୍ଭାସିତ ହୋଇଉଠିଲା । ସେ ଆଦୌ ଇତସ୍ତତଃ ନ କରି ଉତ୍ତର ଦେଲେ, "ବତ୍ସ ! ମୁଁ ଈଶ୍ୱରଦର୍ଶନ କରିଛି । ମୁଁ ତୁମକୁ ଯେପରି ପ୍ରତ୍ୟକ୍ଷ ଦେଖୁଛି, ତାହାଠାରୁ ସ୍ପଷ୍ଟତର ଭାବରେ ଈଶ୍ୱରଙ୍କୁ ଦେଖିଛି ।" ନରେନ୍ଦ୍ରଙ୍କ ବିସ୍ମୟ ଶତଗୁଣ ବର୍ଦ୍ଧିତ କରି ସେ ପୁଣି କହିଲେ, "ତୁମେ ଦେଖିବାକୁ ଚାହୁଁଛ ? ତୁମକୁ ମଧ୍ୟ ଦେଖାଇଦେଇ ପାରିବି, ଯଦି ତୁମେ ମୋ କହିବା ଅନୁସାରେ ଆଚରଣ କର ।"

ହାୟ ପାଶ୍ଚାତ୍ୟ-ଶିକ୍ଷାର ପ୍ରଭାବ ! ଶ୍ରୀରାମକୃଷ୍ଣଙ୍କ ଅପୂର୍ବ ବାଣୀ ଶୁଣି ତାଙ୍କ ଉଦ୍‌ବେଳିତ ଆନନ୍ଦ ମୂହୂର୍ତ୍ତକପରେ ସନ୍ଦେହର ଅନ୍ଧକାରରେ ଲୋପ ପାଇଲା । ଶ୍ରୀରାମକୃଷ୍ଣଙ୍କ ବାଣୀରେ ସେ ଯେଉଁ ପନ୍ଥାର ଇଙ୍ଗିତ ପାଇଲେ—ତାହା କୁସୁମାବୃତ୍ତ ନୁହେଁ । ଏହି ଅର୍ଦ୍ଧୋନ୍ମତ୍ତ ବ୍ୟକ୍ତିଙ୍କ ଚରଣରେ ପୂର୍ଣ୍ଣରୂପେ ଆତ୍ମସମର୍ପଣ କରି ତୀବ୍ର କଠୋର ସାଧନା-ପଥରେ ଅଗ୍ରସର ହେବାକୁ ପଡ଼ିବ—ଏ'କଥାରେ ବ୍ରାହ୍ମ-ସମାଜ ଆଦର୍ଶରେ ଅନୁପ୍ରାଣିତ ନରେନ୍ଦ୍ରନାଥ ସହସା ଠାକୁରଙ୍କୁ ଗୁରୁରୂପେ

ବରଣ କରି ପାରିଲେ ନାହିଁ; କିନ୍ତୁ କିଛିଦିନ ପରେ ଗୋଟିଏ ବିଶେଷ ଘଟଣାରେ ସେ ବ୍ରାହ୍ମ-ସମାଜ ସହ ସମ୍ପର୍କ ଛିନ୍ନ କରିବାକୁ ବାଧ୍ୟ ହୋଇଥିଲେ ।

## ବ୍ରାହ୍ମ-ସମାଜ ପରିତ୍ୟାଗ

ଅନେକ ଦିନ ପର୍ଯ୍ୟନ୍ତ ନରେନ୍ଦ୍ର ଦକ୍ଷିଣେଶ୍ୱର ଗଲେ ନାହିଁ । ଠାକୁର ତାଙ୍କୁ ଦେଖିବାକୁ ବ୍ୟାକୁଳ ହେଉଥାନ୍ତି । ସେଦିନ ରବିବାର ଥାଏ, ବ୍ରାହ୍ମ-ସମାଜକୁ ଗଲେ ନିଶ୍ଚୟ ନରେନ୍ଦ୍ରଙ୍କୁ ଦେଖିପାରିବେ ବୋଲି ଆଶା କରି ଠାକୁର ସନ୍ଧ୍ୟାବେଳେ ସାଧାରଣ ସମାଜ ଉପାସନାରେ ଉପସ୍ଥିତ ହେଲେ । ଆଚାର୍ଯ୍ୟ ସେତେବେଳେ ବେଦୀ ଉପରୁ ବକ୍ତୃତା କରୁଥିଲେ । ଈଶ୍ୱରୀୟ କଥା ଶ୍ରବଣ କରି ଭାବୋନ୍ମତ୍ତ ଠାକୁର ଅଜାଣତରେ ବେଦୀ ନିକଟକୁ ଗଲେ । ନରେନ୍ଦ୍ରନାଥ ଠାକୁରଙ୍କର ଆଗମନର କାରଣ ଅନୁମାନ କରି ତାଙ୍କ ପାଖକୁ ଆସି ତାଙ୍କ ପତନୋନ୍ମୁଖ ଭାବବିହ୍ୱଳ ଶରୀରକୁ ଧରି ପକାଇଲେ; କିନ୍ତୁ ଦେଖି ଆଶ୍ଚର୍ଯ୍ୟ ହେଲେ ଯେ, ପରମହଂସଙ୍କୁ ସମ୍ମୁଖରେ ଦେଖି ବେଦୀ ଉପରେ ଉପବିଷ୍ଟ ଆଚାର୍ଯ୍ୟ ଠିଆ ହେବା ତ ଦୂରର କଥା, ସେ ଓ ଅନ୍ୟାନ୍ୟ ବ୍ରାହ୍ମଗଣ ତାଙ୍କୁ ସମ୍ଭାଷଣ ପର୍ଯ୍ୟନ୍ତ କଲେ ନାହିଁ ଏବଂ ସାଧାରଣ ଭଦ୍ରତାସୂଚକ ଶିଷ୍ଟାଚାର ମଧ୍ୟ ଦେଖାଇଲେ ନାହିଁ ! ଅନେକଙ୍କ ମୁହଁରେ ଅବଜ୍ଞାବିମିଶ୍ର ବିରକ୍ତିର ଚିହ୍ନ ସୁସ୍ପଷ୍ଟ ହୋଇଉଠିଲା । ଇତିମଧ୍ୟରେ ଠାକୁର ସମାଧିସ୍ଥ ହେଲେ । ଠାକୁରଙ୍କୁ ଦେଖିବା ଲାଗି ଅନେକ ଲୋକ ଆଗ୍ରହ ପ୍ରକାଶ କଲେ । ଫଳରେ ଉପାସନା-ଗୃହରେ ବିଶୃଙ୍ଖଳା କୋଳାହଳ ଶୁଣି କର୍ତ୍ତୃପକ୍ଷ ଗ୍ୟାସ ଆଲୋକଗୁଡ଼ିକ ଲିଭାଇଦେଲେ । ନରେନ୍ଦ୍ର ବହୁ କଷ୍ଟରେ ମନ୍ଦିରର ପଛ ଦରଜାବାଟେ ଠାକୁରଙ୍କୁ ବାହାରକୁ ଆଣିଲେ ଏବଂ ଦକ୍ଷିଣେଶ୍ୱର ପଠାଇଦେଲେ । ଠାକୁରଙ୍କ ପ୍ରତି ବ୍ରାହ୍ମମାନଙ୍କର ଏଭଳି ବ୍ୟବହାର ଦେଖି ନରେନ୍ଦ୍ରନାଥ ହୃଦୟରେ ଗଭୀର ଆଘାତ ପାଇଲେ ଏବଂ କେବଳ ତାଙ୍କରି ପାଇଁ ଠାକୁର ଏପରି ଲାଞ୍ଛିତ ହେଲେ ବୋଲି କ୍ଷୁବ୍ଧ ଓ ବ୍ୟଥିତ ହୋଇ ନରେନ୍ଦ୍ରନାଥ ଆଉ କେବେ ବ୍ରାହ୍ମ-ସମାଜକୁ ଗଲେ ନାହିଁ ।

## ଆତ୍ମ-ବିଶ୍ୱାସ ଓ ଦୃଢ଼ତା

ସୂକ୍ଷ୍ମ ଯୋଗଜଦୃଷ୍ଟି ସାହାଯ୍ୟରେ ଠାକୁର ନରେନ୍ଦ୍ରଙ୍କ ମହିମାସମୁଜ୍ଜ୍ୱଳ ଭବିଷ୍ୟତ ଦର୍ଶନ କରି ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ; ନରେନ୍ଦ୍ର ମଧ୍ୟ ତାଙ୍କର ଅସୀମ ନିଷ୍ଠା, ଜଗଜ୍ଜନନୀଙ୍କ ଉପରେ ପୂର୍ଣ୍ଣ ନିର୍ଭରତା, ତ୍ୟାଗପୂତ-ପବିତ୍ର ଜୀବନ ଇତ୍ୟାଦି ଦର୍ଶନ କରି ଏକ ପ୍ରକାର ଅଜ୍ଞାତସାରରେ ହିଁ ଠାକୁରଙ୍କ ପାଦରେ ଆତ୍ମସମର୍ପଣ କରିଥିଲେ; କିନ୍ତୁ ଅନ୍ୟାନ୍ୟ ରାମକୃଷ୍ଣ-ଭକ୍ତବୃନ୍ଦ ପ୍ରଥମେ ପ୍ରଥମେ ନରେନ୍ଦ୍ରନାଥଙ୍କୁ ବିଶେଷ ଶ୍ରଦ୍ଧା ଦୃଷ୍ଟିରେ ଦେଖିପାରିଲେ ନାହିଁ । ତାଙ୍କ ପାଇଁ ଠାକୁରଙ୍କ ତୀବ୍ର ବ୍ୟାକୁଳତା ଅନେକଙ୍କୁ ରହସ୍ୟମୟ ବୋଧ ହେଉଥିଲା । ପ୍ରବଳ ଆତ୍ମ-ବିଶ୍ୱାସ-ଜନିତ ନରେନ୍ଦ୍ରନାଥଙ୍କ ଅକପଟ, ନିର୍ଭୀକ ଆଚରଣ ସାଧାରଣ

ଲୋକଙ୍କ ସ୍ଥୂଳ ଦୃଷ୍ଟିରେ ଦମ୍ଭ ଓ ଔଦ୍ଧତ୍ୟରୂପେ ପ୍ରତିଭାତ ହେଉଥିଲା । ବିଶେଷତଃ ଭକ୍ତବୃନ୍ଦଙ୍କ ଭାବାବେଶରେ କ୍ରନ୍ଦନ, କଥା କଥାକେ ଦୟାମୟ ଭଗବାନଙ୍କ କୃପା ପ୍ରାର୍ଥନା, ନିଜକୁ କୀଟାଣୁକୀଟତୁଲ୍ୟ ହେୟ ମନେକରି ଆତ୍ମନିନ୍ଦା, ଇତ୍ୟାଦିର ସେ କଠୋର ସମାଲେଚନା କରୁଥିଲେ । ପୁରୁଷ—ପୁରୁଷପରି ଶିର ଉନ୍ନତ କରି ଦୃଢ଼ ଉଦ୍ୟମ ଓ ଅତୁଟ ସଂକଳ୍ପସହ ଭଗବାନଙ୍କୁ ଆରାଧନା କରିବ—ଏହା ହିଁ ସେ ସମୀଚୀନ ମନେ କରୁଥିଲେ; ତେଣୁ ଅନେକ ଭକ୍ତ ନରେନ୍ଦ୍ରଙ୍କ ମୁଖର ସମାଲୋଚନାରେ ନିରୁତ୍ତର ହୋଇ କ୍ଷୁଣ୍ଣମନା ହେଉଥିଲେ । ସବୁ ବିଷୟରେ ନିଃସଙ୍କୋଚ ସ୍ୱାଧୀନ ବ୍ୟବହାର, ସ୍ପଷ୍ଟବାଦିତା ଇତ୍ୟାଦି ଲାଗି ସେ ଅନେକଙ୍କର ଅପ୍ରିୟ ହେଲେ ବି ତାଙ୍କ ଉଦାସୀନ ପ୍ରକୃତି ଯୋଗୁଁ ସେ ଲୋକଙ୍କ ନିନ୍ଦା ପ୍ରଶଂସା ବିଷୟ ଭାବିବାକୁ ଅବସର ପାଉନଥିଲେ । ସାଧାରଣ ମାନବ ତାଙ୍କୁ ଯାହା ଭାବୁନା କାହିଁକି, ଠାକୁର ଜାଣିଥିଲେ ଯେ, ନରେନ୍ଦ୍ର ନିର୍ଭୀକ ଓ ସତ୍ୟବାଦୀ; ତାଙ୍କ ବାକ୍ୟ ଓ କାର୍ଯ୍ୟରେ କେଉଁଠି ହେଲେ ବିନ୍ଦୁମାତ୍ର 'ଭାବର ଘରେ ଚୋରି' ନ ଥିଲା ।

ବାଲ୍ୟକାଳରୁ ନରେନ୍ଦ୍ରନାଥଙ୍କ ହୃଦୟରେ କୌଣସି ସଂଶୟ ଉପସ୍ଥିତ ହେଲେ, ତାହାର ମୀମାଂସା ନ କରିବା ପର୍ଯ୍ୟନ୍ତ ସେ ଶାନ୍ତିଲାଭ କରିପାରୁ ନଥିଲେ । ଅହୋରାତ୍ର ଚିନ୍ତା କରି ମଧ୍ୟ ସେ ଶ୍ରୀରାମକୃଷ୍ଣଙ୍କ ସମ୍ବନ୍ଧରେ କୌଣସି ପ୍ରକାର ସିଦ୍ଧାନ୍ତରେ ଉପନୀତ ନ ହୋଇପାରି ଅସ୍ଥିର ହୋଇ ଉଠିଲେ ଏବଂ ଏହି ଅସ୍ଥିରତା ସତ୍ତ୍ୱେ ସେ ଦୃଢ଼ତା ଓ ସତର୍କତା ସହ ଠାକୁରଙ୍କ ନିକଟକୁ ଗମନା ଗମନ—ଏପରିକି ତାହାଙ୍କୁ ପରୀକ୍ଷା କରିବା ନିମିତ୍ତ ଦକ୍ଷିଣେଶ୍ୱରରେ ରାତ୍ରିବାସ ପର୍ଯ୍ୟନ୍ତ କରିବାକୁ ଲାଗିଲେ ।

## ଶ୍ରୀରାମକୃଷ୍ଣ ଓ ନରେନ୍ଦ୍ରଙ୍କ ମଧ୍ୟରେ ଅପୂର୍ବ ପ୍ରେମସମ୍ବନ୍ଧ

ଠାକୁରଙ୍କୁ ପରୀକ୍ଷା କରିବା, ତାଙ୍କ କଥା ହସି ଉଡ଼ାଇଦେବା ଇତ୍ୟାଦି ବାହ୍ୟ ଆଚରଣ ମାଧ୍ୟମରେ ନରେନ୍ଦ୍ରଙ୍କର ଯେଉଁ ଅନମନୀୟ ବ୍ୟକ୍ତି-ସ୍ୱାତନ୍ତ୍ର୍ୟ ଫୁଟି ଉଠିଥିଲା, ତାକୁ ଦମ୍ଭ ମନେକରି ଠାକୁରଙ୍କର ଅନେକ ଭକ୍ତ ଆନ୍ତରିକ ବିରକ୍ତ ହେଉଥିଲେ; କିନ୍ତୁ ଯେଉଁମାନେ ଘନିଷ୍ଠ ପରିଚୟ ଫଳରେ ନରେନ୍ଦ୍ରଙ୍କ ଗଭୀର 'ଅନ୍ତଃସ୍ଥଳର ଖବର' ରଖୁଥିଲେ, ସେମାନେ ଜାଣିଥିଲେ, ଠାକୁରଙ୍କ ପ୍ରତି ତାଙ୍କର ଭକ୍ତି ଓ ଶ୍ରଦ୍ଧା କିପରି ଅପରିସୀମ ଥିଲା ! ଯେଉଁ ଠାକୁରଙ୍କ ଅଣୁ ମାତ୍ର କରୁଣା ଲାଭ କଲେ ଅନେକ ଭକ୍ତ ଉଚ୍ଛ୍ୱସିତ ଆନନ୍ଦରେ ଆତ୍ମହରା ହୋଇଯାଉଥିଲେ, ସେହି କରୁଣା-ମନ୍ଦାକିନୀଧାରାକୁ ନରେନ୍ଦ୍ର ଅଟଳ ଭାବରେ ଦଣ୍ଡାୟମାନ ହୋଇ ମୁଣ୍ଡପାତି ନେଇଥିଲେ । ସ୍ୱାର୍ଥ-ଲେଶଶୂନ୍ୟ ଏହି ଅପୂର୍ବ ଆଧ୍ୟାତ୍ମିକ ପ୍ରେମସମ୍ବନ୍ଧ ବର୍ଣ୍ଣନା କରିବା ଆମର ସାଧ୍ୟାତୀତ । ଦିନେ କଥା ପ୍ରସଙ୍ଗରେ ଠାକୁର କହିପକାଇଲେ, "ତୁ ଯଦି ମୋ କଥା ନ ଶୁଣିବୁ, ତେବେ ଏଠାକୁ ଆସୁଛୁ କାହିଁକି ?" ସେ ତତ୍‌କ୍ଷଣାତ୍ ଉତ୍ତର ଦେଲେ, "ଆପଣଙ୍କୁ ଭଲପାଏ, ତେଣୁ ଦେଖିବାକୁ ଆସେ;

କଥା ଶୁଣିବା ଲାଗି ନୁହେଁ !'' ଏହି ଉତ୍ତର ଶୁଣି ଠାକୁର ଭାବାନନ୍ଦରେ ଗଦ୍‌ଗଦ ହୋଇଗଲେ; ମନର ଗୋପନ କଥା ପ୍ରକାଶିତ ହୋଇଗଲା ବୋଲି ଅପ୍ରତିଭ ହୋଇ ନରେନ୍ଦ୍ରନାଥ ମର୍ମେ ମର୍ମେ ମରିଗଲେ ।

ଶ୍ରୀରାମକୃଷ୍ଣ ନରେନ୍ଦ୍ରଙ୍କ ପ୍ରତି ଯେପରି ସ୍ନେହ ପ୍ରଦର୍ଶନ କରୁଥିଲେ, ତାହା ଦେଖି ଦିନେ ସେ ରହସ୍ୟ କରି କହିଲେ, ''ପୁରାଣରେ ଅଛି, ଭରତ ରାଜା 'ହରିଣ' କଥା ଭାବି ଭାବି ମୃତ୍ୟୁ ପରେ ହରିଣ ହୋଇଗଲେ; ଆପଣ ମୋ ପ୍ରତି ଯାହା କରୁଛନ୍ତି, ଆପଣଙ୍କର ଠିକ୍ ସେହି ଦଶା ହେବ ।'' ଏହି କଥା ଶୁଣି ବାଳକପରି ଚିନ୍ତିତ ହୋଇ ଠାକୁର କହିଲେ, ''ଠିକ୍ କଥା ତ ! ତାହା ହେଲେ କ'ଣ ହେବ ? ମୁଁ ତୋତେ ନ ଦେଖିଲେ ରହିପାରୁ ନାହିଁ ।'' ସନ୍ଦେହ ଉଦୟ ହେବା ମାତ୍ରକେ ଠାକୁର କାଳୀଘରକୁ ମା'ଙ୍କ ନିକଟକୁ ଧାଇଁଗଲେ; କିଛିକ୍ଷଣ ପରେ ହସି ହସି ଫେରିଆସି କହିଲେ, ''ଯା ଶଳା, ମୁଁ ତୋ କଥା ଶୁଣିବି ନି ! ମା' କହିଲେ, 'ତୁ ତାକୁ (ନରେନ୍ଦ୍ରକୁ) ସାକ୍ଷାତ୍ ନାରାୟଣ ବୋଲି ଭାବି ଭଲପାଉଛୁ ! ଯେଉଁଦିନ ତା'ଠାରେ ନାରାୟଣ ଦେଖି ନ ପାରିବୁ, ସେହି ଦିନଠାରୁ ତୁ ତା' ମୁହଁକୁ ଚାହିଁ ପାରିବୁ ନାହିଁ ।''

ଠାକୁର ନରେନ୍ଦ୍ରଙ୍କୁ ଦେଖିବା ମାତ୍ରେ ତାଙ୍କୁ ଉଚ୍ଚ ଅଧିକାରୀ ଓ ଦୈବଶକ୍ତିସମ୍ପନ୍ନ ବିଶୁଦ୍ଧଚିତ୍ତ ସାଧକ ବୋଲି ବୁଝି ପାରିଥିଲେ; ସେହିହେତୁ ନିଜ ଅହେତୁକ ପ୍ରେମକୁ ଅଜସ୍ର ଧାରାରେ ଢାଳିଦେଇ ଉଚ୍ଚତମ ଆଧ୍ୟାତ୍ମିକ ଅନୁଭୂତି ପଥରେ ପରିଚାଳିତ କରିଥିଲେ ।

## ଅପୂର୍ବ ଅନୁଭୂତି

ଦିନେ ନରେନ୍ଦ୍ରନାଥ ଠାକୁରଙ୍କ ସମ୍ମୁଖରେ ଭକ୍ତବୃନ୍ଦଙ୍କ ମଧ୍ୟର ଉପବିଷ୍ଟ ରହିଥିଲେ । ଏହି ସମୟରେ ଠାକୁର ପ୍ରସଙ୍ଗକ୍ରମେ କହିଲେ, ''ଏ (ମୋ) ଦେହ ଭିତରେ ଯେଉଁଟା ରହିଛି, ସେଇଟା ଶକ୍ତି; ତା' (ନରେନ୍ଦ୍ରର) ଦେହ ଭିତରେ ଯେଉଁଟା ଅଛି, ସେଟା ପୁରୁଷ ଓ ମୋ ଶ୍ୱଶୁରଘର ।'' ଏ' କଥା ଶୁଣି ନରେନ୍ଦ୍ର ମୃଦୁହାସ୍ୟ କଲେ । ମନେ ମନେ ଭାବିଲେ, ପୁଣି ପାଗଳାମି ଆରମ୍ଭ ହୋଇଗଲା ।

ଭକ୍ତବୃନ୍ଦ ଈଶ୍ୱରବିଷୟକ ସଙ୍ଗୀତ ଓ ପରମାର୍ଥଚର୍ଚ୍ଚାରେ ପ୍ରବୃତ୍ତ ଥିଲେ; କ୍ରମେ ଦିବାବସାନ ପ୍ରାୟ ହେଉଥିବା ଦେଖି ସମସ୍ତେ ନିସ୍ତବ୍ଧ ହେଲେ । ସମ୍ମୁଖରେ ସୁବିସ୍ତୃତ ଗଙ୍ଗାବକ୍ଷରେ ଲହରୀ-ମାଳା ଶୀର୍ଷରେ ଦିଗନ୍ତର ପୀତାଭ ଲୋହିତ ରଶ୍ମିମାଳା ନୃତ୍ୟ କରି କ୍ରମେ ଅଦୃଶ୍ୟ ହେଲେ; ସନ୍ଧ୍ୟାର ଧୂସର ଛାୟା ପରପାରସ୍ଥ ସୌଧଶିଖର ଓ ବୃକ୍ଷଶୀର୍ଷଗୁଡ଼ିକୁ ଅସ୍ପଷ୍ଟ କରି ପକାଇଲା — ସେତେବେଳ ପର୍ଯ୍ୟନ୍ତ ଦେବାଳୟରେ ସନ୍ଧ୍ୟା-ଆରତି କଂସାର ଘଣ୍ଟା ବାଜି ନ ଥିଲା, ଠାକୁର ଏକ ଲୟରେ ନରେନ୍ଦ୍ରନାଥଙ୍କୁ ଚାହିଁ ଚାହିଁ ହଠାତ୍ ଆସନରୁ ଉଠି ନିଜ ଡାହାଣ ପାଦକୁ ନରେନ୍ଦ୍ରଙ୍କ କାନ୍ଧ ଉପରେ ଥୋଇଦେଲେ । ତତ୍‌କ୍ଷଣାତ୍ ତାଙ୍କର ଅପୂର୍ବ ଭାବାନ୍ତର

ଉପସ୍ଥିତ ହେଲା । ସେ ଅନୁଭବ କଲେ, ଯେପରି କି ତାଙ୍କ ଆଖପାଖର ଦୃଶ୍ୟମାନ ପଦାର୍ଥଗୁଡ଼ିକ ଗୋଟିଏ ଅନନ୍ତ ସତ୍ତାରେ ବିଲୀନ ହୋଇଯାଉଛି; କେବଳ ସେ ଏକା—ଶେଷରେ ତାଙ୍କ ଅହଂତ୍ୱର ସତ୍ତା ମଧ୍ୟ ବିଲୀନ ହେବାକୁ ଉପକ୍ରମ କଲା; ସେ ଭୟ ଓ ବିସ୍ମୟରେ ଚିତ୍କାର କରି କହିଲେ, "ଆହେ, ତୁମେ ଏ କ'ଣ କଲ; ମୋର ଯେ ବାପା-ମା ଅଛନ୍ତି ।"

ଠାକୁର ତାଙ୍କ ବକ୍ଷରେ ହସ୍ତାର୍ପଣ କରିବାମାତ୍ରକେ ସେ ପୁନରାୟ ସ୍ୱାଭାବିକ ଅବସ୍ଥାକୁ ଫେରିଆସି ଦେଖିଲେ—ଅଦ୍ଭୁତ ଦେବ-ମାନବ ତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ହସୁଛନ୍ତି । ଦୃଢ଼-ହୃଦୟ ବୋଲି ନରେନ୍ଦ୍ରନାଥଙ୍କର ଚିରକାଳ ଯେଉଁ ଗର୍ବ ଥିଲା—ଆଜି ତାହା ସମୂଳେ ଚୂର୍ଣ୍ଣ ହୋଇଗଲା ! ପିତୃ-ମାତୃ-ମମତାରେ ଅନ୍ଧ ହୋଇ, ନାମ-ରୂପସୀମା ଭେଦ କରି ସେ ତ ଯୋଗୀ-ଜନ-ବାଞ୍ଛିତ ଚିଦାନନ୍ଦସାଗରରେ ଝାସ ଦେଇପାରିଲେ ନାହିଁ !

ଯେଉଁ ମହାପୁରୁଷ କେବଳ ମାତ୍ର ସ୍ପର୍ଶ କରି ଜଣେ ସାଧାରଣ ବ୍ୟକ୍ତିଙ୍କୁ ବହୁଜନ୍ମାର୍ଜିତ ସାଧନର ଫଳସ୍ୱରୂପ ସର୍ବଶ୍ରେଷ୍ଠ ଆଧ୍ୟାତ୍ମିକ ସମ୍ପଦ ସମାଧି-ଧନର ଅଧିକାରୀ କରି ଦେଇପାରିଲେ, ତାଙ୍କୁ କେବେ ଉନ୍ମତ୍ତ କୁହାଯାଇ ପାରିବ ନାହିଁ । ପୁଣି ଭାବିଲେ, ଏହା ସମ୍ମୋହନ ବିଦ୍ୟା (Hypnotism) ନୁହେଁ ତ ? ଯେଉଁଥିରେ ଠାକୁର ଭବିଷ୍ୟତରେ ତାଙ୍କ ଉପରେ ନିଜ ପ୍ରଭାବ ବିସ୍ତାର କରି ଏ ପ୍ରକାର ଭାବାନ୍ତର ଘଟାଇ ନ ପାରନ୍ତି, ନରେନ୍ଦ୍ରନାଥ ସେ ବିଷୟରେ ସାବଧାନ ରହିଲେ ।

## ସଂସାର ପ୍ରତି ଅନାସକ୍ତି

ଏଣେ ବି.ଏ. ପଢ଼ିବା ସଙ୍ଗେ ସଙ୍ଗେ ନରେନ୍ଦ୍ର ପିତାଙ୍କ ଆଦେଶାନୁସାରେ ସୁପ୍ରସିଦ୍ଧ ଆଟର୍ଣ୍ଣୀ ନିମାଇ ଚରଣ ବସୁଙ୍କ ପାଖରେ ଆଟର୍ଣ୍ଣୀ ବ୍ୟବସାୟ ଶିଖିବାକୁ ଆରମ୍ଭ କଲେ । ପୁତ୍ରକୁ ସଂସାରୀ କରିବା ନିମିତ୍ତ ବିଶ୍ୱନାଥ ବାବୁ ବିବାହ ଲାଗି ଉଦ୍ୟୋଗ କରିବାକୁ ଲାଗିଲେ । ନରେନ୍ଦ୍ର ଯେ ଦକ୍ଷିଣେଶ୍ୱରର ପରମହଂସଙ୍କ ନିକଟକୁ ଯାତାୟତ କରୁଛନ୍ତି, ସେ କଥା ତାଙ୍କୁ ଅବିଦିତ ନ ଥିଲା; କିନ୍ତୁ ଏହାକୁ ସେ ଏତେ ଗୁରୁତ୍ୱ ଦେଉ ନ ଥିଲେ । ବିଶେଷତଃ ବି.ଏ. ପଢ଼ିବା ସମୟରେ ନରେନ୍ଦ୍ର ରାମତନୁ ବସୁ ଲେନ୍‌ରେ ନିଜ ମାତାମହୀଙ୍କ ଗୃହରେ ନିଜ ପଢ଼ାଘର ନିର୍ଦ୍ଦିଷ୍ଟ କରି ନେଇଥିଲେ । ଆତ୍ମୀୟ, ପରିଜନ ଓ ଅନ୍ୟାନ୍ୟ ଲୋକଙ୍କ ସମାଗମ ହେତୁ ପିତୃଭବନ ସର୍ବଦା କଳରବରେ ମୁଖରିତ ଥାଏ ବୋଲି ତାଙ୍କ ପଢ଼ାଶୁଣାରେ ବିଶେଷ ବ୍ୟାଘାତ ହେଉଥିଲା । ଏହି କକ୍ଷରେ, ଧନୀର ସନ୍ତାନ ହୋଇ ମଧ୍ୟ, ନରେନ୍ଦ୍ରନାଥଙ୍କର ସାମାନ୍ୟ ଶଯ୍ୟା ଉପରେ ପଡ଼ିଥିବା କେତେଖଣ୍ଡ ପାଠ୍ୟପୁସ୍ତକ, ଗୋଟିଏ ତାନପୁରା ଏବଂ ତମାଖୁ ଖାଇବା ସରଞ୍ଜାମ ବ୍ୟତୀତ ଅନ୍ୟ କୌଣସି ଜିନିଷପତ୍ର ନଥିଲା । ନିର୍ଜନବାସ, ଧ୍ୟାନ, ଦୈହିକ କଠୋରତା, ସଂଯମ ଅଭ୍ୟାସ

ଇତ୍ୟାଦି ସହ ସେ ପ୍ରକୃତ ବ୍ରହ୍ମଚାରୀଙ୍କ ପରି ଜୀବନଯାପନ କରିବାକୁ ଲାଗିଲେ । ବେଳେ ବେଳେ ଦକ୍ଷିଣେଶ୍ୱରରୁ ଠାକୁର ସେଠାକୁ ଆସି ତାଙ୍କୁ ସାଧନ-ଭଜନ ସମ୍ବନ୍ଧରେ ନାନାପ୍ରକାର ଉପଦେଶ ଦେଉଥିଲେ । ନରେନ୍ଦ୍ରନାଥଙ୍କ ସହିତ ଶ୍ରୀରାମକୃଷ୍ଣଙ୍କର ଏତେ ଘନିଷ୍ଠତା ତାଙ୍କ ପରିଜନବର୍ଗଙ୍କୁ ପ୍ରୀତିକର ବୋଧ ହେଉ ନ ଥିଲା; କିନ୍ତୁ କେହି ତାଙ୍କ କାର୍ଯ୍ୟରେ ପ୍ରତିବାଦ କରିବାକୁ ସାହସ କରୁ ନ ଥିଲେ । ସ୍ୱାଧୀନଚେତା ନରେନ୍ଦ୍ରଙ୍କୁ ନିଷେଧ କରି ନିବୃତ୍ତ କରିବା ଅସମ୍ଭବ ବୋଲି ସମସ୍ତେ ଜାଣିଥିଲେ । ତାଙ୍କର ବିବାହିତ ଜୀବନପ୍ରତି ବିତୃଷ୍ଣା, ସଂସାର ପ୍ରତି ଅନାସକ୍ତଭାବ ପ୍ରଭୃତି ଦର୍ଶନ କରି ପରିଜନ ଓ ବନ୍ଧୁବର୍ଗ ସମସ୍ତେ ଶଙ୍କିତ ହୋଇଥିଲେ ।

ବି.ଏ. ପରୀକ୍ଷା ବେଶୀ ବିଳମ୍ବ ନ ଥାଏ । ସନ୍ଧ୍ୟା ହୋଇ ଆସୁଥିବାରୁ ନରେନ୍ଦ୍ରନାଥ ପାଠ୍ୟ ପୁସ୍ତକରେ ମନୋନିବେଶ କରିବାକୁ ଚେଷ୍ଟା କରୁଥାନ୍ତି; ଏହି ସମୟରେ ତାଙ୍କର ଜଣେ ସହାଧ୍ୟାୟୀ ବନ୍ଧୁ ସେଠାରେ ଉପସ୍ଥିତ ହେଲେ ଏବଂ ଗମ୍ଭୀର ଭାବରେ ନରେନ୍ଦ୍ରଙ୍କୁ ନାନାପ୍ରକାର ଉପଦେଶ ଦେବାକୁ ଲାଗିଲେ । ଦର୍ଶନଶାସ୍ତ୍ର ଆଲୋଚନା, ସାଧୁସଙ୍ଗ, ଧର୍ମାଲୋଚନା ଆଦି ପାଗଳାମି ଛାଡ଼ି ଯେଉଁଥିରେ ସାଂସାରିକ 'ସୁଖ-ସୁବିଧା' ହୁଏ, ସେଥିପାଇଁ ଚେଷ୍ଟା କରିବା କର୍ତ୍ତବ୍ୟ, ଏହା ହିଁ ସେ କହୁଥିଲେ । କେତେଦିନ ହେଲା ତଥାକଥିତ ସାଂସାରିକ ବିଜ୍ଞ ବ୍ୟକ୍ତିଗଣଙ୍କଠାରୁ ନରେନ୍ଦ୍ର ଏହି ପ୍ରକାର ଉପଦେଶ ଶୁଣି ଆସୁଥିଲେ; ନିଜ ସହୃଦୟ ବନ୍ଧୁଙ୍କଠାରୁ ଏ ପ୍ରକାର ଉପଦେଶ ଶୁଣି ସେ ବ୍ୟଥିତ ହୃଦୟରେ ନିଜ ମାନସିକ ଅଶାନ୍ତି ବିଷୟ ବର୍ଣ୍ଣନା କରି କହିଲେ, ''ମୋର ମନେ ହେଉଛି, ସନ୍ନ୍ୟାସ ହିଁ ମାନବଜୀବନର ସର୍ବୋଚ୍ଚ ଆଦର୍ଶ ହେବା ଉଚିତ । ନିୟତ ପରିବର୍ତ୍ତନଶୀଳ ଅନିତ୍ୟ ସଂସାର ପଛରେ ସୁଖଲାଳସାରେ ଇତସ୍ତତଃ ଧାବମାନ ହେବା ଅପେକ୍ଷା ସେହି ଅପରିବର୍ତ୍ତନୀୟ 'ସତ୍ୟଂ ଶିବଂ ସୁନ୍ଦରଂ'ଙ୍କୁ ପାଇବା ନିମିତ୍ତ ପ୍ରାଣପଣେ ଚେଷ୍ଟା କରିବା ଶତଗୁଣ ଶ୍ରେୟସ୍କର ।''

ବୈରାଗ୍ୟପ୍ରବଣ ନରେନ୍ଦ୍ରନାଥ ଉତ୍ସାହର ସହିତ ତ୍ୟାଗର ମହିମା ବର୍ଣ୍ଣନା କରିବାରେ ପ୍ରବୃତ୍ତ ହେବାରୁ ତାଙ୍କର ବନ୍ଧୁଙ୍କ ସହିତ ତର୍କ ଆରମ୍ଭ ହୋଇଗଲା । କ୍ରମେ ଉତ୍ତେଜିତ ହୋଇ ବନ୍ଧୁ କହିଲେ, ''ଦେଖ ନରେନ୍, ତୁମର ଯେଉଁଭଳି ବୁଦ୍ଧି ଓ ପ୍ରତିଭା ଥିଲା, ତୁମେ ଜୀବନରେ ଅନେକ ଉନ୍ନତି କରିପାରିଥାନ୍ତ; କିନ୍ତୁ ଦକ୍ଷିଣେଶ୍ୱରର ପରମହଂସ ତୁମ ମୁଣ୍ଡ ବିଗାଡ଼ି ଦେଇଛନ୍ତି । ଯଦି ଭଲ ଚାହଁ, ତେବେ ସେହି ପାଗଳର ସଙ୍ଗ ତ୍ୟାଗ କର—ନତୁବା ତୁମର ସର୍ବନାଶ ହେବ ।''

ନରେନ୍ଦ୍ର ନୀରବ ହେଲେ । ବନ୍ଧୁଜଣକ ଶ୍ରୀରାମକୃଷ୍ଣଙ୍କ ସମ୍ବନ୍ଧରେ ନାନାପ୍ରକାର ପ୍ରଶ୍ନ ପଚାରିବାକୁ ଲାଗିଲେ । ଅବଶେଷରେ ନରେନ୍ଦ୍ର ଉଠି କକ୍ଷ ମଧ୍ୟରେ ପଦଚାରଣା କରିବାକୁ ଲାଗିଲେ; ତାଙ୍କ ବ୍ୟଥିତ ମୁଖମଣ୍ଡଳ ଗମ୍ଭୀର ହୋଇ ଉଠିଲା । ଅନେକ ସମୟ ପରେ ସେ ମୌନ ଭଙ୍ଗ କରି କହିଲେ, ''ଭାଇ, ତୁମେ ଶ୍ରୀରାମକୃଷ୍ଣଦେବଙ୍କୁ ବୁଝିପାରିନାହଁ—ଆଉ କ'ଣ କହିବି, ମୁଁ ନିଜେ ମଧ୍ୟ

ତାଙ୍କୁ ସମ୍ୟକ୍ ଭାବରେ ବୁଝିପାରି ନାହିଁ । ତେବେ ମୁଁ ସରଳ ସୌମ୍ୟ-କାନ୍ତି ମହାପୁରୁଷଙ୍କୁ ଭଲପାଏ । କାହିଁକି, ତାହା କହିପାରିବି ନାହିଁ ।''

ପରମହଂସଙ୍କ 'ସଙ୍ଗଦୋଷରୁ' ନରେନ୍ଦ୍ରନାଥଙ୍କ ମସ୍ତିଷ୍କ ବିକୃତ ହୋଇଛି ବୋଲି ଅନୁମାନ କରି ଉକ୍ତ ବନ୍ଧୁ ଦୁଃଖିତାନ୍ତଃକରଣରେ ପ୍ରସ୍ଥାନ କଲେ ।

ନରେନ୍ଦ୍ରନାଥ ନାନାପ୍ରକାର ପ୍ରତିକୂଳ ସମାଲୋଚନା ଅଗ୍ରାହ୍ୟ କରି ସ୍ୱନିର୍ଦ୍ଦିଷ୍ଟ ପଥରେ ଅଗ୍ରସର ହେଲେ । ବି.ଏ. ପରୀକ୍ଷା ହୋଇଗଲା । ବି.ଏ. ପରୀକ୍ଷା ପାଇଁ ପ୍ରସ୍ତୁତ ହେବା ନିମିତ୍ତ ତାଙ୍କୁ କଠୋର ମାନସିକ ପରିଶ୍ରମ କରିବାକୁ ହୋଇଥିଲା । ଶ୍ରମକ୍ଳାନ୍ତି ଅପନୋଦନ ନିମିତ୍ତ ସେ ମଝିରେ ମଝିରେ ସହପାଠୀ ବନ୍ଧୁମାନଙ୍କ ସହିତ ସଙ୍ଗୀତ, ହାସ୍ୟ-ପରିହାସ ଇତ୍ୟାଦି ଆମୋଦ-ପ୍ରମୋଦରେ ଯୋଗ ଦେଉଥିଲେ । ନରେନ୍ଦ୍ରଙ୍କୁ ବାଧ୍ୟ ହୋଇ ବନ୍ଧୁବର୍ଗଙ୍କ ଆନନ୍ଦୋତ୍ସବରେ ଯୋଗ ଦେବାକୁ ହେଉଥିଲା; କାରଣ ସେମାନେ ଏକପ୍ରକାର ଜୋର୍ କରି ତାଙ୍କୁ ନେଇଯାଉଥିଲେ ।

## ପିତୃ-ବିୟୋଗ ଓ ଦାରିଦ୍ର୍ୟ ସହିତ ସଂଗ୍ରାମ

ଇତି ମଧ୍ୟରେ ଦିନେ ନିମନ୍ତ୍ରିତ ହୋଇ ସେ ବରାହନଗରର ଜଣେ ବନ୍ଧୁଙ୍କ ଗୃହକୁ ଯାଇଥିଲେ । ରାତ୍ରିରେ ବନ୍ଧୁମାନଙ୍କ ସହ ସେ ସଙ୍ଗୀତ ଆଲୋଚନାରେ ବ୍ୟସ୍ତ ଥାନ୍ତି, ଏହି ସମୟରେ ହାସ୍ୟ କଳରବ-ମୁଖରିତ କକ୍ଷରେ ଜଣେ ବ୍ୟକ୍ତି ପ୍ରବେଶ କରି ସମ୍ବାଦ ଦେଲେ—ନରେନ୍ଦ୍ରନାଥଙ୍କ ପିତା ସହସା ହୃଦ୍‌ରୋଗରେ ପ୍ରାଣତ୍ୟାଗ କରିଅଛନ୍ତି । ଉଜ୍ଜ୍ୱଳ-ଆଲୋକିତ କକ୍ଷରେ ନରେନ୍ଦ୍ରନାଥଙ୍କୁ ଚାରିଆଡ଼େ ଅନ୍ଧାର ଦିଶିଲା—ଦ୍ରୁତପଦରେ ଯାଇ ଉନ୍ମତ୍ତ ପରି ସେ ନିଜ ଘରେ ଉପସ୍ଥିତ ହୋଇ ଦେଖିଲେ—ତାଙ୍କ ଗୌରବ-ଗର୍ବର ହିମାଚଳସଦୃଶ ପିତାଙ୍କ ମୃତଦେହକୁ ଘେରି ମା ଓ ଭାଇ-ଭଉଣୀମାନେ କ୍ରନ୍ଦନରତ । ନରେନ୍ଦ୍ରଙ୍କ ଦୃଢ଼ ହୃଦୟ ବିଚଳିତ ହୋଇଗଲା, ପିତୃଶୋକରେ ଅଧୀର ହୋଇ ସେ ମଧ୍ୟ କାନ୍ଦିବାକୁ ଲାଗିଲେ ।

ଲବ୍‌ଧପ୍ରତିଷ୍ଠ ଓକିଲ ବିଶ୍ୱନାଥ ଦତ୍ତ ଯଥେଷ୍ଟ ଅର୍ଥ ଉପାର୍ଜ୍ଜନ କରିଥିଲେ ସତ୍ୟ ! କିନ୍ତୁ ଉଦାର ଓ ମୁକ୍ତହସ୍ତ ଥିଲେ ବୋଲି ଭବିଷ୍ୟତ ପାଇଁ କିଛି ସଞ୍ଚୟ କରି ପାରି ନ ଥିଲେ । ଯେଉଁ ଘରର ମାସିକ ଖର୍ଚ୍ଚ ହଜାରେ ଟଙ୍କା—ସେ ସଂସାର ଚଳିବ କିପରି ? ସଦ୍ୟ-ବିଧବା ଜନନୀ ଓ ତାଙ୍କ ସନ୍ତାନ-ସନ୍ତତି-ପରିଜନବର୍ଗଙ୍କ ସହ ତାଙ୍କୁ ଦଶଦିଗ ଅନ୍ଧାର ଦିଶିଲା । ସଂସାର-ସମ୍ପର୍କ ବିଷୟରେ ଉଦାସୀନ ନରେନ୍ଦ୍ରନାଥ ସହସା ଦାରିଦ୍ର୍ୟର କଠୋର ସ୍ପର୍ଶରେ ଚମକି ଉଠିଲେ । ଚିରଦିନ ଆଦର ଯତ୍ନ ଓ ପ୍ରାଚୁର୍ଯ୍ୟ ମଧ୍ୟରେ ଲାଳିତପାଳିତ ଭାଇଭଉଣୀ ମୁଠିଏ ଅନ୍ନ ପାଇଁ ଲାଳାୟିତ ହେବା ଦେଖି ତାଙ୍କ ହୃଦୟ ଫାଟି ଯାଉଥିଲା । ସମ୍ପଦ କାଳରେ ଯେଉଁମାନେ ପରମ ବନ୍ଧୁ ଥିଲେ, ସଂସାରର ଚିରପ୍ରଚଳିତ ପ୍ରଥାନୁସାରେ ସେମାନେ ବିପଦକାଳରେ ଦୂରେଇ ରହିଲେ । ତୀକ୍ଷ୍ଣବୁଦ୍ଧି ନରେନ୍ଦ୍ରନାଥ ସବୁ

କଥା ବୁଝିପାରିଲେ; କିନ୍ତୁ ଆତ୍ମହରା ହେଲେ ନାହିଁ । ସେ ସହିଷ୍ଣୁତା, ଧୈର୍ଯ୍ୟ ଓ ନୀରବତା ସହକାରେ ଦୈନ୍ୟର ପୀଡ଼ା ସହ୍ୟ କରିବାରେ ଲାଗିଲେ; ବନ୍ଧୁବର୍ଗଙ୍କୁ ନିଜ ସାଂସାରିକ ଶୋଚନୀୟ ଅବସ୍ଥା କଥା ଜାଣିବାକୁ ଦେଲେ ନାହିଁ । ଗୋଟିଏ ଦିଗରେ ଆଇନ୍ ପରୀକ୍ଷା ଲାଗି ପ୍ରସ୍ତୁତ ହେଉଥିଲେ; ଅନ୍ୟ ଦିଗରେ କୌଣସି ଗୋଟିଏ ଚାକିରୀ ପାଇବା ଚେଷ୍ଟାରେ ରହିଲେ । ତିନି ଚାରିମାସ ଗତ ହେଲା— ସେ କୌଣସି ସୁବିଧା କରିପାରିଲେ ନାହିଁ । ଅନ୍ନାଭାବ ଯୋଗୁଁ ଦିନେ ଦିନେ ପରିବାରବର୍ଗଙ୍କୁ ଆହାର ଜୁଟୁ ନ ଥିଲା । ଆହାର୍ଯ୍ୟ ଦ୍ରବ୍ୟ ନ ଥିବା କଥା ଗୋପନ ଅନୁସନ୍ଧାନ ଫଳରେ ଅବଗତ ହୋଇ ନରେନ୍ଦ୍ରନାଥ ବାହାରେ ନିମନ୍ତ୍ରଣ ଅଛି ବୋଲି ମା'ଙ୍କୁ କହି ଘରେ ଖାଉ ନ ଥିଲେ; ଏକ ପ୍ରକାର ଉପବାସ ରହି ବା ସାମାନ୍ୟ କିଛି ଖାଇ ସେ ଦିନ କଟାଉଥିଲେ । କ୍ରମାଗତ ଉପବାସ ଯୋଗୁଁ ତାଙ୍କ ଶରୀର ଶୀର୍ଣ୍ଣ ଓ ଦୁର୍ବଳ ହୋଇଗଲା; ଏପରି କି ଦିନେ ଦିନେ ପ୍ରବଳ କ୍ଷୁଧାର ତାଡ଼ନାରେ ସେ ମୂର୍ଚ୍ଛିତ ପରି ପଡ଼ି ରହୁଥିଲେ । କତିପୟ ସହୃଦୟ ବନ୍ଧୁ ଅବଶ୍ୟ ଏହି ବିପଦବେଳେ ତାଙ୍କୁ ଅର୍ଥ ସାହାଯ୍ୟ ପ୍ରଦାନ କରିବାକୁ ଉଦ୍ୟତ ହୋଇଥିଲେ; କିନ୍ତୁ ଆଜନ୍ମ ଆତ୍ମନିର୍ଭରଶୀଳ ନରେନ୍ଦ୍ରନାଥ ବିନୀତ ଭାବରେ ଏହି ସାହାଯ୍ୟ ପ୍ରତ୍ୟାଖାନ କରିଥିଲେ । ଉଦରତାଡ଼ନା ଯୋଗୁଁ ସେ ଭିକ୍ଷା ଗ୍ରହଣ କରିବେ— ଏ'ଚିନ୍ତା ତାଙ୍କ ପକ୍ଷରେ ଅସହନୀୟ ଥିଲା । ଏହି ବନ୍ଧୁମାନେ ନରେନ୍ଦ୍ରନାଥଙ୍କ ସୁଗଭୀର ଆତ୍ମମର୍ଯ୍ୟାଦାଜ୍ଞାନ ବିଷୟରେ ଅବଗତ ଥିଲେ; ତେଣୁ ପ୍ରତ୍ୟକ୍ଷ ଭାବରେ ସାହାଯ୍ୟ କରିବାକୁ ଅସମର୍ଥ ହୋଇ ସେମାନେ ତାଙ୍କୁ ମଝେ ମଝେ ଖାଇବା ଲାଗି ନିମନ୍ତ୍ରଣ କରୁଥିଲେ । ସେ କୌଣସି ଦିନ ବିଶେଷ କାର୍ଯ୍ୟର ଛଳନା କରି ନିମନ୍ତ୍ରଣ ଗ୍ରହଣ କରିବାକୁ ଅସମର୍ଥତା ଜଣାଉଥିଲେ; ଅନ୍ୟ କୌଣସି ଦିନ ପ୍ରଫୁଲ୍ଲତା ଛଳନା କରି ପୂର୍ବପରି ଉତ୍ସାହ ଓ ଆନନ୍ଦର ସହିତ ଆମୋଦ-ପ୍ରମୋଦରେ ଯୋଗଦାନ କରୁଥିଲେ; କିନ୍ତୁ ତାଙ୍କୁ ଭୋଜନ ନିମନ୍ତ୍ରଣ ଦେବା ମାତ୍ରକେ ତାଙ୍କ ହାସ୍ୟ-ପ୍ରଫୁଲ୍ଲ ମୁଖମଣ୍ଡଳ ଗମ୍ଭୀର ହୋଇ ଉଠୁଥିଲା; ତାଙ୍କ ବ୍ୟଥିତ ମାନସପଟରେ ସଂସାରର ଦାରିଦ୍ର୍ୟ ଦୁଃଖଗୁଡ଼ିକ ଗୋଟିଏ ଗୋଟିଏ ଫୁଟି ଉଠୁଥିଲା—ମନେ ପଡୁଥିଲା, ପ୍ରାଣାଧିକ ପ୍ରିୟତମ ଭାଇ-ଭଉଣୀମାନଙ୍କର ଅନଶନକ୍ଳିଷ୍ଟ ମଳିନ ମୁଖଛବିଗୁଡ଼ିକ —ତାଙ୍କୁ ଛାଡ଼ି ସେ କିପରି ସୁସ୍ୱାଦୁ ଖାଦ୍ୟଦ୍ରବ୍ୟ ଗ୍ରହଣ କରିବେ !

ଭାଗ୍ୟଚକ୍ରର ସହସା ବିବର୍ତ୍ତନ ଯୋଗୁଁ ଯେଉଁମାନେ କୈଶୋର ଯୌବନର ସନ୍ଧିସ୍ଥଳରେ ପିତୃହୀନ ହୋଇ କପର୍ଦ୍ଦକଶୂନ୍ୟ ଅବସ୍ଥାରେ ପରିଜନବର୍ଗଙ୍କ ଭରଣ ପୋଷଣ ଦାୟିତ୍ୱ କାନ୍ଧ ଉପରେ ନେଇ ଜୀବନ-ସଂଗ୍ରାମରେ ଅଗ୍ରସର ହୋଇଛନ୍ତି-ସେମାନେ କେବଳ ନରେନ୍ଦ୍ରନାଥଙ୍କର ସେତେବେଳର ଅବସ୍ଥା ସମ୍ୟକ୍ ରୂପେ ହୃଦୟଙ୍ଗମ କରିବାକୁ ସମର୍ଥ ହେବେ । ଭାଗ୍ୟ-ବିପର୍ଯ୍ୟୟ ବେଳେ ବିମୁଖ ପିତୃବନ୍ଧୁଗଣଙ୍କ ଆଚରଣ ଦେଖି ନରେନ୍ଦ୍ର ବିସ୍ମିତ ହେଲେ । ସଂସାରର ଶୋଚନୀୟ କୃତଘ୍ନତାର କଦର୍ଯ୍ୟ ମୂର୍ତ୍ତି ଦେଖି ତାଙ୍କ ଚିତ୍ତ ବିଦ୍ରୋହୀ ହୋଇ ଉଠିଲା । ଆହତ

ଆତ୍ମାଭିମାନକୁ ଅବିଚଳିତ ଧୈର୍ଯ୍ୟ ସହକାରେ ସଂଯତ କରି ବୁଭୁକ୍ଷୁ ଯୁବକ ନଗ୍ନପାଦରେ ଓ ନଗ୍ନମସ୍ତକରେ ପ୍ରଚଣ୍ଡ ମଧ୍ୟାହ୍ନବେଳେ କଲିକତାର ରାଜପଥରେ ଚାକିରି ସନ୍ଧାନରେ ଇତସ୍ତତଃ ପରିଭ୍ରମଣ କରୁଥିଲେ । ସନ୍ଧ୍ୟାପରେ ଅବସନ୍ନ ଦେହରେ ବ୍ୟର୍ଥ ଚେଷ୍ଟାର ଶ୍ରମକ୍ଳାନ୍ତି ନେଇ ଗୃହକୁ ପ୍ରତ୍ୟାବୃତ୍ତ ହେଉଥିଲେ; ଏହିପରି ଭାବରେ ଦିନଗୁଡ଼ିକ ଅତିବାହିତ ହେଲା । ଇତି ମଧ୍ୟରେ ତାଙ୍କ ଦୁଃଖକୁ ପରିପୂର୍ଣ୍ଣ କରିବା ନିମିତ୍ତ ଆଉ ଗୋଟିଏ ନୂତନ ବିପଦ ଉପସ୍ଥିତ ହେଲା — ତାଙ୍କର ଜଣେ ଜ୍ଞାତି ସେମାନଙ୍କୁ ଗୃହଚ୍ୟୁତ କରିବା ଉଦ୍ଦେଶ୍ୟ ରଖି ଗୋଟିଏ ମୋକଦ୍ଦମା ଆରମ୍ଭ କଲେ ।

## ଭଗବାନ କ'ଣ ଦୟାମୟ ?

ଦିନେ ପ୍ରଭାତରେ ନରେନ୍ଦ୍ରନାଥ ଶ୍ରୀଭଗବତ୍ ନାମ ଉଚ୍ଚାରଣ କରି ଶଯ୍ୟାତ୍ୟାଗ କରୁଛନ୍ତି, ଏହି ସମୟରେ ଶୁଣି ପାରିଲେ, ତାଙ୍କ ମା' କହୁଛନ୍ତି — ''ଚୁପ୍ କର ଟୋକା, ପିଲାଦିନରୁ କେବଳ ଭଗବାନ ଭଗବାନ ହେଉଛି ! ଭଗବାନ ତ ସବୁ କରିଦେଲେ !''

ଏହି କେତୋଟି କଥା ନିର୍ମମ ଭାବରେ ତାଙ୍କ ବ୍ୟଥିତ ହୃଦୟରେ ବିଦ୍ଧ ହୋଇ ପ୍ରଚଣ୍ଡ ଅଭିମାନ ଜାଗ୍ରତ କଲା । ସତରେ କ'ଣ ଭଗବାନ ଦରିଦ୍ରର କାତର-କ୍ରନ୍ଦନ ଶୁଣିପାରନ୍ତି ନାହିଁ — ଅଥବା ଶୁଣିବାକୁ ଚାହାନ୍ତି ନାହିଁ ? ସେ କ'ଣ କେବଳ ନିଶ୍ଚଳ ଓ ନିର୍ବିକାର ଭାବରେ ହାତ ବାନ୍ଧି ଏହି ନିଷ୍ଠୁର ସୃଷ୍ଟିର ଦାନବୀ ଲୀଳା ଦେଖୁଛନ୍ତି ? ଯେଉଁ ଭଗବାନ ଇହଲୋକରେ ବୁଭୁକ୍ଷୁକୁ ଖଣ୍ଡେ ରୁଟି ଦେଇ ବଞ୍ଚାଇ ରଖିପାରନ୍ତି ନାହିଁ, ସେ ପରକାଳରେ ଅକ୍ଷୟ ସ୍ୱର୍ଗରେ ଅନନ୍ତ ସୁଖର ଅଧିକାରୀ କରିବେ, ଏହା କ'ଣ ସମ୍ଭବ ? ତେବେ କ'ଣ ଈଶ୍ୱର ବୋଲି କିଛି ନାହିଁ ? ହଁ, ଅଛି । ତେବେ ସେ ମଙ୍ଗଳମୟ ବା ଦୟାମୟ ନୁହଁନ୍ତି, ସେ ନିର୍ବିକାର । ଦୁଃଖୀର କ୍ରନ୍ଦନରେ ତାଙ୍କ ହୃଦୟ ଆର୍ଦ୍ର ହୁଏ ନା — ସେ ହୃଦୟହୀନ !

ବନ୍ଧୁବର୍ଗଙ୍କ ଆଗରେ ନରେନ୍ଦ୍ର ବେଳେ ବେଳେ ନିଜ ଈଶ୍ୱର ସମ୍ବନ୍ଧୀୟ ଅଭିନବ ଧାରଣା କଥା ପ୍ରକାଶ କରିପକାଉଥିଲେ । କିପରି ମର୍ମନ୍ତୁଦ ଦୁଃଖର ସହିତ ସେ ଈଶ୍ୱରଙ୍କ ଚିରପ୍ରତିଷ୍ଠିତ ପ୍ରଭୁତ୍ୱକୁ ଦୁଃସହ ଅଭିମାନ ସହକାରେ ପ୍ରତ୍ୟାଖ୍ୟାନ କରୁଥିଲେ, 'ତାହା ସାଧାରଣ ମାନବ କିପରି ବୁଝିବ ?' ଅନେକେ ସ୍ଥିର କଲେ ଯେ ନରେନ୍ଦ୍ରନାଥ ନାସ୍ତିକ ହୋଇଗଲେଣି । ପୁରୁଷକାର ସହାୟତାରେ ଈଶ୍ୱରଙ୍କ ବିରୋଧରେ ଦଣ୍ଡାୟମାନ ହେବା ପଛରେ ଯେଉଁ ଗର୍ବଦୃପ୍ତ ଆତ୍ମଶକ୍ତିର ପ୍ରେରଣା, ଯେଉଁ ମହିମାସମୁଜ୍ଜ୍ୱଳ ତ୍ୟାଗର ବିକାଶ ଦୃଢ଼ବିଶ୍ୱାସୀ ଭକ୍ତର ଅସୀମ ଅନୁରାଗ ଥାଏ, ତାହା ସାଧାରଣ ମାନବର ଦୃଷ୍ଟିରେ ପଡ଼ିପାରେ ନାହିଁ ।

## ମିଥ୍ୟା ନିନ୍ଦାରେ ନରେନ୍ଦ୍ରଙ୍କ ଅଭିମାନ ଓ ଠାକୁରଙ୍କ ବିଶ୍ୱାସ

ସେ କେବଳ ବୁଝିଥିଲେ—ଶ୍ରୀଶ୍ରୀରାମକୃଷ୍ଣ ପରମହଂସ । ବିଷୟକର୍ମରେ ଜଡ଼ିତ ରହି ନରେନ୍ଦ୍ରନାଥ ଦକ୍ଷିଣେଶ୍ୱର ଯାଇପାରି ନ ଥିଲେ; ଠାକୁର ତାଙ୍କୁ ଦେଖିବା ଲାଗି ବ୍ୟାକୁଳ ହୋଇ ଅନ୍ୟାନ୍ୟ ଭକ୍ତବୃନ୍ଦଙ୍କୁ ନରେନ୍ଦ୍ରଙ୍କୁ ଦକ୍ଷିଣେଶ୍ୱର ଅଣାଇବା ନିମିତ୍ତ ଅନୁରୋଧ କରିଥିଲେ । କଲିକତାରେ ଥିବା ଭକ୍ତବୃନ୍ଦ ଶୁଣିଥିଲେ ଯେ, ଅସତ୍ ସଙ୍ଗରେ ମିଶି ନରେନ୍ଦ୍ରନାଥଙ୍କ ଚରିତ୍ର ଖରାପ ହୋଇଯାଇଛି; ପୂର୍ବର ଧର୍ମଭାବ ନାହିଁ । ଏହି ସମସ୍ତ ମିଥ୍ୟା ନିନ୍ଦାବାଦ ଶୁଣିବାପରେ ସନ୍ଦିହାନ ହୋଇ ଭକ୍ତମାନଙ୍କ ମଧ୍ୟରୁ ଅନେକେ ନରେନ୍ଦ୍ରନାଥଙ୍କୁ ପରୀକ୍ଷା କରିବାକୁ ଆସିଲେ । ସେମାନଙ୍କ ସଙ୍ଗେ ବାକ୍ୟାଳାପ କରୁ କରୁ ସନ୍ଦେହର ସୂଚନା ପାଇ ନରେନ୍ଦ୍ରନାଥଙ୍କ ରୁଦ୍ର-ଅଭିମାନ ଜାଗି ଉଠିଲା । କି ଆଶ୍ଚର୍ଯ୍ୟ ! ବାହାର ଲୋକେ ଯାହା ରଟାନ୍ତି ଏମାନଙ୍କ ପରି ଲୋକେ ମଧ୍ୟ ତାହା ବିଶ୍ୱାସ କରନ୍ତି ! ହୁଏତ ଠାକୁର ଏ' ପ୍ରକାର ମିଥ୍ୟା ଦୁର୍ନାମକୁ ବିଶ୍ୱାସ କରି ପରୀକ୍ଷା କରିବା ନିମିତ୍ତ ଏମାନଙ୍କୁ ପଠାଇଛନ୍ତି—ମନେ ମନେ ଏହି ପ୍ରକାର ଚିନ୍ତା ଉଦୟ ହେବା ମାତ୍ରକେ ଭକ୍ତର ହୃଦୟରେ ସୁତୀବ୍ର ଅଭିମାନ ଜାଗିଉଠିଲା । ତାଙ୍କର ତିକ୍ତ ଉତ୍ତରଗୁଡ଼ିକ ଶ୍ରବଣ କରି ସେମାନେ ଠାକୁରଙ୍କ ପାଖକୁ ଯାଇ ଜଣାଇଲେ, ନରେନ୍ଦ୍ରର ଯେ ଅଧଃପତନ ହୋଇଛି, ସେ ବିଷୟରେ କୌଣସି ସନ୍ଦେହ ନାହିଁ । ଠାକୁର ପ୍ରାଣାଧିକ ପ୍ରିୟ ନରେନ୍ଦ୍ରଙ୍କ ସଂସାରିକ ବିପଦ ଇତ୍ୟାଦି କଥା ଇତିପୂର୍ବରୁ ଜାଣି ଯଥେଷ୍ଟ ମନକଷ୍ଟ ପାଇଥିଲେ; ଏହିକ୍ଷଣି ନରେନ୍ଦ୍ରନାଥଙ୍କ ପବିତ୍ର ସ୍ୱଭାବ ଓ ଚରିତ୍ର ଉପରେ ଏ ପ୍ରକାର କଳଙ୍କ ଆରୋପିତ ହେଉଛି ଶୁଣି ଭକ୍ତବୃନ୍ଦଙ୍କୁ କହିଲେ, ''ଶଳାଏ, ଚୁପ୍ କର; ମା କହିଛନ୍ତି, ସେ କେବେ ହେଁ ସେପରି ହୋଇପାରେ ନା; ଆଉ କେବେ ଏପରି କଥା କହିଲେ ମୁଁ ତୁମ୍ଭମାନଙ୍କ ମୁହଁ ଚାହିଁବି ନାହିଁ ।''

ନରେନ୍ଦ୍ରଙ୍କ ପ୍ରତି ଠାକୁରଙ୍କର କେତେ ଶ୍ରଦ୍ଧା ମିଶ୍ରିତ ବିଶ୍ୱାସ ଥିଲା, ତାହାର ଇୟତ୍ତା କରିବା ଦୁଃସାଧ୍ୟ । ଦିନେ ପ୍ରସିଦ୍ଧ ଡାକ୍ତରବାବୁ ମହେନ୍ଦ୍ରଲାଲ ସରକାର ନରେନ୍ଦ୍ରଙ୍କ ପ୍ରଶଂସା କରି ଠାକୁରଙ୍କୁ କହିଲେ, ''ଏଭଳି ବୁଦ୍ଧିମାନ ପିଲା ମୁଁ ଖୁବ୍ କମ୍ ଦେଖିଛି । ଏ' ବୟସରେ ଏତେ ପାଣ୍ଡିତ୍ୟ, ପୁଣି କେତେ ନମ୍ରତା ! ଏଭଳି ପିଲାଏ ଧର୍ମ ପାଇଁ ଆଗେଇ ଗଲେ ଦେଶର ଅନେକ କଲ୍ୟାଣ ହେବ ।'' ନରେନ୍ଦ୍ରନାଥଙ୍କ ପ୍ରଶଂସା ଶୁଣି ଠାକୁର ବିହ୍ୱଳ ହୃଦୟରେ ଅଜ୍ଞାତସାର ଭାବରେ କହି ପକେଇଲେ, ''ତାହା ହେବ ନାହିଁ କାହିଁକି ? ତାହାରି ପାଇଁ ତ ଏଥର ମୁଁ (ନିଜ ଦେହଆଡ଼କୁ ଦେଖାଇ) ଆସିଛି ।''

## ସଂସାରତ୍ୟାଗର ସଂକଳ୍ପ

ଦୁର୍ଦ୍ଦମନୀୟ ଅଭିମାନ ଯୋଗୁଁ ନରେନ୍ଦ୍ରନାଥ ଦକ୍ଷିଣେଶ୍ୱର ନ ଗଲେ ମଧ୍ୟ ଚିରକାଳ ଦୃଢ଼ହୃଦୟ ବୋଲି ତାଙ୍କର ଯେଉଁ ଅହଙ୍କାର ଥିଲା, ତାହା ଶେଷରେ

ଚୂର୍ଣ୍ଣ ହୋଇଗଲା । ସେ ପ୍ରାଣପଣେ ଚେଷ୍ଟା କରି ସୁଦ୍ଧା ହୃଦୟରୁ ଶ୍ରୀରାମକୃଷ୍ଣଙ୍କ ସ୍ମୃତି ପୋଛିଦେଇ ପାରିଲେ ନାହିଁ । ଏହି ମହାପୁରୁଷଙ୍କ କୃପାରେ ସେ ଯେଉଁ ଅଦ୍ଭୁତ ଆଧ୍ୟାତ୍ମିକ ଅନୁଭୂତିସମୂହ ଲାଭ କରିଥିଲେ, ସେଗୁଡ଼ିକ ପୁନଃ ପୁନଃ ତାଙ୍କ ମାନସପଟରେ ଉଦିତ ହୋଇ ତାଙ୍କର ସ୍ୱକଳ୍ପିତ ନାସ୍ତିକତା ଦୂର କରିଦେଲା । ସେ ବିସ୍ମୟବିମୂଢ଼ ଚିତ୍ତରେ ଭାବିବାକୁ ଲାଗିଲେ—"ଏ ମୁଁ କ'ଣ କରୁଛି ?"

ଅର୍ଥୋପାର୍ଜନ ଓ ପରିବାର-ପ୍ରତିପାଳନ କରି କାୟକ୍ଲେଶରେ କୌଣସିମତେ ଗତାନୁଗତିକ ଭାବରେ ଜୀବନଯାପନ କରିବା ନିମିତ୍ତ ତାଙ୍କର ଜନ୍ମ ହୋଇ ନାହିଁ । ତାଙ୍କର ଜୀବନର ଉଦ୍ଦେଶ୍ୟ ମହାନ୍, ତାଙ୍କ ଲକ୍ଷ୍ୟ ଯେ ଅଖଣ୍ଡ ସଚ୍ଚିଦାନନ୍ଦଲାଭ । ଦିନ ସ୍ଥିର କରି ନରେନ୍ଦ୍ରନାଥ ସଂସାର ତ୍ୟାଗ କରିବା ନିମିତ୍ତ ଗୋପନରେ ପ୍ରସ୍ତୁତ ହେବାରେ ଲାଗିଲେ ।

ସେଦିନ ଠାକୁର କଲିକତାସ୍ଥ କୌଣସି ଭକ୍ତଙ୍କ ଗୃହରେ ଶୁଭ-ପଦାର୍ପଣ କରିଥିଲେ, ନରେନ୍ଦ୍ରନାଥ ସମ୍ବାଦ ପାଇ ସେଠାରେ ଉପସ୍ଥିତ ହେଲେ । ଇଚ୍ଛା ଥିଲା, ଗୃହତ୍ୟାଗ କରିବା ପୂର୍ବରୁ ଶ୍ରୀଗୁରୁଚରଣ ବନ୍ଦନା କରି ସଂସାରରୁ ଚିର ବିଦାୟ ଗ୍ରହଣ କରିବେ; କିନ୍ତୁ ତାହା ହେଲା ନାହିଁ । ଠାକୁରଙ୍କ ବ୍ୟାକୁଳ ଅନୁରୋଧ ଏଡ଼ାଇ ନ ପାରି ତାଙ୍କୁ ଦକ୍ଷିଣେଶ୍ୱର ଯିବାକୁ ହେଲା ।

ଠାକୁର ଭାବାବିଷ୍ଟ ଥିଲେ । ନିର୍ନିମେଷ ନୟନରେ ନରେନ୍ଦ୍ରଙ୍କୁ ଚାହିଁଛନ୍ତି— ବିଶାଳ ନୟନଦ୍ୱୟରୁ ଅର୍ଦ୍ଧବିଗଳିତ ଅଶ୍ରୁଧାରା । ବିହ୍ୱଳ ନରେନ୍ଦ୍ରନାଥଙ୍କ ହୃଦୟରେ ନିହିତ ବ୍ୟଥା ଦ୍ରବୀଭୂତ ହୋଇ ଲୋତକ ଆକାରରେ ଚକ୍ଷୁପଥରେ ନିର୍ଗତ ହେଲା । ତାଙ୍କ ବିଦ୍ରୋହୀ ମନ ଉପରେ ଏ କି ରହସ୍ୟମୟ, ପ୍ରାଣମୟ ପ୍ରେରଣା ! ଉଭୟେ ନିର୍ବାକ୍ । ଉପସ୍ଥିତ ଅନ୍ୟାନ୍ୟ ଭକ୍ତବୃନ୍ଦ ବିସ୍ମୟ-ସ୍ତବ୍ଧ । ବହୁକ୍ଷଣ ପରେ ଠାକୁର ଉଠି ଦଣ୍ଡାୟମାନ ହେଲେ; ସକରୁଣ ନେତ୍ରରେ ନରେନ୍ଦ୍ରନାଥଙ୍କୁ ଚାହିଁ ସ୍ନେହସ୍ନିଗ୍ଧ ସ୍ୱରରେ କହିଲେ, "ବାବା, କାମିନୀ-କାଞ୍ଚନ ତ୍ୟାଗ ନ କଲେ କିଛି ହେବ ନାହିଁ ।" ଠାକୁରଙ୍କର ଭୟ, କାଳେ ନରେନ୍ଦ୍ରନାଥ ସଂସାରରେ ଜଡ଼ିତ ହୋଇଯିବେ । ଉଭୟେ ନିର୍ବାକ୍, ଅଥଚ ନୟନରେ ଅଶ୍ରୁ—ଏହି ଅଦ୍ଭୁତ ବ୍ୟାପାରର ରହସ୍ୟ ଜାଣିବା ନିମିତ୍ତ ଜନୈକ ଭକ୍ତ କୌତୂହଳବଶତଃ ପ୍ରଶ୍ନ କରିବାରୁ ଠାକୁର ଅଳ୍ପ ହସି ଉତ୍ତର ଦେଲେ, "ଆମ୍ଭମାନଙ୍କର ଗୋଟିଏ ହୋଇଗଲା ।" ରାତ୍ରିରେ ନରେନ୍ଦ୍ରଙ୍କୁ ନିର୍ଜନ ସ୍ଥାନକୁ ନେଇ ଠାକୁର ନାନାପ୍ରକାର ସାନ୍ତ୍ୱନା ଓ ଉପଦେଶ ଦେଇ କହିଲେ ଯେ, ଯେତେଦିନ ତାଙ୍କର ଶରୀର ଅଛି, ସେତେଦିନ ସଂସାରରେ ରହିବାକୁ ହେବ; କିନ୍ତୁ ସେ ଯେ ବିଶେଷ କାର୍ଯ୍ୟସାଧନ ନିମିତ୍ତ ଜନ୍ମଗ୍ରହଣ କରିଛନ୍ତି, ତାହା ପୁନଃ ପୁନଃ କହିବାକୁ ଲଗିଲେ । ପରଦିନ ପ୍ରଭାତରେ ଯେତେବେଳେ ନରେନ୍ଦ୍ରନାଥ ଦକ୍ଷିଣେଶ୍ୱରରୁ ଘରକୁ ଫେରିଆସିଲେ, ଗୋଟିଏ ଅଭୁତପୂର୍ବ ଆନନ୍ଦର ସ୍ମୃତି —ଆଶାର ବାଣୀ ଯେପରି କି ତାଙ୍କ ହୃଦୟର ପର୍ବତୋପମ ଭାରକୁ କାଢ଼ି

ନେଇଛି । ଏବେ ଆଉ ଠାକୁର ତାଙ୍କ ଆଖିରେ ରହସ୍ୟମୟ ଉନ୍ମତ୍ତ ନୁହଁନ୍ତି; ତାଙ୍କ ଜୀବନର ଚରମ ଆଦର୍ଶ, ଗୁରୁ, ପିତା—ସର୍ବସ୍ୱ ।

## ମୋକଦ୍ଦମାରେ ଜୟଲାଭ

ନାବାଳକ ଓ ବିଧବାମାନଙ୍କ ସମ୍ପତ୍ତି-ଗ୍ରାସ କରିବା ଚେଷ୍ଟା ଆମ ଦେଶରେ ପ୍ରାୟ ଘଟିଥାଏ । ଜ୍ଞାତିମାନଙ୍କ ଷଡ଼ଯନ୍ତ୍ରମୂଳକ ମୋକଦ୍ଦମା ନିମିତ୍ତ ନରେନ୍ଦ୍ରନାଥ ପ୍ରସ୍ତୁତ ହେଲେ । ସେମାନେ ଘରକୁ ବାଣ୍ଟିନେବା ଲାଗି ଅଦାଲତର ସାହାଯ୍ୟ ପ୍ରାର୍ଥନା କରିଥିଲେ । ଘରର ଭଲ ଅଂଶଟିକୁ ଯେପରି ସେମାନେ ପାଆନ୍ତି, ଏହା ଥିଲା ସେମାନଙ୍କର ଉଦ୍ଦେଶ୍ୟ । ଜନନୀ ଭୁବନେଶ୍ୱରୀ ଦିଗହରା ହେଲେ । ବିପଦ ପରେ ବିପଦର ଆଘାତରେ ମର୍ମାହତ ସିଂହପରି ନରେନ୍ଦ୍ରନାଥ ଶେଷ ଚେଷ୍ଟା କରି ପ୍ରତିପକ୍ଷକୁ ଆକ୍ରମଣ କରିବା ଲାଗି ପ୍ରସ୍ତୁତ ହେଲେ । ତାଙ୍କର ପଣ ଥିଲା ଯେ ସେ କେବେହେଲେ ଅନ୍ୟାୟ ଓ ଅସତ୍ ନିକଟରେ କୌଣସିମତେ ମୁଣ୍ଡ ନୁଆଁଇବେ ନାହିଁ । ଅଦାଲତରେ ମୋକଦ୍ଦମା ଚାଲିଲା । ନରେନ୍ଦ୍ରଙ୍କ ପିତୃବନ୍ଧୁ ବିଖ୍ୟାତ ବାରିଷ୍ଟର ଉମେଶ ଚନ୍ଦ୍ର ବନ୍ଦୋପାଧ୍ୟାୟ (W.C. Banarjee) ସ୍ୱତଃପ୍ରବୃତ୍ତ ହୋଇ ମୋକଦ୍ଦମା ଚଳାଇବାର ଭାର ଗ୍ରହଣ କଲେ । ଏହି ମାମଲା ଉପଲକ୍ଷେ କେତେଗୋଟି ଘଟଣାରେ ନରେନ୍ଦ୍ରଙ୍କ ଉପସ୍ଥିତ ବୁଦ୍ଧି, ଚରିତ୍ରର ଦୃଢ଼ତା ଇତ୍ୟାଦିର ପରିଚୟ ମିଳିଥିଲା । ପ୍ରତିପକ୍ଷର ଓକିଲ ନରେନ୍ଦ୍ରନାଥଙ୍କୁ ଜେରା କରିବା ସମୟରେ ନରେନ୍ଦ୍ରନାଥଙ୍କ ନିର୍ଭୀକ, ସ୍ପଷ୍ଟ ଧୀର ଗମ୍ଭୀର ଉତ୍ତର ଶୁଣି ଓ ସେ ଆଇନ୍ ପଢ଼ିଛନ୍ତି ଜାଣି ଜଜ୍ ସାହେବ ଆନନ୍ଦରେ କହିଲେ, ''ଯୁବକ, ଦିନେ ତୁମେ ଜଣେ ଭଲ ଓକିଲ ହବ ।'' ଜଜ୍ ସାହେବ ସମସ୍ତ ଅବସ୍ଥା ବୁଝି ନରେନ୍ଦ୍ରଙ୍କ ସପକ୍ଷରେ ମୋକଦ୍ଦମାର ରାୟ ଦେଲେ । ଜୟଲାଭ ସମ୍ବାଦ ପାଇବା ମାତ୍ରକେ ନରେନ୍ଦ୍ରନାଥ ଆନନ୍ଦରେ ଅଦାଲତରୁ ଜନନୀଙ୍କ ନିକଟକୁ ଯାଉଛନ୍ତି, ଏହି ସମୟରେ ବିପକ୍ଷ ଦଳର ଆଟର୍ଣ୍ଣୀ ତାଙ୍କ ହାତ ଧରି ଅଟକାଇଲେ ଏବଂ କହିଲେ, ''ଜଜ୍ ସାହେବଙ୍କ ସହିତ ମୁଁ ମଧ୍ୟ ଏକମତ । ଆଇନ୍ ହିଁ ଆପଣଙ୍କ ପାଇଁ ଉପଯୁକ୍ତ କ୍ଷେତ୍ର, ମୁଁ ଆପଣଙ୍କ ଉଜ୍ଜ୍ୱଳ ଭବିଷ୍ୟତ କାମନା କରୁଛି ।''

ନରେନ୍ଦ୍ର ଅଣନିଃଶ୍ୱାସୀ ହୋଇ ଦଉଡ଼ିଆସି ଜନନୀଙ୍କୁ କହିଲେ, ''ମା, ଘର ରହିଗଲା ।'' ଭୁବନେଶ୍ୱରୀ ଆନନ୍ଦରେ ଆତ୍ମହରା ହୋଇ ବିଜୟୀ ସନ୍ତାନକୁ ଛାତିରେ ଚାପି ଧରିଲେ । ଦୁଃଖ ମଧ୍ୟରେ ଭଗବାନ ଏପରି ଅତି କଠିନ ଆନନ୍ଦର ଦୃଶ୍ୟ ଦେଖାନ୍ତି—ଏହା ହିଁ ସଂସାର !

## ଠାକୁରଙ୍କ ଆଦେଶରେ ଜଗନ୍ମାତାଙ୍କ ନିକଟରେ ପ୍ରାର୍ଥନା

ଦିନପରେ ଦିନ କଟିଗଲା, ସାଂସାରିକ ଦୃଷ୍ଟିରୁ ବିଶେଷ କୌଣସି ସୁବିଧା ହେଲା ନାହିଁ । ଦିନେ ନରେନ୍ଦ୍ରନାଥ ଭାବିଲେ, ହୁଏତ ଠାକୁରଙ୍କ କୃପାରୁ କୌଣସି ଗୋଟିଏ ସୁବିଧା ହୋଇପାରେ । ମନରେ ଏହା ଉଦୟ ହେବା ମାତ୍ରକେ ସେ

ଦକ୍ଷିଣେଶ୍ୱରରେ ଉପସ୍ଥିତ ହେଲେ । ନୟନମଣି ନରେନ୍ଦ୍ରଙ୍କୁ ପାଇ ଠାକୁର ଆନନ୍ଦରେ ବିହ୍ୱଳ; କିନ୍ତୁ ନରେନ୍ଦ୍ରନାଥଙ୍କ ପ୍ରାର୍ଥନା ଶୁଣି ତାଙ୍କ ମୁଖମଣ୍ଡଳ ଗମ୍ଭୀର ହୋଇଗଲା । ଅଗାଧ ବିଶ୍ୱାସ ସହକାରେ ସେ ଠାକୁରଙ୍କୁ କହିଲେ, ''ମହାଶୟ ! ଯେଉଁଥିରେ ମୋର ମା ଓ ଭାଇଭଉଣୀ ଦୁଇମୁଠା ଖାଇବାକୁ ପାଇବେ, ସେପରି କିଛି ସୁବିଧା କରିବା ନିମିତ୍ତ ଆପଣଙ୍କୁ ମା'ଙ୍କ ନିକଟରେ ଅନୁରୋଧ କରିବାକୁ ହେବ ।' ଠାକୁର କହିଲେ, ''ହଇରେ, ମୁଁ କୌଣସି ଦିନ ମା'ଙ୍କୁ କିଛି ମାଗି ନାହିଁ; ତଥାପି ତୋର ଯେଉଁଥିରେ ଟିକିଏ ସୁବିଧା ହେବ, ସେଥିପାଇଁ ଅନୁରୋଧ କରିଥିଲି; କିନ୍ତୁ ତୁ ତ ମା'ଙ୍କୁ ମାନୁନୁ, ତେଣୁ ମା' ତୋ କଥାରେ କାନ ଦେଉନାହାନ୍ତି ।''

କଠୋର ନିରାକାରବାଦୀ ନରେନ୍ଦ୍ରଙ୍କର ସାକାରରେ ବିନ୍ଦୁମାତ୍ର ନିଷ୍ଠା ନ ଥିଲା । ମୂର୍ତ୍ତି-ପୂଜା-ବିରୋଧୀ ନରେନ୍ଦ୍ରନାଥ କ'ଣ କରିବେ ?—ଅବିଶ୍ୱାସ ? ସେ ଦିନ ଚାଲିଯାଇଛି । ବିଶ୍ୱାସ ! ବିନା ପ୍ରମାଣରେ ? କିପରି ସମ୍ଭବ ହେବ ? ନରେନ୍ଦ୍ରନାଥ ମୁଣ୍ଡ ନୁଆଇଁ ବସି ରହିଲେ ।

କିନ୍ତୁ ଠାକୁର ତାଙ୍କ ପାଇଁ କ'ଣ କରି ନ ପାରନ୍ତି ? ଯେ ତାଙ୍କ ଦୁଃଖକଷ୍ଟ କଥା ଶୁଣି ସ୍ୱୟଂ ଭିକ୍ଷା କରିବା ଲାଗି ଯିବେ ବୋଲି ସଙ୍କଳ୍ପ କରିଥିଲେ, ସେ କ'ଣ ସେହି ନରେନ୍ଦ୍ରଙ୍କ ଅନୁରୋଧକୁ ଉପେକ୍ଷା କରିପାରିବେ ? କିନ୍ତୁ ଲୀଳାମୟ ଠାକୁର ମଧ ଛାଡ଼ିବାର ପାତ୍ର ନୁହଁନ୍ତି; ବାରମ୍ବାର ଶିଷ୍ୟକୁ ପରୀକ୍ଷା କରିବା ନିମିତ୍ତ କହିବାକୁ ଲାଗିଲେ, ମା'ଙ୍କ କୃପା ଛଡ଼ା କିଛି ହେବ ନାହିଁ । ନରେନ୍ଦ୍ରଙ୍କୁ ନିରୁତ୍ତର ଦେଖି ଠାକୁର କହିଲେ, ''ଆଚ୍ଛା, ଆଜି ମଙ୍ଗଳବାର । ମୁଁ କହୁଛି, ଆଜି ରାତ୍ରିରେ କାଳୀଘରକୁ ଯାଇ ମା'ଙ୍କୁ ପ୍ରଣାମ କରି ତୁ ଯାହା ମାଗିବୁ, ମା' ତୋତେ ଠିକ୍ ସେଇଆ ଦେବେ ।''

ବିଶ୍ୱାସ ଥାଉ ବା ନ ଥାଉ, ଠାକୁରଙ୍କ ପ୍ରସ୍ତରମୟୀ ଜଗନ୍ମାତାଟି କିଭଳି ପଦାର୍ଥ, ତାଙ୍କୁ ପରୀକ୍ଷା କରି ଦେଖିବାକୁ ହେବ ।

ଦିନାନ୍ତ ବେଳର ରକ୍ତ ରଶ୍ମିମାଳା ଇତସ୍ତତଃ ଲଘୁ ମେଘଖଣ୍ଡଗୁଡ଼ିକ ନିକଟରେ କନକରେଖା ଅଙ୍କିତ କରି ଧୀରେ ଧୀରେ ମିଳାଇଗଲେ । ଦେବାଳୟରେ ସନ୍ଧ୍ୟାବେଳର ଆରତିବାଦ୍ୟ ମୃଦୁଗମ୍ଭୀର ରୋଳରେ ଉଠି କର୍ମଶ୍ରାନ୍ତ ହୃଦୟରେ ଅପୂର୍ବ ପ୍ରଶାନ୍ତି ବର୍ଷଣ କରିବାକୁ ଲାଗିଲା । ଠାକୁର ସେତେବେଳେ ବାରଣ୍ଡାରେ ପଦଚାରଣ କରି ମଧୁର କଣ୍ଠରେ ଭଗବତ୍-ନାମ କୀର୍ତ୍ତନ କରୁଥିଲେ । ଦୀର୍ଘ ସମୁନ୍ନତ ଦେହ, ଆଜାନୁଲମ୍ବିତ ବାହୁଯୁଗଳ, ପ୍ରଶସ୍ତ ଲଲାଟରେ ମହିମାର ବିଚ୍ଛୁରିତ ଦ୍ୟୁତି—ନେତ୍ରରେ ଶାନ୍ତୋଜ୍ଜ୍ୱଳ କରୁଣା—ନରେନ୍ଦ୍ରନାଥଙ୍କ ମୁଗ୍ଧଦୃଷ୍ଟି ନିଷ୍ପଲକ ହେଲା । ସେ କ'ଣ ଭାବିଥିଲେ, ଈଶ୍ୱରଙ୍କ ଚିରଜାଗ୍ରତ ମହିମାର ଘନୀଭୂତ ମୂର୍ତ୍ତିସ୍ୱରୂପ—ଏହି ଅଦ୍ଭୁତ ଦେବ-ମାନବ କ'ଣ ତାଙ୍କ ଦୁର୍ବଳ କଳ୍ପନାଠାରୁ ଊର୍ଦ୍ଧ୍ୱରେ—ଅତି ଊର୍ଦ୍ଧ୍ୱରେ—ଯେଉଁଠାକୁ ତାଙ୍କ ବିଚାର-ବୁଦ୍ଧିର ହାସ୍ୟକର ମୂଢ଼ତା ଅଗ୍ରସର ହୋଇ ପାରେନା ?

ରାତି ଏକପ୍ରହର ଗତ ହେଲା — ନରେନ୍ଦ୍ରନାଥ ସଂଶୟଦ୍ୱନ୍ଦ୍ୱ-ଆଲୋଡ଼ିତ ଚିତ୍ତରେ 'କାଳୀଘର' ଆଡ଼କୁ ଚାଲିଲେ । ଆଜି ଠାକୁରଙ୍କ ଦୟାରୁ ସଂସାରର ଦୁଃଖ-ଦାରିଦ୍ର୍ୟର ଅବସାନ ହେବ — ଉତ୍କଣ୍ଠିତ ଉଲ୍ଲାସରେ ତାଙ୍କ ବକ୍ଷ ଭରିଗଲା ।

ସେ ଦେଖିଲେ — ଜଗଦମ୍ବାଙ୍କ ଭୁବନମୋହିନୀ ରୂପରେ ଶ୍ରୀମନ୍ଦିର ଆଲୋକିତ । ପ୍ରସ୍ତର-ମୂର୍ତ୍ତି ନୁହେଁ — 'ମୃଣ୍ମୟ ଆଧାରରେ ଚିନ୍ମୟୀ ପ୍ରତିମା' ଅଭୟକର ବିସ୍ତାର କରି ଅସୀମ ଅନୁକମ୍ପାପୂର୍ଣ୍ଣ ସ୍ନେହ-ସକରୁଣ ହାସ୍ୟ କରୁଛନ୍ତି । ତା'ପରେ କ'ଣ ଦେଖିଲେ, କ'ଣ ବୁଝିଲେ, ତାହା ସେ ଜାଣନ୍ତି, ଆଉ ଜାଣନ୍ତି, ତାଙ୍କ ଅଦ୍ଭୁତ ଗୁରୁ ପରମହଂସଦେବ । ପ୍ରାର୍ଥନା ବିଷୟ ନରେନ୍ଦ୍ର ଏକାବେଳକେ ଭୁଲିଗଲେ । ଭକ୍ତି-ବିହ୍ୱଳ ଚିତ୍ତରେ ପ୍ରାର୍ଥନା କରି ବସିଲେ — "ମା, ବିବେକ, ବୈରାଗ୍ୟ, ଜ୍ଞାନ, ଭକ୍ତି ଦେ । ଯେପରି କି ତୋ କୃପାରେ ସର୍ବଦା ତୋତେ ଦେଖିପାରିବି !"

ନରେନ୍ଦ୍ର ଫେରି ଆସିଲେ, ଠାକୁରଙ୍କଦ୍ୱାରା ଜିଜ୍ଞାସିତ ହୋଇ ତାଙ୍କ ପୂର୍ବ ସଂକଳ୍ପ ସ୍ମୃତିପଟରେ ଉଦିତ ହେଲା । ସତେ ତ, ସେ କଲେ କ'ଣ ? ଠାକୁରଙ୍କ ଆଦେଶରେ ସେ ପୁଣି ମନ୍ଦିରକୁ ଗଲେ; ଦୁଇ ତିନି ଥର ଚେଷ୍ଟା କରି ମଧ୍ୟ ସେ ମା'ଙ୍କ ଚରଣ ତଳେ ମୁହଁ ଫିଟାଇ ସାଂସାରିକ ସ୍ୱାଚ୍ଛନ୍ଦ୍ୟ କାମନା କରିପାରିଲେ ନାହିଁ । ତାଙ୍କ ଆଜନ୍ମ ବୈରାଗ୍ୟପ୍ରବଣ ମନ ସମୟେ ସମୟେ ଜାଗତିକ ଦୁଃଖ କଷ୍ଟ ଯୋଗୁଁ ବିଚଳିତ ହେଲେ ହେଁ ପାର୍ଥିବ ଭୋଗସୁଖ-କାମନାରେ କ୍ଷୁବ୍ଧ ହୁଏ ନାହିଁ; ସେ କିପରି ଅନ୍ନ-ବସ୍ତ୍ର ଲାଗି ପ୍ରାର୍ଥନା କରିବେ ? କଳ୍ପତରୁତଳକୁ ଯାଇ ନିପଟ ମୂର୍ଖ ବ୍ୟତୀତ ଆଉ କିଏ ଅମୃତଫଳ ଛାଡ଼ି ଲାଉ-କଖାରୁ ମାଗେ ?

ଅବଶେଷରେ ଠାକୁର ନରେନ୍ଦ୍ରନାଥଙ୍କ ପ୍ରବଳ ଅନୁରୋଧରେ ତାଙ୍କୁ ଆଶ୍ୱାସ ଦେଇ କହିଲେ, "ତୁ ଯେତେବେଳେ ମାଗିପାରିଲୁ ନାହିଁ, ତୋ ଅଦୃଷ୍ଟରେ ସଂସାର-ସୁଖ ନାହିଁ; ତେବେ ତୋ ପରିବାର ଲୋକଙ୍କର କେବେ ହେଲେ ମୋଟା ଭାତ ଓ ଲୁଗାର ଅଭାବ ହେବ ନାହିଁ ।" ନରେନ୍ଦ୍ର ଆଶ୍ୱସ୍ତ ହେଲେ — ତାଙ୍କ ନିଜର 'ସଂସାର-ସୁଖ ଲୋଡ଼ା ନାହିଁ ।'

ସେହିଦିନଠାରୁ ନରେନ୍ଦ୍ରଙ୍କ ଜୀବନରେ ଗୋଟିଏ ନୂତନ ଅଧ୍ୟାୟ ଆରମ୍ଭ ହେଲା । ଏ ଅଧ୍ୟାୟ ରହସ୍ୟ-ଜଟିଳ — ସାଧାରଣ ମାନବବୁଦ୍ଧିର ଧାରଣାତୀତ ! ଲୋକ-ଲୋଚନର ଅନ୍ତରାଳରେ କି ଅଦୃଶ୍ୟ କୌଶଳରେ ଯେ ଠାକୁର ସ୍ୱାମୀ ବିବେକାନନ୍ଦଙ୍କୁ ଗଢ଼ିଥିଲେ, ତାହା ବର୍ଣ୍ଣନା କରିବା ସହଜ ନୁହେଁ । ଆଶ୍ଚର୍ଯ୍ୟ ତ୍ୟାଗୀକୁଳ-ଚୂଡ଼ାମଣି ସାଧକ — ତତୋଽଧିକ ଆଶ୍ଚର୍ଯ୍ୟ ତାଙ୍କ ଆଚାର୍ଯ୍ୟଦେବ !

ଶ୍ରୀଗୁରୁ-କୃପା ଯୋଗୁଁ ନରେନ୍ଦ୍ରନାଥଙ୍କ ସାଂସାରିକ ଅଭାବ ଅନେକାଂଶରେ ଦୂରୀଭୂତ ହେଲା । ନରେନ୍ଦ୍ର ଆଟର୍ଣ୍ଣୀ ଅଫିସରେ କାମ କରି ଏବଂ କେତେଖଣ୍ଡି ପୁସ୍ତକ ଅନୁବାଦ କରି କିଛି କିଛି ଅର୍ଥ ଉପାର୍ଜନ କରିବାକୁ ଲାଗିଲେ; ଶେଷରେ ସ୍ଥାୟୀ ଭାବରେ ବିଦ୍ୟାସାଗରଙ୍କ ବିଦ୍ୟାଳୟରେ ଶିକ୍ଷକତା କାର୍ଯ୍ୟ ଗ୍ରହଣ କଲେ ।

## ଶ୍ରୀଶ୍ରୀରାମକୃଷ୍ଣଦେବ

୧୮୮୩ରୁ ୧୮୮୪ ଖ୍ରୀଷ୍ଟାବ୍ଦ । ଶ୍ରୀରାମକୃଷ୍ଣ କଲିକତାର ଆବାଳ-ବୃଦ୍ଧବନିତାଙ୍କ ନିକଟରେ ସୁପରିଚିତ ହୋଇଯାଇଛନ୍ତି । ଦଳଦଳ ନରନାରୀ ତାଙ୍କ ଦର୍ଶନ ଏବଂ ଶ୍ରୀମୁଖରୁ ବାଳ-ବୋଧ ସରଳ ମଧୁର ଉପଦେଶ ବାଣୀ ଶୁଣିବା ଲାଗି ଦକ୍ଷିଣେଶ୍ୱର ଯାତାୟାତ କରିବାକୁ ଲାଗିଲେ । ବିଶ୍ୱବିଦ୍ୟାଳୟ କତିପୟ ଶ୍ରେଷ୍ଠତମ ଅର୍ଦ୍ଧସ୍ଫୁଟ କୁସୁମ ଚୟନ କରି ଠାକୁର ଗୋଟିଏ ଗଗନୋପମ ଉଦାର ଆଦର୍ଶ-ଧର୍ମସଂଘ ଗଠନ କରିବାରେ ରହିଲେ । ଦ୍ୱାଦଶ ବର୍ଷବ୍ୟାପୀ କି ଗଭୀର ସୁଦୁସ୍ତର ତପସ୍ୟା ଓ ସାଧନା ମଧ୍ୟରେ ଜଗଦମ୍ବା ଏହି ଅଭିନବ ଆଦର୍ଶ-ପୁରୁଷଙ୍କୁ ଗଠନ କରିଛନ୍ତି — ତାହାର ଇୟତ୍ତା ଅଳ୍ପ-ବୁଦ୍ଧି ମାନବ କରିବ କିପରି ? ତାହାଙ୍କ ଇଚ୍ଛା ମାତ୍ରକେ ନର-ପଶୁ ପଲକ ମଧ୍ୟରେ ଦେବତ୍ୱ ପ୍ରାପ୍ତି ହେଉଥିଲା, ଯାହାଙ୍କ ସ୍ପର୍ଶ ମାତ୍ରେ ଜଣେ ସାଧନହୀନ ମାନବ ଅନାୟାସରେ ସମାଧିଗତ ହୋଇ ସଚ୍ଚିଦାନନ୍ଦ ଉପଲବ୍ଧି କରୁଥିଲା — ଯାହାଙ୍କ କୃପା-କଟାକ୍ଷରେ ମୁହୂର୍ତ୍ତକେ ଇଷ୍ଟଦର୍ଶନ ହେଉଥିଲା; ଅଥଚ ଯେ ଅପୂର୍ବ ବିନୀତ ସାରଲ୍ୟ ସହିତ ନିଜକୁ ଦୀନାତିଦୀନ ରୂପେ କୀର୍ତ୍ତନ କରୁଥିଲେ — ଯେ ପଞ୍ଚମ ବର୍ଷୀୟ ବାଳକ ପରି ମାତୃନିର୍ଭରତା ହେତୁ ପ୍ରତ୍ୟେକ ବାକ୍ୟ ଓ କର୍ମରେ ଜଗଦମ୍ବାଙ୍କ ମୁଖକୁ ଚାହିଁ ରହୁଥିଲେ — ଯେ ନିଖିଳ ଆଧ୍ୟାତ୍ମିକ ଅନୁଭୂତିସମୂହର ସମଷ୍ଟି ସ୍ୱରୂପ 'ସକଳ ଧର୍ମ' ଓ 'ସକଳ ମତ' ର ଧର୍ମପିପାସୁମାନଙ୍କ ଚିତ୍ତକୁ ଶାନ୍ତି ପ୍ରଦାନ କରୁଥିଲେ — ତାଙ୍କର ଇୟତ୍ତା ଅଳ୍ପବୁଦ୍ଧି ମାନବ କରିବ କିପରି !

ଏହି ବିଂଶ ଶତାବ୍ଦୀର ସଭ୍ୟତା-ଗର୍ବିତ, ସନ୍ଦିଗ୍ଧ-ଚିତ୍ତ, ଧର୍ମଚିନ୍ତା-ବିବର୍ଜିତ-ଭୌଗୈକ-ମାନସ, ଶାସ୍ତ୍ରରେ ଅନାସ୍ଥାବାନ ମୋହାନ୍ଧଗଣଙ୍କ ପରିତ୍ରାଣ ନିମିତ୍ତ — ଗୋଟିଏ ମହାନ୍ ଆଦର୍ଶର ପ୍ରୟୋଜନ ହୋଇଥିଲା; ତାହାର ହିଁ ପରିପୂର୍ଣ୍ଣ ପ୍ରକାଶ ଥିଲେ — ଶ୍ରୀଶ୍ରୀରାମକୃଷ୍ଣ ପରମହଂସଦେବ ! ସେହିହେତୁ ବଙ୍ଗଦେଶ-ବକ୍ଷରେ ଦଣ୍ଡାୟମାନ ହୋଇ ବଙ୍ଗାଳୀ ସନ୍ନ୍ୟାସୀ ବିବେକାନନ୍ଦ ଦିନେ ଗୈରିକ-ଉଷ୍ଣୀଷ-ମଣ୍ଡିତ ଶିର ଉର୍ଦ୍ଧ୍ୱକୁ ଟେକି ସମଗ୍ର ଜାତିକୁ ମେଘମନ୍ଦ୍ରରେ ଶୁଣାଇଥିଲେ — ''ଯଦି ତୁମ୍ଭମାନଙ୍କର ଚକ୍ଷୁଥାଏ, ତେବେ ତୁମେମାନେ ତାହା ଦେଖିପାରିବ; ଯଦି ତୁମ୍ଭମାନଙ୍କର ହୃଦୟର ଦ୍ୱାର ଉନ୍ମୁକ୍ତ ଥାଏ, ତେବେ ତୁମେମାନେ ତାହାର ସନ୍ଧାନ ପାଇବ । ଅନ୍ଧ — ସେ ଅତି ଅନ୍ଧ, ଯେ ସମୟର ସଙ୍କେତ ନ ଦେଖୁଛି ବା ନ ବୁଝିଛି । ଦେଖୁ ନାହଁ — ଦରିଦ୍ର ବ୍ରାହ୍ମଣ ପିତାମାତାଙ୍କ ସୁଦୂର ଗ୍ରାମ-ଜାତ ଏହି ସନ୍ତାନ ଏହିକ୍ଷଣି ସେହିସବୁ ଦେଶରେ ସତକୁ ସତ ପୂଜିତ ହେଉଛନ୍ତି, ଯେଉଁମାନେ କି ବହୁ ଶତାବ୍ଦୀ ହେଲା ପୌତ୍ତଳିକ ଉପାସନା ବିରୋଧରେ ଚିତ୍କାର କରି ଆସିଛନ୍ତି ।''

## ଠାକୁରଙ୍କ ଗଳରୋଗ

୧୮୮୫ ଖ୍ରୀଷ୍ଟାବ୍ଦ ମଧ୍ୟଭାଗରେ ଠାକୁରଙ୍କ ଗଳରୋଗ କ୍ରମଶଃ ବୃଦ୍ଧି ପାଉଥିବା ଦେଖି ଭକ୍ତଗଣ ଚିନ୍ତିତ ହୋଇ ପଡ଼ିଲେ; ଅବଶେଷରେ ଚିକିତ୍ସା ନିମିତ୍ତ ଠାକୁରଙ୍କୁ କଲିକତା ଆଣିଲେ । ସହରରେ ରହିବା ଅସୁବିଧାଜନକ ଦେଖି ଭକ୍ତଗଣ ସହରର ଉତ୍ତରାଂଶରେ ଅବସ୍ଥିତ କାଶୀପୁରଠାରେ ଗୋଟିଏ ଉଦ୍ୟାନଗୃହ ଭଡ଼ାରେ ନେଇ ଠାକୁରଙ୍କୁ ସେଠାକୁ ନେଇଗଲେ । ରାଖାଲ, ବାବୁରାମ, ଶରତ, ଶଶୀ, କାଳୀ, ତାରକ, ଲାଟୁ ପ୍ରଭୃତି ବାଳକ-ଭକ୍ତଗଣ ସେବାରତ ରହିଲେ । ବଳରାମ, ରାମଚନ୍ଦ୍ର, ଗିରିଶ, ଈଶାନ ପ୍ରଭୃତି ଗୃହୀ ଭକ୍ତବୃନ୍ଦ ତତ୍ତ୍ୱାବଧାନ କଲେ । ସଦାସର୍ବଦା ଠାକୁରଙ୍କ ସମ୍ବାଦ ନେବା ଏବଂ ସେବା ଶୁଶ୍ରୂଷାର ବନ୍ଦୋବସ୍ତ ପ୍ରଭୃତି କରିବା ନିମିତ୍ତ ନରେନ୍ଦ୍ରନାଥ ଅଗଷ୍ଟ ମାସରେ ଶିକ୍ଷକତା ପରିତ୍ୟାଗ କଲେ । ଠାକୁର କାଶୀପୁରରେ ଥିବାବେଳେ ସେ ମଧ୍ୟ ନିଜ ଘର ଛାଡ଼ି ସେଠାରେ ରହିଲେ ।

ଶ୍ରୀଶ୍ରୀଠାକୁରଙ୍କ ବାଳକ-ଭକ୍ତଗଣ କ୍ରମେ ପ୍ରୟୋଜନର ଗୁରୁତ୍ୱ ବୁଝି ଜଣ ଜଣ ହୋଇ କାଶୀପୁର ଗୃହକୁ ଚାଲି ଆସି ଗୁରୁସେବାରେ ନିଯୁକ୍ତ ରହିଲେ । କ୍ରମେ ସେମାନେ କଲେଜ ଛାଡ଼ିଦେଲେ—ଏପରି କି, ଦୁଇଓଳି ଖାଇବା ଲାଗି ଘରକୁ ଯିବା ମଧ୍ୟ ବନ୍ଦ କରିଦେଲେ । ଅନେକଙ୍କ ଅଭିଭାବକ ଏହାକୁ ଆପତ୍ତିଜନକ ମନେକରି ମଝିରେ ମଝିରେ ସେମାନଙ୍କୁ ଘରକୁ ଫେରାଇ ନେବା ଲାଗି ଆସୁଥିଲେ । ବାଳକମାନଙ୍କୁ ଅଭୟ ଦେଇ ନରେନ୍ଦ୍ରନାଥ ଅଭିଭାବକମାନଙ୍କୁ ନିବୃତ୍ତ କରିବାର ଦାୟିତ୍ୱ ନେଲେ । ତାଙ୍କ ସାମନାରେ କେହି ଆଣ୍ଟ କରି ପାରୁ ନ ଥିଲେ, ତେଣୁ ସେମାନଙ୍କ ଚେଷ୍ଟା ସଫଳ ହୋଇ ପାରିଲା ନାହିଁ ।

ଔଷଧପତ୍ର, ସେବା-ଶୁଶ୍ରୂଷାରେ ତ୍ରୁଟି ନାହିଁ, ଅଥଚ ରୋଗ କ୍ରମେ କ୍ରମେ ପ୍ରବଳ ଆକାର ଧାରଣ କଲା । ନିଜ ଶକ୍ତିକୁ ଶିଷ୍ୟମାନଙ୍କ ମଧ୍ୟରେ ସଞ୍ଚାରିତ କରି ଠାକୁର ଯେ ଇହଲୀଳା ସାଙ୍ଗ କରିବା ଲାଗି ଆୟୋଜନ କରୁଛନ୍ତି, ଅନେକେ ଏହା ବୁଝିପାରିଲେ । ତେବେ ବି ଆଶା-ମୁଗ୍ଧ ହୃଦୟରେ ସମସ୍ତ ଅମଙ୍ଗଳଚିନ୍ତା ଦୂର କରି ଭକ୍ତଗଣ ପ୍ରାଣପଣେ ଚେଷ୍ଟା କରିବାରେ ଲାଗିଲେ ।

ଗୁରୁ ଓ ଶିଷ୍ୟଙ୍କ ମଧ୍ୟରେ ଯେ କି ଅପୂର୍ବ ସମ୍ବନ୍ଧ ଥିଲା—ତାହା କେବଳ ଠାକୁର ଜାଣନ୍ତି । ସେ ନରେନ୍ଦ୍ରଙ୍କର କୌଣସି ପ୍ରକାର ସେବା ଗ୍ରହଣ କରୁ ନ ଥିଲେ—କରି ପାରୁ ନ ଥିଲେ । ପ୍ରତ୍ୟକ୍ଷ ଗୁରୁସେବାରୁ ବଞ୍ଚିତ ହୋଇ ନରେନ୍ଦ୍ରନାଥ କେବଳ ପର୍ଯ୍ୟବେକ୍ଷଣ କାର୍ଯ୍ୟରେ ସନ୍ତୁଷ୍ଟ ରହିଲେ । କାଶୀପୁରର ଉଦ୍ୟାନ-ଗୃହ କେବଳ ରୋଗୀ-ନିବାସ ଓ ଶୁଶ୍ରୂଷାଗାର ନୁହେଁ; ଏକାଧାରରେ ମଠ ଓ ବିଶ୍ୱବିଦ୍ୟାଳୟ ହୋଇଗଲା । ଭକ୍ତଗଣ ସାଧନ ଭଜନ କରୁଛନ୍ତି । କେତେବେଳେ ଅବା ବିଭିନ୍ନ ପ୍ରକାର ଶାସ୍ତ୍ରପାଠ, ଇତିହାସ, ଦର୍ଶନ, ବିଜ୍ଞାନ ପ୍ରଭୃତି ଆଲୋଚନା ଚାଲିଛି । ଶ୍ରୀଶ୍ରୀରାମକୃଷ୍ଣଙ୍କ ପ୍ରେମମଦିରା ପାନରେ ଉନ୍ମତ୍ତ ପ୍ରେମିକ-ପୁରୁଷମାନଙ୍କ

ଜୀବନର ସର୍ବଶ୍ରେଷ୍ଠ ଆନନ୍ଦମୟ ଦିନଗୁଡ଼ିକ ଏହି ପୁଣ୍ୟ ତୀର୍ଥରେ ହିଁ ଅତିବାହିତ ହୋଇଥିଲା ।

## ନରେନ୍ଦ୍ରଙ୍କ ତପସ୍ୟା ଓ ସନ୍ନ୍ୟାସ ଗ୍ରହଣ

ନରେନ୍ଦ୍ରନାଥ ଅନନ୍ୟଚିତ୍ତ ହୋଇ ଶ୍ରୀଗୁରୁ-ପ୍ରଦର୍ଶିତ ପନ୍ଥା ଅବଲମ୍ବନପୂର୍ବକ ସାଧନ-ପଥରେ ଦ୍ରୁତ ଉନ୍ନତି ଲାଭ କଲେ । ସେ ପ୍ରବଳ ଉତ୍ସାହ, କଠୋର ଇନ୍ଦ୍ରିୟନିଗ୍ରହ, ପରିପୂର୍ଣ୍ଣ ବିଶ୍ୱାସ ସହିତ ସତ୍ୟ ଲାଭ କରିବା ନିମିତ୍ତ ଯେଉଁ ପ୍ରାଣପଣ ଚେଷ୍ଟା କରିଥିଲେ, ତାହା ବର୍ଣ୍ଣନାତୀତ । ଦିନେ ଦିନେ ସେ ରାତ୍ରିରେ ଦକ୍ଷିଣେଶ୍ୱର ଯାଇ ପଞ୍ଚବଟୀ ମୂଳରେ ଧ୍ୟାନ କରୁଥିଲେ । ନରେନ୍ଦ୍ରନାଥଙ୍କ ତୀବ୍ର ଅନୁରାଗ ଦର୍ଶନ କରି ଠାକୁର ପ୍ରୀତ ହେଲେ; ଦିନେ ନରେନ୍ଦ୍ରଙ୍କୁ ଡାକି କହିଲେ, "ଦେଖ, ସାଧନକାଳରେ ମୋର ଅଷ୍ଟୈଶ୍ୱର୍ଯ୍ୟ ଲାଭ ହୋଇଥିଲା, ତାହା କୌଣସି ଦିନ କିଛି କାମରେ ଲାଗି ନାହିଁ, ତୁ ନେ, କାଳେ ତୋର ଅନେକ କାମରେ ଲାଗିପାରେ ।"

ନରେନ୍ଦ୍ର ପଚାରିଲେ, "ମହାଶୟ, ଏଥିରେ ଭଗବାନଙ୍କୁ ଲାଭ କରିବା ନିମିତ୍ତ କୌଣସି ସୁବିଧା ହେବ କି ?"

ଠାକୁର ଉତ୍ତର ଦେଲେ, "ନା, ତାହା ହେବ ନାହିଁ ସତ୍ୟ, କିନ୍ତୁ କୌଣସି ଐହିକ ବାସନା ଅପୂର୍ଣ୍ଣ ରହିବ ନାହିଁ ।"

କିଛି ମାତ୍ର ଚିନ୍ତା ନ କରି ତ୍ୟାଗୀଶ୍ରେଷ୍ଠ ନରେନ୍ଦ୍ର ଉତ୍ତର ଦେଲେ, "ତେବେ ମହାଶୟ, ସେଥିରେ ମୋର ପ୍ରୟୋଜନ ନାହିଁ ।" ବାସ୍ତବିକ ଏହି ସମୟରେ ନରେନ୍ଦ୍ରନାଥ ଶ୍ରୀଶ୍ରୀଠାକୁରଙ୍କ ପବିତ୍ର ସଙ୍ଗ ଲାଭ କରି ଯେପରି କି ସ୍ୱତନ୍ତ୍ର ମନୁଷ୍ୟ ହୋଇଯାଇଥିଲେ—ଦିବା ରାତ୍ରି କେବଳ ଭଗବତ୍ ଚିନ୍ତା, ସତ୍ୟ-ଲାଭ ନିମିତ୍ତ ତୀବ୍ର ବ୍ୟାକୁଳତା ! ତାଙ୍କୁ ଦେଖିଲେ ମନେ ହେଉଥିଲା, ଯେପରି କି ପିଞ୍ଜରାବଦ୍ଧ ସିଂହ ପିଞ୍ଜରା ଭାଙ୍ଗି ବହିର୍ଗତ ହେବା ନିମିତ୍ତ ଅସୀମ ଆଗ୍ରହରେ ଛଟପଟ ହେଉଛି ।

ତ୍ୟାଗରେ ପବିତ୍ର, ଚରିତ୍ରରେ ଉନ୍ନତ, ସଂକଳ୍ପରେ ଅଟଳ, ତରୁଣ ଯୁବକଗଣ ଶ୍ରୀଶ୍ରୀରାମକୃଷ୍ଣଙ୍କୁ ଆଦର୍ଶ କରି କାଶୀପୁର ଉଦ୍ୟାନ-ଗୃହରେ ସୁଦୁସ୍ତର ତପସ୍ୟାରେ ବ୍ରତୀ ହୋଇଥିଲେ । ଶ୍ରୀଶ୍ରୀରାମକୃଷ୍ଣଙ୍କ ସେବା ଉପଲକ୍ଷ୍ୟରେ ଗୃହ-ପରିଜନ ତ୍ୟାଗୀ ବାଳକମାନେ ଏକତ୍ର ବସବାସ କରିବା ହେତୁ ଏକପ୍ରକାର ଅପୂର୍ବ ଆଧ୍ୟାତ୍ମିକ ପ୍ରେମ ସମ୍ବନ୍ଧରେ ପରସ୍ପର ଆବଦ୍ଧ ହୋଇ ପଡ଼ିଲେ । ଏହିଠାରେ ହିଁ ଭାବୀ ରାମକୃଷ୍ଣସଂଘର ମୂଳଦୁଆ ପଡ଼ିଲା । ଏହି ସମୟରେ ଦିନେ ଶ୍ରୀରାମକୃଷ୍ଣ ନିଜ କୁମାର ଶିଷ୍ୟମାନଙ୍କୁ ସନ୍ନ୍ୟାସ ଦେବା ନିମିତ୍ତ ସଂକଳ୍ପ କଲେ । ଗୋଟିଏ ଶୁଭଦିନ ବାଛି ଶିଷ୍ୟଗଣଙ୍କୁ ସ୍ୱହସ୍ତରେ ଗୈରିକବସନ ଦାନ କରି ଠାକୁର ସେମାନଙ୍କ ନେତା ନରେନ୍ଦ୍ରନାଥଙ୍କୁ ଡକାଇ କହିଲେ, "ତୁମେମାନେ ସମ୍ପୂର୍ଣ୍ଣ ନିରଭିମାନୀ ହୋଇ ଭିକ୍ଷା-ଝୁଲି କାନ୍ଧରେ ପକାଇ ରାଜପଥରେ ଭିକ୍ଷା କରିପାରିବ କି ?" ସେମାନେ ଶ୍ରୀଗୁରୁଙ୍କ ଆଦେଶରେ ତତ୍କ୍ଷଣାତ୍ ଭିକ୍ଷା ନିମିତ୍ତ ବାହାରି ଗଲେ

ଏବଂ ଭିକ୍ଷାଲବ୍ଧ ଦ୍ରବ୍ୟ ରନ୍ଧନ କରି ଠାକୁରଙ୍କ ନିକଟକୁ ନେଇ ପରେ ପ୍ରସାଦ ସେବନ କଲେ । ସେଦିନ ଠାକୁରଙ୍କର କି ଆନନ୍ଦ ! ଉଚ୍ଚଶିକ୍ଷା ଓ ଆଭିଜାତ୍ୟର ଗୌରବ-ବୁଦ୍ଧି-ବର୍ଜିତ ବାଳ-ସନ୍ନ୍ୟାସୀଗଣଙ୍କ ତୀବ୍ର ବୈରାଗ୍ୟ ଦର୍ଶନ କରି ଠାକୁର ଆନନ୍ଦରେ ଆତ୍ମହରା ହେଲେ ।

## ବୁଦ୍ଧଗୟା ଗମନ ଓ ସାଧନା

ସନ୍ନ୍ୟାସ ଗ୍ରହଣ ପରେ ଅତୀତଯୁଗର ଯୁଗପ୍ରବର୍ତ୍ତକ ସନ୍ନ୍ୟାସୀମାନଙ୍କ ଜୀବନ ଓ ଉପଦେଶ ଆଲୋଚନା ହିଁ ନରେନ୍ଦ୍ରଙ୍କ ଲକ୍ଷ୍ୟ ହୋଇ ଉଠିଲା । ଧ୍ୟାନାଭ୍ୟାସ ଫଳରେ ଏକାଗ୍ରମାନସ ନରେନ୍ଦ୍ର ଯେତେବେଳେ ଯେଉଁ ବିଷୟ ଆରମ୍ଭ କରୁଥିଲେ, ସେଥିରେ ମାତି ଉଠୁଥିଲେ । ଭଗବାନ ବୁଦ୍ଧଦେବଙ୍କ ଅପୂର୍ବ ତ୍ୟାଗ, ଅଲୌକିକ ସାଧନା ଓ ଅସୀମ କରୁଣା—ନିଶିଦିବସ ନରେନ୍ଦ୍ରଙ୍କ ଆଲୋଚ୍ୟ ବିଷୟ ହୋଇଥିଲା । ଜନ୍ମ, ଜରା, ଦୁଃଖ, ବ୍ୟାଧିର ନିର୍ମମ ପେଷଣଦ୍ୱାରା ପ୍ରବୃତ୍ତି-ତାଡ଼ିତ ଜୀବକୁଳର କାତର ହାହାକାରରେ କରୁଣାବିଗଳିତ ରାଜପୁତ୍ରଙ୍କ ବିଶାଳ ହୃଦୟର ଅପୂର୍ବ ବେଦନା ବର୍ଣ୍ଣନା କରୁ କରୁ ନରେନ୍ଦ୍ରନାଥଙ୍କ ଚକ୍ଷୁରେ ଲୋତକ ଆସୁଥିଲା । ବୁଦ୍ଧଦେବଙ୍କ ଧ୍ୟାନରେ ବିଭୋର ନରେନ୍ଦ୍ରନାଥ ଗୋପନରେ ଦୁଇଜଣ ଗୁରୁଭାଇଙ୍କୁ ସାଙ୍ଗରେ ନେଇ ବୁଦ୍ଧଗୟା ଯିବା ଲାଗି ପ୍ରସ୍ତୁତ ହେଲେ । ରାତ୍ରିକାଳରେ ଗାତ୍ରୋତ୍ଥାନ କରି ନିଃଶବ୍ଦରେ ନରେନ୍ଦ୍ର, ତାରକ (ସ୍ୱାମୀ ଶିବାନନ୍ଦ) ଓ କାଳୀ (ସ୍ୱାମୀ ଅଭେଦାନନ୍ଦ) ଗଙ୍ଗା ପାର ହୋଇ ବାଲୀ ରେଳଷ୍ଟେସନରେ ଟ୍ରେନ ଧରିଲେ । ୧୮୮୬ ଖ୍ରୀଷ୍ଟାବ୍ଦରେ ଅପ୍ରେଲ ମାସ—ତରୁଣ ସନ୍ନ୍ୟାସୀମାନେ ପବିତ୍ର ଫଲ୍‌ଗୁନଦୀରେ ସ୍ନାନ କରି ଭକ୍ତିଭାବରେ ଆଠ ମାଇଲ ଦୂରବର୍ତ୍ତୀ ବୋଧିସତ୍ତ୍ୱ ମନ୍ଦିରାଭିମୁଖେ ଯାତ୍ରା କଲେ । ଏଣେ ସକାଳୁ ନରେନ୍ଦ୍ରନାଥଙ୍କୁ ନ ଦେଖି ଭକ୍ତଗଣ ଚିନ୍ତିତ ହେଲେ । ଚାରିଆଡ଼େ ଅନୁସନ୍ଧାନ ଚାଲିଲା—ନରେନ୍ଦ୍ରଙ୍କ କୌଣସି ସନ୍ଧାନ ମିଳିଲା ନାହିଁ । ଠାକୁରଙ୍କ ପାଖରେ ଭକ୍ତବୃନ୍ଦ ଏହି ବିଷୟ ଜଣାଇବାରୁ ସେ ଅଳ୍ପ ହସି କହିଲେ, ''ତୁମେମାନେ ବ୍ୟସ୍ତ ହୁଅ ନାହିଁ, ସେ ଫେରି ଆସିଲା ବୋଲି ଜାଣ; ତା'ର କଅଣ ଏ ସ୍ଥାନ ଛାଡ଼ି ରହିବାର ଯୋ ଅଛି !''

ବୁଦ୍ଧଗୟାରେ ପହଞ୍ଚି ନରେନ୍ଦ୍ର ବୋଧିସତ୍ତ୍ୱ ମନ୍ଦିର ଦର୍ଶନ କଲେ । ଏହା ସେହି ସ୍ଥାନ—ଯେଉଁଠାରେ ଭଗବାନ ବୁଦ୍ଧଦେବ ଜନ୍ମ-ଜରା-ବ୍ୟାଧି-ମରଣକ୍ଳିଷ୍ଟ ଜୀବମାନଙ୍କ ଦୁଃଖ ନିବାରଣକଳ୍ପେ ସମାଧିସ୍ଥ ହୋଇ ନିର୍ବାଣ ଲାଭ କରିଥିଲେ । ବୋଧିଦ୍ରୁମ ମୂଳରେ ଥିବା ପବିତ୍ର ପ୍ରସ୍ତରାସନ ଉପରେ ନରେନ୍ଦ୍ରନାଥ ଧ୍ୟାନସ୍ଥ ହେଲେ । ତାଙ୍କ ଗୁରୁଭାଇ ଦୁହେଁ ଧ୍ୟାନଭଙ୍ଗ ହେବାରୁ ଚାହିଁ ଦେଖିଲେ—ନରେନ୍ଦ୍ର ପାଷାଣବତ୍ ନିଶ୍ଚଳ—ଦେହ ସ୍ପନ୍ଦନହୀନ । ବହୁକ୍ଷଣ ପରେ ଥରେ ଅର୍ଦ୍ଧ-ବାହ୍ୟଜ୍ଞାନ ପ୍ରାପ୍ତ ହୋଇ କାନ୍ଦି ଉଠିଲେ; ଠିକ୍ ପରମୁହୂର୍ତ୍ତରେ ପୁଣି ଧ୍ୟାନସ୍ଥ ହୋଇଗଲେ । ତାଙ୍କ ଧ୍ୟାନସ୍ତିମିତ ନେତ୍ରରେ ସତ୍ୟର ବିମଳ ଜ୍ୟୋତିଃ ଫୁଟି ଉଠିଲା । ସେ କ'ଣ

ଦେଖିଲେ—କ'ଣ ବୁଝିଲେ, ତାହା ଗୁରୁଭାଇ ଦୁହିଁଙ୍କ ନିକଟରେ ପ୍ରକାଶ କଲେ ନାହିଁ । କ୍ରମାଗତ ତିନିଦିନ କଠୋର ତପସ୍ୟାରେ କଟାଇ ସେମାନେ ବୁଦ୍ଧଗୟାରୁ କାଶୀପୁର ଉଦ୍ୟାନଗୃହକୁ ଫେରି ଆସିଲେ । ଭକ୍ତବୃନ୍ଦ ସେମାନଙ୍କ ପ୍ରାଣସ୍ୱରୂପ ନରେନ୍ଦ୍ରନାଥଙ୍କୁ ଫେରି ପାଇ ଆନନ୍ଦସାଗରରେ ମଗ୍ନ ହେଲେ ।

ବୁଦ୍ଧଗୟାରୁ ଫେରି ଆସି ନରେନ୍ଦ୍ରନାଥ ବୁଝିପାରିଲେ, ଯେଉଁ ଅତୃପ୍ତ ପିପାସାରେ କାତର ହୋଇ ସେ ଉଦ୍‌ଭ୍ରାନ୍ତ ଭାବରେ ଏଣେତେଣେ ଘୂରି ବୁଲୁଛନ୍ତି, ସେ ପିପାସା ଏକମାତ୍ର ଠାକୁରଙ୍କ କୃପା ବ୍ୟତୀତ ତୃପ୍ତ ହୋଇପାରିବ ନାହିଁ । ନରେନ୍ଦ୍ର ସ୍ଥିର ସଂକଳ୍ପ କରି ନେଲେ ସିନା, କିନ୍ତୁ ଅପରାପର ଭକ୍ତଗଣଙ୍କ ପରି ବିଶ୍ୱାସ ସହକାରେ ଶ୍ରୀଗୁରୁଙ୍କ ଚରଣ ତଳେ ଆତ୍ମ-ସମର୍ପଣ କରି ପାରିଲେ ନାହିଁ । ସେ ଚାହୁଁଥିଲେ—ସତ୍ୟର ଉପଲବ୍ଧି । ନରେନ୍ଦ୍ର ତୀବ୍ର ତପଶ୍ଚର୍ଯ୍ୟାରେ ରତ ହେଲେ—ସେପରି ପ୍ରବଳ ଉତ୍ସାହ, କଠୋର ଇନ୍ଦ୍ରିୟନିଗ୍ରହ, ଦୈହିକ ଭୋଗ-ବିଳାସ ବର୍ଜନ କରି ଅନନ୍ୟମାନସରେ ଆତ୍ମ-ଦର୍ଶନ କରିବା ପାଇଁ ଅଦମ୍ୟ ଚେଷ୍ଟା ବର୍ଣ୍ଣନାତୀତ !

## ନରେନ୍ଦ୍ରଙ୍କ ଶକ୍ତିଲାଭ

ପୂର୍ବଜ ମହାପୁରୁଷଙ୍କ ଚରିତଗୁଡ଼ିକ ଆଲୋଚନା କଲେ ଦେଖାଯାଏ ଯେ, ସେମାନେ ଦେଶ-କାଳ-ପାତ୍ର ବିବେଚନା କରି ମୁକ୍ତିର ନବ ନବ ପନ୍ଥା ଆବିଷ୍କାର କରିଛନ୍ତି; କାମ-କାଞ୍ଚନର ପ୍ରବଳ ଆକର୍ଷଣରେ ଅବିଚଳିତ ରହି ସ୍ୱ ସ୍ୱ କାର୍ଯ୍ୟ ସମ୍ପାଦନ କରିଛନ୍ତି । ସେମାନଙ୍କ ଜପ, ତପ, ସାଧନ, ଭଜନ ଇତ୍ୟାଦି ସବୁ କିଛି ପରର ମଙ୍ଗଳ ପାଇଁ, ନିଜର ମୁକ୍ତି କିମ୍ବା ଅନ୍ୟ କିଛି କାମନା ଯୋଗୁଁ ନୁହେଁ । ସେଥିପାଇଁ ଠାକୁର ନରେନ୍ଦ୍ରନାଥଙ୍କୁ ବିଭିନ୍ନ ପ୍ରକାର ସାଧନା ଓ ଆଧ୍ୟାତ୍ମିକ ଅବସ୍ଥା ମାଧ୍ୟମରେ ଧର୍ମଜୀବନର ଚରମାଦର୍ଶର ଅଭିମୁଖୀ କରିଦେବାରେ ଲାଗିଲେ । ଠାକୁରଙ୍କ ନିଜ ଜୀବନରେ ଅନୁଭୂତ ଆଧ୍ୟାତ୍ମିକ ସତ୍ୟଗୁଡ଼ିକ ସହିତ ପ୍ରତ୍ୟକ୍ଷ ଭାବେ ପରିଚିତ ହେବା ପୂର୍ବରୁ ନରେନ୍ଦ୍ର କୌଣସିମତେ ଏହିସବୁ ପ୍ରତି ଆସ୍ଥାବାନ ହୋଇପାରୁ ନ ଥିଲେ ।

ଦିନେ କାଶୀପୁର ଉଦ୍ୟାନ-ଗୃହରେ ପ୍ରଜ୍ୱଳିତ ଅଗ୍ନିକୁଣ୍ଡ ସମ୍ମୁଖରେ ନରେନ୍ଦ୍ରନାଥ ଧ୍ୟାନମଗ୍ନ ଥିଲେ । ଏହି ସମୟରେ ସେ ଅନୁଭବ କଲେ ଯେ, ସ୍ପର୍ଶମାତ୍ରେ ଅନ୍ୟର ମନୋରାଜ୍ୟରେ ଆମୂଳ ପରିବର୍ତ୍ତନ ଆଣି ବିଶେଷ ଧର୍ମଭାବ ସଞ୍ଚାର କରାଇବା ଶକ୍ତି ତାଙ୍କଠାରେ ଉଦ୍‌ବୁଦ୍ଧ ହୋଇଛି । ଶ୍ରୀଶ୍ରୀଠାକୁରଙ୍କୁ ସ୍ପର୍ଶଦ୍ୱାରା ଏହିପରି କରିଥିବାର ସେ ଅନେକ ଥର ଦେଖିଛନ୍ତି । ଏ' କ'ଣ ସେହି ଶକ୍ତି ? ବାଳ-ସୁଲଭ କୌତୁହଳବଶତଃ ଆଗପଛ ନ ଭାବି ସେ ପାଖରେ ଧ୍ୟାନମଗ୍ନ ଥିବା ଜନୈକ ଗୁରୁଭାଇଙ୍କ ଉପରେ ଏହା ପରୀକ୍ଷା କରିବାକୁ ଯାଇ ତାଙ୍କ ଧର୍ମଜୀବନରେ ଆମୂଳ ପରିବର୍ତ୍ତନ ଅଣାଇ ଦେଲେ । ଦ୍ୱୈତବାଦୀ, ସଗୁଣ

ସାକାର ଈଶ୍ୱରଙ୍କଠାରେ ବିଶ୍ୱାସୀ ଥିବା ଭକ୍ତ ମୁହୂର୍ତ୍ତକ ମଧ୍ୟରେ ଅଦ୍ୱୈତବାଦୀ ଓ ଜ୍ଞାନଯୋଗୀ ହୋଇଗଲେ । ଠାକୁର ଏହି ବିଷୟ ଅବଗତ ହୋଇ ନରେନ୍ଦ୍ରଙ୍କୁ ଡାକି ଶାସନ-ବାକ୍ୟ ପ୍ରୟୋଗ କରି କହିଲେ, ''ଜମା ନ ହେଉଣୁ ଖର୍ଚ୍ଚ ଆରମ୍ଭ ହୋଇଗଲା ? ଆଜି ଏହାର କି ଅନିଷ୍ଟ କଲୁ କହ ତ ?'' ତତ୍ପରେ ଏହି ଶକ୍ତି କିଭଳି ପ୍ରୟୋଗ କରିବାକୁ ହେବ, ତାହା ବିଶେଷ ରୂପେ ବୁଝାଇ ଦେଲେ ।

## ସ୍ୱାଧ୍ୟାୟ ଓ କଠୋର ତପସ୍ୟା

ସେଦିନ ଚାଲିଯାଇଛି । ସେହି ଦାର୍ଶନିକ, ତାର୍କିକ, ଉଦ୍ଧତ ନରେନ୍ଦ୍ରନାଥ ଆଜି ଗୁରୁଭକ୍ତ ସାଧକ । ପାଶ୍ଚାତ୍ୟ ଦର୍ଶନର ଆପାତଃ ମନୋରମ ଯୁକ୍ତିଜାଲ ଓ ବ୍ରାହ୍ମ-ସମାଜର ପ୍ରଭାବ ତାଙ୍କ ଚିତ୍ତ ଉପରେ ଯେଉଁ ଆବରଣ ପକାଇଥିଲା, ତାହା ଖସି ପଡ଼ିଛି । ଠାକୁରଙ୍କ ଆଦେଶରେ ବର୍ତ୍ତମାନ ତାଙ୍କ ପାଠ୍ୟପୁସ୍ତକ ହୋଇଛି, କେବଳ ପାଶ୍ଚାତ୍ୟ ଦର୍ଶନ ଓ ବିଜ୍ଞାନ ନୁହେଁ, ଅଦ୍ୱୈତ ବେଦାନ୍ତର ଗ୍ରନ୍ଥସମୂହ; ସେ ଗଭୀର ଶ୍ରଦ୍ଧା ସହିତ ଉପନିଷଦ, ଅଷ୍ଟବକ୍ରସଂହିତା, ପଞ୍ଚଦଶୀ, ବିବେକଚୂଡ଼ାମଣି ପ୍ରଭୃତି ଗ୍ରନ୍ଥ ପାଠ କରୁଛନ୍ତି । ସ୍ୱୀୟ ସମସ୍ତ ବିଦ୍ୟାର ଅଭିମାନକୁ ହେୟ ଜ୍ଞାନ କରି ପରିପୂର୍ଣ୍ଣ ନିଷ୍ଠା ସହିତ ଠାକୁରଙ୍କ ଅପୂର୍ବ ବାଣୀ ମାଧ୍ୟମରେ ସେ ଅଭିନବ, ଶ୍ରେଷ୍ଠତର ଶିକ୍ଷାଲାଭ କରୁଛନ୍ତି । ଆହାରନିଦ୍ରାଦି ଜୈବିକ-ଧର୍ମ-ବିବର୍ଜିତ ନରେନ୍ଦ୍ରନାଥଙ୍କ କଠୋର ତପସ୍ୟା ଉପସ୍ଥିତ ଅନ୍ୟାନ୍ୟ ବାଳକ-ଭକ୍ତମଣ୍ଡଳୀର ଆଦର୍ଶସ୍ୱରୂପ ହେଲା । ଯାହାଙ୍କୁ ଦେଖିବା ଲାଗି ଠାକୁର ଉନ୍ମତ୍ତବତ୍ ହୋଇ ଉଠନ୍ତି, ଯାହାଙ୍କ କଣ୍ଠର ସୁମଧୁର ସଙ୍ଗୀତ କର୍ଣ୍ଣରେ ପ୍ରବେଶ କରିବା ମାତ୍ରକେ ସେ ନିର୍ବିକଳ୍ପ ସମାଧିରେ ଆତ୍ମହରା ହୁଅନ୍ତି, ଯାହାଙ୍କୁ ପ୍ରଶଂସା କରିବା ନିମିତ୍ତ ଭାଷା ଖୋଜି ନ ପାଇଲେ ଠାକୁର କହନ୍ତି—''ସେ ସାକ୍ଷାତ୍ ନାରାୟଣ-ଜୀବୋଦ୍ଧାର ନିମିତ୍ତ ଦେହଧାରଣ କରିଛନ୍ତି'', ତାଙ୍କୁ ଯଦି ଏତେ କଠୋର ସାଧନା କରିବାକୁ ହୁଏ, ତାହାହେଲେ ଅନ୍ୟମାନଙ୍କ କଥା କ'ଣ କୁହାଯିବ ? ସାଧନପଥରେ ବହୁଦୂର ଅଗ୍ରସର ହୋଇଥିବା ନରେନ୍ଦ୍ରନାଥ ଅବଶେଷରେ ବୁଝିପାରିଲେ, ନିର୍ବିକଳ୍ପ ସମାଧିଲାଭ ବ୍ୟତୀତ ତାଙ୍କର ଏ ବିଶ୍ୱଶୋଷୀ ଆଧ୍ୟାତ୍ମିକ ପିପାସା ପରିତୃପ୍ତ ହେବ ନାହିଁ; କିନ୍ତୁ ଦିନପରେ ଦିନ ଚାଲିଗଲା, ପରିପୂର୍ଣ୍ଣ ଉଦ୍ୟମ ସହିତ ଚେଷ୍ଟା କରି ମଧ୍ୟ ଏ ବିଷୟରେ ସଫଳକାମ ହୋଇ ପାରିଲେ ନାହିଁ ।

## ନିର୍ବିକଳ୍ପ ସମାଧିଲାଭ

ନୀରବ ଗଭୀର ରାତ୍ରି । କାଶୀପୁର ଉଦ୍ୟାନ-ଗୃହର ଉପର ମହଲାରେ ଠାକୁର ରୋଗଶଯ୍ୟାରେ ଶୋଇଥାନ୍ତି । ପାଖରେ ନରେନ୍ଦ୍ରନାଥ ଦଣ୍ଡାୟମାନ । କକ୍ଷରେ ଆଉ କେହି ନ ଥିଲେ । ଆଜି ନରେନ୍ଦ୍ରନାଥ ସଂକଳ୍ପ କରି ଆସିଛନ୍ତି, ଯେ କୌଣସି ଉପାୟରେ ନିର୍ବିକଳ୍ପ-ସମାଧିଲାଭ କରିବେ । ଚିରଦିନ ପୁରୁଷକାରଙ୍କର ଉପାସକ ଆଜି କୃପାଭିକ୍ଷା କରିବାକୁ ଆସିଛନ୍ତି—ଭୟ, ବିସ୍ମୟ ଓ ସମ୍ଭ୍ରମରେ

ତାଙ୍କ ବାକ୍‌ସ୍ଫୂର୍ତ୍ତି ହେଉ ନ ଥାଏ । ଅନ୍ତର୍ଯ୍ୟାମୀ ପୁରୁଷ ଶିଷ୍ୟର ମନୋଭାବ ବୁଝିଲେ । କେତେବର୍ଷ ତଳେ ଯେଉଁ ନରେନ୍ଦ୍ରନାଥ ବେଦାନ୍ତଶାସ୍ତ୍ର ଅଧ୍ୟୟନ କରିବାକୁ ଅସ୍ୱୀକାର କରି କହିଲେ — "ଯେଉଁ ବହି ମଣିଷକୁ ଭଗବାନ ବୋଲି ଶିକ୍ଷା ଦିଏ, ସେ ବହି ପଢ଼ିବାର କୌଣସି ପ୍ରୟୋଜନ ନାହିଁ । ନିଜକୁ ଭଗବାନ ବୋଲି ବିଚାର କରିବା ଠାରୁ ଆଉ ପାପ ନାହିଁ ।" ଆଜି ସେହି ବ୍ୟକ୍ତି ବେଦାନ୍ତୋକ୍ତ ସର୍ବୋଚ୍ଚ ଅନୁଭୂତିଲାଭ ପାଇଁ ଲାଳାୟିତ ! ସୁଦୀର୍ଘ ଛଅବର୍ଷ କାଳ ସେ ଗୁରୁଙ୍କ ସହିତ ଓ ନିଜ ଅନ୍ତଃପ୍ରକୃତି ସହିତ କି ବିରାମହୀନ ସଂଗ୍ରାମ କରି ନାହାନ୍ତି !

ଠାକୁର ତାଙ୍କୁ ସସ୍ନେହ ଚାହିଁ କହିଲେ, "ନରେନ୍, ତୁ କ'ଣ ଚାହୁଁ ?" ସୁଯୋଗ ବୁଝି ନରେନ୍ଦ୍ରନାଥ ଉତ୍ତର ଦେଲେ, "ଗୁରୁଦେବଙ୍କ ପରି ସର୍ବଦା ନିର୍ବିକଳ୍ପ ସମାଧିଯୋଗରେ ସଚ୍ଚିଦାନନ୍ଦ-ସାଗର ମଧ୍ୟରେ ବୁଡ଼ିରହିବାକୁ ଚାହେଁ !"

ଶ୍ରୀଶ୍ରୀରାମକୃଷ୍ଣଙ୍କ ଆଖିକୋଣରେ ଈଷତ୍ ଅଧୀରତା ପ୍ରକାଶ ପାଇଲା । ସେ କହିଲେ, "ବାରମ୍ବାର ଏକଥା କହିବାକୁ ଲାଜ ମାଡୁ ନାହିଁ ? ତୁ ବରଗଛ ପରି ବଢ଼ିଯାଇ ଶତଶତ ଲୋକଙ୍କୁ ଶାନ୍ତିଛାୟା ଦେବୁ, ନା, ତୁ ନିଜ ମୁକ୍ତି ପାଇଁ ବ୍ୟସ୍ତ ହୋଇପଡ଼ିଛୁ, ଏତେ କ୍ଷୁଦ୍ର ଆଦର୍ଶ ତୋର !"

ନରେନ୍ଦ୍ରଙ୍କ ବିଶାଳ ନେତ୍ରଯୁଗଳ ଲୋତକରେ ପୂରିଗଲା । ସେ ଅଭିମାନରେ କହିଲେ, "ନିର୍ବିକଳ୍ପ ସମାଧି ନ ହେବା ପର୍ଯ୍ୟନ୍ତ ମୋ ମନ ଅନ୍ୟ କୌଣସି କଥାରେ ଶାନ୍ତ ହେବ ନାହିଁ; ତା' ଯଦି ନ ହୁଏ, ମୁଁ ଆଉ କିଛି କରିପାରିବି ନାହିଁ ।"

ଠାକୁରେ— "ତୁ କ'ଣ ଇଚ୍ଛାନୁସାରେ କରିବୁ ନା ଜଗଦମ୍ବା ତୋ ହାତ ଧରି କରାଇ ନେବେ ! ତୁ ନ କଲେ ତୋ ହାଡ଼ କରିବ !"

ନରେନ୍ଦ୍ରଙ୍କ ବ୍ୟାକୁଳ ଅନୁରୋଧକୁ ଉପେକ୍ଷା କରି ନ ପାରି ଠାକୁର ଶେଷରେ କହିଲେ, "ଆଚ୍ଛା ଯା, ନିର୍ବିକଳ୍ପ ସମାଧି ହେବ ।"

ଥରେ ସନ୍ଧ୍ୟାବେଳେ ଧ୍ୟାନ କରୁ କରୁ ନରେନ୍ଦ୍ରନାଥ ଅପ୍ରତ୍ୟାଶିତ ଭାବରେ ନିର୍ବିକଳ୍ପ ସମାଧିରେ ବୁଡ଼ିଗଲେ । ଇନ୍ଦ୍ରିୟପ୍ରତ୍ୟକ୍ଷ ଆପେକ୍ଷିକ ସତ୍ୟସମୂହ ତାଙ୍କ ସମ୍ମୁଖରୁ ଅନ୍ତର୍ହିତ ହୋଇଗଲା । ଦେଶକାଳନିମିତ୍ତ ପରପାରରେ ଥିବା ନିଜ-ବୋଧ-ସ୍ୱରୂପ-ଆତ୍ମା ନିଜ ମହିମାରେ ବିରାଜିତ ହେଲା । ଏଭଳି ଅବସ୍ଥା ସାଧାରଣ ଭାଷାରେ କହିହେବ ନାହିଁ— କୁହାଯାଇ ପାରିବ ନାହିଁ ।

ବହୁସମୟ ପରେ ତାଙ୍କ ସମାଧିଭଙ୍ଗ ହେଲା । ସେ ଅନୁଭବ କଲେ, ତାଙ୍କ ମନ ଏ ଅବସ୍ଥାରେ ସମ୍ପୂର୍ଣ୍ଣ କାମନାଶୂନ୍ୟ ହେଲେ ବି ତାଙ୍କୁ ଗୋଟିଏ ଅଲୌକିକ ଶକ୍ତି ନିଜ ଇଚ୍ଛା ବିରୋଧରେ ଜୋର୍‌କରି ପଞ୍ଚେନ୍ଦ୍ରିୟ-ଗ୍ରାହ୍ୟ ବାହ୍ୟଜଗତକୁ ନେଇଯାଉଛି । ଅନୁଭବ କଲେ— "ବହୁଜନଙ୍କ ହିତ ପାଇଁ ଓ ବହୁ ଲୋକଙ୍କ ସୁଖ ପାଇଁ କାମ କରିବି— ଅପରୋକ୍ଷାନୁଭୂତିଲବ୍ଧ ସତ୍ୟ ପ୍ରଚାର କରିବି" — ଏହି ମହତୀ କାମନାର ସୂତ୍ର ଧରି ତାଙ୍କ ମନ ନିର୍ବିକଳ୍ପ ଅବସ୍ଥାରୁ ପ୍ରତ୍ୟାବୃତ୍ତ ହେଲା । ସେ ଅନୁଭବ କଲେ, ଜଗତ୍‌ର ଦୁଃଖ-ଦୈନ୍ୟ-ପପ୍ରୀଡ଼ିତ ମୋହଭ୍ରାନ୍ତ ଜୀବକୁଳଙ୍କୁ,

ନିଜେ ଜ୍ଞାନାମୃତରେ ପରିତୃପ୍ତ ହୋଇ, ଭକ୍ତିଜ୍ଞାନାମୃତ ପାନ କରାଇବା ନିମିତ୍ତ ଭାରତର ଅତୀତ-ଯୁଗର ମନ୍ତ୍ରଦ୍ରଷ୍ଟା ଋଷିମାନଙ୍କ ପରି ତାଙ୍କୁ ମଧ୍ୟ ମେଘ-ମନ୍ଦ୍ର ସ୍ୱରରେ ଡାକିବାକୁ ହେବ—

''ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ
ଆ ୟେ ଧାମାନି ଦିବ୍ୟାନି ତସ୍ଥୁଃ ।

x x x

ବେଦାହମେତଂ ପୁରୁଷଂ ମହାନ୍ତମ୍,
ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।
ତମେବ ବିଦିତ୍ୱାତି ମୃତ୍ୟୁମେତି,
ନାନ୍ୟ ପନ୍ଥା ବିଦ୍ୟତେଽୟନାୟ ।।''

ଆଜି ନରେନ୍ଦ୍ରଙ୍କ ହୃଦୟରୁ ସମସ୍ତ ଅଶାନ୍ତି ଓ ଆକାଙ୍‌କ୍ଷାର ଅବସାନ ହୋଇଛି; ବ୍ରହ୍ମବିଦ୍‌ଙ୍କ ପରି ଦିବ୍ୟଜ୍ୟୋତିଃ-ଉଦ୍ଭାସିତ ବଦନରେ ବ୍ରହ୍ମାନନ୍ଦ ପୁଲକିତ ଆପ୍ତକାମ ସନ୍ୟାସୀ ଆସି ଶ୍ରୀଗୁରୁଙ୍କ ଚରଣରେ ପ୍ରଣିପାତ କଲେ । ଠାକୁର ହସି ହସି କହିଲେ, ''ଏଥର ଚାବି ପଡ଼ି ରହିଲା, ଚାବି ମୋ ହାତରେ ରହିବ । କାମ ସରିଲେ ଖୋଲି ଦିଆଯିବ ।''

ସେଦିନ ନରେନ୍ଦ୍ରଗତ-ପ୍ରାଣ ବାଳକ ଭକ୍ତମାନଙ୍କ ଆନନ୍ଦ ଦେଖେ କିଏ ? ଅହର୍ନିଶ ଭଜନ ଗାନ ଚାଲିଲା । ନରେନ୍ଦ୍ର ଭାବୋନ୍ମତ୍ତ ହୋଇ 'ରାଧାକୃଷ୍ଣ', 'ସୀତାରାମ' ଓ 'ଚୈତନ୍ୟଲୀଳା' ବିଷୟକ ସଙ୍ଗୀତ ଗାଇ ଭକ୍ତବୃନ୍ଦଙ୍କ ହୃଦୟରେ ପୁଲକବହୁଳ ଉଦ୍ଦୀପନା ସୃଷ୍ଟି କରିବାରେ ଲାଗିଲେ । ଅନ୍ୟ ଦିଗରେ ଠାକୁର କାତର ହୋଇ ଜଗଜ୍ଜନନୀଙ୍କ ନିକଟରେ ପ୍ରାର୍ଥନା କଲେ, ''ମା, ନରେନ୍ଦ୍ରର ଅଦ୍ୱୈତ-ଅନୁଭୂତିକୁ ତୋ ମାୟାଶକ୍ତିଦ୍ୱାରା ଆବୃତ୍ତ କରି ରଖ, ମା ! ମୋର ତା' ଜରିଆରେ ଅନେକ କାମ କରିବାର ଅଛି ।''

## ନରେନ୍ଦ୍ରଙ୍କ ବିଷୟରେ ଠାକୁରଙ୍କ ଭବିଷ୍ୟତ-ବାଣୀ

ଯେଉଁ ସମସ୍ତ ଐଶୀଶକ୍ତିସମ୍ପନ୍ନ ମହାପୁରୁଷ ମାନବ-ଜାତିର କଲ୍ୟାଣ କାମନାରେ ନିଃସ୍ୱାର୍ଥଭାବେ ଆତ୍ମୋତ୍ସର୍ଗ କରି ଜଗଦ୍‌ବରେଣ୍ୟ ହୋଇଛନ୍ତି, ତାଙ୍କ ମଧ୍ୟରୁ ପ୍ରତ୍ୟେକଙ୍କର କିଛି ନା କିଛି 'ଅହଂତ୍ୱ'ର ଅହଙ୍କାର ଥିଲା । ତେଣୁ ଠାକୁର କହୁଥିଲେ, ''ଖାଦମିଶା ନ ହେଲେ ଶୁଦ୍ଧ ସୁନାରେ ଅଳଙ୍କାର ଗଠନ ହୋଇପାରେ ନାହିଁ ।'' ଅବଶ୍ୟ ଏ 'ଅହଂତ୍ୱ' କଞ୍ଚା 'ମୁଁ' ନୁହେଁ, ଏହା ପାଚିଲା 'ମୁଁ'—ମୁଁ ପ୍ରଭୁଙ୍କ ଦାସ—ତାଙ୍କ ଲୀଳାର ସହାୟକ ।

ନରେନ୍ଦ୍ରନାଥଙ୍କ ବିଷୟରେ ଠାକୁର ଯେଉଁସବୁ ରହସ୍ୟମୟ ଭବିଷ୍ୟତ୍‌ବାଣୀ କରିଥିଲେ, ତାହା ଏଥିପୂର୍ବରୁ ସ୍ଥାନେ ସ୍ଥାନେ ଉଲ୍ଲିଖିତ ହୋଇଛି । ଦିନେ ନରେନ୍ଦ୍ରଙ୍କୁ ଦେଖାଇ ଠାକୁର ଉପସ୍ଥିତ ବ୍ୟକ୍ତିମାନଙ୍କୁ କହିଲେ, ''ଏହି ଯେଉଁ ପିଲାଟିକୁ

ଦେଖୁଛ, ସେ ଜନ୍ମବେଳରୁ ବ୍ରହ୍ମଜ୍ଞାନୀ—ଏହାଙ୍କ ପରି ପିଲାମାନେ ନିତ୍ୟସିଦ୍ଧ । ଏମାନେ କେବେହେଲେ କାମିନୀ-କାଞ୍ଚନ-ମାୟାରେ ଆବଦ୍ଧ ହୁଅନ୍ତି ନାହିଁ ।'' ଆଉ କେତେବେଳେ 'ଶୁକଦେବ', କେତେବେଳେ ବା 'ଶଙ୍କର', 'ନାରାୟଣ ଋଷି' ଇତ୍ୟାଦି ଭିନ୍ନ ଭିନ୍ନ ନାମରେ ତାଙ୍କୁ ବର୍ଣ୍ଣନା କରୁଥିଲେ । ଠାକୁରଙ୍କର ଏହି ପରସ୍ପର-ବିରୁଦ୍ଧ ଉକ୍ତିଗୁଡ଼ିକ କ'ଣ ସାମୟିକ ସ୍ନେହର ଉଚ୍ଛ୍ୱାସ ? ସ୍ଥୂଳଭାବରେ ଦେଖିଲେ, ତାହା ହିଁ ଅନୁମାନ ହେଉଥିଲା; ସାଧାରଣ ମାନବ ଏ ବିଷୟର ସତ୍ୟତା ସମ୍ବନ୍ଧରେ ସନ୍ଦିହାନ ହେବା ବିଚିତ୍ର ନୁହେଁ । ଆଜନ୍ମ ସତ୍ୟବାଦୀ ଠାକୁର—ଯିଏ କି ପରିହାସ ଛଳରେ ମଧ୍ୟ କେବେ ମିଛ କହନ୍ତି ନାହିଁ—ଯିଏ ଜଗନ୍ମାତାଙ୍କ ପାଦତଳେ ସର୍ବସ୍ୱ ଉତ୍ସର୍ଗ କରିବାକୁ ଯାଇ, 'ଏଇ ନେ ମା ତୋ ଧର୍ମ' ପର୍ଯ୍ୟନ୍ତ କହି ଦେଇଥିଲେ, କିନ୍ତୁ 'ଏହି ନେ ମା ତୋ ସତ୍ୟ' ବୋଲି କେବେ କହିପାରି ନ ଥିଲେ—ସେ କ'ଣ ସାଧାରଣ ଲୋକଙ୍କ ପରି ସ୍ନେହରେ ମୁଗ୍ଧ ହୋଇ ପ୍ରିୟତମ ଶିଷ୍ୟଙ୍କୁ ଲୋକଚକ୍ଷୁରେ ବଡ଼ କରାଇବା ଲାଗି ଏପରି କଥା କହୁଥିଲେ ? ତାହା କିପରି ଅବା ସମ୍ଭବ ? ''ଅଭିମାନଂ ସୁରାପାନଂ, ଗୌରବଂ ଘୋରରୌରବଂ, ପ୍ରତିଷ୍ଠା ଶୂକରୀ-ବିଷ୍ଠା''—ଏହା ହିଁ ତାଙ୍କର ମୂଳମନ୍ତ୍ର ଥିଲା । ଏ ସମ୍ବନ୍ଧରେ ପୂଜନୀୟ ଶ୍ରୀମତ୍ ଯୋଗାନନ୍ଦ ସ୍ୱାମୀଜୀ କହିଛନ୍ତି—''ସ୍ୱାମୀଜୀଙ୍କ ମଧ୍ୟରେ ଋଷିଙ୍କ ସମାଧି-ତୃଷ୍ଣା, ଶୁକଙ୍କର ମାୟାଶୂନ୍ୟତା, ଶଙ୍କରଙ୍କ ଜ୍ଞାନ ଓ ନାରଦଙ୍କ ଭକ୍ତି ଏକତ୍ର ମିଳିତ ହୋଇଥିଲା; ସେହି ହେତୁ ଠାକୁର ତାଙ୍କର ଭିନ୍ନ ଭିନ୍ନ ଭାବ ଲକ୍ଷ୍ୟ କରି ଥରକୁ ଥର ଗୋଟିଏ ଗୋଟିଏ ନାମରେ ଅଭିହିତ କରୁଥିଲେ ।'' ଏହି ମୀମାଂସା ହିଁ ସର୍ବାପେକ୍ଷା ଯୁକ୍ତିଯୁକ୍ତ ଓ ସମୀଚୀନ ମନେହୁଏ ।

## ଶ୍ରୀଶ୍ରୀଠାକୁରଙ୍କ ଲୀଳା-ସମ୍ବରଣ ଓ ଅନ୍ତିମ ବାଣୀ

୧୮୮୬ ଖ୍ରୀଷ୍ଟାବ୍ଦ ଜୁଲାଇ ମାସର ଶେଷଭାଗ । ଠାକୁରଙ୍କ ଗଳରୋଗ କ୍ରମଶଃ ଭୀଷଣ ହେଲା । ମୃଦୁସ୍ୱରରେ ଫିସ୍ ଫିସ୍ କରି କୌଣସି ପ୍ରକାରେ ଦୁଇଚାରିପଦ କହି ପାରୁଥାନ୍ତି; ଆହାର ଜଳବାର୍ଲି; ତାହା ମଧ୍ୟ ଗିଳି ପାରୁ ନ ଥାନ୍ତି । ତଥାପି ମହାପୁରୁଷଙ୍କ କୃପା ଶେଷ ହୋଇ ନ ଥାଏ; ସବାସର୍ବଦା ବାଳକ-ଭକ୍ତମାନଙ୍କୁ ଉପଦେଶ ଦେଉଥାନ୍ତି; କେତେବେଳେ ଅବା ନରେନ୍ଦ୍ରଙ୍କୁ ଡାକି କହୁଥାନ୍ତି, 'ନରେନ, ମୋର ଏହି ପିଲାଏ ରହିଲେ; ତୁ ସମସ୍ତଙ୍କ ଭିତରେ ବୁଦ୍ଧିମାନ୍ ଓ ଶକ୍ତିମାନ; ଏମାନଙ୍କୁ ରକ୍ଷା କରିବୁ ଓ ସତ୍‌ପଥରେ ଚଳାଇବୁ —ମୁଁ ଶୀଘ୍ର ଦେହ ତ୍ୟାଗ କରିବି ।''

ଆଉ ଦିନେ ନରେନ୍ଦ୍ରଙ୍କୁ ସଜଳ-ନୟନରେ ଚାହିଁ କହିଲେ, ''ବାବା ! ଆଜି ତୋତେ ସର୍ବସ୍ୱ ଦେଇ ଫକୀର ହେଲି ।'' ନରେନ୍ଦ୍ର ବୁଝିଲେ ଠାକୁରଙ୍କର ଲୀଳାବସାନ ସମୟ ଆସନ୍ନପ୍ରାୟ; ସେ ପିଲାଙ୍କ ପରି କାନ୍ଦିବାକୁ ଲାଗିଲେ—ତାଙ୍କ

ବିରହରେ କିପିରି ଜୀବନଧାରଣ କରିବେ ଭାବି ଆକୁଳ ହେଲେ । ଭାବାବେଗ ଦମନ କରିବାକୁ ଅସମର୍ଥ ହୋଇ ନରେନ୍ଦ୍ରନାଥ କକ୍ଷ ପରିତ୍ୟାଗ କଲେ ।

ଅବଶେଷରେ ସତକୁ ସତ ସେହି ଭୀଷଣ ଦିବସ ଉପସ୍ଥିତ ହେଲା — ୧୮୮୬ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସ ଷୋହଳ ତାରିଖ ରବିବାର । ମହାପୁରୁଷଙ୍କ ଶଯ୍ୟାକୁ ଘେରି ଭକ୍ତ ଶିଷ୍ୟବୃନ୍ଦ ଶୋକଭାରାକ୍ରାନ୍ତ ସ୍ତମ୍ଭିତ ହୃଦୟରେ ମହାସମାଧିର ପ୍ରତୀକ୍ଷାରେ ଥାଆନ୍ତି । ସେମାନଙ୍କ ବ୍ୟଥିତ ଅନ୍ତରରେ କି ଭାବର ପ୍ରବାହ ଖେଳୁଥିଲା ସେମାନେ ହିଁ ଜାଣନ୍ତି ।

ନରେନ୍ଦ୍ରନାଥ ଭାବୁଥିଲେ ରାମଚନ୍ଦ୍ର, ଗିରିଶ ପ୍ରମୁଖ ଭକ୍ତଗଣ ଠାକୁରଙ୍କୁ ଯେ ସ୍ୱୟଂ ଭଗବାନ ବୋଲି ବିଶ୍ୱାସ କରନ୍ତି, ତାହା କ'ଣ ସତ୍ୟ ? ଏହି ଗୋଟିଏ ସମସ୍ୟା ଏ ପର୍ଯ୍ୟନ୍ତ ତ ଅମୀମାଂସିତ ହୋଇ ରହିଛି । ବର୍ତ୍ତମାନ ଯଦି ଠାକୁର ନିଜେ ଏ ସମସ୍ୟାର ମୀମାଂସା କରି ଦିଅନ୍ତି, ତାହାହେଲେ ବିଶ୍ୱାସ କରିବି, ନଚେତ୍ ନୁହେଁ । ଯେଉଁ ଶକ୍ତି ଯୁଗେ ଯୁଗେ ଧର୍ମସଂସ୍ଥାପନ ଲାଗି କରୁଣାରେ ଅବତୀର୍ଣ୍ଣ ହୁଅନ୍ତି, ଶ୍ରୀରାମକୃଷ୍ଣ କ'ଣ ତାଙ୍କର ସମଷ୍ଟିସ୍ୱରୂପ ? ସତରେ କ'ଣ ଶ୍ରୀରାମକୃଷ୍ଣ ଯୁଗଧର୍ମ ପ୍ରବର୍ତ୍ତକ ଅବତାର-ପୁରୁଷ ? ଅନ୍ତର୍ଯ୍ୟାମୀ ଭଗବାନ ଚକ୍ଷୁ ଖୋଲି ନରେନ୍ଦ୍ରଙ୍କୁ ପୂର୍ଣ୍ଣ ଦୃଷ୍ଟିରେ ଚାହିଁ କହିଲେ, ''କ'ଣ ନରେନ, ଏ ପର୍ଯ୍ୟନ୍ତ ବି ତୋର ବିଶ୍ୱାସ ହୋଇନାହିଁ ? ଯେ ରାମ, ଯେ କୃଷ୍ଣ, ସେ ହିଁ ଏଥର ଏକାଧାରରେ ଶ୍ରୀରାମକୃଷ୍ଣ କିନ୍ତୁ ତୋ' ବେଦାନ୍ତ ଦିଗରୁ ନୁହେଁ ।''

ସହସା ଯଦି କକ୍ଷ ମଧ୍ୟରେ ବଜ୍ରପତନ ହୋଇଥାନ୍ତା, ତାହାହେଲେ ନରେନ୍ଦ୍ର ବୋଧହୁଏ ଏତେଦୂର ଚମତ୍କୃତ ହୋଇ ନ ଥାନ୍ତେ !

କ୍ରମେ ବ୍ରାହ୍ମମୂହୂର୍ତ୍ତ ସମାଗତ ହେବାମାତ୍ରକେ ଲୀଳାମୟ ଦୀନଙ୍କ ଠାକୁର ଶ୍ରୀଶ୍ରୀରାମକୃଷ୍ଣ ମହାସମାଧି ଯୋଗରେ ନଶ୍ୱର ଦେହ ତ୍ୟାଗ କଲେ ।

ତାଙ୍କର ସେହି ଅନ୍ତିମ ବାଣୀ — ନରେନ୍ଦ୍ରଙ୍କ ହୃଦୟରେ ଦୃଢ଼ଭାବରେ ଅଙ୍କିତ ହୋଇ ରହିଲା । ସେହିହେତୁ ଅଦ୍ୱୈତବାଦୀ ସନ୍ନ୍ୟାସୀ ଜଳଦ-ନିର୍ଘୋଷରେ କହିବାର ଶୁଣାଯାଇଥିଲା —

''ପ୍ରାପ୍ତଂ ଯଦ୍‌ବୈ ତ୍ୱନାଦିନିଧନଂ ବେଦୋଦଧିଂ ମଥିତ୍ୱା
ଦତ୍ତଂ ଯସ୍ୟ ପ୍ରକରଣେ ହରିହରବ୍ରହ୍ମାଦି ଦେବୈର୍ବଲମ୍ ।
ପୂର୍ଣ୍ଣଂ ଯତ୍ତୁ ପ୍ରାଣସାରୈର୍ଭୌ ମନାରାୟଣାନାମ୍
ରାମକୃଷ୍ଣସ୍ତନୁଂ ଧତ୍ତେ ତତ୍‌ପୂର୍ଣ୍ଣ-ପାତ୍ରମିଦଂ ଭୋଃ ।।''

# ଚତୁର୍ଥ ଅଧ୍ୟାୟ

# ପରିବ୍ରାଜକ ବିବେକାନନ୍ଦ

## (୧୮୮୬-୧୮୯୨)

କ୍ୱଚିନ୍ମୂଢ଼ାବିଦ୍ୱାନ୍ କ୍ୱଚିଦପି ମହାରାଜବିଭବଃ
କ୍ୱଚିଦ୍ ଭ୍ରାନ୍ତଃ ସୌମଃ କ୍ୱଚିଦଜଗରାଚାରକଲିତଃ ।
କ୍ୱଚିତ୍ ପ୍ରାତୀଭୂତଃ କ୍ୱଚିଦବସତଃ କ୍ୱାପ୍ୟବିଦିତ
ଶ୍ଚରତ୍ୟେବଂ ପ୍ରାଜ୍ଞଃ ସତତ-ପରମାନନ୍ଦ-ସୁଖିତଃ ।। (ବିବେକଚୂଡ଼ାମଣି)

## କାଶୀପୁରର ଉଦ୍ୟାନ ତ୍ୟାଗ

ଶ୍ରୀଶ୍ରୀରାମକୃଷ୍ଣଦେବଙ୍କ ଅନ୍ତର୍ଦ୍ଧାନ ପରେ ତାଙ୍କ ଶିଷ୍ୟ ଓ ଭକ୍ତମଣ୍ଡଳୀ କିଂକର୍ତ୍ତବ୍ୟବିମୂଢ଼ବତ୍ ମହାସମସ୍ୟାରେ ନିପତିତ ହେଲେ । ନିର୍ଦ୍ଧାରିତ ଚୁକ୍ତିର ଦିନ ଅତିବାହିତ ହେବାର କେତେଦିନ ପରେ କାଶୀପୁରର ଉଦ୍ୟାନଗୃହ ଛାଡ଼ିଦେବାକୁ ପଡ଼ିଲା । ଠାକୁରଙ୍କ ଚିକିତ୍ସା ନିମିତ୍ତ ଗୃହୀ ଭକ୍ତଗଣ ଯେଉଁ ମାସିକ ସାହାଯ୍ୟ ଦେଉଥିଲେ, ତାହା ମଧ୍ୟ ବନ୍ଦ ହୋଇଗଲା । ସଂସାରାନଭିଜ୍ଞ ବାଳକ ସନ୍ନ୍ୟାସୀଗଣ ଆଶ୍ରୟହୀନ ହୋଇ ଏଠି ସେଠି ଘୁରି ବୁଲିବେ—ଏହା କେତେକ ଗୃହୀ ଭକ୍ତଙ୍କ ପସନ୍ଦକୁ ଆସିଲା ନାହିଁ । ଗୁରୁଗତପ୍ରାଣ ଉଦାରହୃଦୟ ବାବୁ ସୁରେନ୍ଦ୍ରନାଥ ମିତ୍ରଙ୍କ ସାହାଯ୍ୟରେ ବରାହନଗରରେ ଗୋଟିଏ ଘର ଭଡ଼ାରେ ନିଆହେଲା । ଶ୍ରୀରାମକୃଷ୍ଣଙ୍କ ଦେହାବଶିଷ୍ଟ ଭସ୍ମାସ୍ଥିପୂର୍ଣ୍ଣ ତାମ୍ରକଳସୀ ମସ୍ତକରେ ନେଇ ବାଳ-ସନ୍ନ୍ୟାସୀଗଣ ଶୋକାଶ୍ରୁ ତ୍ୟାଗ କରିକରି କାଶୀପୁରର ଉଦ୍ୟାନ-ଗୃହ ତ୍ୟାଗ କଲେ ।

ଠାକୁରଙ୍କ ସେବାକୁ ଉପଲକ୍ଷ କରି ଦୀର୍ଘକାଳ ଏକତ୍ର ବାସ, ସାଧନଭଜନ ଇତ୍ୟାଦିଦ୍ୱାରା ସନ୍ନ୍ୟାସୀଗଣ ପରସ୍ପର ଯେଉଁ ପ୍ରୀତି-ବନ୍ଧନରେ ଆବଦ୍ଧ ହୋଇଥିଲେ, ତାହା ଛିନ୍ନ ହେବା କଥା ନୁହେଁ । ବିଶେଷରେ ଶ୍ରୀଗୁରୁଙ୍କ ଆଦର୍ଶ ରକ୍ଷା କରିବା ନିମିତ୍ତ ନରେନ୍ଦ୍ର ସଂଘବଦ୍ଧ ହୋଇ ବିଶେଷ ପ୍ରୟୋଜନ ହେତୁ ବାଳକମାନଙ୍କୁ ସର୍ବଦା ଉତ୍ସାହ ପ୍ରଦାନ କରିବାରେ ଲାଗିଲେ । କେହି କେହି ଗୃହୀ ଭକ୍ତ ସେମାନଙ୍କୁ ପୁନରାୟ ସଂସାରକୁ ଫେରିଯିବା ଲାଗି ପରାମର୍ଶ ଦେଲେ । କେତେଜଣ ବାଳକ ପରୀକ୍ଷା ଇତ୍ୟାଦି ପାଇଁ ଅଭିଭାବକମାନଙ୍କ ଅନୁରୋଧରେ ପୁନରାୟ ଘରକୁ ଫେରିଯିବାକୁ ବାଧ୍ୟ ହେଲେ । ନରେନ୍ଦ୍ରନାଥ ସେତେବେଳ ପର୍ଯ୍ୟନ୍ତ ସାଂସାରିକ ବିଷୟରେ ସୁବନ୍ଦୋବସ୍ତ କରି ପାରି ନ ଥିଲେ; ତେଣୁ ସର୍ବଦା ମଠରେ ରହିବା ସୁବିଧା ତାଙ୍କୁ ମିଳୁ ନ ଥିଲା । ତାଙ୍କ ଘରବାଡ଼ି ମୋକଦ୍ଦମା ସେପର୍ଯ୍ୟନ୍ତ ସରି ନ ଥିଲା; ସେହି ହେତୁ ସେ ବାଧ୍ୟ ହୋଇ ନିଜ ଘରେ ରହୁଥିଲେ । ନରେନ୍ଦ୍ର ଅନୁପସ୍ଥିତ ଥିବାବେଳେ ଅଭିଭାବକମାନେ ନିଜ ନିଜ ବାଳକମାନଙ୍କୁ ନରେନ୍ଦ୍ରଙ୍କ

ଉଦାହରଣ ଦେଇ ସଂସାରକୁ ଫେରିଯିବା ନିମିତ୍ତ ତାଗିଦ୍ କରୁଥିଲେ । ନରେନ୍ଦ୍ର ନିଜେ ସଂସାର ତତ୍ତ୍ୱାବଧାନ କରୁଥାଆନ୍ତି; ତେଣୁ ଜୋର୍ ଦେଇ ସେ ପ୍ରତିବାଦ କରିପାରୁ ନ ଥାନ୍ତି ।

## ଶ୍ରୀରାମକୃଷ୍ଣଙ୍କ ଦେହାବଶେଷ ଯୋଗୁଁ ମନାନ୍ତର

ଇତିମଧ୍ୟରେ ଗୋଟିଏ ନୂତନ ବିପଦ ପହଞ୍ଚିଲା । ମହାତ୍ମା ରାମଚନ୍ଦ୍ର ଦତ୍ତ ପ୍ରମୁଖ କେତେଜଣ ଭକ୍ତ ପ୍ରସ୍ତାବ ଦେଲେ ଯେ, "ତୁମ୍ଭେମାନେ ସାଧୁ ସନ୍ନ୍ୟାସୀ ମଣିଷ କେତେବେଳେ କେଉଁଠି ରହିବ, ତାର ସ୍ଥିରତା ନାହିଁ । ଶ୍ରୀଗୁରୁଙ୍କ ଦେହାବଶେଷ ଆମ୍ଭମାନଙ୍କୁ ଦେଇଦିଅ; ଆମେ ତାହାକୁ ଯଥାସ୍ଥାନରେ ରଖି, ତା ଉପରେ ମନ୍ଦିର ନିର୍ମାଣ କରିବୁ ।" ରାମବାବୁ ନିଜ କାଁକୁଡ଼ଗାଛିରେ ଥିବା ଉଦ୍ୟାନ-ଗୃହଟିକୁ ଶ୍ରୀଗୁରୁଙ୍କ ଚରଣତଳେ ଉତ୍ସର୍ଗ କରିବା ଲାଗି କୃତ-ସଂକଳ୍ପ ହେଲେ; କିନ୍ତୁ ବାଳକ ଭକ୍ତଗଣ କୌଣସିମତେ ଶ୍ରୀଗୁରୁଙ୍କ ଦେହାବଶେଷକୁ ଗୃହୀ ଭକ୍ତଙ୍କ ହସ୍ତରେ ପ୍ରଦାନ କରିବାକୁ ସମ୍ମତ ହେଲେ ନାହିଁ । ଫଳରେ ତୁମୁଳ ଦ୍ୱନ୍ଦ ଉପସ୍ଥିତ ହେଲା । ଶଶୀ ଓ ନିରଞ୍ଜନ ଏହି ତାମ୍ରାଧାରର ରକ୍ଷକ ଥିଲେ, ସେମାନେ କୌଣସି ପ୍ରକାରେ ଏହାକୁ ହସ୍ତାନ୍ତର କରିବାକୁ ରାଜି ହେଲେ ନାହିଁ । ରାମବାବୁ ମଧ୍ୟ ଏହାକୁ ନେଇଯିବା ଲାଗି ସଦଳବଳେ ଆପ୍ରାଣ ଚେଷ୍ଟା ଚଳାଇଲେ । ଆସନ୍ନ ଭ୍ରାତୃବିଚ୍ଛେଦର ସମ୍ଭାବନା ଦେଖି ବୁଦ୍ଧିମାନ ନରେନ୍ଦ୍ର ଗୁରୁଭ୍ରାତାମାନଙ୍କୁ ଡାକି କହିଲେ, "ମହାପୁରୁଷମାନଙ୍କ ଦେହାବଶେଷ ବିଷୟରେ ଶିଷ୍ୟମାନଙ୍କ ମଧ୍ୟରେ ବିବାଦ ଧର୍ମଜଗତରେ ବହୁବାର ଘଟିଛି ସତ୍ୟ; କିନ୍ତୁ ଏହା ବୋଲି ସେହି ପନ୍ଥା ଅନୁସରଣ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ନୁହେଁ । ଆମ୍ଭେମାନେ ସନ୍ନ୍ୟାସୀ; ଠାକୁରଙ୍କର ପବିତ୍ରତମ ଜୀବନରୁ ଆମେ ଯେଉଁ ମହାନ୍ ଆଦର୍ଶ ପାଇଛେ, ସେହି ଆଦର୍ଶ ସମ୍ମୁଖରେ ରଖି ଜୀବନ ଗଠନ କରିବା ଆମ୍ଭମାନଙ୍କ ପ୍ରଧାନ କର୍ତ୍ତବ୍ୟ ଏବଂ ଏହା ହିଁ ଆମ୍ଭମାନଙ୍କର ସର୍ବଶ୍ରେଷ୍ଠ ସମ୍ପଦ । ଶ୍ରୀରାମକୃଷ୍ଣଙ୍କ ଶିଷ୍ୟମାନେ ତାଙ୍କ ଦେହାବଶେଷ ପାଇଁ କଳହ କରୁଛନ୍ତି, ଏଭଳି ଗୋଟିଏ ଲଜ୍ଜାକର ବ୍ୟାପାରର ସ୍ମୃତି ଭବିଷ୍ୟତ ବଂଶଧରଗଣଙ୍କ ଲାଗି ରଖିଯିବା ଅତୀବ ଅସଙ୍ଗତ; ତେଣୁ ସେମାନଙ୍କ ଇଚ୍ଛାମୁତାବକ କାମ ହେଉ । ଆମ୍ଭେମାନେ ଯଦି ତାଙ୍କର ଆଦର୍ଶକୁ କାର୍ଯ୍ୟରେ ପରିଣତ କରିପାରିବା, ତାହାହେଲେ ଦେଖିବ, ସମଗ୍ର ଜଗତ୍ ଆମ ପାଦତଳକୁ ଆସିବ ।"

ଶଶୀ ମହାରାଜ ନରେନ୍ଦ୍ରଙ୍କ କଥାରେ ପ୍ରତିବାଦ କଲେ ନାହିଁ । ଦେହାବଶିଷ୍ଟ ଭସ୍ମ ଓ ଅସ୍ଥିର କିୟଦଂଶ ରଖି ଅବଶିଷ୍ଟ ଭାଗ ତାମ୍ର କଳସୀ ସହିତ ଅର୍ପଣ କରିଦେବାକୁ ରାଜି ହେଲେ । ଅବଶେଷରେ ଶୁଭ ଦିନ ଦେଖି ଶ୍ରୀରାମକୃଷ୍ଣ ଗୃହୀ ଓ ସନ୍ନ୍ୟାସୀ ଭକ୍ତଗଣ ଏକତ୍ର ମିଳିତ ହୋଇ କାଁକୁଡ଼ଗାଛି 'ଯୋଗୋଦ୍ୟାନ'ରେ ପବିତ୍ର ତାମ୍ରାଧାରକୁ ସ୍ଥାପନ କଲେ । ଗୁରୁଭ୍ରାତାମାନଙ୍କ ମଧ୍ୟରେ ଯେଉଁ ମନୋମାଳିନ୍ୟର

ସୂତ୍ରପାତ ହୋଇଥିଲା, ପ୍ରଶଂସନୀୟ ଉଦାରତା ସହକାରେ ନରେନ୍ଦ୍ରନାଥ ତାହାର ଅଙ୍କୁର ନଷ୍ଟ କରିଦେଲେ ।

## ବରାହନଗର ମଠ

ଏହିପରି ଗୋଟିଏ ଗୁରୁତର ବିବାଦ ନିଷ୍ପତ୍ତି କରିଦେଇ ନରେନ୍ଦ୍ରନାଥ କିଞ୍ଚିତ୍ ନିଶ୍ଚିନ୍ତ ହେଲେ । ନରେନ୍ଦ୍ରନାଥ ସାଂସାରିକ ଅଭାବ-ଅଭିଯୋଗ ନିମିତ୍ତ ବାଧ୍ୟ ହୋଇ ଘରେ ରହୁଥିଲେ ସିନା; କିନ୍ତୁ ରାତ୍ରିରେ, ଏପରି କି ଅନେକ ସମୟରେ ଦିନବେଳା ମଧ୍ୟ ବରାହନଗର ମଠକୁ ଯାଇ କାଳ କାଟୁଥିଲେ । କଲିକତାରେ ନରେନ୍ଦ୍ରନାଥ କେବଳ ସାଂସାରିକ ବ୍ୟାପାରରେ ଲିପ୍ତ ନ ଥିଲେ; ଯେଉଁସବୁ ସନ୍ନ୍ୟାସୀ ବାଳକ ଅଭିଭାବକଗଣଙ୍କ ତାଡ଼ନା ଯୋଗୁଁ ଘରକୁ ଯାଇ ଆତ୍ମୀୟସ୍ୱଜନମାନଙ୍କ ସହିତ ବାସ କରୁଥିଲେ ଏବଂ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲେ, ଅବସର ପାଇଲେ ସେମାନଙ୍କ ସହିତ ମଧ୍ୟ ଦେଖା କରୁଥିଲେ ଏବଂ ସଂସାରରୁ ସବୁପ୍ରକାର ବନ୍ଧନ ଛିନ୍ନ କରିବା ଲାଗି ସେମାନଙ୍କୁ ଉତ୍ତେଜିତ କରୁଥିଲେ । ନରେନ୍ଦ୍ରନାଥଙ୍କ ଦୌରାତ୍ମ୍ୟରେ ଅଭିଭାବକଗଣ ଚିନ୍ତିତ ଓ ଅସ୍ଥିର ହୋଇ ପଡ଼ିଲେ । ଭୟପ୍ରଦର୍ଶନ, ତାଡ଼ନା ଇତ୍ୟାଦିଦ୍ୱାରା ସେମାନେ ନରେନ୍ଦ୍ରନାଥଙ୍କୁ ନିରସ୍ତ କରିପାରିଲେ ନାହିଁ । ତାଙ୍କ ଉତ୍ସାହ ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ଯୁବକଗଣ ପୁନରାୟ ଜଣଜଣ ହୋଇ ମଠକୁ ଫେରିଆସିଲେ । ନରେନ୍ଦ୍ରନାଥ ମଧ୍ୟ ଯଥାସମ୍ଭବ ତତ୍ପରତା ସହିତ ସାଂସାରିକ ବନ୍ଦୋବସ୍ତ କରିବାକୁ ଲାଗିଲେ । ଘରବାଡ଼ି ବିଷୟରେ ତାଙ୍କ ଜ୍ଞାତିଗଣ ଯେଉଁ ମୋକଦ୍ଦମା କରିଥିଲେ, ସେ ସମ୍ବନ୍ଧରେ ଆଗରୁ ବର୍ଣ୍ଣନା ହୋଇଛି; ଯାହା ହେଉ ଉକ୍ତ ମୋକଦ୍ଦମା ଅପୀଲରେ ନରେନ୍ଦ୍ରନାଥ ଜୟଲାଭ କଲେ । ଏହାପରେ ଡିସେମ୍ବର ମାସ ପ୍ରଥମ ଭାଗରେ ସେ ସଂସାର ସହିତ ସମସ୍ତ ବନ୍ଧନଛିନ୍ନ କରି ସ୍ଥାୟୀ ଭାବରେ ମଠକୁ ଆସି ବାସ କଲେ । ବଳରାମ ବସୁ, ନାଟ୍ୟସମ୍ରାଟ୍ ଗିରିଶଚନ୍ଦ୍ର ଘୋଷ, 'ଶ୍ରୀଶ୍ରୀରାମକୃଷ୍ଣ କଥାମୃତ'-ପ୍ରଣେତା ମହେନ୍ଦ୍ରନାଥ ଗୁପ୍ତ ଓ ସର୍ବୋପରି ସୁରେନ୍ଦ୍ରନାଥ ମିତ୍ର ମହାଶୟ ପ୍ରାଣପଣେ ତରୁଣ ସନ୍ନ୍ୟାସୀମାନଙ୍କୁ ସାହାଯ୍ୟ ଓ ଉତ୍ସାହ ପ୍ରଦାନ କରିବାକୁ ଲାଗିଲେ ।

ଆହାର ନାହିଁ, ନିଦ୍ରା ନାହିଁ—ସର୍ବପ୍ରକାର ଦୈହିକ ସ୍ୱାଚ୍ଛନ୍ଦ୍ୟ ପ୍ରତି ଭ୍ରୂକ୍ଷେପହୀନ ଦିବ୍ୟଭାବରେ ବିଭୋର କୁମାର ସନ୍ନ୍ୟାସୀଗଣ ଶ୍ରୀଗୁରୁଙ୍କ ପବିତ୍ର ଚରିତ୍ର ଓ ଉପଦେଶର ଆଲୋଚନା, ଦର୍ଶନଶାସ୍ତ୍ର, ବେଦାନ୍ତ, ପୁରାଣ, ଭାଗବତ ପାଠ, ଧ୍ୟାନ, ଜପ ଓ କଠୋର ତପସ୍ୟା ଇତ୍ୟାଦିରେ ରତ ରହିଲେ । ନରେନ୍ଦ୍ରନାଥ—ଶ୍ରୀଗୁରୁଙ୍କ ଅନ୍ତର୍ଦ୍ଧାନ ଯୋଗୁଁ ବ୍ୟଥିତ ଭକ୍ତଗଣଙ୍କର ଏକମାତ୍ର ଆଶା-ଭରସାର ସ୍ଥଳ ।

ଧନ୍ୟ ଗୁରୁଭକ୍ତିର ଜୀବନ୍ତ ଆଦର୍ଶ ଶ୍ରୀମତ୍ ସ୍ୱାମୀ ରାମକୃଷ୍ଣାନନ୍ଦ (ଶଶୀ) ! ଯେ ସବୁପ୍ରକାର କାର୍ଯ୍ୟ ପରିତ୍ୟାଗ କରି କେବଳ ମାତ୍ର ଠାକୁରଙ୍କର ପୂଜା, ଆରତି

ଓ ଗୁରୁଭ୍ରାତୃଗଣଙ୍କ ସେବାକାର୍ଯ୍ୟରେ ଜୀବନ ଉତ୍ସର୍ଗ କରିଥିଲେ ! ନବ ପ୍ରତିଷ୍ଠିତ ମଠର ମାତା, ପିତା, ରକ୍ଷକ, ଭୃତ୍ୟ, ପାଚକ—ସବୁ ଏକାଧାରରେ ଥିଲେ ଶଶୀ ମହାରାଜ ! କେତେବେଳେ ଧର୍ମାଲୋଚନାରେ ମଗ୍ନ ଭ୍ରାତୃଗଣଙ୍କୁ ଭୟ ଦେଖାଇ ଆହାର କରିବାକୁ ବାଧ୍ୟ କରୁଛନ୍ତି, ପୁଣି କ୍ରମାଗତ ରାତ୍ରିଜାଗରଣରତ ଧ୍ୟାନସ୍ଥ କୌଣସି ସନ୍ନ୍ୟାସୀଙ୍କୁ ବଳପୂର୍ବକ ଧରି ଆଣି ଶଯ୍ୟାରେ ଶୟନ କରାଇ ଦେଉଛନ୍ତି । ସେ ଯଦି ପ୍ରତ୍ୟେକଙ୍କ ପ୍ରତି ଏହିପରି ଲକ୍ଷ୍ୟ ରଖି ନଥାନ୍ତେ, ତାହାହେଲେ ଯେଉଁସବୁ ମହାପୁରୁଷଙ୍କର ନିଷ୍କାମ କର୍ମ, ଅକ୍ଲାନ୍ତ ଜନହିତୈଷୀତ୍ୱ ଓ ଅପୂର୍ବ ତ୍ୟାଗଶକ୍ତି ଯୋଗୁଁ ଆଜି ଜଗତ୍ ଶ୍ରୀରାମକୃଷ୍ଣଙ୍କ ମହିମା ଉପଲବ୍ଧି କରିବାକୁ ସକ୍ଷମ ହୋଇଛି, ସେମାନଙ୍କ ମଧ୍ୟରୁ ଅନେକଙ୍କର କଠୋର ତପସ୍ୟା ହେତୁ ଶରୀରପାତ ହୋଇଯାଇଥାନ୍ତା ।

ପ୍ରମତ୍ତ ସିଂହପରି ଅଶାନ୍ତ ନରେନ୍ଦ୍ରନାଥଙ୍କର ବିନ୍ଦୁମାତ୍ର ଅବସର ନ ଥାଏ । ବ୍ରାହ୍ମମୁହୂର୍ତ୍ତରେ ଶଯ୍ୟାତ୍ୟାଗ କରି ସେ ଜଳଦ-ମନ୍ଦ୍ର ସ୍ୱରରେ ଗୁରୁଭାତ୍ରାଗଣଙ୍କୁ ଆହ୍ୱାନ କରନ୍ତି, "ହେ ଅମୃତର ସନ୍ତାନଗଣ ! ଅମୃତ ପାନ କରିବା ନିମିତ୍ତ ଜାଗ୍ରତ ହୁଅ !" ଧ୍ୟାନ, ଜପ ଆଦି ସମାପ୍ତ କରି ସେମାନେ ସମସ୍ତେ 'ଦାନା-ଘରେ' ସମବେତ ହୁଅନ୍ତି । ନରେନ୍ଦ୍ରନାଥ କୌଣସି ଦିନ ଗୀତା, ଅନ୍ୟ କୌଣସି ଦିନ ଟମାସ୍, ଏ. କେମ୍ପିସଙ୍କ 'ଈଶାନୁସରଣ' (Imitation of the Christ) ପାଠ କରନ୍ତି । ନରେନ୍ଦ୍ର ଯେତେବେଳେ ଭାବୋନ୍ମତ୍ତ ହୋଇ ଗର୍ଜନ କରି ଉଠନ୍ତି—

"କ୍ଲୈବ୍ୟଂ ମା ସ୍ମ ଗମଃ ପାର୍ଥ ନୈତତ୍ତ୍ୱୟ୍ୟୁପପଦ୍ୟତେ ।
କ୍ଷୁଦ୍ରଂ ହୃଦୟଦୌର୍ବଲ୍ୟଂ ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍ତପ ।"

ସେତେବେଳେ ତରୁଣ ସନ୍ନ୍ୟାସୀଗଣଙ୍କ ତପୋମାର୍ଜିତ ଚିତ୍ତଦର୍ପଣରେ ସୁଦୂର ଅତୀତର ଏକ ମହିମାମୟ ଦୃଶ୍ୟ ଉଦ୍ଭାସିତ ହୋଇ ଉଠୁଥିଲା; ସେମାନେ ଯେପରି ମାନସନେତ୍ରରେ ଦେଖି ପାରୁଥିଲେ, ସାକ୍ଷାତ୍ ଗୀତାମୂର୍ତ୍ତି ଭଗବାନ ଶ୍ରୀକୃଷ୍ଣ ଶାନ୍ତୋଜ୍ଜ୍ୱଳନେତ୍ରରେ ପ୍ରଶାନ୍ତ ଦୃଢ଼ତା ସହିତ କର୍ତ୍ତବ୍ୟଭ୍ରଷ୍ଟ ମୋହଭ୍ରାନ୍ତ ସବ୍ୟସାଚୀଙ୍କୁ ମେଘ-ଗମ୍ଭୀର ସ୍ୱରରେ ନିଜ କର୍ତ୍ତବ୍ୟପଥ ବାଛି ନେବା ଲାଗି ମୃଦୁ ଭର୍ତ୍ସନା କରୁଥିଲେ । ସେତେବେଳେ ସେମାନଙ୍କ ମୁଗ୍ଧ ମନ ବାହ୍ୟଜଗତର ଅସ୍ତିତ୍ୱ ସମ୍ବନ୍ଧରେ ବିସ୍ମୃତ ହେଉଥିଲା—କେବଳ ଗୋଟିଏ ଅଗାଧ ବିଶ୍ୱାସ, ମଧୁର ଭକ୍ତିର କୋମଳ ସ୍ପର୍ଶ ସେମାନଙ୍କର ଉନ୍ମୁଖ ଆଗ୍ରହପୂର୍ଣ୍ଣ ହୃଦୟକୁ ସ୍ପନ୍ଦିତ କରି ରଖୁଥିଲା ।

କେତେବେଳେ ବା ନରେନ୍ଦ୍ରନାଥ 'କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ' ମନ୍ତ୍ରରେ ଗୁରୁ ଭ୍ରାତାଗଣଙ୍କୁ ଅନୁପ୍ରାଣିତ କରି ଆଦର୍ଶ କର୍ମଯୋଗୀଙ୍କ ପରି ବିଶ୍ୱମାନବର କଲ୍ୟାଣଯଜ୍ଞରେ ଆତ୍ମାହୁତି ପ୍ରଦାନ କରିବା ପ୍ରସ୍ତୁତ ହେବା ଲାଗି ଉତ୍ସାହିତ କରୁଥିଲେ ।

କେତେବେଳେ ଅବା ଗୀତା ବନ୍ଦ କରି ସେ କହି ଉଠୁଥିଲେ, "ଆଉ ଗୀତାପାଠ କଲେ କ'ଣ ହେବ ? ଠାକୁର କହୁଥିଲେ ଗୀତା ଦଶଥର ପଢ଼ିଲେ ଯାହା ତାହା—ଗୀତା, ଗୀତା, ଗୀତା—ତ୍ୟାଗୀ, ତ୍ୟାଗୀ, ତ୍ୟାଗୀ ! ତ୍ୟାଗ ଦରକାର—କାମିନୀ-କାଞ୍ଚନ ତ୍ୟାଗ । ତ୍ୟାଗ ହିଁ ଗୀତାର ଆଦର୍ଶ ।"

ପାଶ୍ଚାତ୍ୟ ଦର୍ଶନଶାସ୍ତ୍ରବିତ୍, ସନ୍ଦେହବାଦୀ ନରେନ୍ଦ୍ରନାଥ କ୍ରମାଗତ ଛଅ ବର୍ଷ କାଳ ଶ୍ରୀଗୁରୁଙ୍କ ସହିତ ତର୍କ କରି ଆସିଛନ୍ତି—ଆଜି ତାଙ୍କର କି ଅପୂର୍ବ ପରିବର୍ତ୍ତନ ! ଆଜି ସେ ସନ୍ନ୍ୟାସୀ ! ରାମକୃଷ୍ଣ ସଂଘର ନେତା ! ଶ୍ରୀଗୁରୁଙ୍କ ପବିତ୍ର ଜୀବନର ଭାସ୍ୱର ଜ୍ୟୋତିରେ ଆଜି ସନାତନଧର୍ମ ତାଙ୍କ ଚକ୍ଷୁରେ ମହିମାମୟ, ଉଦାର, ସାର୍ବଭୌମିକ ! ଆଜି ତାଙ୍କ ନିକଟରେ ବେଦ ଅପୌରୁଷେୟ, ଆପ୍ତବାକ୍ୟ, ନିତ୍ୟବର୍ତ୍ତମାନ ସତ୍ୟ ! ଉପନିଷଦର କଲ୍ୟାଣପ୍ରଦ ସତ୍ୟ ସମୂହର ଗୁଢ଼ାର୍ଥ, ଶ୍ରୀରାମକୃଷ୍ଣଙ୍କ ଜୀବନର ଆଲୋକରେ ଆଜି ତାଙ୍କ ନିକଟରେ ସହଜବୋଧ । ଉପନିଷଦ୍ ବା ବେଦାନ୍ତ ବୁଝିବା ନିମିତ୍ତ ସେ କୌଣସି ବିଶେଷ ଭାଷ୍ୟକାରଙ୍କୁ ଅନୁସରଣ କରନ୍ତି ନାହିଁ—କରିବାର ଆବଶ୍ୟକତା ମଧ୍ୟ ନାହିଁ । ସେ ସ୍ୱାଧୀନ ଭାବରେ ଶାସ୍ତ୍ର ଆଲୋଚନାରେ ପ୍ରବୃତ୍ତ ହୋଇଥିଲେ । ସ୍ୱାମୀଜୀ ଉତ୍ତରକାଳରେ କହିଥିଲେ, "ବିଧାତାର ଇଚ୍ଛାରୁ ମୁଁ ଏପରି ଜଣେ ବ୍ୟକ୍ତିଙ୍କ ସହିତ ବାସକରିବାର ସୁଯୋଗ ଲାଭ କରିଥିଲି, ଯେ ଗୋଟିଏ ଦିଗରେ ଯେପରି ଘୋର ଦ୍ୱୈତବାଦୀ, ସେହିପରି ଅନ୍ୟ ଦିଗରେ ଘୋର ଅଦ୍ୱୈତବାଦୀ ଥିଲେ; ଗୋଟିଏ ଦିଗରେ ଯେତିକି ପରମ ଭକ୍ତ, ଅପର ଦିଗରେ ସେତିକି ପରମଜ୍ଞାନୀ ଥିଲେ । ଏହାଙ୍କ ଶିକ୍ଷା ଫଳରେ ମୁଁ ଉପନିଷଦ ଓ ଅନ୍ୟାନ୍ୟ ଶାସ୍ତ୍ର କେବଳ ଅନ୍ଧ ଭାବରେ ଭାଷ୍ୟକାରମାନଙ୍କୁ ଅନୁସରଣ ନ କରି ସ୍ୱାଧୀନ ଭାବରେ ଉତ୍କୃଷ୍ଟତର ରୂପେ ବୁଝି ଶିଖିଛି ।"

## ତରୁଣ ସନ୍ନ୍ୟାସୀଗଣଙ୍କ କଠୋରତା

ଦିନେ ବେଲୁଡ଼ ମଠରେ ପ୍ରସଙ୍ଗକ୍ରମେ ଏହି ସମୟର କଥା କହିବାକୁ ଯାଇ ପୂଜନୀୟ ସ୍ୱାମୀ ପ୍ରେମାନନ୍ଦଜୀ କହିଲେ, "ଆଜି ଯେ ଏଡ଼େ ବଡ଼ ମଠଟିକୁ ଦେଖୁଛ, ଏହାର ଆରମ୍ଭ କେଉଁଠି ଜାଣ ? ଠାକୁରଙ୍କ ଅନ୍ତର୍ଦ୍ଧାନ ହେବା ପରେ ଲାଟୁ ଏବଂ ଆଉ କେତେଜଣ ବାଳକଙ୍କର କେଉଁଠି ଠିଆ ହେବାକୁ ସ୍ଥାନ ନ ଥିଲା; ଶେଷରେ ସୁରେଶ ମିତ୍ର[୧] ବରାହନଗରରେ ଗୋଟିଏ ଭଡ଼ାଘର ଠିକ୍ କରିଦେଲେ । ତଳ ମହଲାଟି ଅବ୍ୟବହାର୍ଯ୍ୟ ଥିଲା; ଉପର ମହଲାରେ ତିନୋଟି ଘର ଥିଲା । ଠାକୁରଙ୍କୁ କେବଳ ଦିନେ ଦିନେ ନୈବେଦ୍ୟ ଭୋଗ ଦେଇ ହେଉଥିଲା । କ'ଣ ଆଉ ମିଳିବ ? ବେଳାଏ କେଉଁଦିନ ଭାତ ମିଳୁଥିଲା, କେଉଁଦିନ ଅବା ମିଳୁ ନ ଥିଲା ! ଥାଳି ବାସନ ଆଦି କିଛି ନ ଥିଲା, ଘରବାଡ଼ିରେ ଅନେକ ଲାଉ ଗଛ

---

୧. ବାବୁ ସୁରେନ୍ଦ୍ରନାଥ ମିତ୍ରଙ୍କୁ ଶ୍ରୀରାମକୃଷ୍ଣ ସୁରେଶ ବୋଲି ଡାକନ୍ତି, ସେଥିପାଇଁ ସେ ରାମକୃଷ୍ଣ ଭକ୍ତ-ସଂଘରେ ସେହି ନାମରେ ସୁପରିଚିତ ।

କଦଳୀ ଗଛ ଥିଲା । ଦୁଇଟା ଲାଉ ପତ୍ର ବା ଖଣ୍ଡିଏ କଦଳୀ ପତ୍ର କାଟିବାକୁ ଗଲେ ମାଳୀ ଯାହା ତାହା ଗାଳି ଦେଉଥିଲା । ଶେଷରେ ଶଙ୍ଖସାରୁ ପତ୍ରରେ ଭାତ ବାଢ଼ି ଖାଇବାକୁ ହେଉଥିଲା । କୁଆମୈତା ପତ୍ର ସିଝା ଆଉ ଭାତ, ତା ପୁଣି ଶଙ୍ଖ ସାରୁ ପତ୍ରରେ ବଢ଼ା ହୋଇଥାଏ । ସମାନ୍ୟ ଖାଇବା ମାତ୍ରକେ ତଣ୍ଟି ଗଲୁକରେ । ଏତେ କଷ୍ଟ ହେଉଥିଲେ ବି ଭ୍ରୁକ୍ଷେପ ନ ଥିଲା । ଜଣେ ଦୁଇଜଣ କରି ଭକ୍ତମାନଙ୍କ ସଂଖ୍ୟା ବଢୁଥାଏ । କି ଉତ୍ସାହ ? ପୂଜା, ଧ୍ୟାନ, ଜପ ସବୁବେଳେ ଚାଲିଥାଏ । ହୁଏତ କୀର୍ତ୍ତନ ଲାଗିଗଲା । ଘରର ଦ୍ୱାର ବନ୍ଦ କରି ଭିତରେ ଜମାଟ କୀର୍ତ୍ତନ ଚାଲିଥାଏ । କୀର୍ତ୍ତନ ଏପରି ଜମିଯାଏ ଯେ, ବାହାରେ ଲୋକେ ରୁଣ୍ଡ ହୋଇ ଯାଆନ୍ତି । ଆମ କୀର୍ତ୍ତନ ବନ୍ଦ ହୋଇଯାଏ । ତେବେ ମଧ୍ୟ ଲୋକେ ବାହାରେ ଠିଆ ହୋଇ ଚିତ୍କାର କରି କହନ୍ତି, ''ବନ୍ଦ କରନ୍ତୁ ନାହିଁ, ଚମତ୍କାର ଶୁଣୁଛୁ । ବନ୍ଦ କରନ୍ତୁ ନାହିଁ ।''

ଗୁରୁଭାଇମାନଙ୍କୁ ଉପଦେଶ ଦାନ, ରକ୍ଷଣାବେକ୍ଷଣ ଇତ୍ୟାଦିର ଭାର ଶ୍ରୀଶ୍ରୀଠାକୁର ନରେନ୍ଦ୍ରଙ୍କ ସ୍କନ୍ଧରେ ଅର୍ପଣ କରି ଯାଇଥିଲେ । ତାଙ୍କର ବିରାମ ନ ଥାଏ, ଆଳସ୍ୟ ନ ଥାଏ, ସେ ନାନା ପ୍ରକାର ଭାବରେ ବାଳକଙ୍କୁ ଉତ୍ସାହ ଦେଉଥାନ୍ତି — ''ଜୟ ରାମକୃଷ୍ଣ ! ମଣିଷ-ଗଠନ ଆମ ଜୀବନର ଉଦ୍ଦେଶ୍ୟ ହେଉ । ମନେରଖ, ଏହା ଆମ ଜୀବନର ଏକମାତ୍ର ସାଧନା । ବୃଥା ବିଦ୍ୟାର ଗର୍ବ ତ୍ୟାଗ କର । ଉତ୍କୃଷ୍ଟତମ ମତବାଦ ଅଥବା ସୂକ୍ଷ୍ମଯୁକ୍ତିଜାଲ-ସମ୍ବଳିତ ତର୍କର ଆବଶ୍ୟକତା କ'ଣ ? ଈଶ୍ୱରାନୁଭୂତି ହିଁ ଜୀବନର ଏକମାତ୍ର ଲକ୍ଷ୍ୟ — ଶ୍ରୀରାମକଷ୍ଣ ନିଜ ଜୀବନରେ ଏହି ଆଦର୍ଶ ଦେଖାଇ ଯାଇଛନ୍ତି । ଆମେ ତାଙ୍କ ଆଦର୍ଶ ଜୀବନକୁ ହିଁ ଅନୁସରଣ କରିବା । ଏକମାତ୍ର ଭଗବତ୍‌ଲାଭ ହିଁ ଆମ ଜୀବନର ଚରମ ଲକ୍ଷ୍ୟ ।'' ନରେନ୍ଦ୍ର-ଗତ-ପ୍ରାଣ ଗୁରୁଭାଇମାନେ ମଧ୍ୟ ତାଙ୍କର ପ୍ରତ୍ୟେକ ବାକ୍ୟକୁ ଶ୍ରୀଗୁରୁଙ୍କ ଆଦେଶ-ବାଣୀ ପରି ଶ୍ରଦ୍ଧା ସହକାରେ ପାଳନ କରିବାରେ ଲାଗିଲେ ।

୰ସୁରେନ୍ଦ୍ରନାଥ ମିତ୍ର ସନ୍ନ୍ୟାସୀମାନଙ୍କ ଦୈହିକ ଅଭାବ ପୂରଣ କରିବାର ଭାର ଗ୍ରହଣ କରିଥିଲେ ବୋଲି ଆଗରୁ କୁହାଯାଇଛି । ବିଷୟକର୍ମରେ ବ୍ୟସ୍ତ ଥିବା ଯୋଗୁଁ ସେ ସବୁବେଳେ ନିଜେ ଯାଇ ମଠରେ ଅଭାବାଦି ସ୍ୱଚକ୍ଷୁରେ ପର୍ଯ୍ୟବେକ୍ଷଣ କରିପାରୁ ନ ଥିଲେ । ବାଳକ ସନ୍ନ୍ୟାସୀଗଣ ଚାଉଳ ଅଭାବରୁ ଅନାହାରରେ ରହିଲେ ବି ସୁରେନ୍ଦ୍ରବାବୁଙ୍କୁ ଖବର ଦେଉ ନ ଥିଲେ । ଭଗବାନଙ୍କ ଦୟାରୁ ଯେଉଁଦିନ ଯାହା ଅଯାଚିତ ଭାବରେ ମିଳୁଥିଲା, ତାହାକୁ ସେମାନେ ତୃପ୍ତ ହୋଇ ଠାକୁରଙ୍କୁ ନିବେଦନ କରି ପ୍ରସାଦ ସେବନ କରୁଥିଲେ । କିଛିଦିନ ପରେ ସୁରେନ୍ଦ୍ରବାବୁ ଏକଥା ଜାଣିପାରି ଚିନ୍ତିତ ହେଲେ । ଅବଶେଷରେ ଗୋପାଳ ନାମକ ଜଣେ ରାମକୃଷ୍ଣଭକ୍ତଙ୍କ ମାତା ଓ କନିଷ୍ଠ ଭ୍ରାତାମାନଙ୍କ ପ୍ରତିପାଳନ ଭାର ଗ୍ରହଣ କରି ସୁରେନ୍ଦ୍ରବାବୁ ତାହାଙ୍କୁ ମଠକୁ ପଠାଇ ଦେଲେ । ତାଙ୍କ ଉପଦେଶ କ୍ରମେ ଯେତେବେଳେ ଯାହା ପ୍ରୟୋଜନ ହେଉଥିଲା, ତତ୍‌କ୍ଷଣାତ୍ ଗୋପାଳ ତାଙ୍କୁ ସମ୍ବାଦ ଦେଉଥିଲା । ସୁରେନ୍ଦ୍ର ସର୍ବଦା କହୁଥିଲେ — ''ଏମାନଙ୍କର ସର୍ବବିଧ

ଅଭାବ ଦୂରକରିବା ମୋର ଅବଶ୍ୟ କର୍ତ୍ତବ୍ୟ; କାରଣ ଏମାନେ ଶ୍ରୀଶ୍ରୀଠାକୁରଙ୍କ ସନ୍ତାନ, ମୋର ଭାଇ ।'' ଗୁରୁଭ୍ରାତୃ-ପ୍ରୀତିର କି ଉଜ୍ଜ୍ୱଳତମ ଦୃଷ୍ଟାନ୍ତ !

ମଧ୍ୟେ ମଧ୍ୟେ ଗୃହୀଭକ୍ତବୃନ୍ଦ ମଠକୁ ଯାଇ ଠାକୁରଙ୍କ ପ୍ରସଙ୍ଗ ଓ ଧର୍ମାଲୋଚନା କରୁଥିଲେ । ଅନେକ ଅପରିଚିତ ବ୍ୟକ୍ତି ମଧ୍ୟ କୌତୁହଳ ବଶତଃ ବା ତର୍କ କରିବାକୁ, କେହି ଅବା ପରୀକ୍ଷା କରିବା ନିମିତ୍ତ ବରାହ ନଗର ମଠକୁ ଆସୁଥିଲେ । ନରେନ୍ଦ୍ରଙ୍କ ଯୁକ୍ତିପୂର୍ଣ୍ଣ ଉତ୍ତର ସମ୍ମୁଖରେ କେହି ସାଧାରଣତଃ ଠିଆ ହୋଇ ପାରୁ ନ ଥିଲେ । ସାଧାରଣ ଲୋକଙ୍କ ଅଶିଷ୍ଟ ସମାଲୋଚନାରେ ଉତ୍ତେଜିତ ନ ହୋଇ ନରେନ୍ଦ୍ରନାଥ ହାସ୍ୟ ସହକାରେ ଗୁରୁଭ୍ରାତାମାନଙ୍କୁ କହୁଥିଲେ, ''ଆହେ, ଠାକୁର କହୁଥିଲେ, ଲୋକ ନା ପୋକ । ତାର ଅର୍ଥ କ'ଣ ଜାଣ ? କାମ-କାଞ୍ଚନର କ୍ରୀତଦାସମାନେ କ'ଣ କହୁଛନ୍ତି ବା ନ କହୁଛନ୍ତି, ତାହା ଶୁଣି ସନ୍ନ୍ୟାସୀମାନେ ବିଚଳିତ ହେବା ଉଚିତ ନୁହେଁ ।''

ଏହି ସମସ୍ତ ବାଳ-ସନ୍ନ୍ୟାସୀଗଣଙ୍କ ଅଭିଭାବକମାନେ ପ୍ରାୟ ସେମାନଙ୍କୁ ଗୃହକୁ ଫେରାଇ ନେବା ନିମିତ୍ତ ମଠକୁ ଆସୁଥିଲେ । ସେମାନଙ୍କୁ ବାଧା ଦେବା ନିମିତ୍ତ ନରେନ୍ଦ୍ରନାଥଙ୍କୁ ସେମାନଙ୍କ ସମ୍ମୁଖୀନ ହେବାକୁ ପଡୁଥିଲା । କେହି କେହି ଗୃହସ୍ଥାଶ୍ରମର ଶ୍ରେଷ୍ଠତା ପ୍ରତିପାଦନ କରିବା ଲାଗି ତର୍କଜାଲ ବିସ୍ତାର କରୁଥିଲେ । ନରେନ୍ଦ୍ର ଦୃପ୍ତସିଂହ ପରି ଗ୍ରୀବା ଉନ୍ନତ କରି ଉତ୍ତର ଦେଉଥିଲେ, ''କ'ଣ ! ଆମେ ଯଦି ଈଶ୍ୱରଲାଭ କରି ନ ପାରୁ, ତାହାହେଲେ କ'ଣ ଇନ୍ଦ୍ରିୟର ଦାସ ହୋଇ ଜୀବନଯାପନ କରିବୁ । ସନ୍ନ୍ୟାସର ମହିମାମୟ ଆଦର୍ଶରୁ ବିଚ୍ୟୁତ ହେବୁ ? ଅଦୃଷ୍ଟରେ ଯାହା ଘଟୁନା କାହିଁକି ତ୍ୟାଗର ମହାନ୍ ଆଦର୍ଶ ଆମେ ପ୍ରାଣପଣେ ଜାବୁଡ଼ି ଧରି ରହିବୁ । ଦେହର ପତନ ହେଉ—ସର୍ବସ୍ୱ ଯାଉ, ଉଦ୍ଦେଶ୍ୟ ଛାଡ଼ିବୁ ନାହିଁ । ଆମ୍ଭେମାନେ କ'ଣ ରାମକୃଷ୍ଣତନୟ ନୋହୁଁ ?''

## ନରେନ୍ଦ୍ରଙ୍କ ତୀର୍ଥଯାତ୍ରା

ବରାହନଗର ମଠରେ କିଛିକାଳ ଯାପନ କରିବା ପରେ ସନ୍ନ୍ୟାସୀମାନଙ୍କ ହୃଦୟରେ ତୀର୍ଥଭ୍ରମଣର ଆକାଙ୍‌କ୍ଷା ବଳବତୀ ହୋଇ ଉଠିଲା । ଜଣେ ଦୁଇଜଣ ବାଧାପ୍ରାପ୍ତ ହେବା ଆଶଙ୍କା କରି ନରେନ୍ଦ୍ରନାଥଙ୍କ ଅଜ୍ଞାତସାରରେ ମଠବାଡ଼ି ତ୍ୟାଗକରି ତୀର୍ଥ ଭ୍ରମଣରେ ବାହାରିଗଲେ । ଦିନେ ନରେନ୍ଦ୍ରନାଥଙ୍କୁ କୌଣସି ବିଶେଷ କାରଣ ଯୋଗୁଁ କଲିକତା ଯିବାକୁ ହୋଇଥିଲା; ସେଠାରୁ ଫେରି ଆସି ସେ ଶୁଣିଲେ ଯେ ସାଂସାରିକ ଅଭିଜ୍ଞତାହୀନ ବାଳକ ସାରଦା (ସ୍ୱାମୀ ତ୍ରିଗୁଣାତୀତାନନ୍ଦ) ଗୋପନରେ ମଠ ତ୍ୟାଗ କରି ଚାଲିଯାଇଛନ୍ତି । ବାଳକଟି ନ ଜାଣି କି ବିପଦରେ ପଡ଼ିବ, ଏହି ଆଶଙ୍କାରେ ସେ ଆକୁଳ ହେଲେ ଏବଂ ରାଖାଲକୁ ଡାକି କହିଲେ, ''ତୁମେ ତାଙ୍କୁ କାହିଁକି ଛାଡ଼ିଦେଲ ? ଦେଖ ରାଜା ! ମୁଁ କି ଭୀଷଣ ପରିସ୍ଥିତିରେ ପଡ଼ିଲି । ଏକେ ତ ସଂସାର ଛାଡ଼ି ଆସିଛି; ଏଠାରେ ଆଉ

ଗୋଟିଏ ମାୟାର ସଂସାର ଗଢ଼ିଛି । ଏହି ପିଲାଟି ଲାଗି ମୋ ପ୍ରାଣ ବଡ଼ ବ୍ୟାକୁଳ ହେଉଛି ।'' ଏହି ସମୟରେ ଜଣେ ଲୋକ ତାଙ୍କୁ ଖଣ୍ଡିଏ ଚିଠି ଦେଲେ; ସାରଦା ଯିବାବେଳେ ଏହି ଚିଠିଟି ଲେଖି ଦେଇଯାଇଥିଲେ । ସେ ଲେଖିଥିଲେ-''ମୁଁ ପାଦରେ ଚାଲି ଚାଲି ବୃନ୍ଦାବନ ଯାଉଛି । ଏଠାରେ ରହିବା ମୋ ପକ୍ଷରେ ଅସମ୍ଭବ ହୋଇଯାଇଛି; କେଜାଣି କେତେବେଳେ ମନର ଗତି ପରିବର୍ତ୍ତିତ ହୋଇଯିବ । ମୁଁ ମଝିରେ ମଝିରେ ପିତାମାତା, ଗୃହ, ପରିଜନମାନଙ୍କ ବିଷୟରେ ସ୍ୱପ୍ନ ଦେଖେ । ମୁଁ ସ୍ୱପ୍ନରେ ମୂର୍ତ୍ତିମତୀ ମାୟାଦ୍ୱାରା ପ୍ରଲୋଭିତ ହେଉଛି । ମୁଁ ଯଥେଷ୍ଟ ସହ୍ୟ କରିଛି; ଏପରି କି ପ୍ରବଳ ଆକର୍ଷଣ ଫଳରେ ମୁଁ ଦୁଇଥର ଘରକୁ ଯାଇ ଆତ୍ମୀୟ ସ୍ୱଜନଙ୍କୁ ଦେଖି ଆସିଛି । ତେଣୁ ଏଠାରେ ରହିବା ଆଉ ଯୁକ୍ତିସଙ୍ଗତ ନୁହେଁ; ମାୟା ହାତରୁ ନିଷ୍କୃତି ପାଇବା ନିମିତ୍ତ ଦୂର ଦେଶକୁ ଯିବା ଛଡ଼ା ଗତ୍ୟନ୍ତର ନାହିଁ ।''

ଚିଠିଟି ପଢ଼ି ସ୍ୱାମୀଜୀଙ୍କ ମୁଖମଣ୍ଡଳ ଗମ୍ଭୀର ହୋଇଗଲା । ରାଖାଲ କହିଲେ, ''ବର୍ତ୍ତମାନ ବୁଝିଲ, କାହିଁକି ସାରଦା ମଠ ଛାଡ଼ି ଯାଇଛି ?'' ସ୍ୱାମୀଜୀ ଚିନ୍ତିତ ଭାବରେ ଉତ୍ତର ଦେଲେ, ''ହଁ, ମୁଁ ବି ଏପରି ଅନୁଭବ କରିଛି ।''

ନରେନ୍ଦ୍ରନାଥ ମନେ ମନେ ଭାବିଲେ, ସମସ୍ତେ ତ ତୀର୍ଥଭ୍ରମଣ ଲାଗି ଆଗ୍ରହ ପ୍ରକାଶ କରୁଛନ୍ତି; ଏତଦ୍ୱାରା ଏହି ମଠଟି ଧ୍ୱଂସ ହୋଇଯାଇପାରେ, ହେଉ । ମୁଁ କିଏ ଯେ ଏମାନେ ମୋ କଥାରେ ଚଳିବେ ? ନା, ଏ ମଧୁର ମାୟା-ବନ୍ଧନକୁ ଛିନ୍ନ କରିବାକୁ ହେବ । ସାରଦାର ଚିଠିଟି ତାଙ୍କୁ ଅତି ମାତ୍ରାରେ ଚିନ୍ତିତ କରିପକାଇଲା । ସମସ୍ତେ ଏକତ୍ର ରହିବାରୁ କ୍ରମେ କ୍ରମେ ମାୟା-ବନ୍ଧନରେ ଜଡ଼ିତ ହୋଇପଡୁଛନ୍ତି ବୋଲି ମର୍ମେ ମର୍ମେ ଅନୁଭବ କରି ସେ ମଧ୍ୟ ମଠ ତ୍ୟାଗ କରିବାକୁ ସଂକଳ୍ପ କଲେ । ଅବଶେଷରେ ଦିନେ ସବୁ ଗୁରୁଭାଇଙ୍କ ଅନୁରୋଧ ଉପେକ୍ଷା କରି ଶ୍ରୀଗୁରୁଙ୍କ ମହତୀ ଇଚ୍ଛାରେ ପରିଚାଳିତ ନରେନ୍ଦ୍ରନାଥ ପରିବ୍ରାଜକ ବେଶରେ ମଠ ପରିତ୍ୟାଗ କଲେ ।

## ଶ୍ରୀଶ୍ରୀକାଶୀଧାମ

ସୂର୍ଯ୍ୟ ଉଦୟ ହେଲେ କାହାରିକୁ ପ୍ରଭାତ ହେଲା ବୋଲି ବୁଝାଇବାକୁ ହୁଏ ନାହିଁ । ସୂର୍ଯ୍ୟରଶ୍ମୀର କ୍ରମ ସଞ୍ଚାରଣ କୌଣସି ଘୋଷଣାକାରୀକୁ ଅପେକ୍ଷା କରେ ନାହିଁ । ସେହିପରି ସ୍ୱାମୀଜୀ ଯେଉଁ ସ୍ଥାନକୁ ଯାଉଥିଲେ, ତାଙ୍କ 'ତପ୍ତ-କାଞ୍ଚନ-ବର୍ଣ୍ଣ' ଦୀର୍ଘ ତପୋଜ୍ଜ୍ୱଳ ଶରୀରଟି ସମସ୍ତଙ୍କର ମୁଗ୍ଧ ଦୃଷ୍ଟି ଆକର୍ଷଣ କରୁଥିଲା । ବିହାର ଓ ଉତ୍ତର ପ୍ରଦେଶରେ ବୁଲୁ ବୁଲୁ ଶେଷରେ ସେ ହିନ୍ଦୁମାନଙ୍କ ଅନ୍ୟତମ ପବିତ୍ର ତୀର୍ଥ ଶ୍ରୀଶ୍ରୀକାଶୀଧାମରେ ଉପସ୍ଥିତ ହେଲେ ।

କାଶୀଧାମରେ ରହିବା ଲାଗି କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ନ ଥିଲା । ଭିକ୍ଷାନ୍ନରେ ଉଦରପୂରଣ, ଦେବସ୍ଥାନସମୂହ ଦର୍ଶନ, ଶାସ୍ତ୍ରଚର୍ଚ୍ଚା, ଧ୍ୟାନ, ଜପ, ସାଧୁସଙ୍ଗ ଇତ୍ୟାଦି ତାଙ୍କର ନିତ୍ୟକର୍ମ ହୋଇଗଲା । ସନ୍ଧ୍ୟାବେଳେ ସେ ଭାଗୀରଥୀ କୂଳରେ

ଥିବା ପଥର ପାହାଚ ଉପରେ ବସି ସାୟଂକାଳୀନ ଉପାସନା ଲାଗି ଯେତେବେଳେ ପ୍ରସ୍ତୁତ ହୁଅନ୍ତି, ସେତେବେଳେ ଅଗଣିତ ମନ୍ଦିରରୁ ସନ୍ଧ୍ୟା ଆଳତିର ମନମତାଣିଆ ଶଙ୍ଖ ଘଣ୍ଟାର ମଧୁର ନିନାଦ ଉଠି ତାଙ୍କୁ ଭାବବିଭୋର କରି ପକାଉଥିଲା । ସେହି ଭାଗୀରଥିତୀର, ସେହି ଦକ୍ଷିଣେଶ୍ୱର, ସେହି ଅଦ୍ଭୁତ ପ୍ରେମିକ ପୁରୁଷ—ଗୋଟି ଗୋଟି ହୋଇ ତାଙ୍କର ମନେ ପଡୁଥିଲା । ସେ ଆନନ୍ଦର ମେଳା ଭାଙ୍ଗିଯାଇଛି । ଆଜି ଆଉ ଶ୍ରୀରାମକୃଷ୍ଣଙ୍କ ଆଦରର ଶିଶୁ ନରେନ୍ଦ୍ରନାଥ ନୁହନ୍ତି—ଆଜି ସେ ରାମକୃଷ୍ଣ-ସଂଘର ନେତା ସ୍ୱାମୀ ବିବେକାନନ୍ଦ ! ଭବିଷ୍ୟତ-ଜଗତ ନବଯୁଗାଦର୍ଶ ପାଇବା ଆଶାରେ ତାଙ୍କୁ ପ୍ରତୀକ୍ଷା କରିଛି—ତାଙ୍କ କାନ୍ଧ ଉପରେ ଦାୟିତ୍ୱର କି ଗୁରୁଭାର ! ଭାବୁକ ଭକ୍ତକବି ବିବେକାନନ୍ଦଙ୍କ ହୃଦୟଦୁର୍ଗରେ ଅବରୁଦ୍ଧ ଭୁବନ-ପାବନ ଯୁଗଧର୍ମ, ଈଶାନଙ୍କ ଜଟାଜୁଟ ମଧ୍ୟସ୍ଥିତ ଅଳକାନନ୍ଦା ପରି ନିର୍ଗମପଥ ନ ପାଇ ଗଭୀର ଆବେଗରେ ଉଚ୍ଛ୍ୱସିତ ହୋଇ ଉଠୁଛି । ବିଚଳିତ ହୃଦୟରେ ବିବେକାନନ୍ଦ ଏହି କର୍ମଭାରରୁ ମୁକ୍ତି ପାଇବା ନିମିତ୍ତ ପୁନଃ ପୁନଃ ଶ୍ରୀଗୁରୁଚରଣରେ ପ୍ରାର୍ଥନା କରୁଥାନ୍ତି ।

## ଭୁଦେବବାବୁଙ୍କ ଭବିଷ୍ୟତ-ବାଣୀ

ଦିନେ ଜନୈକ ଗୁଣମୁଗ୍ଧ ଭଦ୍ରଲୋକ ତାଙ୍କୁ ବଙ୍ଗ-ଗୌରବ ପଣ୍ଡିତ ୰ଭୁଦେବ ମୁଖୋପାଧ୍ୟାୟଙ୍କ ସହିତ ପରିଚୟ କରାଇ ଦେଲେ । ଅଦ୍ଭୁତ ଧୀଶକ୍ତିଶାଳୀ ତରୁଣ ସନ୍ନ୍ୟାସୀଙ୍କ ସହିତ ଧର୍ମ, ସମାଜନୀତି ଓ ଭାରତର ଉନ୍ନତି ବିଷୟ ଆଲୋଚନା କରି ଭୁଦେବବାବୁ ଏପରି ମୁଗ୍ଧ ହେଲେ ଯେ, ସେହି ଭଦ୍ରଲୋକଙ୍କୁ କହିଥିଲେ—"ମୁଁ ଆଶ୍ଚର୍ଯ୍ୟ ହେଉଛି ଏହି ତରୁଣ ଯୁବକ କିପରି ଏତେ ଗଭୀର ଅନ୍ତର୍ଦୃଷ୍ଟି ଓ ବିପୁଳ ଅଭିଜ୍ଞତା ଲାଭ କଲେ ! ଏହି ଯୁବକ ଭବିଷ୍ୟତରେ ଜଣେ ମହାନ୍ ବ୍ୟକ୍ତି ହେବେ ଏଥିରେ କୌଣସି ସନ୍ଦେହ ନାହିଁ ।"

## ଶ୍ରୀମତ୍ ତ୍ରୈଲଙ୍ଗସ୍ୱାମୀ ଓ ଭାସ୍କରାନନ୍ଦ

ବାରାଣସୀର ବିଖ୍ୟାତ ସାଧୁ ଶ୍ରୀଶ୍ରୀବିଶ୍ୱେଶ୍ୱରଙ୍କ ଦ୍ୱିତୀୟ ବିଗ୍ରହତୁଲ୍ୟ ଶ୍ରୀମତ୍ ତ୍ରୈଲଙ୍ଗ ସ୍ୱାମୀଙ୍କ ଦର୍ଶନ ଲାଭ କରି ସ୍ୱାମୀଜୀ କୃତାର୍ଥ ହେଲେ । ଏହାଙ୍କ ତ୍ୟାଗ ଓ ତପସ୍ୟା ବିଷୟରେ ସ୍ୱାମୀ ବିବେକାନନ୍ଦ ବହୁବାର ଶ୍ରୀରାମକୃଷ୍ଣଙ୍କଠାରୁ ଶ୍ରବଣ କରିଥିଲେ; ଏହିକ୍ଷଣି ତାଙ୍କ ଦର୍ଶନ ଲାଭ କରି ଭକ୍ତି-ବିନମ୍ର ଚିତ୍ତରେ ପଦଧୂଳି ଗ୍ରହଣ କରି କୃତ୍ୟକୃତ୍ୟ ହେଲେ ।

ଶ୍ରୀମତ୍ ସ୍ୱାମୀ ଭାସ୍କରାନନ୍ଦଜୀଙ୍କ ଗୁଣଗ୍ରାମ-ଶ୍ରବଣ କରି ସ୍ୱାମୀଜୀ ଦିନେ ତାଙ୍କ ଆଶ୍ରମକୁ ଗଲେ । ସେତେବେଳେ ସେ ଶିଷ୍ୟ ଓ ଭକ୍ତମଣ୍ଡଳୀ ପରିବୃତ ହୋଇ ଉପବିଷ୍ଟ ଥିଲେ; ସ୍ୱାମୀଜୀ ତାଙ୍କୁ ପ୍ରଣାମ କରି ଆସନ ଗ୍ରହଣ କଲେ । ବିବେକାନନ୍ଦଙ୍କ ମନୋହର ଅଙ୍ଗକାନ୍ତି ପ୍ରଥମେ ତାଙ୍କ ଦୃଷ୍ଟି ଆକର୍ଷଣ କଲା । କ୍ରମେ ସନ୍ନ୍ୟାସ-ଜୀବନ ଆଦର୍ଶ ସମ୍ବନ୍ଧରେ ସ୍ୱାମୀଜୀଙ୍କୁ ଉପଦେଶ ଦେଉ ଦେଉ

ଭାସ୍କରାନନ୍ଦ କହି ପକାଇଲେ, ''କେହି ସମ୍ପୂର୍ଣ୍ଣ ରୂପେ 'କାମିନୀ-କାଞ୍ଚନ' ତ୍ୟାଗ କରିପାରେ ନାହିଁ ।'' ସ୍ୱାମୀଜୀ ବିନୀତ ଭାବରେ କହିଲେ, ''କ'ଣ କହୁଛନ୍ତି ? ଏପରି ଅନେକ ସନ୍ନ୍ୟାସୀ ଅଛନ୍ତି, ଯେଉଁମାନେ ସମ୍ପୂର୍ଣ୍ଣ ରୂପେ କାମିନୀ-କାଞ୍ଚନର ବନ୍ଧନରୁ ବିମୁକ୍ତ; କାରଣ ଏହା ହିଁ ସନ୍ନ୍ୟାସୀ ଜୀବନର ପ୍ରଥମ ସାଧନା ଏବଂ ମୁଁ ଅନ୍ତତଃ ଏପରି ଜଣେ ବ୍ୟକ୍ତିଙ୍କୁ ଦେଖିଛି, ଯେ କାମ-କାଞ୍ଚନ-ସ୍ପୃହା ସମ୍ପୂର୍ଣ୍ଣ ରୂପେ ଜୟ କରିବାକୁ ସମର୍ଥ ହୋଇଥିଲେ ।'' ସେ ଶ୍ରୀରାମକୃଷ୍ଣଙ୍କ କଥା ଉଲ୍ଲେଖ କଲେ । ଭାସ୍କରାନନ୍ଦ ହସି ହସି କହିଲେ, ''ତୁମେ ବାଳକ ମାତ୍ର, ଏ ବୟସରେ ସେସବୁ ବୁଝିପାରିବ ନାହିଁ ।'' କ୍ରମେ ନିଜ ଗୁରୁଙ୍କ ଚରିତ୍ର ସମାଲୋଚିତ ହେଉଥିବାର ଦେଖି ସ୍ୱାମୀଜୀ ନିର୍ଭୀକ ଦୃଢ଼ତାର ସହିତ ପ୍ରତିବାଦ କରିବାକୁ ଉଦ୍ୟତ ହେଲେ । ତାଙ୍କର ତେଜୋଗର୍ଭ ଯୁକ୍ତିପୂର୍ଣ୍ଣ ବଚନାବଳୀ ଶ୍ରବଣ କରି ଉପସ୍ଥିତ ବ୍ୟକ୍ତିବୃନ୍ଦ ଏବଂ ସ୍ୱୟଂ ଭାସ୍କରାନନ୍ଦ ବିସ୍ମିତ ହେଲେ । ଯାହାଙ୍କ ଚରଣତଳେ ରାଜା, ମହାରାଜା, ଧନୀ, ପଣ୍ଡିତ, ଶତଶତ ବ୍ୟକ୍ତି ମସ୍ତକ ଅବନମିତ କରି କୃତାର୍ଥ—ଯାହାଙ୍କ ଅଲୌକିକ ପାଣ୍ଡିତ୍ୟ ଅପ୍ରତିହତ ଗୌରବରେ ଜ୍ଞାନାଲୋକ ବିକୀର୍ଣ୍ଣ କରୁଥିଲା, ସେହି ଭାସ୍କରାନନ୍ଦଙ୍କ ପ୍ରତିପକ୍ଷ ହୋଇ ତର୍କ କରିବା କମ୍ ସାହସର ବିଷୟ ନୁହେଁ ! ଉଦାରହୃଦୟ ସନ୍ନ୍ୟାସୀ, ସ୍ୱାମୀଜୀଙ୍କ ବାକ୍ୟରେ ବିଶେଷ ପ୍ରୀତ ହୋଇ ତାଙ୍କ ସମ୍ମୁଖରେ ହିଁ ସ୍ୱୀୟ ଶିଷ୍ୟ ଓ ଉପସ୍ଥିତ ବ୍ୟକ୍ତିବୃନ୍ଦଙ୍କୁ କହିଲେ, ''ଏହାଙ୍କ କଣ୍ଠରେ ସରସ୍ୱତୀ ବସିଛନ୍ତି । ଏହାଙ୍କ ହୃଦୟରେ ଜ୍ଞାନାଲୋକ ପ୍ରଦୀପ୍ତ ହୋଇଛି ।'' ଗୁରୁନିନ୍ଦାରେ ବ୍ୟଥିତହୃଦୟ ବିବେକାନନ୍ଦ ସତ୍ୱର ଉକ୍ତ ସ୍ଥାନ ପରିତ୍ୟାଗ କଲେ ।

## ଅଯୋଧ୍ୟା

ଅଯୋଧ୍ୟା—ଏହାର ପ୍ରତ୍ୟେକ ଧୂଳିକଣା ସହିତ ସୂର୍ଯ୍ୟବଂଶୀୟ ପରାକ୍ରାନ୍ତ ରାଜାମାନଙ୍କ ଗୌରବ-ସ୍ମୃତି ଜଡ଼ିତ ହୋଇ ରହିଛି । ଆଦିକବି ବାଲ୍ମୀକିଙ୍କ କଳ୍ପନାନନ୍ଦନର ପାରିଜାତ କୁସୁମ—ଆଦର୍ଶ ରାଜା, ଆଦର୍ଶ ପୁତ୍ର, ଆଦର୍ଶ ପତି, ଆଦର୍ଶ ଭ୍ରାତାରୂପେ—ଏହି ପୁଣ୍ୟ ଭୂମିରେ ହିଁ ପରିପୂର୍ଣ୍ଣ ମହିମାରେ ପ୍ରସ୍ଫୁଟିତ ହୋଇଥିଲା । ତେଜସ୍ୱୀ ବ୍ରାହ୍ମଣ ବଶିଷ୍ଠଙ୍କ ପୌରୋହିତ୍ୟ, କ୍ଷତ୍ରିୟ ରାଜା ବିଶ୍ୱାମିତ୍ରଙ୍କ ତପଃ ପ୍ରଭାବରେ ବ୍ରାହ୍ମଣତ୍ୱ ପ୍ରାପ୍ତି, ବ୍ରହ୍ମଜ୍ଞାନୀ ମିଥିଳାଧିପତି ଜନକ—ସୁଦୂର ଅତୀତର କୀର୍ତ୍ତି ସମୁଜ୍ଜ୍ୱଳ ସହସ୍ର କାହାଣୀ ସ୍ୱାମୀଜୀଙ୍କ ସ୍ମୃତିପଥରେ ଉଦିତ ହେଲା । ସୀତାରାମଙ୍କ ପୁଣ୍ୟ ଲୀଳାଭୂମିରେ ପଦାର୍ପଣ କରିବା ମାତ୍ରକେ ତାଙ୍କର ବାଲ୍ୟସ୍ମୃତି ଉଛୁଳି ଉଠିଲା । ସେହି ରାମାୟଣ ପ୍ରୀତି—ସୀତାରାମଙ୍କ ମୂର୍ତ୍ତି ସମ୍ମୁଖରେ ତନ୍ମୟ ଚିତ୍ତରେ ଧ୍ୟାନ, ବୀରଭକ୍ତ ହନୁମାନଙ୍କ ପ୍ରତି ଗଭୀର ଶ୍ରଦ୍ଧା—ଗୋଟି ଗୋଟି ହୋଇ ତାଙ୍କ ମାନସପଟରେ ଉଦିତ ହୋଇ ତାଙ୍କୁ ଭାବାନନ୍ଦରେ ବିଭୋର କରିଦେଲା । କେତେଦିନ ଅଯୋଧ୍ୟାରେ ରାମାୟିତ ସନ୍ନ୍ୟାସୀଗଣଙ୍କ

ସହିତ ଶ୍ରୀଶ୍ରୀରାମନାମ କୀର୍ତ୍ତନରେ ଅତିବାହିତ କରି ସ୍ୱାମୀଜୀ ଲକ୍ଷ୍ନୌ ଓ ଆଗ୍ରା ବାଟେ ପଦବ୍ରଜରେ ଶ୍ରୀ ବୃନ୍ଦାବନ ଧାମ ଅଭିମୁଖେ ଅଗ୍ରସର ହେଲେ ।

## ଶ୍ରୀଶ୍ରୀବୃନ୍ଦାବନ ଧାମ

ଯମୁନା ନଦୀ ଦୃଷ୍ଟିପଥରେ ପଡ଼ିବା ମାତ୍ରକେ ତାଙ୍କ ହୃଦୟ ପୁଲକରେ ନୃତ୍ୟ କରି ଉଠିଲା—ସେ ବୃନ୍ଦାରଣ୍ୟର ଯେଉଁ ଦିଗକୁ ଦୃଷ୍ଟିପାତ କରୁଥିଲେ, ସେହି ଦିଗରେ ବ୍ରଜ-ଗୋପିକା, ରାଖାଲ ବାଳକଗଣଙ୍କ ସହିତ ସେହି ଭୂମା ପୁରୁଷଙ୍କ କାମଗନ୍ଧହୀନ ପ୍ରେମଲୀଳାଭିନୟର ପୁଣ୍ୟସ୍ମୃତି ଜଡ଼ିତ ରହିଥିବାର ଦେଖିଲେ । ଶ୍ରୀକୃଷ୍ଣ-ପ୍ରେମରେ ବିଗଳିତ-ହୃଦୟ ସନ୍ନ୍ୟାସୀ ଉନ୍ମତ୍ତର ଅଧୀରତା ସହକାରେ ଯମୁନାର କୂଳେ କୂଳେ, ବୃନ୍ଦାରଣ୍ୟର କୁଞ୍ଜେ କୁଞ୍ଜେ ପରିଭ୍ରମଣ କରିବାକୁ ଲାଗିଲେ ।

ଦିନେ ପରିଧାନ ଲାଗି ଏକମାତ୍ର ସମ୍ବଳ କୌପୀନ ଖଣ୍ଡିକ ଧୋଇ କୂଳରେ ଖରାରେ ଶୁଖାଇ ଦେଇ ସ୍ୱାମୀଜୀ ସ୍ନାନ କରିବା ନିମିତ୍ତ ପବିତ୍ରସଲିଳା ରାଧାକୁଣ୍ଡ ଭିତରେ ପଶିଲେ । ସ୍ନାନ କରିବା ପରେ ସ୍ୱାମୀଜୀ ଚାହିଁ ଦେଖନ୍ତି ଯେ, ଗୋଟିଏ ମାଙ୍କଡ଼ କୌପୀନକୁ ନେଇ କୂଳସ୍ଥିତ ଗୋଟିଏ ବୃକ୍ଷଶାଖାରେ ବସିଛି । ପାଣି ମଧ୍ୟରେ ଠିଆ ହୋଇ ସେ ଏହି ମାଙ୍କଡ଼କୁ କୌପୀନ ଖଣ୍ଡିକ ଫେରାଇ ଦେବା ଲାଗି ଅନେକ ଅନୁନୟ କଲେ; କିନ୍ତୁ ବାନର ମୁଖଭଙ୍ଗୀ କରି ତାଙ୍କୁ ବ୍ୟଙ୍ଗ କଲା ସିନା, କୌପୀନ ଫେରାଇଲା ନାହିଁ । ସମ୍ପୂର୍ଣ୍ଣ ନଗ୍ନାବସ୍ଥାରେ ସେ କିପରି ବୃନ୍ଦାବନ ଧାମ ପରିଭ୍ରମଣ କରିବେ ଭାବି ବାଳକ ପରି ବ୍ୟାକୁଳ ହୋଇପଡ଼ିଲେ । ଏହା କ'ଣ ଶ୍ରୀଶ୍ରୀରାଧାରାଣୀଙ୍କ ଇଚ୍ଛା ? ତାଙ୍କ ବ୍ୟଥିତ ହୃଦୟ ଅଭିମାନରେ ପୂରିଗଲା । ପାଣିରୁ ଉଠିଆସି ସ୍ୱାମୀଜୀ ନିବିଡ଼ ଅରଣ୍ୟ ମଧ୍ୟରେ ପ୍ରବେଶ କଲେ; ମନେ ମନେ ସଂକଳ୍ପ କଲେ, ପରିଧେୟ ବସ୍ତ୍ର ନ ପାଇବା ପର୍ଯ୍ୟନ୍ତ ଅରଣ୍ୟ ମଧ୍ୟରେ ପ୍ରାୟୋପବେଶନ କରିବେ । ଏହି ସମୟରେ ତାଙ୍କୁ କିଏ ଡାକିବାରୁ ସେ ପଛକୁ ଚାହିଁ ଦେଖିଲେ ଯେ, ଜଣେ ଲୋକ ତରତର ହୋଇ ତାଙ୍କ ଆଡ଼କୁ ଆସୁଛି । ସ୍ୱାମୀଜୀ ତାଙ୍କ ପ୍ରତି ଭ୍ରୂକ୍ଷେପ ନ କରି ଆପଣା ମନକୁ ଚାଲିଲେ । କ୍ଷଣକେ ସେ ଲୋକଟି ଦଉଡ଼ି ଆସି ସ୍ୱାମୀଜୀଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ । ସେ ବିସ୍ମିତ ହୋଇ ଦେଖିଲେ ଯେ ନବାଗତଙ୍କ ହାତରେ କିଛି ଖାଦ୍ୟଦ୍ରବ୍ୟ ଓ ଖଣ୍ଡିଏ ନୂତନ ଗୈରିକ ବସନ ଅଛି । ତାଙ୍କ ଅନୁରୋଧରେ ମନ୍ତ୍ରମୁଗ୍ଧବତ୍ ସ୍ୱାମୀଜୀ ଉକ୍ତ ଉପହାର ଦ୍ରବ୍ୟଗୁଡ଼ିକ ଗ୍ରହଣ କରିବା ମାତ୍ରେ ସେ ଘୋର ଅରଣ୍ୟ ମଧ୍ୟକୁ ଯାଇ ଅଦୃଶ୍ୟ ହୋଇଗଲେ । ସ୍ୱାମୀଜୀ ଯେପରି କି ଅକସ୍ମାତ୍ ଚୈତନ୍ୟପ୍ରାପ୍ତ ହୋଇ ଘଟଣାଟିର ମର୍ମ ବୁଝିପାରିଲେ । 'ଜୟ ରାଧେ ଶ୍ରୀରାଧେ' କହି କହି ତାଙ୍କ ଆଖିରୁ ଅଶ୍ରୁପ୍ରବାହ ଛୁଟିଲା—ସେ ପାଗଳଙ୍କ ପରି ଉଦ୍‌ଭ୍ରାନ୍ତ ହୋଇ ରାଧାକୁଣ୍ଡକୁ ଫେରିଗଲେ । ତାଙ୍କ ଅପହୃତ କୌପୀନ ଖଣ୍ଡିକ ପୁନରାୟ ଯଥାସ୍ଥାନରେ ରହିଥିବା

ଦେଖି ସେ ଶତଗୁଣବର୍ଦ୍ଧିତ ବିସ୍ମୟରେ ଭାବିବାକୁ ଲାଗିଲେ ବ୍ରାହ୍ମସମାଜର ପ୍ରଭାବ ହେତୁ ସେ କେତେଥର ଶ୍ରୀକୃଷ୍ଣଲୀଳାକୁ ଅଶ୍ଳୀଳ କୁରୁଚିପୂର୍ଣ୍ଣ କଳ୍ପନା ବୋଲି ପ୍ରମାଣ କରିବା ନିମିତ୍ତ ଶ୍ରୀରାମକୃଷ୍ଣଙ୍କ ସହିତ ଚପଳ ଭାବରେ ତର୍କ କରିନାହାନ୍ତି ! ତା'ପରେ ସେ ଗୁରୁ-କୃପାରୁ ଶ୍ରୀକୃଷ୍ଣ-ଲୀଳାରେ ବିଶ୍ୱାସୀ ହେଲେ — ବରାହନଗର ମଠରେ ଗଭୀର ଶ୍ରଦ୍ଧା ସହିତ ଗୀତା ଓ ଭାଗବତ ଅଧ୍ୟୟନ ଓ ଅଧ୍ୟାପନା କରି ପରମପୁରୁଷଙ୍କ ନରଲୀଳା ରହସ୍ୟ ବୁଝିବାକୁ ଚେଷ୍ଟା କରିଥିଲେ; କିନ୍ତୁ ଆଜି ଏ ମଧୁର ଲୀଳାଭିନୟ କଥା ପୁନଃ ପନଃ ଚିନ୍ତା କରି ମଧ୍ୟ ଯୁକ୍ତିସହ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରିଲେ ନାହିଁ । ସମସ୍ତ ଯୁକ୍ତି ବିଚାର ଛପିଯାଇ ଗୋଟିଏ ଦିବ୍ୟ ପ୍ରେମାନନ୍ଦରେ ତାଙ୍କ ହୃଦୟ ଭରିଉଠିଲା; ତନ୍ମୟ ଚିତ୍ତରେ ସେ ଶ୍ରୀଶ୍ରୀରାଧାକୁଣ୍ଡ ତୀରରେ କୃଷ୍ଣ-ଗୁଣ-ଗାନ କରିବାରେ ରତ ରହିଲେ ।

## ସ୍ୱାମୀଜୀଙ୍କ ପ୍ରଥମ ମନ୍ତ୍ରଶିଷ୍ୟ

ସେତେବେଳକୁ ପ୍ରଭାତ ହୋଇନାହିଁ । ପୂର୍ବାକାଶରେ ଉଷାର ରକ୍ତିମ ଛଟା ଈଷତ୍ ବିକଶିତ — ଦୀର୍ଘପଥ ଭ୍ରମଣରେ ପରିଶ୍ରାନ୍ତ କ୍ଷୁଧା-ପିପାସା-କାତର ସ୍ୱାମୀଜୀ ପଥପାର୍ଶ୍ୱରେ ଥିବା ଗୋଟିଏ ବୃକ୍ଷତଳେ ବସିଥାଆନ୍ତି । ହାତରାସ୍ ରେଳଷ୍ଟେସନର ଷ୍ଟେସନମାଷ୍ଟର ଶରତ୍ ଚନ୍ଦ୍ର ଗୁପ୍ତ କାର୍ଯ୍ୟ ଶେଷ କରି ବସାକୁ ଫେରୁଥାନ୍ତି । ଏହି ସମୟରେ ସ୍ୱାମୀଜୀଙ୍କ ପ୍ରଭାତାରୁଣରାଗରଞ୍ଜିତ ଶ୍ରୀଅଙ୍ଗର ଦିବ୍ୟ କାନ୍ତିଛଟା ନେତ୍ରପଥରେ ପଡ଼ିବା ମାତ୍ରେ ତାଙ୍କର ମୁଗ୍ଧ ଦୃଷ୍ଟି ଅଜ୍ଞାତସାରରେ ନିଷ୍ପଲକ ହେଲା ! ଧୀରେ ଧୀରେ ଅଗ୍ରସର ହୋଇ ପଦଧୂଳୀ ଗ୍ରହଣ କରିବା ପରେ ଶରତବାବୁ ବିନୟ ନମ୍ର ବଚନରେ ପଚାରିଲେ, ''ଆପଣଙ୍କୁ କ୍ଷୁଧିତ ଓ ପରିଶ୍ରାନ୍ତ ଦେଖୁଛି । ଦୟାକରି ମୋ ଘରକୁ ଚାଲନ୍ତୁ; ସେହିଠାରେ ବିଶ୍ରାମ କରିବେ'' ମୃଦୁ ହାସ୍ୟରେ କରୁଣାସ୍ନିଗ୍ଧ ଦୃଷ୍ଟିପାତ କରି ସ୍ୱାମୀଜୀ ତଳୁ ଉଠି ନୀରବରେ ଶରତ୍‌ବାବୁଙ୍କ ପଛେ ପଛେ ଚାଲିଲେ ।

ଶାସ୍ତ୍ର ଓ ମହାପୁରୁଷଗଣ କହିଛନ୍ତି ଯେ, ଭାଗ୍ୟବାନ୍ ସାଧକଙ୍କ ଦୀକ୍ଷାକାଳ ସମୁପସ୍ଥିତ ହେଲେ ତାଙ୍କୁ ଆଉ ଗୁରୁ ଅନ୍ୱେଷଣ କରିବାକୁ ହୁଏ ନାହିଁ; ଗୁରୁ ନିଜେ ଶିଷ୍ୟଙ୍କୁ କୃତାର୍ଥ କରିବା ନିମିତ୍ତ ଉପସ୍ଥିତ ହୁଅନ୍ତି । ଆଧ୍ୟାତ୍ମିକ ରାଜ୍ୟରେ ଏ ପ୍ରକାର ଦୃଷ୍ଟାନ୍ତ ବିରଳ ନୁହେଁ । ସ୍ୱାମୀଜୀଙ୍କ ସର୍ବ ପ୍ରଥମ ଶିଷ୍ୟ ପୁଣ୍ୟଚରିତ ଶ୍ରୀମତ୍ ସ୍ୱାମୀ ସଦାନନ୍ଦଙ୍କ ଜୀବନରେ ମଧ୍ୟ ଏହିପରି ଘଟଣା ଘଟିଥିଲା ।

ପ୍ରଥମ ଦର୍ଶନରେ ହିଁ ଶରତବାବୁ ସ୍ୱାମୀଜୀଙ୍କ ଶ୍ରୀପାଦପଦ୍ମରେ ମନ-ପ୍ରାଣ ସମର୍ପଣ କଲେ । ସ୍ୱାମୀଜୀ ଆହାରାନ୍ତେ ବିଶ୍ରାମ କରି ସୁସ୍ଥ ହେବା ପରେ ସେ କହିଲେ, ''ବହୁଦିନ ଧରି ଆତ୍ମଜ୍ଞାନ-ଲାଭସ୍ପୃହା ବଳବତୀ ହୋଇଛି; କିନ୍ତୁ ଉପଯୁକ୍ତ ଶିକ୍ଷକ ଖୋଜି ପାଉନାହିଁ । ଆପଣ ଯେତେବେଳେ ଦୟାକରି ଦର୍ଶନ ଦେଇଛନ୍ତି, ମୋତେ ଦୟାକରି ଆତ୍ମଜ୍ଞାନ ପ୍ରଦାନ କରନ୍ତୁ ।''

ସ୍ୱାମୀଜୀ ତାଙ୍କୁ କୌଣସି ପ୍ରତ୍ୟକ୍ଷ ଉତ୍ତର ନ ଦେଇ ନିଜ ମନକୁ ମନ ଗୋଟିଏ ଗୀତ ଗାଇବାକୁ ଆରମ୍ଭ କଲେ । ତାହାର ଭାବାର୍ଥ ହେଲା, ଯଦି ତୁମେ ମୋ ସ୍ନେହ ଲାଭ କରିବାକୁ ଚାହଁ, ତାହାହେଲେ ତୁମେ ତୁମ ସୁନ୍ଦର ମୁହଁଟିକୁ ଭସ୍ମଲିପ୍ତ କରି ଆସ; ପାରିବ କି ?''

ଶରତଚନ୍ଦ୍ର ତତ୍‌କ୍ଷଣାତ ଉତ୍ତର ଦେଲେ, ''ସ୍ୱାମୀଜୀ ! ମୁଁ ଆପଣଙ୍କ ଆଜ୍ଞାବହ ଭୃତ୍ୟ; ଯାହା ଆଦେଶ କରିବେ, ତାହା ନିର୍ବିଚାରରେ ପାଳନ କରିବି ।' ସ୍ୱାମୀଜୀ ବିସ୍ମୟ-ବିମୁଗ୍‌ଧ ନେତ୍ରରେ ମୁମୁକ୍ଷୁ ଯୁବକଙ୍କ ବୈରାଗ୍ୟାଦୀପ୍ତ ମୁହଁକୁ ଚାହିଁ କ'ଣ କହିବେ ଭାବିପାରିଲେ ନାହିଁ ।

ଦିନେ ସ୍ୱାମୀଜୀଙ୍କୁ ନିରୋଳାରେ ଗଭୀର ଚିନ୍ତାମଗ୍ନ ଥିବା ଦେଖି ଶରତବାବୁ ପଚାରିଲେ, ''ସ୍ୱାମୀଜୀ ! ଆଜି ଆପଣ ବିଷର୍ଣ୍ଣ ଦିଶୁଛନ୍ତି କାହିଁକି ?'' ଦୀର୍ଘଶ୍ୱାସ ପକାଇ ସ୍ୱାମୀଜୀ ଉତ୍ତର ଦେଲେ, ''ବତ୍ସ ! ଗୋଟିଏ ମହତ୍ କାର୍ଯ୍ୟ ସମ୍ପାଦନା କରିବା ଭାର ମୋ ସ୍କନ୍ଧରେ ଅର୍ପିତ ହୋଇଛି; କିନ୍ତୁ ମୁଁ କ୍ଷୁଦ୍ରଶକ୍ତି; ମୋଦ୍ୱାରା ଏହା ସମ୍ଭବପର ନୁହେଁ ବୋଲି ଭାବି ହତାଶ ହୋଇଛି । ଯେତେଦିନ କଟିଯାଉଛି, ସେତେ ସ୍ପଷ୍ଟଭାବେ ବୁଝିପାରୁଛି, ସନାତନ ଧର୍ମର ଲୁପ୍ତ ଗୌରବ ପୁନରୁଦ୍ଧାର କରିବା ତାଙ୍କ ଅଭିପ୍ରେତ କର୍ମ । ହାୟ, ଧର୍ମର କି ଶୋଚନୀୟ ଅଧଃପତନ ! ଆଉ ତାହା ସଙ୍ଗେ ଅନାହାରକ୍ଲିଷ୍ଟ ଭାରତବାସୀଙ୍କର କି ମର୍ମଭେଦୀ ଦୁରବସ୍ଥା ! ଭାରତକୁ ପୁନରାୟ ଧର୍ମର ବୈଦ୍ୟୁତିକ ଶକ୍ତି ସାହାଯ୍ୟରେ ସଞ୍ଜୀବିତ କରିବାକୁ ହେବ — ତାହାର ଆଧ୍ୟାତ୍ମିକତାଦ୍ୱାରା ସମଗ୍ର ଜଗତକୁ ଜୟ କରିବାକୁ ହେବ; କିନ୍ତୁ ଉପାୟ କ'ଣ ?'' ଏହା କହୁ କହୁ ତାଙ୍କ ଜ୍ୟୋତିର୍ମୟ ବିଶାଳ ନେତ୍ରଯୁଗଳ ବ୍ୟଥିତ କରୁଣାରେ ପ୍ରୋଜ୍ଜ୍ୱଳ ହୋଇ ଉଠିଲା । ଶରତବାବୁ ଗଭୀର ଶ୍ରଦ୍ଧା ସହକାରେ ଅସ୍ପଷ୍ଟ ସ୍ୱରରେ କହିଲେ, ''ମୁଁ କ'ଣ ଆପଣଙ୍କର କୌଣସି କାର୍ଯ୍ୟରେ ଲାଗିପାରିବି ନାହିଁ ?''

ସନ୍ନ୍ୟାସୀ ଠିଆ ହେଲେ; ଗମ୍ଭୀର ହୋଇ କହିଲେ, ''ଏହି ମହତ୍ କାର୍ଯ୍ୟରେ ଆତ୍ମ-ନିୟୋଗ କରିବା ନିମିତ୍ତ ତୁମେ ଭିକ୍ଷାପାତ୍ର ଓ କମଣ୍ଡଳୁ ଧରି ରାସ୍ତାରେ ଠିଆ ହେବାକୁ ପ୍ରସ୍ତୁତ ଅଛ ? ତୁମେ କ'ଣ ପ୍ରକୃତ ତ୍ୟାଗୀ-ଜୀବନର ଦୁଃସହ କଠୋରତା ସହ୍ୟ କରିପାରିବ ?''

ଦୃଢ଼ତାର ସହିତ ଶରତବାବୁ ତତ୍‌କ୍ଷଣାତ ଉତ୍ତର ଦେଲେ, ''ଅବଶ୍ୟ, ଆପଣଙ୍କ ଦୟା ହେଲେ, ମୁଁ ନିଶ୍ଚୟ ସହ୍ୟ କରିପାରିବି ।''

X X X

ଗୁପ୍ତ ପରିବାର ସହିତ କେତେଦିନ କଟାଇ ସ୍ୱାମୀଜୀ ହାତରାସ୍ ତ୍ୟାଗ କରିବାକୁ ସଙ୍କଳ୍ପ କଲେ । ଦିନେ ଶରତବାବୁଙ୍କୁ ଡାକି କହିଲେ, ''ବତ୍ସ ! ଜଣେ ସନ୍ନ୍ୟାସୀ ପକ୍ଷରେ ଗୋଟିଏ ସ୍ଥାନରେ ବେଶୀ ଦିନ ରହିବା ଅନ୍ୟାୟ ! ପୁଣି

ତୁମମାନଙ୍କ ପ୍ରତି ମୁଁ ଗୋଟିଏ ବିଶେଷ ଆକର୍ଷଣ ଅନୁଭବ କରୁଛି, ତେଣୁ ମୋ ପକ୍ଷରେ ଏ ସ୍ଥାନ ସତ୍ୱର ପରିତ୍ୟାଗ କରିବା ଶ୍ରେୟସ୍କର ।''

ସ୍ୱାମୀଜୀଙ୍କ ପବିତ୍ର ସଙ୍ଗସୁଖରୁ ବଞ୍ଚିତ ହେବା ଆଶଙ୍କାରେ ଶରତଚନ୍ଦ୍ର ଶୋକାର୍ତ୍ତ ହୃଦୟରେ କହିଲେ, ''ସ୍ୱାମୀଜୀ ! ମୋତେ ଆପଣଙ୍କ ଶିଷ୍ୟ କରି ସାଙ୍ଗରେ ନେଇଯା'ନ୍ତୁ ।'' ସ୍ୱାମୀଜୀ ଉତ୍ତର ଦେଲେ, ''ତୁମେ କ'ଣ ଭାବୁଛ ଯେ ମୋ ଶିଷ୍ୟ ହୋଇଗଲେ ତୁମ ଆଧ୍ୟାତ୍ମିକ ପିପାସା ମେଣ୍ଟିଯିବ ? କାହାର ଗୁରୁ ହେବା ଯୋଗ୍ୟତା ମୋ ଠାରେ ଅଛି କି ନାହିଁ ସନ୍ଦେହ । ଭଗବାନଙ୍କ ଚରଣରେ ଆତ୍ମସମର୍ପଣ କରି କାମ କରିଯାଅ; ସେ କଲ୍ୟାଣ ବିଧାନ କରିବେ । ମୁଁ ଏବେ ଶ୍ରୀଶ୍ରୀବଦ୍ରୀ-କେଦାର ଦର୍ଶନ ଲାଗି ଯାତ୍ରା କରିବାକୁ ସ୍ଥିର କରିଛି, ତୁମେ ଦୁଃଖିତ ହୁଅନା । ପ୍ରସନ୍ନମନରେ ମୋତେ ବିଦାୟ ଦିଅ । ମୁଁ ପୁଣି ହାତରାସ୍ ଫେରି ଆସିବାକୁ ଚେଷ୍ଟା କରିବି ।''

ଶରତଚନ୍ଦ୍ର ପ୍ରବୋଧନା କଥାରେ ଭୁଲିବାର ପାତ୍ର ନୁହନ୍ତି । ସେ ଉତ୍ତର ଦେଲେ, ''ଆପଣ ଯାହା କହନ୍ତୁ ନା କାହିଁକି, ଆପଣ ଯେଉଁଆଡ଼େ ଯିବେ, ମୁଁ ଆପଣଙ୍କ ଅନୁଗମନ କରିବି । ମୋତେ ଦୀକ୍ଷା ଦେବାକୁ ପଡ଼ିବ ।''

ସ୍ୱାମୀଜୀ କିଛି ସମୟ ଚିନ୍ତା କରି କହିଲେ, ''ସତରେ କ'ଣ ତୁମେ ମୋର ଅନୁଗମନ କରିବା ଲାଗି ପ୍ରସ୍ତୁତ ହୋଇଛ ?'' ଶରତଚନ୍ଦ୍ର ମୁଣ୍ଡ ନୁଆଇଁ ସମ୍ମତି ଜଣାଇଲେ । ସ୍ୱାମୀଜୀ ଠିଆ ହୋଇ କହିଲେ, ''ବେଶ୍, ମୋ ଭିକ୍ଷା ଝୁଲି ନିଅ, ତୁମ ଷ୍ଟେସନର କୁଲିମାନଙ୍କ ଘରୁ ଭିକ୍ଷା ମାଗି ନେଇଆସ ।''

ଶତରଚନ୍ଦ୍ର ତତ୍‌କ୍ଷଣାତ୍ ଦ୍ୱିଧାହୀନ ଚିତ୍ତରେ ଝୁଲିଟି କାନ୍ଧରେ ନେଇ ଭିକ୍ଷା କରିବାକୁ ବାହାରିଗଲେ । ଭିକ୍ଷାଲବ୍ଧ ପଦାର୍ଥ ସହିତ ଶରତଚନ୍ଦ୍ରଙ୍କୁ ଫେରି ଆସିବାର ଦେଖି ସ୍ୱାମୀଜୀ ଆନନ୍ଦୋଲ୍ଲାସରେ ତାଙ୍କୁ ଆଶୀର୍ବାଦ କଲେ । ଏହାପରେ ଶରତଚନ୍ଦ୍ର ପିତାମାତାଙ୍କ ସମ୍ମତି ନେଇ ସ୍ୱାମୀଜୀଙ୍କ ସହିତ ହାତ୍‌ରାସ୍ ପରିତ୍ୟାଗ କରି ହୃଷୀକେଶରେ ପହଞ୍ଚିଲେ ।

## ସଶିଷ୍ୟ ହୃଷୀକେଶଠାରେ ତପସ୍ୟା

ନବଦୀକ୍ଷିତ ଶିଷ୍ୟ ସ୍ୱାମୀ ସଦାନନ୍ଦ ଗୁରୁ-ଉପଦିଷ୍ଟ ପନ୍ଥା ଅବଲମ୍ବନ କରି କଠୋର ସାଧନାରେ ବ୍ରତୀ ହେଲେ; କିନ୍ତୁ ଦୈହିକ କଠୋରତାରେ ଅନଭ୍ୟସ୍ତ ନବୀନ ସନ୍ନ୍ୟାସୀ କିଛିଦିନ ପରେ ଅସୁସ୍ଥ ହୋଇପଡ଼ିଲେ । ସ୍ୱାମୀଜୀ ବାଧ୍ୟ ହୋଇ ଶିଷ୍ୟଙ୍କ ସହିତ ପୁନର୍ବାର ହାତ୍‌ରାସ୍‌କୁ ଫେରିଆସିଲେ । ହାତ୍‌ରାସ୍‌ରେ ପହଞ୍ଚିବା ପରେ ନିଜେ ସ୍ୱାମୀଜୀ ପୀଡ଼ିତ ହୋଇ ଶଯ୍ୟାଶାୟୀ ହେଲେ । ସ୍ଥାନୀୟ ଉତ୍ସାହୀ ଯୁବକବୃନ୍ଦ ଓ ଗୁପ୍ତ ପରିବାରର ଯତ୍ନ ଓ ଚେଷ୍ଟା ଯୋଗୁଁ ସ୍ୱଳ୍ପକାଳ ମଧ୍ୟରେ ଆରୋଗ୍ୟ ଲାଭ କରି ସ୍ୱାମୀଜୀ ବରାହନଗର ମଠକୁ ଫେରିଗଲେ । ସଦାନନ୍ଦଜୀ

ମଧ୍ୟ କେତେଦିନ ପରେ ଅପେକ୍ଷାକୃତ ସୁସ୍ଥ ହୋଇ ବରାହନଗର ମଠକୁ ଆସିଲେ ଏବଂ ଅନ୍ୟ ସନ୍ନ୍ୟାସୀମାନଙ୍କଦ୍ୱାରା ରାମକୃଷ୍ଣ ସଂଘରେ ସସ୍ନେହ ଗୃହୀତ ହେଲେ ।

## ବରାହନଗର ମଠକୁ ପ୍ରତ୍ୟାବର୍ତ୍ତନ

ଶ୍ରୀରାମକୃଷ୍ଣଙ୍କ ଗୃହୀ ଓ ସନ୍ନ୍ୟାସୀ ଶିଷ୍ୟ ଓ ଭକ୍ତବୃନ୍ଦ ବହୁଦିନ ପରେ ସେମାନଙ୍କ ପ୍ରିୟତମ 'ନରେନ୍ଦ୍ର'ଙ୍କୁ ପାଇ ଆନନ୍ଦରେ ଆତ୍ମହରା ହେଲେ । ସ୍ୱାମୀଜୀ ପୁନରାୟ ପ୍ରବଳ ଉତ୍ସାହ ସହିତ ସନ୍ନ୍ୟାସୀବୃନ୍ଦଙ୍କୁ ଶିକ୍ଷାଦାନ କଲେ ଏବଂ ଆଗତପ୍ରାୟ ଭବିଷ୍ୟତ କର୍ମ ପାଇଁ ପ୍ରସ୍ତୁତ ହେବା ଲାଗି ପ୍ରରୋଚନା ଦେଲେ । ଯେଉଁ ଅତିମାନବ ପ୍ରତିଭା, ଅସୀମ ଅନୁକମ୍ପା ଓ ଉଦାରହୃଦୟ ପରବର୍ତ୍ତୀ କାଳରେ ସମଗ୍ର ଜଗତର ଶ୍ରଦ୍ଧା ମୁଗ୍ଧ-ବିସ୍ମିତ ଦୃଷ୍ଟି ଆକର୍ଷଣ କରିଥିଲା, ବରାହନଗର ମଠରେ ଶ୍ରୀରାମକୃଷ୍ଣଭକ୍ତବୃନ୍ଦ ବହୁ ପୂର୍ବରୁ ତାହା ଅନୁଭବ କରିଥିଲେ ।

ଭାରତର ସାମଜିକ ଓ ସାଂସାରିକ ଅବସ୍ଥା ଆହୁରି ଉନ୍ନତ କରି, ଯେଉଁଥିରେ କି ସମଗ୍ର ଭାରତବାସୀ ଗୋଟିଏ ଅତ୍ୟୁଦାର ଧର୍ମଭିତ୍ତି ଉପରେ ଦଣ୍ଡାୟମାନ ହୁଅନ୍ତି, ଯେଉଁଥିରେ ଏକମାତ୍ର ଧର୍ମରେ ଆସ୍ଥାହୀନତା ଆମ୍ଭମାନଙ୍କ ବର୍ତ୍ତମାନ ଦୂରବସ୍ଥାର କାରଣ ବୋଲି ସମସ୍ତେ ସମ୍ୟକ୍‌ରୂପେ ବୁଝିପାରି ଧର୍ମପରାୟଣ ହେବାକୁ ଚେଷ୍ଟା କରନ୍ତି, ଏହି ଅବସ୍ଥା ଲାଗି କାମ କରିବା ନିମିତ୍ତ କିଭଳି ପ୍ରସ୍ତୁତ ହେବାକୁ ପଡ଼ିବ, ଗୁରୁଭ୍ରାତାଗଣଙ୍କ ସହିତ ସ୍ୱାମୀଜୀ ତାହା ହିଁ ପ୍ରତ୍ୟହ ଆଲୋଚନା କରୁଥିଲେ ।

ବିହାର ଓ ଉତ୍ତର-ପଶ୍ଚିମାଞ୍ଚଳରେ ପଦବ୍ରଜରେ ପରିଭ୍ରମଣ କରି ସ୍ୱାମୀଜୀ ବିଭିନ୍ନ ପ୍ରକାର ଆଚାର ବ୍ୟବହାର, ରୀତିନୀତି ସହିତ ପ୍ରତ୍ୟକ୍ଷ ଭାବରେ ପରିଚିତ ହେବାର ସୁଯୋଗ ପାଇଥିଲେ । ସେ ଦେଖିଲେ ଯେ, ଏଗୁଡ଼ିକ ଆପାତତଃ ଯେତେ ବିରୋଧୀ ବୋଲି ଅନୁମିତ ହେଉ ନା କାହିଁକି, ଗୋଟିଏ ଧର୍ମକୁ ଆଶ୍ରୟ କରି ରହିଛନ୍ତି । ଆଧୁନିକ ସଂସ୍କାରକଗଣଙ୍କ ପରି ମୁଷ୍ଟିମେୟ ପାଶ୍ଚାତ୍ୟଭାବାପନ୍ନ ଶିକ୍ଷିତ ବ୍ୟକ୍ତିଙ୍କ ମୁଖାପେକ୍ଷୀ ନ ହୋଇ ସେ ପ୍ରଥମରୁ ଭାରତର ବିଶାଳ ଜନତା ପ୍ରତି ଦୃଷ୍ଟିପାତ କରିବାକୁ ଶିଖିଥିଲେ । ଶ୍ରୀରାମକୃଷ୍ଣଙ୍କ ଉପଦେଶ ଓ ଜୀବନୀ ବିଶ୍ଳେଷଣ କରି ସ୍ୱାମୀଜୀ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ ସଂକୀର୍ଣ୍ଣଚେତା ବୃଥା ଗର୍ବୋଦ୍ଧତ ତଥାକଥିତ ବ୍ରାହ୍ମଣଗଣଙ୍କର ଏବଂ ଧର୍ମବ୍ୟବସାୟୀ ଅଜ୍ଞ ଗୁରୁକୁଳର ଅନ୍ୟାୟ ଅନଧିକାରଚର୍ଚ୍ଚା ସମାଜରୁ ଦୂର କରି, ଧର୍ମଚିନ୍ତା ବିଷୟରେ ପ୍ରତ୍ୟେକଙ୍କୁ ସମ୍ପୂର୍ଣ୍ଣ ସ୍ୱାଧୀନତା ଦେଲେ ଏହି ସବୁ ବାଧା ବିରୋଧ, ଭେଦଜ୍ଞାନ ଅନେକାଂଶରେ ତିରୋହିତ ହେବ ଏବଂ ବିଭିନ୍ନ ସମ୍ପ୍ରଦାୟ ଓ କ୍ଷୁଦ୍ର କ୍ଷୁଦ୍ର କୃତ୍ରିମ ଜାତିବିଭାଗଗୁଡ଼ିକ ଅନ୍ତର୍ହିତ ହୋଇ ସବୁ ଭାରତବାସୀ ଗୋଟିଏ ଅଖଣ୍ଡ ଜାତିରେ ପରିଣତ ହେବେ ।

## ଗାଜୀପୁରରେ

କିଛିଦିନ ପରେ ସ୍ୱାମୀଜୀ ମଠବାଡ଼ି ପରିତ୍ୟାଗ କରି ବିଖ୍ୟାତ ସାଧୁ ପାଓହାରୀବାବାଙ୍କ ଦର୍ଶନାର୍ଥେ ଗାଜୀପୁରରେ ପହଞ୍ଚିଲେ । ରାୟ ବାହାଦୁର ଗଗନଚନ୍ଦ୍ର ରାୟଙ୍କ ଗୃହରେ ଅତିଥିରୂପେ ବାସ କରି ସେ ପାଓହାରୀବାବାଙ୍କ ନିକଟକୁ ଯାତାୟାତ କଲେ । ପାଓହାରୀବାବା ଆଗରୁ ଶ୍ରୀରାମକୃଷ୍ଣଙ୍କ ବିଷୟରେ ଅବଗତ ଥିବାରୁ ସ୍ୱାମୀଜୀଙ୍କୁ ତାଙ୍କ ଶିଷ୍ୟ ବୋଲି ଜାଣି ଆଦର କରିଥିଲେ । କ୍ରମେ ସେମାନଙ୍କ ଘନିଷ୍ଠତା ବୃଦ୍ଧି ପାଇଲା ଏବଂ ପରସ୍ପର ବିଶେଷ ଭାବରେ ଆକୃଷ୍ଟ ହେଲେ । ଯେତେବେଳେ ସେମାନେ ଧର୍ମରାଜ୍ୟର ଉଚ୍ଚତର ଅନୁଭୂତି ଓ ଜଟିଳ ଦାର୍ଶନିକ ତତ୍ତ୍ୱ ସମ୍ବନ୍ଧରେ ଆଲୋଚନା କରନ୍ତି, ସେତେବେଳେ ଏପରି ପରିସ୍ଥିତିର ସୃଷ୍ଟି ହୁଏ ଯେ, ଉପସ୍ଥିତ ବ୍ୟକ୍ତିମାନଙ୍କ ମଧ୍ୟରୁ କେହି ଉକ୍ତ ଆଲୋଚନାର ମର୍ମ ଗ୍ରହଣ କରିବାକୁ ସମର୍ଥ ହୁଅନ୍ତି ନାହିଁ ।

ସ୍ୱାମୀଜୀ ଗାଜୀପୁରକୁ ଆସିବା ପରଠାରୁ ପ୍ରତି ରବିବାର ଦିନ ରାୟ ବାହାଦୁରଙ୍କ ଘରେ ଗୋଟିଏ ଛୋଟକାଟର ଧର୍ମସଭା ବସୁଥିଲା । ସ୍ଥାନୀୟ ଶିକ୍ଷିତ ଭଦ୍ରଲୋକଙ୍କ ମଧ୍ୟରୁ ଅଧିକାଂଶ ସ୍ୱାମୀଜୀଙ୍କ ସଙ୍ଗସୁଖ ଲାଭ ଓ ମଧୁର ସଙ୍ଗୀତ ଶ୍ରବଣ କରିବା ଅଭିପ୍ରାୟରେ ସେଠାରେ ଏକତ୍ର ହେଉଥିଲେ । ସ୍ୱାମୀଜୀ ରାଧାକୃଷ୍ଣ ଲୀଳାବିଷୟକ ସଙ୍ଗୀତ ଗାଉଥିବାରୁ ଗାଜୀପୁରର ସମସ୍ତେ ତାଙ୍କୁ 'ବାବାଜୀ' ବୋଲି ଡାକୁଥିଲେ । ଦିନେ ଏହି ସଭାରେ ସମାଜସଂସ୍କାର ସମ୍ବନ୍ଧରେ ଆଲୋଚନା କରୁ କରୁ ସ୍ୱାମୀଜୀ କହିଲେ ଯେ, ସମାଜର ମସ୍ତକ ଉପରେ ଅଗ୍ନିମୟ ଅଭିଶାପ ବର୍ଷଣ କରି ଏବଂ ପ୍ରତ୍ୟେକ ଆଚାର-ବ୍ୟବହାରର ତୀବ୍ର ସମାଲୋଚନା କରି କୌଣସି ପ୍ରକାର ସଂସ୍କାର ଆଣି ହେବ ନାହିଁ । ଅସୀମ ପ୍ରେମ ଓ ଅନନ୍ତ ଧୈର୍ଯ୍ୟ ସହିତ ଶିକ୍ଷାବିସ୍ତାର ମାଧ୍ୟମରେ ଧୀରେ ଧୀରେ ଜାତିକୁ ଭିତରପଟୁ ଉନ୍ନତ କରିବାକୁ ପଡ଼ିବ । ହିନ୍ଦୁଧର୍ମର ମହାନ୍ ସାର୍ବଭୌମିକ ଆଦର୍ଶଗୁଡ଼ିକ ପ୍ରତି ଦୃଷ୍ଟି ରଖି ଶିକ୍ଷାପ୍ରଚାର କରିବାକୁ ହେବ ଏବଂ ସଙ୍ଗେ ସଙ୍ଗେ ଆମ୍ଭମାନଙ୍କୁ ଏହା ସର୍ବଦା ସ୍ମରଣ ରଖିବାକୁ ପଡ଼ିବ ଯେ ହିନ୍ଦୁଧର୍ମ ଭ୍ରମପ୍ରମାଦର ଗୋଟିଏ ସମଷ୍ଟି ନୁହେଁ । ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ଦୃଷ୍ଟିରେ ବିଚାର ନ କରି ଗଭୀର ଅଧ୍ୟବସାୟ ସହିତ ସନାତନ ଧର୍ମର ମହତ୍ତ୍ୱ-ଅନୁଧାବନ କରିବା ନିମିତ୍ତ ଚେଷ୍ଟା କରିବାକୁ ପଡ଼ିବ । ଏହି ସନାତନ ହିନ୍ଦୁଜାତିର ଉଦ୍ଦେଶ୍ୟ କ'ଣ ଏବଂ ଏହାର ପ୍ରକୃତ ଜୀବନୀ-ଶକ୍ତି କେଉଁଠାରେ, ତାହା ଅନ୍ୱେଷଣ କରିବାକୁ ହେବ । ଏହା ଅତୀବ ଦୁଃଖର ବିଷୟ ଯେ ଆମ ଭିତରୁ ଅନେକେ ପାଶ୍ଚାତ୍ୟଶିକ୍ଷା ମୋହରେ ଅନ୍ଧ ହୋଇ ମନେ ମନେ କଳ୍ପନା କରୁ—ଭାରତବର୍ଷ ନିଜ ଜାତୀୟ ଜୀବନାଦର୍ଶରୁ ବହୁଦୂରକୁ ଅପସରି ଯାଇଛି ଅଥବା ଏହାର ଏପରି କୌଣସି ଆଦର୍ଶ ନାହିଁ, ଯଦ୍ୱାରା ବିଭିନ୍ନ ପ୍ରକାର ସମ୍ପ୍ରଦାୟ ମଧ୍ୟରେ ଗୋଟିଏ ସମନ୍ୱୟସୂତ୍ର ଆବିଷ୍କାର କରି ହେବ । ଆଧୁନିକ

ସମାଜ-ସଂସ୍କାରକମାନଙ୍କର ଏହା ହିଁ ପ୍ରଧାନ ଦୈନ୍ୟ — ଆଧ୍ୟାତ୍ମିକ ଭିତ୍ତି ଉପରେ ପ୍ରତିଷ୍ଠିତ ହିନ୍ଦୁ-ସଭ୍ୟତାର ପ୍ରକୃତ ରୂପ ଦେଖିବା ଭଳି ଦୃଷ୍ଟି ସେମାନେ ହରାଇଛନ୍ତି । ଯେଉଁଦିନ ଆମେ ଏହା ସମ୍ୟକ୍ ରୂପେ ବୁଝି ବୈଦେଶିକ ଭାବବହୁଳ ସଂସ୍କାର ହାତରୁ ସମାଜରୁ ରକ୍ଷା କରିବା ନିମିତ୍ତ ଚେଷ୍ଟା କରିବା, ସେହିଦିନ ଆମ ଆଧୁନିକ ଜାତୀୟ ଜୀବନ ସମସ୍ୟାର ସମାଧାନ ହେବ ।

## ପାଓହାରୀବାବାଙ୍କଠାରୁ ଦୀକ୍ଷାଗ୍ରହଣର ସଙ୍କଳ୍ପ

ଦିନେ ଗୋପନରେ ଗାଜୀପୁର ତ୍ୟାଗ କରି ସ୍ୱାମୀଜୀ ସହସା ବରାହନଗରକୁ ଫେରିଆସିଲେ । ଆଉ କିଛିଦିନ ପରେ ୧୮୯୦ ଖ୍ରୀଷ୍ଟାବ୍ଦ ଜାନୁୟାରୀ ବାଇଶି ତାରିଖ ଦିନ ପୁନରାୟ ଗାଜୀପୁରରେ ଉପସ୍ଥିତ ହେଲେ । ଏହା ପୂର୍ବରୁ ସ୍ୱାମୀଜୀ ପାଓହାରୀବାବାଙ୍କଠାରୁ ଦୀକ୍ଷା ଗ୍ରହଣ କରିବେ ବୋଲି ମନେ ମନେ ସଂକଳ୍ପ କରିଥିଲେ; କିନ୍ତୁ ଏହା ସଙ୍ଗତ କି ଅସଙ୍ଗତ, ତାହା ଭାବି ଠିକ୍ କରି ନ ପାରି ଚିତ୍ତର ଦୌର୍ବଲ୍ୟ ବା ଚାଞ୍ଚଲ୍ୟ ନିରାକରଣକଳ୍ପେ ଗାଜୀପୁରରୁ ଫେରିଯାଇଥିଲେ ଏବଂ ନିଜସଙ୍ଗେ ଯୁଦ୍ଧ କରି ହୃଦୟ ସ୍ଥିର କରି ନ ପାରିବାରୁ ପୁନରାୟ ଗାଜୀପୁରକୁ ଫେରିଆସିଲେ । ଭାବିଲେ, "ଭଗବାନ୍ ଶ୍ରୀରାମକୃଷ୍ଣଙ୍କ ଅହେତୁକ କୃପାର ଅଧିକାରୀ ହୋଇ ମଧ୍ୟ ଆଜି ପର୍ଯ୍ୟନ୍ତ ଶାନ୍ତି ପାଇଲି ନାହିଁ କାହିଁକି ? ହୁଏତ ଏହି ବ୍ରହ୍ମଜ୍ଞ ପୁରୁଷଙ୍କ ସାହାଯ୍ୟରେ ମୁଁ ଶାନ୍ତିଲାଭ କରିପାରିବି ।"

କିଏ କହିବ, ଏହି ସମୟରେ ପ୍ରବଳତମ ବ୍ୟାକୁଳତାରେ ସେ ଶ୍ରୀଗୁରୁଙ୍କ ଆଦେଶବାଣୀ ବିସ୍ମୃତ ହୋଇଥିଲେ କି ନାହିଁ ? ଶ୍ରୀରାମକୃଷ୍ଣ ତାହାଙ୍କୁ ଦିନେ କହିଥିଲେ, "ତୋର ନିର୍ବିକଳ୍ପ ସମାଧି ଚାବି ଦିଆହୋଇ ରହିଲା; କାମ ଶେଷ ହେଲେ ପାଇବୁ ।" ଏହା କ'ଣ ସେ କ୍ଷଣିକ ଦୁର୍ବଳତା ହେତୁ ଭୁଲିଯାଇଛନ୍ତି ?

ସ୍ୱାମୀଜୀ ଶୁଣିଥିଲେ, ପାଓହାରୀବାବା ଯୋଗମାର୍ଗ ସାଧନାରେ ସିଦ୍ଧିଲାଭ କରିଥିଲେ । ପାଓହାରୀବାବାଙ୍କ ସହିତ ଆଳାପଆଲୋଚନା ଫଳରେ ତାଙ୍କ ହୃଦୟରେ ଯୋଗଶିକ୍ଷାର ବାସନା ବଳବତୀ ହେଲା । ସେ ବାବାଜୀଙ୍କୁ ଧରି କହିଲେ, ତାଙ୍କୁ ଯୋଗଶିକ୍ଷା ଦେବାକୁ ପଡ଼ିବ । ଆଗ୍ରହାତିଶଯ୍ୟରେ ପାଓହାରୀବାବା ମଧ୍ୟ ତାଙ୍କୁ ଆଶ୍ୱାସନା ଦେଲେ । ସ୍ୱାମୀଜୀ ସେହି ଶୁଭଦିନ ପ୍ରତୀକ୍ଷାରେ ରହିଲେ ।

ଗଭୀର ନିଶୀଥରେ ସ୍ୱାମୀଜୀ ପାଓହାରୀବାବାଙ୍କ ଗୃହକୁ ଯିବା ନିମିତ୍ତ ପ୍ରସ୍ତୁତ ହେଲେ । 'ଶ୍ରୀରାମକୃଷ୍ଣ ନା ପାଓହାରୀବାବା' — ଏହି କଥା ମନରେ ଉଦୟ ହେବା ମାତ୍ରକେ ମନ ଦବିଗଲା । ବିହ୍ୱଳ ହୃଦୟ ଓ ସଂଶୟ-ଦ୍ୱନ୍ଦ୍ୱ-ଆଲୋଡ଼ିତ ଚିତ୍ତରେ ବିବେକାନନ୍ଦ ତଳେ ବସିପଡ଼ିଲେ । ଶ୍ରୀରାମକୃଷ୍ଣଙ୍କ ଅସୀମ କୃପା, ଗଭୀର ସ୍ନେହ, ସସ୍ନେହ ବ୍ୟବହାର, ପର୍ଯ୍ୟାୟକ୍ରମେ ସ୍ମୃତି-ପଥରେ ଉଦିତ ହୋଇ ତାଙ୍କ ବ୍ୟଥିତ ଚିତ୍ତ ଆତ୍ମଧିକ୍କାରରେ ଭରିଗଲା । ସହସା ତାଙ୍କ ଅନ୍ଧକାରମୟ କକ୍ଷ ଦିବ୍ୟାଲୋକରେ ଉଦ୍ଭାସିତ ହୋଇଗଲା । ସ୍ୱାମୀଜୀ ଅଶ୍ରୁ-ସଜଳ ଆଖି ଉଠାଇ

ଦେଖିଲେ, ତାଙ୍କ ଜୀବନର ଆଦର୍ଶ ଦକ୍ଷିଣେଶ୍ୱରର ସେହି ଅଦ୍ଭୁତ ଦେବ-ମାନବ ସମ୍ମୁଖରେ ଦଣ୍ଡାୟମାନ ! ତାଙ୍କ ଉଜ୍ଜ୍ୱଳ ନେତ୍ରଦ୍ୱୟରେ ସ୍ନେହ-ସକରୁଣ-ବ୍ୟଥିତ-ଭର୍ତ୍ସନା ! ବିବେକାନନ୍ଦଙ୍କର ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ । ପହରେକାଳ ପ୍ରସ୍ତର ମୂର୍ତ୍ତିପରି ତଳେ ବସିରହିଲେ । ପ୍ରଭାତରେ ଶ୍ରୀରାମକୃଷ୍ଣଙ୍କର ଏହି ଅଦ୍ଭୁତ ଦର୍ଶନ ସେ ମସ୍ତିଷ୍କର ଦୁର୍ବଳତା ବୋଲି ଉଡ଼ାଇଦେବାକୁ ଚେଷ୍ଟା କରି ଆଗାମୀ ରାତ୍ରିରେ ପୁନରାୟ ପାଓହାରୀବାବାଙ୍କ ନିକଟକୁ ଯିବାକୁ ସଂକଳ୍ପ କଲେ । ସେଦିନ ମଧ୍ଯ ସେହି ପୂର୍ବଦୃଷ୍ଟ ଜ୍ୟୋତିର୍ମୟ ମୂର୍ତ୍ତି ସେହିପରି ତାଙ୍କ ସମ୍ମୁଖରେ ଠିଆ ହେଲେ । ଏହି ପରି ସତେଇଶ ଦିନ ଅତିବାହିତ ହେବାପରେ ଦିନେ ସେ ମର୍ମବେଦନାରେ ତଳେ ଲୋଟି ଆର୍ତ୍ତସ୍ୱରରେ କହିଲେ, ''ନା, ମୁଁ ଆଉ କାହାରି ପାଖକୁ ଯିବି ନାହିଁ । ହେ ରାମକୃଷ୍ଣ ! ତୁମେ ହିଁ ମୋର ଏକମାତ୍ର ଆରାଧ୍ୟ, ମୁଁ ତୁମର କ୍ରୀତଦାସ । ମୋର ଏ ଆତ୍ମହରା ଦୁର୍ବଳତା କ୍ଷମା କର, ପ୍ରଭୋ !''

ଏ ସମ୍ବନ୍ଧରେ କୌଣସି ପ୍ରଶ୍ନ ଉତ୍‌ଥାପନ କଲେ ସ୍ୱାମୀଜୀଙ୍କ ଅବ୍ୟକ୍ତବେଦନାକ୍ଲିଷ୍ଟ ମୁଖମଣ୍ଡଳ ଗମ୍ଭୀର ହୋଇ ଉଠୁଥିଲା; ସେ ବିଶେଷ କିଛି ଉତ୍ତର ଦେଇପାରୁ ନ ଥିଲେ । ବହୁଦିନ ପରେ ରଚିତ 'ଗାଇ ଗୀତ ଶୁଣାଏ ତୁମକୁ' ଶୀର୍ଷକ କବିତାଟିର ନିମ୍ନଲିଖିତ ଅଂଶରୁ ଏହି ଘଟଣା ସମ୍ବନ୍ଧରେ କିଞ୍ଚିତ୍ ଆଭାସ ମିଳେ-

''କେବେ ପିଲାଖେଳ କରେ ତୁମ ସଙ୍ଗେ,
କେବେ ରାଗକରି ତୁମରି ଉପରେ, ଯେତେ ଚାହେଁ ଦୂରକୁ ଯିବାକୁ;
ଶିରେ ଠିଆ ହୋଇ ତୁମେ ରାତ୍ରେ—ନିର୍ବାକ ଆନନ, ଛଳଛଳ ଆଖି
    ଚାହିଁ ମମ ମୁଖପାନେ;
ପୁଣି ଆସେ ଫେରି, ତବ ପାଦ ଧରି, କିନ୍ତୁ କ୍ଷମାଭିକ୍ଷା ନାହିଁ ମାଗେ ।
    ତୁମେ କର ନାହିଁ ରୋଷ ।
ପୁତ୍ର ତବ—ଅନ୍ୟ କେ ସହିବ ପ୍ରଗଲ୍‌ଭତା ?
ପ୍ରଭୁ ତୁମେ, ପ୍ରାଣସଖା ତୁମେ ମୋର !
କେବେ ଦେଖେ, ତୁମେ—ମୁଁ; ମୁଁ—ତୁମେ !!''

## କାଶୀଧାମ ଯାତ୍ରା ଓ ମଠକୁ ପ୍ରତ୍ୟାବର୍ତ୍ତନ

କାଶୀଧାମରୁ ସ୍ୱାମୀ ଅଭେଦାନନ୍ଦଜୀଙ୍କ ରୋଗ ସମ୍ବାଦ ପାଇ ସ୍ୱାମୀଜୀ ଗାଜୀପୁର ପରିତ୍ୟାଗ କଲେ । ସେ କାଶୀଧାମରେ ପହଞ୍ଚି ସ୍ୱାମୀ ଅଭେଦାନନ୍ଦଙ୍କ ଚିକିତ୍ସାର ସୁବନ୍ଦୋବସ୍ତ କଲେ । ସେ ଅପେକ୍ଷାକୃତ ସୁସ୍ଥ ହେବା ପରେ ସ୍ୱାମୀ ପ୍ରେମାନନ୍ଦଙ୍କୁ ତାଙ୍କ ସେବା ଶୁଶ୍ରୂଷା ଲାଗି ନିଯୁକ୍ତ କରି ସ୍ୱାମୀଜୀ ପ୍ରମଦାଦାସ ମିତ୍ରଙ୍କ ଉଦ୍ୟାନଗୃହରେ ଅବସ୍ଥାନ କରିବାରେ ଲାଗିଲେ । ପ୍ରମଦାବାବୁ ଜଣେ ନିଷ୍ଠାବାନ୍ ସାଧକ ଓ ଶାସ୍ତ୍ରଜ୍ଞ ପଣ୍ଡିତ ଥିଲେ । ସ୍ୱାମୀଜୀ ତାଙ୍କୁ ଯଥେଷ୍ଟ ଶ୍ରଦ୍ଧା କରୁଥାନ୍ତି ଏବଂ

ଅନେକ ବିଷୟରେ ତାଙ୍କ ଉପଦେଶ ଗ୍ରହଣ କରନ୍ତି । ଏହି ସମୟରେ ଦିନେ ଶ୍ରୀରାମକୃଷ୍ଣଦେବଙ୍କର ଜଣେ ଗୃହୀଭକ୍ତ ବଳରାମ ବସୁଙ୍କ ପରଲୋକ ଗମନ ସମ୍ବାଦ ପାଇ ସ୍ୱାମୀଜୀ ଶୋକରେ ମୁହ୍ୟମାନ ହୋଇଗଲେ । କେତେମାସ ଆଗରୁ ସୁରେଶଚନ୍ଦ୍ର ମିତ୍ର ଇହଧାମ ତ୍ୟାଗ କରିଥିଲେ । ଗୁରୁ-ଭ୍ରାତୃ-ବିୟୋଗ ବ୍ୟଥାରେ କାତର ହୋଇ ସ୍ୱାମୀଜୀ ବିଳାପ କରୁଥିବାର ଦେଖି ପ୍ରମଦାବାବୁ କହିଲେ ‘‘ଏ କ’ଣ ସ୍ୱମୀଜୀ ! ଆପଣ ଜଣେ ସନ୍ନ୍ୟାସୀ—ଆପଣ ଶୋକାର୍ତ୍ତ ହେବା ଶୋଭା ପାଉନାହିଁ ।’’

ସ୍ୱାମୀଜୀ ଗମ୍ଭୀର ଭାବରେ ଉତ୍ତର ଦେଲେ, ‘‘ଆପଣ କ’ଣ ମନେ କରନ୍ତି ଯେ ସନ୍ନ୍ୟାସୀର ହୃଦୟ ବୋଲି କିଛି ନାହିଁ ? ପ୍ରକୃତ ସନ୍ନ୍ୟାସୀ ପର ପାଇଁ ସାଧାରଣ ମନୁଷ୍ୟଠାରୁ ଅଧିକ ଅନୁଭବ କରେ । ମୁଁ ତ ମଣିଷ ଭିନ୍ନ ଅନ୍ୟ କିଛି ନୁହେଁ ! ପୁଣି ସେ ଯେ ମୋର ଗୁରୁଭାଇ—ଆମେ ଏକତ୍ର ଶ୍ରୀରାମକୃଷ୍ଣଙ୍କ ପାଦତଳେ ବସି ଶିକ୍ଷାଗ୍ରହଣ କରିଛୁ । ତାଙ୍କ ମୃତ୍ୟୁରେ ମୁଁ କାତର ହେଲେ ବିଚିତ୍ର କ’ଣ ? ପ୍ରସ୍ତରପରି ଅନୁଭୂତିହୀନ ସନ୍ନ୍ୟାସ-ଜୀବନ ମୋର ସ୍ପୃହଣୀୟ ନୁହେଁ ।’’

ସୁରେଶବାବୁଙ୍କ ମୃତ୍ୟୁପରେ ବଳରାମ ବାବୁ ମଠର ବ୍ୟୟଭାର ବହନ କରୁଥିଲେ; ବର୍ତ୍ତମାନ ତାଙ୍କ ମୃତ୍ୟୁ ହେବାରୁ ସ୍ୱାମୀଜୀ ମଠର ବନ୍ଦୋବସ୍ତ କରିବା ଲାଗି ବାଧ୍ୟ ହୋଇ କଲିକତା ଫେରିଆସିଲେ । ମଠର ବନ୍ଦୋବସ୍ତ କରିସାରି ସେ ପୁନରାୟ ଭାରତ ଭ୍ରମଣରେ ଯିବା ଲାଗି ମନସ୍ଥ କଲେ ।

## ଶ୍ରୀଶ୍ରୀମାତାଠାକୁରାଣୀଙ୍କ ଆଶୀର୍ବାଦଗ୍ରହଣ

ସେତେବେଳେ ରାମକୃଷ୍ଣ-ଭକ୍ତ-ଜନନୀ ଶ୍ରୀଶ୍ରୀମା’ ସାରଦାଦେବୀ ଭାଗୀରଥୀର ପଶ୍ଚିମକୂଳରେ ଥିବା ଘୁଷୁଡ଼ୀ ଗ୍ରାମରେ ଅବସ୍ଥାନ କରୁଥିଲେ । ସ୍ୱାମୀଜୀ ମଠ ପରିତ୍ୟାଗ କରି ତୀର୍ଥଯାତ୍ରାରେ ଯିବା ଆଗରୁ ତାଙ୍କ ଆଶୀର୍ବାଦ ନେବାଲାଗି ସେଠାକୁ ଗଲେ । ଶ୍ରୀଶ୍ରୀମାତାଠାକୁରାଣୀଙ୍କ ପବିତ୍ର ଚରଣଯୁଗଳ ବନ୍ଦନା କରି ସେ ଗଭୀର ଶ୍ରଦ୍ଧା ସହିତ କହିଲେ, ‘‘ମା ! ଯେ ପର୍ଯ୍ୟନ୍ତ ଶ୍ରୀଗୁରୁଙ୍କ ଈପ୍ସିତ କାର୍ଯ୍ୟ ସମ୍ପନ୍ନ କରି ନ ପାରିଛି, ସେ ପର୍ଯ୍ୟନ୍ତ ଆଉ ଫେରିଆସିବି ନାହିଁ । ତୁମେ ଆଶୀର୍ବାଦ କର, ଯେପରି କି ମୋ ସଙ୍କଳ୍ପ ସିଦ୍ଧ ହୁଏ ।’’

ବୀର ସନ୍ତାନର ଶିରରେ କରୁଣାମୟୀ କଲ୍ୟାଣ ହସ୍ତ ରଖି ଠାକୁରଙ୍କ ନାମୋଚ୍ଚାରଣ କରି ଆଶୀର୍ବାଦ ଜଣାଇଲେ । ସେ ପୁଣ୍ୟସ୍ପର୍ଶ ଲାଭ କରି ସ୍ୱାମୀଜୀଙ୍କ ହୃଦୟ ଦିବ୍ୟଭାବରେ ପୂର୍ଣ୍ଣ ହୋଇଗଲା । ତାଙ୍କର ମନେହେଲା, ସେ ଏପରି ଏକ ମହାଶକ୍ତି ବଳରେ ବଳୀୟାନ ହେଲେ—ଯାହା ବାଧା, ବିପତ୍ତି, ସଂଶୟଦ୍ୱନ୍ଦ୍ୱରେ ତାଙ୍କ ହୃଦୟକୁ ଅବିଚଳିତ ରଖିବ; ଏପରି କି ମୃତ୍ୟୁର ବିଭୀଷିକା ପର୍ଯ୍ୟନ୍ତ ତାଙ୍କୁ ସଂକଳ୍ପଚ୍ୟୁତ କରିପାରିବ ନାହିଁ ।

## ହିମାଳୟରେ

ମନଇଚ୍ଛା ଭ୍ରମଣ କରି କରି ସ୍ୱାମୀଜୀ ଗୁରୁଭ୍ରାତା ସ୍ୱାମୀ ଅଭେଦାନନ୍ଦଙ୍କ ସହିତ ଆଲମୋଡ଼ା ଗଲେ । ସ୍ଥାନୀୟ ବିଖ୍ୟାତ ବ୍ୟବସାୟୀ ଲାଲା ବଦରୀସାହା ସନ୍ନ୍ୟାସୀ ଦୁହିଁଙ୍କ ରହିବା ଲାଗି ଗୋଟିଏ ମନୋହର ଉଦ୍ୟାନଗୃହ ଛାଡ଼ିଦେଲେ । କେତେଦିନ ପରେ ସମ୍ବାଦ ପାଇ ସ୍ୱାମୀ ସାରଦାନନ୍ଦ ଓ କୃପାନନ୍ଦ ଆସି ତାଙ୍କ ସହିତ ରହିଲେ । ଏହି ସମୟରେ ବରାହନଗର ମଠର ଅଧିକାଂଶ ସନ୍ନ୍ୟାସୀ ତୀର୍ଥଭ୍ରମଣରେ ବାହାରି ଥିଲେ । କେହି କେହି ହୃଷୀକେଶ, ହରିଦ୍ୱାର ଆଦି ସ୍ଥାନରେ କୁଟୀର ନିର୍ମାଣ କରି କିମ୍ବା ଗିରିଗୁହାରେ ବାସ କରି କଠୋର ତପସ୍ୟାରେ ରତ ଥିଲେ ।

ହିମାଳୟର ବୈରାଗ୍ୟୋଦ୍ଦୀପକ ମନୋହର, ଗମ୍ଭୀର ଛବି ସ୍ୱାମୀଜୀଙ୍କର ସମାଧିଲିପ୍ସୁ ମନକୁ ଅନ୍ତର୍ମୁଖୀ କରିଦେଲା । ସେ ପ୍ରତ୍ୟେକ ଦିନ ରାତ୍ରିରେ ଗୋପନରେ ଗିରିଗୁହା ମଧ୍ୟରେ ଧ୍ୟାନ କରୁଥିଲେ ।

x x x

ବିବେକାନନ୍ଦଙ୍କ ଧ୍ୟାନ-ନିଶ୍ଚଳ ନୟନରେ ସତ୍ୟଧର୍ମ ମୂର୍ତ୍ତିମନ୍ତ ହୋଇ ଉଠିଲା । ଆଗତପ୍ରାୟ ନବଯୁଗ ସମ୍ମୁଖରେ ଶ୍ରୀରାମକୃଷ୍ଣଙ୍କ ବାର୍ତ୍ତା-ବହନ କରିବାକୁ ହେବ ଓ ଭବିଷ୍ୟତ ଭାରତର ଉଦ୍‌ବୋଧନକଳ୍ପେ ସତ୍ତ୍ୱ-ରଜର ମିଳନବେଦୀ ଉପରେ ସେବାଧର୍ମ ପ୍ରତିଷ୍ଠା କରିବାକୁ ହେବ; ଏହା ଆଗରୁ ନିର୍ବିକଳ୍ପ ସମାଧିଲାଭ ହେବ ନାହିଁ । ଏ ଦାୟିତ୍ୱପୂର୍ଣ୍ଣ କର୍ମଭାରରୁ ନିଷ୍କୃତି ପାଇବା ନିମିତ୍ତ ସେ ପ୍ରବଳ ସଚେଷ୍ଟ ଯୁଦ୍ଧ ଘୋଷଣା କଲେ; କିନ୍ତୁ ପୁନଃ ପୁନଃ ଅକୃତକାର୍ଯ୍ୟ ହୋଇ ଶେଷରେ ବିରକ୍ତି ସହିତ ଗିରିଗୁହା ତ୍ୟାଗ କରି ଆଲମୋଡ଼ା ଫେରି ଆସିଲେ ଏବଂ ଅଳ୍ପକାଳ ପରେ ଗୁରୁଭ୍ରାତମାନଙ୍କ ଗହଣରେ ଉତ୍ତରାଖଣ୍ଡ ପରିଭ୍ରମଣରେ ବାହାରିଗଲେ ।

ଏହି ସମୟରେ ସ୍ୱାମୀ ତୁରୀୟାନନ୍ଦଜୀ କର୍ଣ୍ଣପ୍ରୟାଗଠାରେ ଅଳକାନନ୍ଦାକୂଳରେ ଆଶ୍ରମ ରଚନା କରି ତପସ୍ୟା କରୁଥିଲେ । ସ୍ୱାମୀଜୀ ଗୁରୁ ଭ୍ରାତାମାନଙ୍କ ସହିତ ତାଙ୍କୁ ଭେଟି ଆନନ୍ଦିତ ହେଲେ । ସେଠାରୁ ବଦ୍ରୀନାରାୟଣ ଯିବା କଥା; ଏହି ସମୟରେ ସ୍ୱାମୀ ଅଖଣ୍ଡାନନ୍ଦ ପୀଡ଼ିତ ହୋଇ ପଡ଼ିବାରୁ ସେ ବାଧ ହୋଇ ତାଙ୍କ ଚିକିତ୍ସା ଲାଗି ଡେରାଡୁନ୍‌କୁ ଫେରିଗଲେ । ଅଖଣ୍ଡାନନ୍ଦ ସୁସ୍ଥ ହେବା ପରେ ସ୍ୱାମୀଜୀ ଗୁରୁଭ୍ରାତାଗଣଙ୍କ ସହ ହୃଷୀକେଶରେ ଆସି ବାସ କଲେ । ବେଦାନ୍ତ ଆଦି ଶାସ୍ତ୍ରଚର୍ଚ୍ଚା, ଧ୍ୟାନ, ଜପ ଇତ୍ୟାଦିରେ ଦିନ ଅତିବାହିତ ହେଲା । ହୃଷୀକେଶ ସ୍ୱାମୀଜୀଙ୍କୁ ପ୍ରୀତିପ୍ରଦ ମନେ ହେଉଥିଲା । ଏହି ବେଳର ଆନନ୍ଦମୟ ଦିନର ସ୍ମୃତି ସେ ଶେଷ ପର୍ଯ୍ୟନ୍ତ ଭୁଲିପାରି ନ ଥିଲେ । ତାଙ୍କ ପ୍ରଣୀତ 'ପରିବ୍ରାଜକ' ନାମକ ପୁସ୍ତକରେ ସେ ମର୍ମସ୍ପର୍ଶୀ ଭାଷାରେ ଲେଖିଛନ୍ତି —

"ହୃଷୀକେଶର ଗଙ୍ଗା ମନେ ଅଛି ? ସେହି ନିର୍ମଳ ନୀଳାଭ ଜଳ—ଯାହା ମଧ୍ୟରେ ଦଶହାତ ଗଭୀରରେ ମାଛକୁ ଗଣାଯାଇପାରେ, ସେହି ଅପୂର୍ବ ସୁସ୍ୱାଦୁ ହିମ-ଶୀତଳ 'ଗାଙ୍ଗ୍ୟ ବାରୀ ମନୋହାରୀ', ସେହି ଅଦ୍ଭୁତ 'ହର୍ ହର୍ ହର୍' ତରଙ୍ଗୋତ୍‌ଥିତ ଧ୍ୱନି, ସାମ୍‌ନାରେ ଥିବା ଗିରି ନିର୍ଝରରେ 'ହର୍ ହର୍' ପ୍ରତିଧ୍ୱନି, ସେହି ଅରଣ୍ୟରେ ବାସ, ମାଧୁକରୀ ଭିକ୍ଷା, ଗଙ୍ଗାଗର୍ଭରେ କ୍ଷୁଦ୍ର ଦ୍ୱୀପାକାର ଶିଳାଖଣ୍ଡ ଉପରେ ଭୋଜନ, କରପୁଟରେ ଆଞ୍ଜୁଳା ଆଞ୍ଜୁଳା ସେହି ଜଳପାନ, ଚଉଦିଗରେ ମାଛଗୁଡ଼ିକର ନିର୍ଭୟ ବିଚରଣ ? ସେ ଗଙ୍ଗାଜଳ-ପ୍ରୀତି, ଗଙ୍ଗାର ମହିମା, ସେହି ଗାଙ୍ଗ୍ୟ ବାରୀର ବୈରାଗ୍ୟପ୍ରଦ ସ୍ପର୍ଶ !! x x x ମୁଁ ସେଥିରୁ ଟିକିଏ ବିଦେଶ ଭ୍ରମଣ ବେଳେ ନେଇଯାଇଥିଲି । ସୁବିଧା ପାଇଲେ ଗୋଟିଏ ଅଧେ ବିନ୍ଦୁ ପିଇଦିଏ । ପାନ କରିବା-ମାତ୍ରକେ ସେହି ପାଶ୍ଚାତ୍ୟ ଜନସ୍ରୋତ ମଧ୍ୟରେ, ସଭ୍ୟତା କଲ୍ଲୋଳ ମଧ୍ୟରେ, ସେହି କୋଟି କୋଟି ମାନବର ଉନ୍ମତ୍ତପ୍ରାୟ ଦ୍ରୁତପଦ ସଞ୍ଚାର ମଧ୍ୟରେ ମନ ଯେପରି ସ୍ଥିର ହୋଇଯାଏ ! ସେ ଜନସ୍ରୋତ, ସେ ରଜୋଗୁଣର ଆସ୍ଫାଳନ, ସେ ପ୍ରତିପଦରେ ପ୍ରତିଦ୍ୱନ୍ଦୀ ସଂଘର୍ଷ, ସେ ବିଳାସକ୍ଷେତ୍ର, ଅମରାବତୀସମ ପ୍ୟାରିସ୍, ନିଉୟର୍କ, ବର୍ଲିନ, ରୋମ୍, ସବୁ ଲୋପ ପାଇଯାଏ; ପୁଣି ଶୁଣେ—ସେହି 'ହର୍ ହର୍'; ଦେଖେ—ସେହି ହିମାଳୟକ୍ରୋଡ଼ସ୍ଥ ବିଜନ ବିପିନ, ପୁଣି କଲ୍ଲୋଳିନୀ ସୁରତରଙ୍ଗିଣୀ ଯେପରି କି ହୃଦୟ ଓ ମସ୍ତକର ଶିରା ଶିରାରେ ସଞ୍ଚାରିତ ହେଉଛି ଏବଂ ଗର୍ଜି ଗର୍ଜି ଡାକୁଛି, 'ହର୍, ହର୍, ହର୍' ।"

## କଠିନ ପୀଡ଼ା ଓ ଆଶ୍ଚର୍ଯ୍ୟ ପରିତ୍ରାଣ

ସ୍ୱାମୀଜୀଙ୍କ ଦୀର୍ଘପଥ ଭ୍ରମଣ-ଶ୍ରାନ୍ତ ଦେହ ଉଗ୍ରତପସ୍ୟା ଭାର ସହ୍ୟ କରିପାରିଲା ନାହିଁ । ପ୍ରବଳ ଜ୍ୱର ଓ ଡିପ୍‌ଥେରିଆ ରୋଗରେ ଆକ୍ରାନ୍ତ ହୋଇ ସେ ଶଯ୍ୟାଶାୟୀ ହେଲେ । ତାଙ୍କ ଅବସ୍ଥା ଦିନକୁ ଦିନ ଖରାପ ହେବାକୁ ଲାଗିଲା । ଅବଶେଷରେ ଦିନେ ନାଡ଼ୀର ଗତି କ୍ରମଶଃ କ୍ଷୀଣ ହେବା ସଙ୍ଗେ ସଙ୍ଗେ ପ୍ରବଳ ଝାଳ ବୋହିଲା; ତାଙ୍କ ଗୁରୁ ଭ୍ରାତୃଗଣ ଶେଷ ସମୟ ଆସିଗଲା ବୋଲି ଭାବି ଶୋକ ଓ ଉଦ୍‌ବେଗରେ ଅଧୀର ହୋଇପଡ଼ିଲେ । ଉପାୟାନ୍ତର ନ ଦେଖି ସମସ୍ତେ ମିଳି କାତର ଭାବରେ ଭଗବାନଙ୍କର ଚରଣରେ ତାଙ୍କର ପ୍ରାଣଭିକ୍ଷା କରିବାକୁ ଲାଗିଲେ । ଏହି ସମୟରେ ଜଣେ ଅଜ୍ଞାତନାମା ଅପରିଚିତ ସନ୍ନ୍ୟାସୀ ଦୈବଯୋଗରୁ ସେଠାରେ ପହଞ୍ଚିଲେ । ସେ ସମସ୍ତଙ୍କୁ କ୍ରନ୍ଦନପରାୟଣ ଦେଖି କୌତୁହଳବଶତଃ କୁଟୀର ଭିତରକୁ ପଶିଗଲେ । ରୋଗୀର ଅବସ୍ଥା ଭଲଭାବରେ ପର୍ଯ୍ୟବେକ୍ଷଣ କରି ସନ୍ନ୍ୟାସୀ ସେମାନଙ୍କୁ ଅଭୟ ଦେଲେ ଏବଂ ଗୋଟିଏ ଔଷଧ ଖାଇବାକୁ ଦେଇ ଚାଲିଗଲେ । ଆଶ୍ଚର୍ଯ୍ୟର ବିଷୟ, ସ୍ୱାମୀଜୀ କେତେକ୍ଷଣ ପରେ ଆଖି ମେଲି ଚାହିଁଲେ ଏବଂ କଥା କହିବାକୁ ଚେଷ୍ଟା କଲେ । ଜଣେ ସନ୍ନ୍ୟାସୀ ତାଙ୍କ ମୁହଁ ପାଖରେ କାନ ଦେଇ ଶୁଣିଲେ, ସେ କହୁଛନ୍ତି—"ଭାଇ, ତୁମେ ଡରନା;

ମୁଁ ମରିବି ନାହିଁ ।'' କ୍ରମେ ସ୍ୱାମୀଜୀ ସୁସ୍ଥ ହୋଇ ବସିଲେ ଓ କହିଲେ, ''ଅଜ୍ଞାନ ଅବସ୍ଥାରେ ମୁଁ ଅନୁଭବ କଲି, ଏବେ ବି ମୋର ବହୁ କର୍ମ ଅବଶିଷ୍ଟ ଅଛି; ତାହା ଶେଷ ନ ହେବା ପର୍ଯ୍ୟନ୍ତ ମୁଁ ଦେହତ୍ୟାଗ କରି ପାରିବି ନାହିଁ ।''

## ପଞ୍ଜାବରେ

ହିମାଳୟଠାରୁ କୁମାରୀକା ପର୍ଯ୍ୟନ୍ତ ଭ୍ରମଣ କରି ଭାରତବର୍ଷ ସମ୍ବନ୍ଧରେ ପୂର୍ଣ୍ଣ ଅଭିଜ୍ଞତା ଲାଭ କରିବା ନିମିତ୍ତ କୃତସଂକଳ୍ପ ହୋଇ ସ୍ୱାମୀଜୀ ହିମାଳୟର ଚିର -ଈପ୍ସିତ ଲୋଭନୀୟ କ୍ରୋଡ଼ ପରିତ୍ୟାଗ କରି 'ଆର୍ଯ୍ୟମାନଙ୍କ ଆଦିବାସ, ସାମନିନାଦିତ' ପଞ୍ଚନଦରେ ଅବତୀର୍ଣ୍ଣ ହେଲେ । ଏ ପାଖରେ ତାଙ୍କ ଗୁରୁଭ୍ରାତାମାନେ ତାଙ୍କୁ ଅନୁସରଣ କରିବାରେ ରହିଲେ ଏବଂ ସ୍ୱାମୀଜୀ ମିରଟ୍‌ଠାରେ ଅବସ୍ଥାନ କରୁଛନ୍ତି ବୋଲି ଜାଣିପାରି ଜଣ ଜଣ ହୋଇ ସ୍ୱାମୀ ବ୍ରହ୍ମାନନ୍ଦ, ଅଖଣ୍ଡାନନ୍ଦ, ତୁରୀୟାନନ୍ଦ, ସାରଦାନନ୍ଦ, କୃପାନନ୍ଦ ଓ ଅଦ୍ୱୈତାନନ୍ଦ ତାଙ୍କ ପାଖରେ ପହଞ୍ଚିଗଲେ । ଶେଠଜୀଙ୍କ ଉଦ୍ୟାନ-ଗୃହ, ଦ୍ୱିତୀୟ ବରାହନଗର ମଠସ୍ୱରୂପ ହୋଇଗଲା । କୀର୍ତ୍ତନ, ଭଜନ, ଧ୍ୟାନ, ଜପ, ବେଦାନ୍ତ-ଚର୍ଚ୍ଚା, ଶାସ୍ତ୍ରାଳାପ ଏବଂ ଉପସ୍ଥିତ ଜିଜ୍ଞାସୁଗଣଙ୍କୁ ଧର୍ମୋପଦେଶ ପ୍ରଦାନ ଅବିରତ ଚାଲିଲା । ଗୁରୁଭ୍ରାତୃଗଣଙ୍କ ସ୍ନେହମୋହରେ ଭୁଲି ସେ ଅଯଥା ସମୟ ନଷ୍ଟ କରୁନାହାନ୍ତି ତ ? ଏହି ପ୍ରକାର ଚିନ୍ତା ମନରେ ଉଦିତ ହେବା ମାତ୍ରକେ ସେ ସମସ୍ତଙ୍କୁ ଡାକି କହିଲେ, ''ମୁଁ ଶୀଘ୍ର ଏହି ସ୍ଥାନ ପରିତ୍ୟାଗ କରିବି । ଏକାକୀ ଭ୍ରମଣ କରିବା ହେଉଛି ମୋର ଅଭିପ୍ରାୟ । ତେଣୁ ତୁମେ କେହି ମୋତେ ଅନୁସରଣ କର ନାହିଁ ।'' ସ୍ୱାମୀ ଅଖଣ୍ଡାନନ୍ଦ ସ୍ୱାମୀଜୀଙ୍କ ସହଚର ହେବା ଆଶାରେ ବିନୀତ ଭାବରେ ତାଙ୍କ ସମ୍ମତି ପ୍ରାର୍ଥନା କଲେ । ସ୍ୱାମୀଜୀ ଉତ୍ତରରେ କହିଲେ, ''ମୁଁ ଲକ୍ଷ୍ୟ କରୁଛି, ତୁମମାନଙ୍କ ସ୍ନେହବନ୍ଧନ ହିଁ କର୍ମପଥରେ ପ୍ରବଳ ଅନ୍ତରାୟସ୍ୱରୂପ । ଅତଏବ ଯାହାକୁ ଦେଖିଲେ ସ୍ନେହମାୟାର ଉଦ୍ରେକ ହୁଏ, ତାକୁ ସଙ୍ଗୀ କରିନେବା କର୍ତ୍ତବ୍ୟ ନୁହେଁ । ଗୁରୁଭ୍ରାତୃପ୍ରୀତି ମଧ୍ୟ ମାୟା — କିମ୍ବା ତାହାଠାରୁ ବେଶୀ ।'' ଏହିପରି ନାନାପ୍ରକାରେ ସେମାନଙ୍କୁ ସାନ୍ତ୍ୱନା ଦେଇ ସ୍ୱାମୀଜୀ ମିରଟ୍ ଛାଡ଼ି ଚାଲିଗଲେ ।

ଏତେଦିନ ପରେ ଶ୍ରୀଗୁରୁଙ୍କ ଇଙ୍ଗିତ ସମ୍ୟକ୍‌ରୂପେ ହୃଦୟଙ୍ଗମ କରି ପରିବ୍ରାଜକ ସନ୍ନ୍ୟାସୀ, ଶିକ୍ଷାଦାତା ଆଚାର୍ଯ୍ୟରୂପେ ଭାରତ ଭ୍ରମଣରେ ବାହାରିଲେ ଏବଂ କ୍ରମେ ପଞ୍ଚନଦ ଅତିକ୍ରମ କରି 'ସାଧୁର ପବିତ୍ର ଅସ୍ଥି, ସତୀର ଶୋଣିତ' ମିଶ୍ରିତ 'ପ୍ରତାପର ଦେଶ—ପଦ୍ମିନୀଙ୍କ ଭୂମି' ବୀରପ୍ରସବିନୀ ରାଜପୁତନାରେ ପ୍ରବେଶ କଲେ ।

## ଆଲଓ୍ୱାର ରାଜ୍ୟରେ

୧୮୯୧ ଖ୍ରୀଷ୍ଟାବ୍ଦ ଫେବୃଆରୀ ମାସ । ସ୍ୱାମୀଜୀ ଆଲଓ୍ୱାର ଷ୍ଟେସନରେ ଅବତରଣ କରି ନଗର ମଧ୍ୟରେ ପ୍ରବେଶ କଲେ । ରାଜକୀୟ ଦାତବ୍ୟ ଚିକିତ୍ସାଳୟର

ଭାରପ୍ରାପ୍ତ ଡାକ୍ତର ଗୁରୁଚରଣ ଲସ୍କର ଏବଂ ତାଙ୍କ ବନ୍ଧୁ—ସ୍ଥାନୀୟ ଉଚ୍ଚ ବିଦ୍ୟାଳୟର ମୌଲବୀ ସାହେବ ଆନନ୍ଦ ସହକାରେ ସ୍ୱାମୀଜୀଙ୍କ ରହିବା ଲାଗି ସ୍ଥାନ ବନ୍ଦୋବସ୍ତ କରିଦେଲେ । ସ୍ୱାମୀଜୀ ବଜାର ଉପରେ ଯେଉଁ ଛୋଟ ଘରଟିରେ ରହିଲେ, ପ୍ରଚୁର ଲୋକ ସମାଗମ ହେତୁ ସେଠାରେ ସ୍ଥାନାଭାବ ଅନୁଭୂତ ହେଲା । ଏହା ଲକ୍ଷ୍ୟ କରି ଅବସରପ୍ରାପ୍ତ ଇଞ୍ଜିନିୟର ପଣ୍ଡିତ ଶମ୍ଭୁନାଥ ଆଗ୍ରହ ସହକାରେ ତାଙ୍କୁ ନିଜ ଗୃହକୁ ନେଇଗଲେ ।

ପ୍ରତ୍ୟହ ସକାଳ ନଅଟାରୁ ଦ୍ୱିପ୍ରହର ପର୍ଯ୍ୟନ୍ତ ହିନ୍ଦୁ ମୁସଲମାନ ଉଭୟ ଶ୍ରେଣୀର ଶିକ୍ଷିତ ଭଦ୍ରଯୁବକଗଣ ଏକାଗ୍ରଚିତ୍ତରେ ତାଙ୍କ ଉଦାର ଧର୍ମମତଗୁଡ଼ିକ ଶ୍ରବଣ କରୁଥିଲେ । ଦାର୍ଶନିକ ଆଲୋଚନା ଅଥବା କୌଣସି କୂଟପ୍ରଶ୍ନର ଉତ୍ତର ଦେଉ ଦେଉ ସ୍ୱାମୀଜୀ ସହସା ଭାବୋନ୍ମତ୍ତ ହୋଇ ଜ୍ଞାନଦାସ, ସୁରଦାସ, ଚଣ୍ଡୀଦାସ, ବିଦ୍ୟାପତି ପ୍ରଭୃତି ପ୍ରସିଦ୍ଧ ଭକ୍ତକବି ମାନଙ୍କ ରଚିତ ସଙ୍ଗୀତ ମଧୁର କଣ୍ଠରେ ଗାଇ ଶ୍ରୋତାମାନଙ୍କ ହୃଦୟକୁ ଭକ୍ତିରେ ଆପ୍ଳୁତ କରି ଦେଉଥିଲେ । ଧର୍ମାନ୍ଧତା ଓ ରକ୍ଷଣଶୀଳତାର ତୀବ୍ର ସମାଲୋଚକ ହେଲେ ମଧ୍ୟ ସ୍ୱାମୀଜୀଙ୍କ ଯୁକ୍ତିପୂର୍ଣ୍ଣ ଉତ୍ତରଗୁଡ଼ିକ ଶ୍ରବଣ କରି ଜିଜ୍ଞାସୁ ମାତ୍ରେ ହିଁ ସନ୍ତୁଷ୍ଟ ହେଉଥିଲେ । ସଜାସଜି କରି ଅଥବା ଆଗପଛ ଭାବି କିମ୍ବା ଲୋକର ମନରକ୍ଷା କରି କଥା କହିବାରେ ସମ୍ପୂର୍ଣ୍ଣ ଅନଭ୍ୟସ୍ତ ସ୍ୱାମୀଜୀ ପ୍ରଶ୍ନ ପାଇବା ମାତ୍ରକେ ଉତ୍ତର ଦେଉଥାନ୍ତି; ତାଙ୍କଠାରେ ପାଣ୍ଡିତ୍ୟ ବା ଆତ୍ମପ୍ରତିଷ୍ଠା ଲାଭ କରିବାର କୌଣସି ପ୍ରୟାସ ପରିଲକ୍ଷିତ ହେଉ ନ ଥାଏ । ଏହି ପ୍ରଶ୍ନୋତ୍ତର ସଭାରେ ନାନାପ୍ରକାର ଆଲୋଚନା ମଧ୍ୟରେ ଜଣେ ଦିନେ ହଠାତ୍ ପ୍ରଶ୍ନ କଲେ, "ବାବାଜୀ ! ଆପଣ ଗେରୁଆ ଲୁଗା ପିନ୍ଧିଛନ୍ତି କାହିଁକି ?"

"କାରଣ ଗେରୁଆ ବସ୍ତ୍ର ଭିକ୍ଷୁକର ବସନ ।" ସ୍ୱାମୀଜୀ ସକରୁଣ ଦୃଷ୍ଟି ନିକ୍ଷେପ କରି କହିଲେ । "ଯଦି ମୁଁ ସାଧାରଣ ଲୋକଙ୍କ ପରି ବସ୍ତ୍ରାଦି ପରିଧାନ କରି ବୁଲେ, ତାହାହେଲେ ଦରିଦ୍ର ଭିକ୍ଷୁକଗଣ ମୋତେ ଧନଶାଳୀ ଭାବି ଭିକ୍ଷା ମାଗିବେ । ମୁଁ ନିଜେ ଜଣେ ଭିକ୍ଷୁକ; ମୋ ହାତରେ ଗୋଟିଏ ବୋଲି ପଇସା ନାହିଁ । ପ୍ରାର୍ଥୀକୁ ନିରାଶ କଲେ ମୋ ହୃଦୟରେ କଷ୍ଟ ହୁଏ; କିନ୍ତୁ ମୋ ଗୈରିକ ବସନ ଦେଖି ସେମାନେ ନିଜପରି ମୋତେ ଜଣେ ଭିକ୍ଷୁକ ମନେକରି ମୋତେ ଭିକ୍ଷା ମାଗିବେ ନାହିଁ ।" ସ୍ୱାମୀଜୀଙ୍କ ଏହି ଉତ୍ତର ମଧ୍ୟରେ ଦରିଦ୍ରଙ୍କ ପ୍ରତି କି ଗଭୀର ସମବେଦନାର ଆକୁଳ ଉଚ୍ଛ୍ୱାସ ଲୁକ୍‌କାୟିତ—କି ସୁନ୍ଦର, କି ହୃଦୟଗ୍ରାହୀ !!

## ଆଲୱାର ରାଜ-ଦରବାରରେ

ଏହି ଅଦ୍ଭୁତ ଶକ୍ତିଶାଳୀ ସନ୍ନ୍ୟାସୀଙ୍କ ବିଷୟ ଅବଗତ ହୋଇ ଦିନେ ଆଲୱାର ରାଜ୍ୟର ଦେୱାନ ତାଙ୍କୁ ନିଜ ଗୃହକୁ ନିମନ୍ତ୍ରଣ କଲେ । ସ୍ୱାମୀଜୀଙ୍କ ସହିତ ପରିଚିତ ହୋଇ ଦେୱାନ୍ ଅତି ଆନନ୍ଦିତ ହେଲେ ଏବଂ ତାଙ୍କୁ ସ୍ୱଗୃହରେ ରଖି ପରଦିନ ମହାରାଜାଙ୍କୁ ପତ୍ର ଲେଖି ଜଣାଇ ଦେଲେ, "ଏଠାକୁ ଜଣେ

ମହାପଣ୍ଡିତ ସନ୍ନ୍ୟାସୀ ଆସିଛନ୍ତି । ଇଂରାଜୀ ଭାଷାରେ ତାଙ୍କର ଦକ୍ଷତା ଦେଖି ମୁଁ ବିସ୍ମିତ ହୋଇଛି । ମହାରାଜା ଏହାଙ୍କ ସଙ୍ଗେ ଆଳାପ କଲେ ସନ୍ତୁଷ୍ଟ ହେବେ; ଏଥିରେ ସନ୍ଦେହ ନାହିଁ ।'' ମହାରାଜା ମଙ୍ଗଳ ସିଂହ ସେତେବେଳେ ସହରଠାରୁ ଦୁଇମାଇଲ ଦୂରରେ ଥିବା ଗୋଟିଏ ପ୍ରାସାଦରେ ବାସ କରୁଥିଲେ । ଘଟଣାକ୍ରମେ ତା ପର ଦିନ ସେ ରାଜଧାନୀକୁ ଫେରିଆସିଲେ । ଦେଓ୍ୱାନ୍‌ଙ୍କ ବଙ୍ଗଳାରେ ତାଙ୍କର ସ୍ୱାମୀଜୀଙ୍କ ସହିତ ସାକ୍ଷାତ୍ ହେଲା । ମହାରାଜା ସ୍ୱାମୀଜୀଙ୍କୁ ଭକ୍ତିଭାବରେ ପ୍ରଣାମ କରି ଆସନ ଗ୍ରହଣ କଲେ । ପଦେ ଦି'ପଦ କଥା ପରେ ମହାରାଜା ଜିଜ୍ଞାସା କଲେ, ''ସ୍ୱାମୀଜୀ ମହାରାଜ ! ମୁଁ ଶୁଣିଛି ଆପଣ ନିଜେ ବିଦ୍ୱାନ ଓ ମହାପଣ୍ଡିତ ବ୍ୟକ୍ତି । ଆପଣ ଇଚ୍ଛା କଲେ ପ୍ରଚୁର ଅର୍ଥ ଉପାର୍ଜନ କରିପାରନ୍ତେ; ତଥାପି ଭିକ୍ଷାବୃତ୍ତି ଅବଲମ୍ବନ କରିଛନ୍ତି କାହିଁକି ?''

ସ୍ୱାମୀଜୀ କହିଲେ, 'ମହାରାଜ ! ପ୍ରଥମେ ମୋ ପ୍ରଶ୍ନର ଉତ୍ତର ଦିଅନ୍ତୁ । ଆପଣ ରାଜକାର୍ଯ୍ୟରେ ଅବହେଳା କରି କାହିଁକି ସାହେବମାନଙ୍କ ସହିତ ମୃଗୟା ଇତ୍ୟାଦି ବୃଥା ଆମୋଦ-ପ୍ରମୋଦରେ କାଳକ୍ଷେପଣ କରନ୍ତି ?''

ରାଜାଙ୍କ ଅନୁଚରଗଣ ସ୍ପନ୍ଦିତ ହୃଦୟରେ ଏହି ଅସୀମ ସାହସିକ ସାଧୁଙ୍କ ଅମଙ୍ଗଳ ଆଶଙ୍କା କଲେ । କିୟତ୍‌କାଳ ଚିନ୍ତା କରି ମହାରାଜ ଉତ୍ତର ଦେଲେ, ''ହଁ, କିନ୍ତୁ କାହିଁକି କରେ କହିପାରିବି ନାହିଁ; କିନ୍ତୁ ଏହା ମୋତେ ଭଲ ଲାଗେ ବୋଲି ମୁଁ ନିଃସନ୍ଦେହରେ କହିପାରିବି ।''

ସ୍ୱାମୀଜୀ ହସି ହସି କହିଲେ, ''ଭଲ ଲାଗେ ବୋଲି ମୁଁ ମଧ୍ୟ ଫକୀର ବେଶରେ ଏଣେ ତେଣେ ବୁଲେ ।''

## ମୂର୍ତ୍ତିପୂଜାର ରହସ୍ୟଭେଦ

କେତେ ସମୟ ବାକ୍ୟାଳାପ ପରେ ମହାରାଜା ବୁଝିପାରିଲେ ଯେ ଏହି କୃତବିଦ୍ୟ ସନ୍ନ୍ୟାସୀ କେବଳ ମାତ୍ର ସୁପଣ୍ଡିତ ନୁହନ୍ତି — ନିର୍ଭୀକ ଓ ସ୍ପଷ୍ଟବାଦୀ ମଧ୍ୟ । କୌତୁହଳବଶତଃ ହେଉ କିମ୍ବା ପ୍ରକୃତ ସତ୍ୟ ଜାଣିବା ଲାଗି ଆଗ୍ରହ ହେତୁ ହେଉ, ମହାରାଜା ପ୍ରଶ୍ନ କଲେ, ''ଦେଖନ୍ତୁ ବାବାଜୀ ମହାରାଜ ! ମୂର୍ତ୍ତି-ପୂଜାରେ ମୋର କିଛିମାତ୍ର ବିଶ୍ୱାସ ନାହିଁ; ଏଥିପାଇଁ ମୋର କି ଦୁର୍ଗତି ହେବ ?'' ମହାରାଜା ହସୁଥିବା ଦେଖି ସ୍ୱାମୀଜୀ ସନ୍ଦିଗ୍ଧ ଦୃଷ୍ଟିରେ ଚାହିଁ କହିଲେ, ''ମହାରାଜା କ'ଣ ମୋ ସହିତ ରହସ୍ୟ କରୁଛନ୍ତି ?''

ମହାରାଜାଙ୍କ ମୁଖମଣ୍ଡଳ ସହସା ଗମ୍ଭୀର ହୋଇ ଉଠିଲା । ସେ ଆଗ୍ରହର ସହିତ କହିଲେ, ''ନା, ନା ସ୍ୱାମୀଜୀ ! ପ୍ରକୃତରେ ମୁଁ କାଠ, ମାଟି, ପଥର ବା ଧାତୁର ମୂର୍ତ୍ତିଗୁଡ଼ିକୁ ସାଧାରଣଙ୍କ ପରି ଭକ୍ତି ଶ୍ରଦ୍ଧା କରିପାରେ ନାହିଁ, ଏଥିପାଇଁ କ'ଣ ମୋତେ ପରକାଳରେ କଠୋର ନିଗ୍ରହ ଭୋଗ କରିବାକୁ ହେବ ?''

"ନିଜ ବିଶ୍ୱାସ ଅନୁଯାୟୀ ଉପାସନା କଲେ ପରକାଳରେ ଶାନ୍ତି ନ ପାଇବେ କାହିଁକି ? ମୂର୍ତ୍ତିପୂଜାରେ ଆପଣଙ୍କର ବିଶ୍ୱାସ ନାହିଁ—ମନ୍ଦ କ'ଣ ?" ସ୍ୱାମୀଜୀଙ୍କ ଏପରି ଉତ୍ତର ଶୁଣି ଉପସ୍ଥିତ ବ୍ୟକ୍ତିମାନଙ୍କ ମଧ୍ୟରୁ ଅନେକେ ବିସ୍ମୟର ସହିତ ଭାବିଲେ, ଯାହାଙ୍କୁ ସେମାନେ ବହୁବାର ଶ୍ରୀଶ୍ରୀବିହାରିଜୀଙ୍କ ମନ୍ଦିରରେ ଶ୍ରୀମୂର୍ତ୍ତି ସମ୍ମୁଖରେ ଭଜନ ଗାଇ ଗାଇ ଭାବାବେଶରେ ଅଶ୍ରୁବିଗଳିତ ନେତ୍ରରେ ସାଷ୍ଟାଙ୍ଗ ପ୍ରଣିପାତ ହେବାର ଦେଖିଛନ୍ତି, ସେ କାହିଁକି ମୂର୍ତ୍ତିପୂଜାର ସମର୍ଥନ ଲାଗି ଯୁକ୍ତି ପ୍ରଦର୍ଶନ କଲେ ନାହିଁ ?—ସ୍ୱଭାବତଃ ସେମାନଙ୍କ ହୃଦୟ ନାନା ସନ୍ଦେହରେ ପୂର୍ଣ୍ଣ ହୋଇଗଲା ।

ସହସା କକ୍ଷ ମଧ୍ୟରେ ଥିବା ମହାରାଜାଙ୍କର ଖଣ୍ଡିଏ ଫଟୋ ଉପରେ ସ୍ୱାମୀଜୀଙ୍କ ଦୃଷ୍ଟି ପଡ଼ିଲା । ସ୍ୱାମୀଜୀ ଚିତ୍ରଟିକୁ ଅଣାଇ ହାତରେ ଧରି ଦେଓ୍ୱାନକୁ ପଚାରିଲେ, "ଏହା ବୋଧହୁଏ ମହାରାଜାଙ୍କ ଛବି ?" ଦେଓ୍ୱାନ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ।

"ଭଲ !" ସ୍ୱାମୀଜୀ ଚିତ୍ରଟିକୁ ତଳେ ରଖି ଦେଓ୍ୱାନକୁ କହିଲେ, "ଆପଣ ଏହା ଉପରେ ଛେପ ପକାନ୍ତୁ ।" କିଂକର୍ତ୍ତବ୍ୟବିମୂଢ଼ ଦେଓ୍ୱାନ୍ ଶଙ୍କାବିମିଶ୍ର ବିସ୍ମିତ ଦୃଷ୍ଟିରେ ସ୍ୱାମୀଜୀଙ୍କୁ ଚାହିଁ ରହିଲେ । ଉପସ୍ଥିତ ସମସ୍ତ ସ୍ୱାମୀଜୀଙ୍କ ଅଦ୍ଭୁତ କାର୍ଯ୍ୟର କାରଣ ନିର୍ଣ୍ଣୟ କରିବାକୁ ଅକ୍ଷମ ହୋଇ ରୁଦ୍ଧଶ୍ୱାସରେ ଚିତ୍ରାର୍ପିତବତ୍ ଠିଆ ହୋଇ ରହିଲେ । ସ୍ୱାମୀଜୀ ସାମାନ୍ୟ ଉଚ୍ଚ ସ୍ୱରରେ ସମସ୍ତଙ୍କୁ ଲକ୍ଷ୍ୟ କରି କହିଲେ, "ଆପଣମାନଙ୍କ ମଧ୍ୟରୁ ଯେ କେହି ଏହା ଉପରେ ଛେପ ପକାନ୍ତୁ । ଏହା ତ ଖଣ୍ଡିଏ କାଗଜ ଭିନ୍ନ ଅନ୍ୟ କିଛି ନୁହେଁ । ଆପଣ ଆଗେଇ ଆସୁ ନାହାନ୍ତି କାହିଁକି ?" ସମସ୍ତେ ଥରେ ସ୍ୱାମୀଜୀ ଓ ପୁଣି ଥରେ ମହାରାଜାଙ୍କ ମୁହଁକୁ ଚାହିଁଲେ । ଦେଓ୍ୱାନ ଅବଶେଷରେ କହି ଉଠିଲେ, "ଆପଣ କ'ଣ କହୁଛନ୍ତି, ସ୍ୱାମୀଜୀ ? ମହାରାଜଙ୍କ ଚିତ୍ର ଉପରେ ଆମେ କ'ଣ ଛେପ ପକାଇପାରୁ ?"

"ମହାରାଜାଙ୍କ ଚିତ୍ର ହେଉ, ସେଥିରେ ଯାଏ ଆସେ କ'ଣ ? ଏଥିରେତ ଆଉ ସ୍ୱୟଂ ମହାରାଜା ନାହାନ୍ତି ? ଏହା ଖଣ୍ଡିଏ କାଗଜ ମାତ୍ର । ଏହା ମହାରାଜାଙ୍କ ପରି ହଲଚଲ ହୋଇ ପାରିବ ନାହିଁ କିମ୍ବା କଥା କହିପାରିବ ନାହିଁ । ତଥାପି ଆପଣମାନେ ଅସମ୍ମତ ହେଉଛନ୍ତି କାହିଁକି ?" ସ୍ୱାମୀଜୀ ପୁଣି ହସି ହସି କହିଲେ, "ଆପଣ ଏହା ଉପରେ ଛେପ ପକାଇ ପାରିବେ ନାହିଁ, ଏକଥା ମୁଁ ଜାଣିଛି; କାରଣ ଆପଣମାନେ ମନେ କରୁଛନ୍ତି ଯେ ଏହି ଚିତ୍ର ଉପରେ ଛେପ ପକାଇଲେ ମହାରାଜାଙ୍କ ପ୍ରତି ଅସମ୍ମାନ ପ୍ରଦର୍ଶନ କରିବା ହେବ । ଠିକ୍ ତ ?" ସମବେତ ବ୍ୟକ୍ତିବୃନ୍ଦ କୁଣ୍ଠିତ ଆନନ୍ଦରେ ନୀରବ ଦୃଷ୍ଟିରେ ସ୍ୱାମୀଜୀଙ୍କ ଉକ୍ତିକୁ ସମର୍ଥନ କଲେ । ସେତେବେଳେ ସ୍ୱାମୀଜୀ ମହାରାଜାଙ୍କୁ ଲକ୍ଷ୍ୟ କରି କହିଲେ, "ଦେଖନ୍ତୁ ମହାରାଜ ! ଗୋଟିଏ ଦିଗରୁ ବିଚାର କଲେ ଏହି ଫଟୋଟି ଆପଣ ନୁହଁନ୍ତି; ଅନ୍ୟ ଦିଗରୁ ବିଚାର କଲେ ଏହି ଚିତ୍ରରେ ଆପଣଙ୍କ ଅସ୍ତିତ୍ୱ ରହିଛି । ସେହି କାରଣରୁ

କେହି ଏହା ଉପରେ ଛେପ ପକାଇବାକୁ ଆଗେଇ ଆସିଲେ ନାହିଁ; କାରଣ ଏମାନେ ଆପଣଙ୍କ ଅନୁରକ୍ତ ଓ ବିଶ୍ୱସ୍ତ ସେବକ; ମହାରାଜାଙ୍କୁ ଅସମ୍ମାନ ହେବା ଭଳି କୌଣସି କାର୍ଯ୍ୟ କରିବାକୁ ସଙ୍କୁଚିତ ହେବା ଏମାନଙ୍କ ପକ୍ଷରେ ସ୍ୱାଭାବିକ । ଏମାନେ ଆପଣଙ୍କୁ ଓ ଆପଣଙ୍କ ଚିତ୍ରକୁ ସମ୍ମାନ ଓ ସମ୍ଭ୍ରମଦୃଷ୍ଟିରେ ଦେଖୁଛନ୍ତି । ସେହିପରି ପ୍ରସ୍ତର ବା ଧାତୁର ପ୍ରତିମାଗୁଡ଼ିକ ଶ୍ରୀଭଗବାନଙ୍କ ବିଶେଷ ଗୁଣବାଚକ ମୂର୍ତ୍ତି । ଏଗୁଡ଼ିକ ଉପରେ ଆଖି ପଡ଼ିବା ମାତ୍ରକେ ଭକ୍ତଙ୍କ ମନରେ ସେହି ଭଗବାନଙ୍କ କଥାର ହିଁ ଉଦୟ ହୁଏ । ଭକ୍ତ ମୂର୍ତ୍ତି ମାଧ୍ୟମରେ ଭଗବାନଙ୍କୁ ଉପାସନା କରେ; ଧାତୁ ବା ପ୍ରସ୍ତରକୁ ପୂଜା କରେ ନାହିଁ । ମୁଁ ବହୁସ୍ଥାନ ଭ୍ରମଣ କରିଛି, କିନ୍ତୁ କେବେ କେଉଁଠି କୌଣସି ହିନ୍ଦୁ କହୁଥିବାର ଶୁଣିନାହିଁ, 'ହେ ଧାତୁ ! ହେ ପ୍ରସ୍ତର ! ମୁଁ ତୁମକୁ ପୂଜା କରୁଛି, ମୋ ପ୍ରତି ପ୍ରସନ୍ନ ହୁଅ ।' ମହାରାଜ ! ଅନନ୍ତ ଭାବମୟ ଭଗବାନ ହେଉଛନ୍ତି ଏକ — ଯେ ସର୍ବଜନୋପାସ୍ୟ ସଚ୍ଚିଦାନନ୍ଦସ୍ୱରୂପ — ଭକ୍ତମାନେ ତାଙ୍କୁ ହିଁ ନିଜ ନିଜ ଭାବାନୁଯାୟୀ ବିଭିନ୍ନ ପ୍ରକାରରେ ଉପାସନା କରନ୍ତି ।'' ଏହା କହୁ କହୁ ସ୍ୱାମୀଜୀଙ୍କ ବଦନମଣ୍ଡଳ ଗୋଟିଏ ଦିବ୍ୟ ଆଭାରେ ଉଦ୍ଭାସିତ ହୋଇଉଠିଲା । ମହାରାଜା କୃତଜ୍ଞ-ଦୃଷ୍ଟିରେ ହାତ ଯୋଡ଼ି କହିଲେ, ''ସ୍ୱାମୀଜୀ ! ଆପଣଙ୍କ ଦୟାରୁ ମୂର୍ତ୍ତିପୂଜା ସମ୍ବନ୍ଧରେ ଗୋଟିଏ ଅଭିନବ ଅଭିଜ୍ଞତା ଲାଭ କଲି । ବାସ୍ତବିକ୍ ଆପଣଙ୍କ ଦୃଷ୍ଟିରେ ବିଚାର କଲେ ମୁଁ ମଧ୍ୟ ଏ ପର୍ଯ୍ୟନ୍ତ ଜଣକୁ ହେଲେ କାଠ ବା ପଥରର ଉପାସନା କରୁଥିବାର ଦେଖିନାହିଁ । ଏତେଦିନ ପର୍ଯ୍ୟନ୍ତ ମୁଁ ମୂର୍ତ୍ତିପୂଜାର ପ୍ରକୃତ ରହସ୍ୟ ବୁଝିନାହିଁ ବା ବୁଝିବାକୁ ଚେଷ୍ଟା କରିନାହିଁ । ଆଜି ଆପଣ ମୋ ଜ୍ଞାନ-ଚକ୍ଷୁ ଖୋଲିଦେଲେ ।'' ସ୍ୱାମୀଜୀ ବିଦାୟ ନେବାବେଳେ ମହାରାଜା ତାଙ୍କ ପଦଧୂଳି ନେଇ ପ୍ରାର୍ଥନା କଲେ, ''ସ୍ୱାମୀଜୀ ! ଦୟାକରି ମୋତେ ଆଶୀର୍ବାଦ କରନ୍ତୁ ।''

ସ୍ୱାମୀଜୀ ସ୍ନିଗ୍ଧହାସ୍ୟ ସହ କଲ୍ୟାଣ କରି କହିଲେ, ''ଏକମାତ୍ର ଭଗବାନଙ୍କ ବ୍ୟତୀତ ଆଉ କାହାର କୃପା କରିବାର ଅଧିକାର ନାହିଁ । ଆପଣ ସରଳ ଭାବରେ ତାଙ୍କ ଚରଣରେ ଶରଣାଗତ ହୁଅନ୍ତୁ; ସେ ନିଶ୍ଚୟ ଆପଣଙ୍କୁ ଦୟା କରିବେ ।''

ସ୍ୱାମୀଜୀ ଯିବାପରେ ମହାରାଜା କହିଲେ, ''ଦେଓ୍ୱାନଜୀ, ମୁଁ କେବେହେଲେ ଏପରି ଜଣେ ମହାପୁରୁଷଙ୍କ ଦର୍ଶନ ଲାଭ କରିନାହିଁ । ଏହାଙ୍କୁ ଆଉ କେତେଦିନ ଆପଣଙ୍କ ଘରେ ରଖିବାକୁ ଚେଷ୍ଟା କରନ୍ତୁ ।'' ଦେଓ୍ୱାନ୍ କହିଲେ, ''ଏହି ଅଗ୍ନିତୁଲ୍ୟ ତେଜସ୍ୱୀ ଓ ସ୍ୱାଧୀନଚେତା ସନ୍ନ୍ୟାସୀ କୌଣସି ପ୍ରକାର ଅନୁରୋଧ ଶୁଣିବେ କି ନା ସନ୍ଦେହ, ତେବେ ଚେଷ୍ଟାରେ ତ୍ରୁଟି କରିବି ନାହିଁ ।''

ଦେଓ୍ୱାନଙ୍କ ଆଗ୍ରହାତିଶଯ୍ୟ ହେତୁ ସ୍ୱାମୀଜୀ ତାଙ୍କ ଘରେ ରହିବାକୁ ସ୍ୱୀକୃତି ଦେଲେ ସତ୍ୟ, କିନ୍ତୁ ସର୍ତ୍ତ ରହିଲା, ସର୍ବଦା ସବୁପ୍ରକାର ପରିସ୍ଥିତିରେ ନିର୍ବିଚାରରେ ସମସ୍ତେ ତାଙ୍କ ସହିତ ପ୍ରୟୋଜନ ହେଲେ ସାକ୍ଷାତ୍ କରିବା ଲାଗି

ସୁଯୋଗ ପାଇବେ । କହିବା ବାହୁଲ୍ୟ ଯେ ଦେଓ୍ଵାନ୍ ଆନନ୍ଦରେ ସ୍ୱାମୀଜୀଙ୍କ ସର୍ତ୍ତକୁ ମାନି ନେଲେ ।

ଆଲଓ୍ଵାରବାସୀ କେତେଜଣ ବିଶ୍ୱାସୀ ଓ ପବିତ୍ରହୃଦୟ ଯୁବକ ଇତିପୂର୍ବରୁ ସ୍ୱାମୀଜୀଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସ୍ୱାମୀଜୀଙ୍କ ଉପଦେଶରେ ଉତ୍ସାହିତ ହୋଇ ସେମାନେ ସଂସ୍କୃତ ଅଧ୍ୟୟନ କରିବାରେ ଲାଗିଲେ । ଏହିରୂପେ କେତେଦିନ ଭକ୍ତ ଓ ଶିଷ୍ୟବୃନ୍ଦଙ୍କ ସହିତ ମହାଆନନ୍ଦରେ କାଳ ଯାପନ କରି ସ୍ୱାମୀଜୀ ସମସ୍ତଙ୍କଠାରୁ ବିଦାୟ ନେଇ ଭ୍ରମଣରେ ବାହାରିଲେ । ଗୁରୁ–ଗତ–ପ୍ରାଣ ଶିଷ୍ୟବୃନ୍ଦ ନିଷେଧ ସତ୍ତ୍ୱେ ତାଙ୍କୁ ଅନୁଗମନ କଲେ; ଅଗତ୍ୟା ସେମାନଙ୍କ ସହିତ ସ୍ୱାମୀଜୀ ଆଲଓ୍ଵାରଠାରୁ ଅଠର ମାଇଲ ଦୂରବର୍ତ୍ତୀ ପାଣ୍ଡୁପୋଲ ଗ୍ରାମରେ ଉପସ୍ଥିତ ହୋଇ ହନୁମାନଜୀଙ୍କ ମନ୍ଦିରରେ ରାତ୍ରିଯାପନ କଲେ । ପ୍ରଭାତରେ ଶ୍ରୀଶ୍ରୀମହାବୀରଜୀଙ୍କ ପୂଜା କରିସାରି ସ୍ୱାମୀଜୀ ଶିଷ୍ୟବୃନ୍ଦଙ୍କୁ ଆଲଓ୍ଵାର ଫେରିଯିବାକୁ ଆଦେଶ ଦେଲେ; ସ୍ୱୟଂ ଏକାକୀ ମନ ଇଚ୍ଛା ଭ୍ରମଣ କରି କରି ଜୟପୁରରେ ପହଞ୍ଚିଲେ ।

## ଜୟପୁରରେ ପାଣିନି ଅଧ୍ୟୟନ

ଏଣେ ସ୍ୱାମୀ ଅଖଣ୍ଡାନନ୍ଦ ସ୍ୱାମୀଜୀଙ୍କ ବିରହରେ କାତର ହୋଇ ତାଙ୍କୁ ଅନ୍ୱେଷଣ କରିବାକୁ ବାହାରିଗଲେ । ସେ ଜୟପୁରରେ ପହଞ୍ଚି ଶୁଣିଲେ, ରାଜପ୍ରାସାଦରେ ଜଣେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟବିଧ ଦର୍ଶନଶାସ୍ତ୍ରରେ ଅଭିଜ୍ଞ ସନ୍ନ୍ୟାସୀ ରହୁଛନ୍ତି, ଯେ କି ଇଂରାଜୀ ଓ ସଂସ୍କୃତରେ ଅନର୍ଗଳ କଥା କହିପାରନ୍ତି । ସ୍ୱାମୀଜୀଙ୍କ ବ୍ୟତୀତ ଏହି ବ୍ୟକ୍ତି ଅନ୍ୟ କେହି ନୁହଁନ୍ତି, ଏହା ମନେ ମନେ ସ୍ଥିର କରି ଅଖଣ୍ଡାନନ୍ଦଜୀ ତାଙ୍କ ସଙ୍ଗେ ସାକ୍ଷାତ୍ କଲେ । ସ୍ୱାମୀଜୀ ତାଙ୍କୁ ଦେଖି ଆନନ୍ଦ ପ୍ରକାଶ କରିବା ଦୂରେ ଥାଉ, ବରଂ କ୍ରୁଦ୍ଧ ହେଲେ ଏବଂ ନାନାପ୍ରକାର ଭୟ ପ୍ରଦର୍ଶନ କରି କହିଲେ, "ତୁମେ ମୋତେ ଅନୁସରଣ କରି ଭଲ କରି ନାହଁ, ସତ୍ୱର ଏ ସ୍ଥାନରୁ ଚାଲିଯାଅ ।" ଅଖଣ୍ଡାନନ୍ଦ ଦୁଃଖିତ ହୃଦୟରେ ଜୟପୁର ପରିତ୍ୟାଗ କଲେ । ମନେ ମନେ ଭାବିଲେ, ଗୁରୁଭ୍ରାତୃଗଣଙ୍କ ପ୍ରତି ଏପରି ନିର୍ମମ ହେବାରେ ନିଶ୍ଚୟ କୌଣସି ମହତ୍ ଉଦ୍ଦେଶ୍ୟ ଅଛି ।

ଜୟପୁର ଦରବାରର ଜନୈକ ସଭାପଣ୍ଡିତ ଅସାଧାରଣ ବ୍ୟାକରଣବିଦ୍ ଥିଲେ । ସ୍ୱାମୀଜୀ ତାଙ୍କ ପାଖରେ ପାଣିନି ଅଷ୍ଟାଧ୍ୟାୟୀ ପାଠ କରିବାକୁ ଆରମ୍ଭ କଲେ । ପଣ୍ଡିତଜୀ ନାନା ପ୍ରକାରେ ବୁଝାଇ ଦେଲେ ମଧ୍ୟ କ୍ରମାଗତ ତିନିଦିନ ଚେଷ୍ଟା କରି ସୁଦ୍ଧା ସ୍ୱାମୀଜୀ ପ୍ରଥମ ସୂତ୍ରର ଭାଷ୍ୟ ଆୟତ୍ତ କରିପାରିଲେ ନାହିଁ । ଚତୁର୍ଥ ଦିନ ପଣ୍ଡିତଜୀ କହିଲେ, "ସ୍ୱାମୀଜୀ ! ମୋ ପାଖରେ ପଢ଼ିଲେ ଆପଣଙ୍କର ବିଶେଷ ଲାଭ ହେବ ନାହିଁ; କାରଣ ତିନିଦିନ କାଳ ଚେଷ୍ଟା କରି ମଧ୍ୟ ଆପଣଙ୍କୁ ଗୋଟିଏ ସୂତ୍ର ବୁଝାଇ ପାରିଲି ନାହିଁ ।" ସ୍ୱାମୀଜୀ ପଣ୍ଡିତଙ୍କ କଥାରେ ଲଜ୍ଜିତ

ହୋଇ ମନେ ମନେ ସଂକଳ୍ପ କଲେ, ଯେ ପର୍ଯ୍ୟନ୍ତ ସୂତ୍ରାର୍ଥ ଆୟତ୍ତ କରିବାକୁ ସମର୍ଥ ନ ହୋଇଛନ୍ତି, ସେ ପର୍ଯ୍ୟନ୍ତ ଖାଦ୍ୟପେୟ ଗ୍ରହଣ କରିବେ ନାହିଁ ।

ପ୍ରହରକ ପରେ ସ୍ୱାମୀଜୀ ପଣ୍ଡିତଙ୍କ ନିକଟକୁ ଫେରିଆସିଲେ । ପଣ୍ଡିତ ସ୍ୱାମୀଜୀଙ୍କ ମୁହଁରୁ ଏହି ସୂତ୍ରର ପ୍ରାଞ୍ଜଳ ବ୍ୟାଖ୍ୟା ଶ୍ରବଣ କରି ବିସ୍ମିତ ହେଲେ । ଅନନ୍ତର ଅନନ୍ୟଚିତ୍ତ ହୋଇ ସ୍ୱାମୀଜୀ ଅଧ୍ୟୟନରେ ରତ ରହିଲେ ଏବଂ ଦୁଇ ସପ୍ତାହ ମଧ୍ୟରେ ଅଷ୍ଟାଧ୍ୟାୟୀ ଆୟତ୍ତ କରି ଅଧ୍ୟାପକଙ୍କଠାରୁ ବିଦାୟ ଗ୍ରହଣ କଲେ । ଏହି ଘଟଣା ଶ୍ରବଣ କରି ଉତ୍ତର କାଳରେ ଅନେକେ ସନ୍ଦିଗ୍ଧ ଚିତ୍ତରେ ପ୍ରଶ୍ନ କରୁଥିଲେ । ସେ ଉତ୍ତର ଦିଅନ୍ତି, ''ଯୋଗୀ ପକ୍ଷରେ ଏହା ଆଶ୍ଚର୍ଯ୍ୟର ବିଷୟ ନୁହେଁ । ଆତ୍ମାର ସମସ୍ତ ଶକ୍ତି ସଂଯୁକ୍ତ କରି ଗୋଟିଏ ବିଷୟରେ ନିୟୋଗ କଲେ ତ୍ରିଲୋକରେ ଏପରି କୌଣସି ରହସ୍ୟ ନାହିଁ, ଯାହା ଅବଗତ ନ ହୋଇ ପାରିବ ?''

## ଆବୁ ପର୍ବତରେ

ମନୋହର ଆବୁ ପର୍ବତରେ କୋଟାରାଜ୍ୟର ଭୂତପୂର୍ବ ମନ୍ତ୍ରୀ ଠାକୁର ଫେଟ୍‌ସିଂହଙ୍କ ଘରେ ଅତିଥି ରୂପେ ଅବସ୍ଥାନ କରୁଥିବାବେଳେ ସ୍ୱାମୀଜୀଙ୍କ ଗୁଣଗ୍ରାମ ଅବଗତ ହୋଇ ଖେତଡ଼ି ରାଜାଙ୍କ ସେକ୍ରେଟାରୀ ମୁନ୍‌ସୀ ଜଗମୋହନ ଲାଲ, ବି.ଏ. ତାଙ୍କୁ ଦର୍ଶନ କରିବାକୁ ଆସନ୍ତି । ରାଜା ବାହାଦୂର ସେକ୍ରେଟାରୀଙ୍କଠାରୁ ସ୍ୱାମୀଜୀଙ୍କ ବୃତ୍ତାନ୍ତ ଶ୍ରବଣ କରି ତାଙ୍କୁ ଦର୍ଶନ କରିବା ଲାଗି ବ୍ୟାକୁଳ ହୋଇପଡ଼ିଲେ ।

ସ୍ୱାମୀଜୀଙ୍କୁ ମୁନ୍‌ସୀ ରାଜଭବନକୁ ନେଇଗଲେ । ରାଜାବାହଦୂର ଗଭୀର ଶ୍ରଦ୍ଧାର ସହିତ ଅଭ୍ୟର୍ଥନା କରି ତାଙ୍କୁ ଆସନ ଗ୍ରହଣ କରାଇଲେ ଏବଂ ସ୍ୱୟଂ ତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ପ୍ରଥମେ ପ୍ରଶ୍ନ କଲେ, ''ସ୍ୱାମୀଜୀ ! ଜୀବନଟା କଣ ?''

ସଙ୍ଗେ ସଙ୍ଗେ ଉତ୍ତର ମିଳିଲା, ''ଗୋଟିଏ ଅନ୍ତର୍ନିହିତ ଶକ୍ତି ଯେପରି କି କ୍ରମାଗତ ନିଜ ସ୍ୱରୂପରେ ବ୍ୟକ୍ତ ହେବା ଲାଗି ଅବିରାମ ଚେଷ୍ଟା କରୁଛି ଏବଂ ବହିଃପ୍ରକୃତି ତାକୁ ଦବାଇ ରଖିଛି—ଏହି ଚେଷ୍ଟାର ନାମ ଜୀବନ ।''

ରାଜା ବାହାଦୂର ଆଉ କେତେଗୋଟି ପ୍ରଶ୍ନ ମଧ୍ୟ ପଚାରିଲେ ଏବଂ ସ୍ୱାମୀଜୀ ସେଗୁଡ଼ିକର ଯଥାଯଥ ଉତ୍ତର ଦେଲେ । ରାଜା ବାହାଦୂର ତାଙ୍କର ସୂକ୍ଷ୍ମ ଦୃଷ୍ଟି ଓ ଗଭୀର ଆଧ୍ୟାତ୍ମିକ ଶକ୍ତିର ପରିଚୟ ପାଇ ମୁଗ୍ଧ ହେଲେ ଏବଂ କେତେଦିନ ପରେ ତାଙ୍କୁ ଅନୁରୋଧ କରି ନିଜ ରାଜ୍ୟକୁ ନେଇଗଲେ । ଧର୍ମପ୍ରାଣ ରାଜା ଅଜିତ୍ ସିଂହ ଓ ତାଙ୍କ ସେକ୍ରେଟାରୀ ମୁନ୍‌ସୀଜୀ ସ୍ୱାମୀଜୀଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ଗୁରୁଭକ୍ତ ଶିଷ୍ୟର ବ୍ୟାକୁଳ ଆଗ୍ରହ ଉପେକ୍ଷା କରି ନ ପାରି ସ୍ୱାମୀଜୀ କେତେଦିନ ରାଜପ୍ରାସାଦରେ ରହିବାକୁ ବାଧ୍ୟ ହେଲେ ।

## ପତଞ୍ଜଳିଙ୍କ ମହାଭାଷ୍ୟ ଅଧ୍ୟୟନ

ରାଜାବାହାଦୂରଙ୍କ ସଭାପଣ୍ଡିତ ଶ୍ରୀଯୁକ୍ତ ନାରାୟଣ ଦାସ ସେହି ସମୟରେ ସମଗ୍ର ରାଜପୁତାନାର ଶ୍ରେଷ୍ଠ ପଣ୍ଡିତ ଥିଲେ । ଏହି ସୁଯୋଗରେ ସ୍ୱାମୀଜୀ ତାଙ୍କ ନିକଟରୁ ପତଞ୍ଜଳିଙ୍କ ମହାଭାଷ୍ୟ ଅଧ୍ୟୟନ କରିବାକୁ ପ୍ରବୃତ୍ତ ହେଲେ । ସନ୍ନ୍ୟାସୀଙ୍କ ଅଲୌକିକ ପ୍ରତିଭାରେ ବିସ୍ମିତ ହୋଇ ପଣ୍ଡିତଜୀ ଦିନେ ତାଙ୍କୁ କହିଲେ, "ସ୍ୱାମୀଜୀ ! ମୋର ଯାହା ଶିଖାଇବାକୁ ଥିଲା, ତାହା ଶେଷ ହୋଇଛି । ଏପରି ପ୍ରତିଭା ମନୁଷ୍ୟଠାରେ ସମ୍ଭବ, ଏହା ଆପଣଙ୍କୁ ଦେଖି ନ ଥିଲେ ମୁଁ ବିଶ୍ୱାସ କରି ନ ଥାନ୍ତି ।" ସ୍ୱାମୀଜୀ ଚିରଦିନ ଏହି ପଣ୍ଡିତଙ୍କୁ ଅଧ୍ୟାପକଙ୍କ ପରି ଶ୍ରଦ୍ଧା କରୁଥିଲେ ।

ଖେତଡ଼ିର ରାଜା ଅପୁତ୍ରିକ ଥିଲେ । ଦିନେ ଗୁରୁଙ୍କ ନିକଟରେ ନିଜ ଦୁଃଖ ନିବେଦନ କରି କହିଲେ, "ମୋର ଯେପରି ଗୋଟିଏ ପୁତ୍ର ସନ୍ତାନ ଜାତ ହୁଏ, ସେଥିପାଇଁ ଆଶୀର୍ବାଦ କରନ୍ତୁ ।" ରାଜାଙ୍କ ପ୍ରାର୍ଥନା ଶୁଣି ସ୍ୱାମୀଜୀ ଚିନ୍ତିତ ହେଲେ । ଅବଶେଷରେ କାତର ଆବେଦନ ଉପେକ୍ଷା କରି ନ ପାରି କହିଲେ, "ଶ୍ରୀଶ୍ରୀଠାକୁରଙ୍କ କୃପାରୁ ଆପଣଙ୍କ ମନୋରଥ ପୂର୍ଣ୍ଣ ହେବ ।"

କିଛିଦିନ ପରେ ସ୍ୱାମୀଜୀ ପୁନରାୟ ଭ୍ରମଣରେ ଯିବା ଲାଗି ବ୍ୟସ୍ତ ହେଲେ । ରାଜାବାହାଦୂର ଦୁଃଖିତ ହୃଦୟରେ ନିତାନ୍ତ ଅନିଚ୍ଛା ସହକାରେ ତାଙ୍କୁ ବିଦାୟ ଦେଲେ ।

## ପୋରବନ୍ଦରରେ

ଗୁଜୁରାଟର ମରୁମୟ ପ୍ରଦେଶ ପଦବ୍ରଜରେ ଅତିକ୍ରମ କରି କ୍ରମେ ଅହମ୍ମଦାବାଦ, ଲିମ୍ବଡ଼ି, ଜୁନାଗଡ଼, ଭୋଜ, ଭେରାଓଲ, ପ୍ରଭାସ ଓ ସୋମନାଥ ଦର୍ଶନ କରିସାରି ସ୍ୱାମୀଜୀ ପୋରବନ୍ଦରରେ ପହଞ୍ଚିଲେ । ଲିମ୍ବଡ଼ିର ମହାରାଜା ଇତିମଧ୍ୟରେ ସ୍ୱାମୀଜୀଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଦିନେ ସ୍ୱାମୀଜୀଙ୍କୁ ପୋରବନ୍ଦର ରାଜପଥରେ ଭ୍ରମଣ କରୁଥିବାର ଦେଖି ମହାରାଜା ତାଙ୍କୁ ନିଜ ପ୍ରାସାଦକୁ ନେଇଗଲେ ।

ପୋରବନ୍ଦରର ବିଖ୍ୟାତ ପଣ୍ଡିତ ଶଙ୍କର ପାଣ୍ଡୁରଙ୍ଗଙ୍କ ସହିତ ପରିଚିତ ହୋଇ ତାଙ୍କର ପୁନରାୟ ପାଠସ୍ପୃହା ଜାଗ୍ରତ ହେଲା । ସନ୍ନ୍ୟାସୀ ଛାତ୍ରଙ୍କ ସୂକ୍ଷ୍ମବୁଦ୍ଧିର ପରିଚୟ ପାଇ ପଣ୍ଡିତଜୀ ମଧ୍ୟ ତାଙ୍କୁ ମହାଭାଷ୍ୟ ପଢ଼ାଇବାକୁ ଲାଗିଲେ । ପଣ୍ଡିତ ନାରାୟଣ ଦାସଙ୍କଠାରୁ ସ୍ୱାମୀଜୀ ଏହାର ଅଧିକାଂଶ ପାଠ କରିଥିଲେ; ଏହି ସମୟରେ ଅବଶିଷ୍ଟ ଶେଷ କରି ଉତ୍ସାହର ସହିତ ବେଦାନ୍ତର ବ୍ୟାସସୂତ୍ର ଅଧ୍ୟୟନ କରିବାରେ ପ୍ରବୃତ୍ତ ହେଲେ ।

ଘଟଣାକ୍ରମେ ଏହି ସମୟରେ ଗୋବର୍ଦ୍ଧନ ମଠର ଜଗଦ୍‌ଗୁରୁ ଶ୍ରୀମତ୍ ଶଙ୍କରାଚାର୍ଯ୍ୟ ମହାରାଜ ପୋରବନ୍ଦର ଆସିଥାନ୍ତି । ସେହି ଉପଲକ୍ଷେ ତାଙ୍କ ସଭାପତିତ୍ୱରେ ଲିମ୍ବଡ଼ି ରାଜଭବନରେ ସ୍ଥାନୀୟ ପଣ୍ଡିତମଣ୍ଡଳୀର ଗୋଟିଏ

ବିଚାରସଭା ଆହୂତ ହୁଏ । ପଣ୍ଡିତ ଶଙ୍କର ପାଣ୍ଡୁରଙ୍ଗ ମହୋଦୟ ସ୍ୱାମୀଜୀଙ୍କ ସହ ସଭା ମଧ୍ୟରେ ପ୍ରବେଶ କଲେ ।

ସ୍ୱାମୀଜୀଙ୍କ ପ୍ରତିଭାର ଖ୍ୟାତି ଏଥିପୂର୍ବରୁ ପଣ୍ଡିତମଣ୍ଡଳୀ ଶ୍ରବଣ କରିଥିଲେ; ସେହି ହେତୁ ଅନେକେ ତାଙ୍କ ପରୀକ୍ଷା କରିବା ନିମିତ୍ତ ବ୍ୟଗ୍ର ହୋଇପଡ଼ିଲେ । ଜଣେ ଦୁଇଜଣ ବୟୋବୃଦ୍ଧ ପଣ୍ଡିତ ଅନ୍ୟାନ୍ୟ ପଣ୍ଡିତଗଣଙ୍କ ସମର୍ଥନ ସହ ତାଙ୍କୁ ପ୍ରଶ୍ନ କରିବାକୁ ପ୍ରବୃତ୍ତ ହେଲେ । ମହା ମହା ପଣ୍ଡିତମଣ୍ଡଳୀ ସମ୍ମୁଖକୁ ସହସା ବାଦ କରିବା ନିମିତ୍ତ ଆହୂତ ହୋଇ ସମ୍ଭ୍ରମ-ସଙ୍କୁଚିତ ଲଜ୍ଜାରେ ସ୍ୱାମୀଜୀଙ୍କ ବଦନମଣ୍ଡଳ ଆରକ୍ତ ହୋଇଉଠିଲା । ଅବଶେଷରେ ନିଜ ଅଧ୍ୟାପକଙ୍କ ସମ୍ମତି ଗ୍ରହଣ କରି ଧୀର ଭାବରେ ଉତ୍‌ଥାପିତ କୁଟୀଳ ପ୍ରଶ୍ନଗୁଡ଼ିକୁ ଗୋଟି ଗୋଟି ମୀମାଂସା କରିବାରେ ଲାଗିଲେ । ସ୍ୱାମୀଜୀଙ୍କ ବିନୟ, ପାଣ୍ଡିତ୍ୟ ଓ ତେଜସ୍ୱୀତା ପ୍ରଭୃତି ସନ୍ଦର୍ଶନ କରି ପଣ୍ଡିତମଣ୍ଡଳୀ ମୁଗ୍ଧ ହୋଇ ମୁକ୍ତକଣ୍ଠରେ ପ୍ରଶଂସା କଲେ । ଶ୍ରୀଶ୍ରୀଶଙ୍କରାଚାର୍ଯ୍ୟ ମହାରାଜ ମଧ୍ୟ ତାଙ୍କୁ ନିକଟକୁ ଡାକି ହର୍ଷୋଚ୍ଛଳ କଣ୍ଠରେ ଆଶୀର୍ବାଦ ଓ ସସ୍ନେହ ବ୍ୟବହାରରେ ଆପ୍ୟାୟିତ କଲେ ।

## ପାଶ୍ଚାତ୍ୟ ଦେଶରେ ପ୍ରଚାର କାର୍ଯ୍ୟର ପରିକଳ୍ପନା

ସ୍ୱାମୀଜୀଙ୍କ ଅସାଧାରଣ ଧୀଶକ୍ତି ଓ ପବିତ୍ର ଚରିତ୍ର ସହିତ ଘନିଷ୍ଠ ଭାବରେ ପରିଚିତ ହୋଇ ଦିନେ ତାଙ୍କ ଅଧ୍ୟାପକ ପଣ୍ଡିତ ଶଙ୍କର ପାଣ୍ଡୁରଙ୍ଗ କହିଲେ, ''ସ୍ୱାମୀଜୀ ! ଏ ଦେଶରେ ଧର୍ମପ୍ରଚାର କରି ଆପଣ ବିଶେଷ ସୁବିଧା କରିପାରିବେ ବୋଲି ମନେହୁଏ ନାହିଁ । ଆପଣଙ୍କ ଉଦାର ଭାବଗୁଡ଼ିକୁ ଆମେ ଦେଶର ଲୋକେ ଅନେକ ବିଳମ୍ବରେ ବୁଝିବେ । ବୃଥା ଶକ୍ତିକ୍ଷୟ ନ କରି ଆପଣ ପାଶ୍ଚାତ୍ୟ ଦେଶକୁ ଯାଆନ୍ତୁ । ସେଠାର ଲୋକେ ମହତ୍ତ୍ୱ ଓ ପ୍ରତିଭାର ସମ୍ମାନ କରି ଜାଣନ୍ତି । ଆପଣ ନିଶ୍ଚୟ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ଉପରେ ସନାତନ ଧର୍ମର ଅପୂର୍ବ ଜ୍ଞାନାଲୋକ ନିକ୍ଷେପ କରି ଗୋଟିଏ ଅଭିନବ ଯୁଗାନ୍ତର ଅଣାଇବା ଲାଗି ସକ୍ଷମ ହେବେ ।''

ସ୍ୱାମୀଜୀ କିୟତ୍‌କାଳ ଚିନ୍ତା କରି ଉତ୍ତର ଦେଲେ, ''ଦିନେ ପ୍ରଭାସଠାରେ ସମୁଦ୍ରତୀରରେ ଠିଆ ହୋଇ ଦୂର ଦିଗ୍‌ବଳୟରେ ଆଲୋକମଣ୍ଡିତଶୀର୍ଷ ତରଙ୍ଗମାଳାର ନୃତ୍ୟଭଙ୍ଗୀ ଦେଖୁଥିଲି; ସହସା ଯେପରି ମନେହେଲା, ଏହି ବିକ୍ଷୋଭିତ ସିନ୍ଧୁ ଅତିକ୍ରମ କରି ମୋତେ କୌଣସି ଦୂର ଦେଶକୁ ଯିବାକୁ ହେବ; କିନ୍ତୁ ତାହା କି ଭାବରେ ସମ୍ଭବ ହେବ ବୁଝି ପାରୁ ନାହିଁ ।''

## ସ୍ୱାମୀ ତ୍ରିଗୁଣାତୀତାନନ୍ଦଙ୍କ ସହିତ ସାକ୍ଷାତ୍

ଏହି ସମୟରେ ଘଟଣାକ୍ରମେ ସ୍ୱାମୀ ତ୍ରିଗୁଣାତୀତାନନ୍ଦ ହିଙ୍ଗୁଳାଜ ତୀର୍ଥକୁ ଯିବା ବାଟରେ ସେଠାରେ ପହଞ୍ଚିଲେ । ଲିମ୍ବଡ଼ି ରାଜପ୍ରାସାଦରେ ଜଣେ ମହାପଣ୍ଡିତ ପରମହଂସ ଅବସ୍ଥାନ କରୁଛନ୍ତି ବୋଲି ଶୁଣି ତାଙ୍କ ଦର୍ଶନ ପାଇଁ ଉପସ୍ଥିତ ହୋଇ ଶୁଣିଲେ ଯେ ପରମହଂସ ଆଉ କେହି ନୁହନ୍ତି, ତାଙ୍କର ପ୍ରିୟତମ ନେତା

ନରେନ୍ଦ୍ରନାଥ । କଥା ପ୍ରସଙ୍ଗରେ ସ୍ୱାମୀଜୀ କହିଲେ, ''ଭାଇ ସାରଦା ! ଠାକୁର ମୋ ସମ୍ବନ୍ଧରେ ଯେଉଁ ସବୁ କଥା କହୁଥିଲେ, ଯାହା ମୁଁ ସେତେବେଳେ ଚପଳତା ହେତୁ ହସି ଉଡ଼ାଇ ଦେଉଥିଲି, ବର୍ତ୍ତମାନ ସେସବୁର ସତ୍ୟତା କ୍ରମେ କ୍ରମେ ଅନୁଭବ କରିଛି । ମୋର ମନେହୁଏ, ମୋ ଭିତରେ ଯେଉଁ ଶକ୍ତି ଅଛି, ତାହାଦ୍ୱାରା ମୁଁ ଜଗତକୁ ଓଲଟପାଲଟ କରି ଦେଇପାରେ ।'' ସ୍ୱାମୀ ତ୍ରିଗୁଣାତୀତାନନ୍ଦ ପ୍ରସ୍ଥାନ କରିବା ପଛେ ପଛେ କାଳେ ଅନ୍ୟାନ୍ୟ ଗୁରୁଭାଇମାନେ ତାଙ୍କ ସମ୍ବାଦ ପାଇ ତାଙ୍କୁ ଆସି ବିରକ୍ତ କରିବେ, ଏହି ଆଶଙ୍କାରେ ସ୍ୱାମୀଜୀ ପୋର୍‌ବନ୍ଦର ପରିତ୍ୟାଗ କରି ଦ୍ୱାରକା, ମାଣ୍ଡବୀ, ପାଲିଟାନା ଇତ୍ୟାଦି ସ୍ଥାନ ପରିଦର୍ଶନ କରି ବୋମ୍ବାଇ ସହରରେ ଉପସ୍ଥିତ ହେଲେ । ଦିନେ ଲିମ୍ବଡ଼ିର ମହାରାଜା ରାଜପଥରେ ସ୍ୱୀୟ ଗୁରୁଜୀଙ୍କୁ ଦୀନବେଶରେ ପରିଭ୍ରମଣ କରୁଥିବାର ଦେଖି ବ୍ୟଥିତ ହୃଦୟରେ ନିଜ ଘରକୁ ନେଇଗଲେ ଏବଂ କହିଲେ, ''ଏହିପରି ଭାବରେ ଅନର୍ଥକ ଭ୍ରମଣକ୍ଳେଶ ସହ୍ୟ କରୁଛନ୍ତି କାହିଁକି ? ଆଉ ଆପଣଙ୍କୁ ଛାଡ଼ିବି ନାହିଁ; ଦୟା କରି ମୋ ସାଙ୍ଗରେ ଲିମ୍ବଡ଼ି ଚାଲନ୍ତୁ ସେଠାରେ ଆପଣଙ୍କ ରହିବା ଲାଗି ସୁବନ୍ଦୋବସ୍ତ କରି ଦିଆଯିବ ।''

ସ୍ୱାମୀଜୀ ଉତ୍ତର ଦେଲେ, ''ମହାରାଜ ! ଗୋଟିଏ ଅଦ୍ଭୁତ ଶକ୍ତି ମୋତେ ଜୋର୍ କରି ଘୁରାଉଛି । ଠାକୁର ମୋ କାନ୍ଧ ଉପରେ ଗୋଟିଏ ମହାନ୍ କାର୍ଯ୍ୟଭାର ଅର୍ପଣ କରିଯାଇଛନ୍ତି । ଯେତେଦିନ ପର୍ଯ୍ୟନ୍ତ ଏହି କାର୍ଯ୍ୟ ଶେଷ ନ ହେବ, ସେତେଦିନ ବିଶ୍ରାମ କରିବା ଆଶା ବୃଥା । ଯଦି ଜୀବନରେ କେତେବେଳେ ବିଶ୍ରାମ କରିବା ଲାଗି ଅବସର ପାଏ, ତାହାହେଲେ ଆସି ଆପଣଙ୍କ ସହିତ ବାସ କରିବି ।''

## ଲୋକମାନ୍ୟ ତିଳକ ମହାରାଜ

ମୁମ୍ବାଇଠାରୁ ପୁନାଗାମୀ ଟ୍ରେନ୍‌ର ଗୋଟିଏ ଦ୍ୱିତୀୟ ଶ୍ରେଣୀ ଡବାରେ ସ୍ୱାମୀଜୀ ବସିଥାନ୍ତି—ଗାଡ଼ିରେ ଆହୁରି ତିନିଜଣ ମରାଠୀ ଯୁବକ ଯାତ୍ରୀ ଥିଲେ, ସେମାନଙ୍କ ମଧ୍ୟରେ ଘୋର ତର୍କ ଚାଲିଥାଏ । ତର୍କର ବିଷୟ ଥିଲା—ସନ୍ୟାସ । ଦୁଇଜଣ ଯୁବକ, ରାଣାଡ଼େ ଇତ୍ୟାଦି ସଂସ୍କାରକଗଣଙ୍କ ମତ ଉଦ୍ଧାର କରି ସନ୍ନ୍ୟାସର ଅକର୍ମଣ୍ୟତା ଓ ନାନା ଦୋଷ ଦେଖାଉଥିଲେ; ଅନ୍ୟ ଜଣକ ସେମାନଙ୍କ ମତକୁ ଖଣ୍ଡନ କରି ଭାରତର ସୁପ୍ରାଚୀନ ସନ୍ନ୍ୟାସର ମହିମା କୀର୍ତ୍ତନ କରୁଥିଲେ । ଏହି ଯୁବକଟି ହେଉଛନ୍ତି, ଲୋକମାନ୍ୟ ବାଳଗଙ୍ଗାଧର ତିଳକ । ପାର୍ଶ୍ୱରେ ଉପବିଷ୍ଟ ସନ୍ନ୍ୟାସୀ ବିବେକାନନ୍ଦ ତର୍କରତ ଯୁବକଗଣଙ୍କ ଯୁକ୍ତି ଓ ଉକ୍ତି ମନୋଯୋଗ ଦେଇ ଶୁଣୁଥିଲେ; ଅବଶେଷରେ ଲୋକମାନ୍ୟ ତିଳକଙ୍କ ପକ୍ଷ ସମର୍ଥନ କରି ସେ ମଧ୍ୟ ତର୍କଯୁଦ୍ଧରେ ଯୋଗ ଦେଲେ । ଏହି 'ଇଂରାଜୀ ଜାଣିଥିବା' ସନ୍ନ୍ୟାସୀଙ୍କ ପ୍ରଖର ପ୍ରତିଭା ଦେଖି ଯୁବକଗଣ ବିଶେଷ ଭାବରେ ତାଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲେ । ସ୍ୱାମୀଜୀ ଧୀର ଭାବରେ ବୁଝାଇ ଦେଲେ ଯେ, ସନ୍ନ୍ୟାସୀମାନେ ହିଁ ଭାରତର

ଗୋଟିଏ ପ୍ରାନ୍ତରୁ ଅପର ପ୍ରାନ୍ତକୁ ଯାଇ ଜାତୀୟ ଜୀବନର ଉଚ୍ଚାଦର୍ଶ ସମଗ୍ର ଭାରତରେ ଏପର୍ଯ୍ୟନ୍ତ ପ୍ରଚାର କରି ଆସିଛନ୍ତି । ଭାରତୀୟ ସଭ୍ୟତାର ସର୍ବୋଚ୍ଚ ଅଭିବ୍ୟକ୍ତି ଏହି ସନ୍ନ୍ୟାସ ହିଁ ଜାତୀୟ ଜୀବନର ଆଦର୍ଶକୁ ନାନା ବିପର୍ଯ୍ୟୟରୁ ଏତେ କାଳ ଶିଷ୍ୟ ପରମ୍ପରା ମାଧ୍ୟମରେ ରକ୍ଷା କରି ଆସିଛି । ଭଣ୍ଡ, ସ୍ୱାର୍ଥପର ବ୍ୟକ୍ତିଙ୍କ ହସ୍ତରେ ସନ୍ନ୍ୟାସ ମଝିରେ ମଝିରେ ଲାଞ୍ଛିତ ଓ ବିକୃତ ହୋଇଛି ସତ୍ୟ; କିନ୍ତୁ ଭାରତର ସମଗ୍ର ସନ୍ନ୍ୟାସୀ-ସମ୍ପ୍ରଦାୟକୁ ବ୍ୟକ୍ତିବିଶେଷର ଭଣ୍ଡାମି ଲାଗି ଦାୟୀ କରିବା ଅସଙ୍ଗତ ।

ଏହି ସୁପଣ୍ଡିତ ସନ୍ନ୍ୟାସୀଙ୍କ ବାଗ୍ମୀତା ଓ ଗଭୀର ପାଣ୍ଡିତ୍ୟ ଦର୍ଶନ କରି ଲୋକମାନ୍ୟ ତିଳକ ମୁଗ୍ଧ ହେଲେ ଏବଂ ପୁନା ଷ୍ଟେସନରେ ଅବତରଣ କରି ସ୍ୱାମୀଜୀଙ୍କୁ ନିଜ ଘରକୁ ନେଇଗଲେ । ସ୍ୱାମୀଜୀ ମଧ୍ୟ ତିଳକ ମହାରାଜଙ୍କ ପ୍ରଖର ପ୍ରତିଭା ଓ ବେଦାଦି ଶାସ୍ତ୍ରରେ ପାଣ୍ଡିତ୍ୟ ଦେଖି ତାଙ୍କ ଗୃହରେ ସାନନ୍ଦ ଅବସ୍ଥାନ କରିବାକୁ ଲାଗିଲେ । ଉଭୟ ଏକତ୍ର ବେଦର ଗୂଢ଼ାର୍ଥ ଆଲୋଚନା କରି ତୃପ୍ତ ହେଉଥିଲେ । ପ୍ରାୟ ମାସାଧିକ କାଳ ପୁନାର ତିଳକଭବନରେ ଯାପନ କରି ସ୍ୱାମୀଜୀ ବେଲଗାଓଁ ଓ ମାର୍ମାଗୋଆ ବାଟେ ମହୀଶୂର ରାଜ୍ୟରେ ପହଞ୍ଚିଲେ ।

## ମହୀଶୂର

ମହୀଶୂର ରାଜ୍ୟର ଦେୱାନ ଆର୍. କେ. ଶେଷାଦ୍ରି ସ୍ୱାମୀଜୀଙ୍କ ସହିତ ଆଳାପ କରି ଏତାଦୃଶ ମୁଗ୍ଧ ହେଲେ ଯେ, ତାଙ୍କୁ ମହୀଶୂର ମହାରାଜା ରାମରାଜେନ୍ଦ୍ର ୱାଡ଼ିୟାରଙ୍କ ସହିତ ପରିଚିତ କରାଇ ଦେଲେ । ମହାରାଜା ତରୁଣ ସନ୍ନ୍ୟାସୀଙ୍କ ଅଲୌକିକ ପ୍ରତିଭା ଓ ପାଣ୍ଡିତ୍ୟର ପରିଚୟ ପାଇ ଆନନ୍ଦିତ ହେଲେ । କହିବା ବାହୁଲ୍ୟ ଯେ ସ୍ୱାମୀଜୀ ଶ୍ରଦ୍ଧାସ୍ପଦ ଅତିଥି ରୂପେ ରାଜଭବନରେ ବାସ କରିବାକୁ ଲାଗିଲେ । ମହୀଶୂର ମହାରାଜା ଅତ୍ୟନ୍ତ ସରଳ ଓ ଉଦାର ପ୍ରକୃତିର ଲୋକ ଥିଲେ । ସ୍ୱାମୀଜୀ ସମୟେ ସମୟେ ବାଳକଙ୍କ ପରି ସରଳ ଭାବରେ ମହାରାଜାଙ୍କର କୌଣସି କାର୍ଯ୍ୟରେ ତ୍ରୁଟି ଦେଖିଲେ ତତ୍କ୍ଷଣାତ୍ ତୀବ୍ର ସମାଲୋଚନା କରୁଥିଲେ; ମହାରାଜା ସେଥିରେ ବେଶୀ ଆନନ୍ଦ ଅନୁଭବ କରୁଥିଲେ । ଦିନେ ସ୍ୱାମୀଜୀଙ୍କ ସସ୍ନେହ ଭର୍ତ୍ସନାରେ ମହାରାଜା କୃତ୍ରିମ କୋପ ପ୍ରକାଶ କରି କହିଲେ, "ସ୍ୱାମୀଜୀ ! ମୁଁ ଜଣେ ଏଡ଼େ ବଡ଼ ମହାରାଜା; ଆପଣ ମୋତେ ଭୟ କରିବା ଉଚିତ୍ ଓ ଖୋସାମଦ କରିବା ଉଚିତ୍ । ଭବିଷ୍ୟତରେ ଆପଣ ସାବଧାନ ହେବେ, ନଚେତ୍ ଆପଣଙ୍କ ଜୀବନ ସଙ୍କଟାପନ୍ନ ହୋଇପାରେ ।"

ସ୍ୱାମୀଜୀ ବାଳକୋଚିତ ସରଳତା ସହିତ ମହାରାଜାଙ୍କ କଥାରେ ବିଶ୍ୱାସ କରି ଗମ୍ଭୀର ଭାବରେ ଉତ୍ତର ଦେଲେ, "ଆପଣଙ୍କ ଅସଙ୍ଗତ କାର୍ଯ୍ୟ ଓ ଉକ୍ତି ସମର୍ଥନ କରିବା ଲାଗି ତ ବହୁ ପରିଷଦ ଅଛନ୍ତି । ମୁଁ ସନ୍ନ୍ୟାସୀ, ସତ୍ୟ ହିଁ ମୋର ତପସ୍ୟା । ସାମାନ୍ୟ ଜଡ଼ ଦେହର ଅନିଷ୍ଟ ଆଶଙ୍କାରେ ସତ୍ୟକୁ ପରିତ୍ୟାଗ

କରିବି ? ଆପଣ ହିନ୍ଦୁ ରାଜା ହୋଇ ଜଣେ ହିନ୍ଦୁ-ସନ୍ନ୍ୟାସୀଙ୍କଠାରୁ କ'ଣ ଏହିପରି ହୀନୋଚିତ କାର୍ଯ୍ୟ ପ୍ରତ୍ୟାଶା କରନ୍ତି ?''

ଏହିପରି ନିର୍ଭୀକ ସ୍ପଷ୍ଟବାଦିତା ନିମିତ୍ତ ସ୍ୱାମୀଜୀ ମହୀଶୂରାଧିପତିଙ୍କ ବନ୍ଧୁ ହୋଇ ପାରିଥିଲେ । ମହାରାଜା ଗୋଟିଏ ପାଖରେ ଯେପରି ତାଙ୍କ ସହିତ ପରିହାସ ଓ ରହସ୍ୟାଳାପ କରୁଥିଲେ, ଅନ୍ୟ ପାଖରେ ସେପରି ଗୁରୁପରି ଶ୍ରଦ୍ଧା କରୁଥିଲେ; ଏପରିକି ଦିନେ ମହାରାଜା ସ୍ୱାମୀଜୀଙ୍କ ପାଦପୂଜା କରିବାର ଅଭିପ୍ରାୟ ପ୍ରକାଶ କରନ୍ତେ ସ୍ୱାମୀଜୀ ଏପରି ପ୍ରବଳ ଆପତ୍ତି ଉତ୍ଥାପନ କଲେ ଯେ, ମହାରାଜଙ୍କୁ ବାଧ ହୋଇ ଉକ୍ତ ସଂକଳ୍ପ ପରିତ୍ୟାଗ କରିବାକୁ ହେଲା । ଏହି ପାର୍ଥିବ-ଯଶଃ -ସମ୍ମାନ ଓ ଐଶ୍ୱର୍ଯ୍ୟର ଆକାଙ୍‌କ୍ଷାହୀନ ସନ୍ନ୍ୟାସୀ ଯେ ନିଜ ଅମଳ ଚରିତ୍ର ପ୍ରଭାବରେ ରାଜାଧିରାଜଙ୍କଠାରୁ ଦରିଦ୍ର ମେହେନ୍ତରଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ହୃଦୟ ଜୟ କରି ନେଇଛନ୍ତି, ଏଥିରେ ବୈଚିତ୍ର୍ୟ କ'ଣ ?

## ମହୀଶୂର ରାଜପ୍ରାସାଦରେ ଧର୍ମସଭା

ଦିନେ ଦେଓ୍ୱାନଙ୍କ ସଭାପତିତ୍ୱରେ ରାଜପ୍ରାସାଦରେ ଏକ ବିଚାରସଭା ଆହୂତ ହେଲା । ବାଙ୍ଗାଲୋର ନଗରର ପ୍ରାୟ ସମସ୍ତ ପଣ୍ଡିତ ଏହି ବିଚାରସଭାରେ ଯୋଗଦାନ କଲେ । ସ୍ୱାମୀଜୀ ମଧ୍ୟ ମହାରାଜାଙ୍କ ଅନୁରୋଧ କ୍ରମେ ସଭାରେ ଯୋଗଦାନ କଲେ ।

ବେଦାନ୍ତର ବିଚାର ଆରମ୍ଭ ହେଲା । ପଣ୍ଡିତବର୍ଗ ବେଦାନ୍ତର ବିଭିନ୍ନ ପ୍ରକାର ମତବାଦ ସମର୍ଥନ କରି ବାଦାନୁବାଦରେ ପ୍ରବୃତ୍ତ ହେଲେ । ସ୍ୱମତ ପ୍ରତିଷ୍ଠା ଆକାଙ୍‌କ୍ଷାରେ ଅପରର ସମର୍ଥିତ ମତକୁ ଭ୍ରାନ୍ତ ବୋଲି ପ୍ରତିପାଦନ କରିବା ନିମିତ୍ତ ତୁମୂଳ ତର୍କର ଝଡ଼ ବୋହିଲା — କିନ୍ତୁ ବହୁ ସମୟ ପରେ ମଧ୍ୟ ସେମାନେ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇ ନ ପାରି ନିସ୍ତବ୍ଧ ହେଲେ ।

ଅବଶେଷରେ ଦେଓ୍ୱାନଙ୍କ ଅନୁରୋଧରେ ସ୍ୱାମୀଜୀ ଦଣ୍ଡାୟମାନ ହୋଇ ସମବେତ ପଣ୍ଡିତମଣ୍ଡଳୀକୁ ଶ୍ରଦ୍ଧା ସହକାରେ ଅଭିବାଦନ କଲେ । ତାଙ୍କର ସ୍ୱର୍ଗୀୟ ଲାବଣ୍ୟମଣ୍ଡିତ ମୁଖଶ୍ରୀ ଓ ବିଦ୍ୟୁତ୍‌ବର୍ଷୀ ଉଜ୍ଜ୍ୱଳ ନେତ୍ରଦ୍ୱୟ ଅନତିବିଳମ୍ବରେ ବୟୋବୃଦ୍ଧ ସୁବିଜ୍ଞ ପଣ୍ଡିତମଣ୍ଡଳୀର ହୃଦୟ ଅଧିକାର କରିନେଲା । ସ୍ୱାମୀଜୀ ସ୍ୱଭାବସୁମଧୁର କଣ୍ଠରେ ସୁଲଳିତ ସଂସ୍କୃତରେ ସର୍ବସଂଶୟଛେଦି ବେଦାନ୍ତର ବିଭିନ୍ନ ପ୍ରକାର ମତବାଦଗୁଡ଼ିକ ଯେ ପରସ୍ପର ବିରୋଧୀ ନୁହେଁ, ପରନ୍ତୁ ଗୋଟିଏ ଅପରଟିର ସମର୍ଥକ, ଏହା ଅପୂର୍ବ ଯୁକ୍ତିବଳରେ ପ୍ରମାଣ କରି ବୁଝାଇଦେଲେ । ବେଦାନ୍ତ ଶାସ୍ତ୍ର କେତେଗୋଟି ଦାର୍ଶନିକ ମତବାଦର ସମଷ୍ଟି ନୁହେଁ, ଏହା ସାଧକ-ଜୀବନର ବିଭିନ୍ନାବସ୍ଥାରେ ଅନୁଭୂତ ସତ୍ୟସମୂହ । ଅତଏବ ଗୋଟିକୁ ସତ୍ୟ ବୋଲି ପ୍ରତିପାଦନ କରିବାକୁ ହେଲେ ଆପାତଃ ବିରୁଦ୍ଧ ଅପରଟିକୁ ମିଥ୍ୟା ପ୍ରମାଣ କରିବାର କୌଣସି ପ୍ରୟୋଜନ ନାହିଁ । ସ୍ୱାମୀଜୀଙ୍କ ଅଭିନବ ବେଦାନ୍ତ-ବ୍ୟାଖ୍ୟା

ଶ୍ରବଣ କରି ସମବେତ ପଣ୍ଡିତମଣ୍ଡଳୀ ଚମତ୍କୃତ ହେଲେ ଏବଂ ସମସ୍ୱରରେ ତାଙ୍କୁ ସାଧୁବାଦ ଜଣାଇଲେ ।

## ମହୀଶୂରାଧୀଶ ଓ ବିବେକାନନ୍ଦ

ଦିନେ କଥାପ୍ରସଙ୍ଗରେ ମହାରାଜା କହିଲେ, ''ସ୍ୱାମୀଜୀ ! ଆପଣଙ୍କ ପାଇଁ କିଛି କରିପାରିଲେ ବଡ଼ ସନ୍ତୁଷ୍ଟ ହୁଅନ୍ତି; ଆପଣ ତ କିଛି ଗ୍ରହଣ କରିବେ ନାହିଁ ।''

ସ୍ୱାମୀଜୀ ତାଙ୍କ ଭାରତ-ଭ୍ରମଣର ଅଭିଜ୍ଞତା ମାଧ୍ୟମରେ ଦେଶର ଅବସ୍ଥା ବର୍ଣ୍ଣନା କରି କହିଲେ, ''ଆମ୍ଭମାନଙ୍କର ବର୍ତ୍ତମାନ ପ୍ରୟୋଜନ, ପାଶ୍ଚାତ୍ୟ ବିଜ୍ଞାନ ସାହାଯ୍ୟରେ ଆର୍ଥିକ ଓ ସାମାଜିକ ଅବସ୍ଥା ଉନ୍ନତ କରିବାକୁ ଚେଷ୍ଟା କରିବା; କିନ୍ତୁ ୟୁରୋପୀୟମାନଙ୍କ ଦୁଆରେ ଠିଆ ହୋଇ କେବଳ ମାତ୍ର କ୍ରନ୍ଦନ ଓ ଭିକ୍ଷା ପ୍ରାର୍ଥନା କଲେ ଉକ୍ତ ଉଦ୍ଦେଶ୍ୟ ପୂର୍ଣ୍ଣ ହେବ ନାହିଁ । ସେମାନେ ଯେପରି ବର୍ତ୍ତମାନ ଉନ୍ନତ ବୈଜ୍ଞାନିକ ପ୍ରଣାଳୀରେ କୃଷି, ଶିଳ୍ପ ଇତ୍ୟାଦି ଶିକ୍ଷା ଦେବେ, ବିନିମୟରେ ଆମେ ମଧ୍ୟ ସେମାନଙ୍କୁ କିଛି ଦେଇପାରିବା । ଭାରତବର୍ଷର ବର୍ତ୍ତମାନ ଦେବାଭଳି ଏକମାତ୍ର ଆଧ୍ୟାତ୍ମିକ ଜ୍ଞାନ ଛଡ଼ା ଆଉ କ'ଣ ଅଛି ? ସେହିହେତୁ ସମୟେ ସମୟେ ମୋର ଇଚ୍ଛା ହୁଏ ଯେ, ବେଦାନ୍ତର ଅତ୍ୟୁଦାର ଧର୍ମ ପ୍ରଚାର କରିବା ଲାଗି ପାଶ୍ଚାତ୍ୟ ଦେଶକୁ ଯିବି, ଯେଉଁଥିରେ ଏହି ଆଦାନ-ପ୍ରଦାନ ସମ୍ବନ୍ଧ ସ୍ଥାପିତ ହୋଇପାରିବ । ସେଥିନିମିତ୍ତ ପ୍ରତ୍ୟେକ ଭାରତବାସୀର ହିଁ ସ୍ୱଜାତି ଓ ସ୍ୱଦେଶର କଲ୍ୟାଣ କାମନା କରି ଚେଷ୍ଟା କରିବା କର୍ତ୍ତବ୍ୟ । ଆପଣଙ୍କ ପରି ମହାକୁଳପ୍ରସୂତ ଶକ୍ତିଶାଳୀ ରାଜନ୍ୟବର୍ଗ ଚେଷ୍ଟା କଲେ ଅଳ୍ପାୟାସରେ କାର୍ଯ୍ୟ-ଆରମ୍ଭ ହୋଇପାରେ । ଆପଣ ଏହି ମହତ୍ କାର୍ଯ୍ୟରେ ଅଗ୍ରସର ହୁଅନ୍ତୁ, ଏହା ହିଁ ମୋର ଏକମାତ୍ର ପ୍ରାର୍ଥନା ।''

ମହାରାଜା ଅଭିନିବେଶ ସହକାରେ ସ୍ୱାମୀଜୀଙ୍କ ବାକ୍ୟ ଶ୍ରବଣ କରି କହିଲେ ଯେ, ସ୍ୱାମୀଜୀ ଯଦି ପାଶ୍ଚାତ୍ୟ ଦେଶରେ ହିନ୍ଦୁ ଧର୍ମ ପ୍ରଚାର କରିବା ଲାଗି ଯାଆନ୍ତି, ତାହାହେଲେ ସେ ସମଗ୍ର ବ୍ୟୟଭାର ବହନ କରିବେ; ଏପରିକି ମହାରାଜା ତତ୍କ୍ଷଣାତ୍ ତାଙ୍କୁ କେତେ ହଜାର ଟଙ୍କା ଦେବାକୁ ଉଦ୍ୟତ ହେଲେ । ସ୍ୱାମୀଜୀ ଏହି ଦାନ ପ୍ରତ୍ୟାଖ୍ୟାନ କରି କହିଲେ, ''ମହାରାଜା, ମୁଁ ଏପର୍ଯ୍ୟନ୍ତ ମଧ୍ୟ ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇପାରି ନାହିଁ । ମୁଁ ହିମାଳୟରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ଭ୍ରମଣ କରିବା ଲାଗି ସଂକଳ୍ପ କରିଛି । ଏହି ପରିବ୍ରାଜକ ବ୍ରତ ଉଦ୍ଯାପିତ ନ ହେବା ପର୍ଯ୍ୟନ୍ତ ଅନ୍ୟ କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରିବି ନାହିଁ, ଏପରିକି ତାହାପରେ କ'ଣ କରିବି ଓ କୁଆଡ଼େ ଯିବି ସେଥିରେ କୌଣସି ସ୍ଥିରତା ନାହିଁ ।''

## ମହୀଶୂରରୁ ବିଦାୟ

ଅବଶେଷରେ ଦିନେ ସ୍ୱାମୀଜୀଙ୍କୁ ବିଦାୟ ନେବା ଲାଗି ଉଦ୍ୟତ ହେଉଥିବାର ଦେଖି ମହାରାଜା ତାଙ୍କୁ ବିବିଧ ବହୁମୂଲ୍ୟ ଦ୍ରବ୍ୟ ଉପହାର ଦେଲେ । ସ୍ୱାମୀଜୀ ଏହା ମଧ୍ୟରୁ ବହୁ ଅନୁରୋଧ ପରେ ବନ୍ଧୁତ୍ୱର ସ୍ମୃତି ଚିହ୍ନସ୍ୱରୂପ ଗୋଟିଏ

ଧାତବଦ୍ରବ୍ୟର ସଂସ୍ରବହୀନ କ୍ଷୁଦ୍ର ଚନ୍ଦନକାଠର ହୁକ୍‌କା ଗ୍ରହଣ କରି ଅବଶିଷ୍ଟ ଦ୍ରବ୍ୟ ଗ୍ରହଣ କରିବାକୁ ଅସ୍ୱୀକୃତ ହେଲେ । ଦେଓ୍ୱାନ ସ୍ୱାମୀଜୀଙ୍କ କ୍ଷୁଦ୍ର ପୁଟୁଳାରେ ଗୋଟିଏ ତାଡ଼ା ନୋଟ୍ ଗୁଞ୍ଜିଦେବାକୁ ବହୁ ଚେଷ୍ଟା କରି ଅକୃତକାର୍ଯ୍ୟ ହେଲେ । ତାହାଙ୍କୁ ବିମର୍ଷ ହେବାର ଦେଖି ସ୍ୱାମୀଜୀ ଅଗତ୍ୟା ତାଙ୍କ ନିକଟରୁ କୋଚିନ୍ ପର୍ଯ୍ୟନ୍ତ ଗୋଟିଏ ଦ୍ୱିତୀୟ ଶ୍ରେଣୀର ରେଳ ଟିକେଟ ନେଲେ । ଦେଓ୍ୱାନ କୋଚିନ୍ ରାଜ୍ୟର ଦେଓ୍ୱାନଙ୍କ ନିକଟକୁ ଖଣ୍ଡିଏ ପରିଚୟ-ପତ୍ର ଦେଇ କହିଲେ, ''ସ୍ୱାମୀଜୀ ! ମୋର ଗୋଟିଏ ଅନୁରୋଧ ଦୟାକରି ରଖିବେ । ଆପଣ ପଦବ୍ରଜରେ ଭ୍ରମଣ କରି କଷ୍ଟଭୋଗ କରିବେ ନାହିଁ; କୋଚିନ୍ ରାଜ୍ୟର ଦେଓ୍ୱାନ ଆପଣଙ୍କ ପାଇଁ ଶ୍ରୀଶ୍ରୀରାମେଶ୍ୱର ପର୍ଯ୍ୟନ୍ତ ସୁବନ୍ଦୋବସ୍ତ କରିଦେବେ ।''

କୋଚିନ୍‌ରେ କେତେଦିନ ବିଶ୍ରାମ କରି ମାଲ୍‌ବାର ଅତିକ୍ରମ କରି ସ୍ୱାମୀଜୀ ସେତୁବନ୍ଧ ରାମେଶ୍ୱରରେ ଉପନୀତ ହେଲେ । ରାମନାଦ ରାଜା ଭାସ୍କର ବର୍ମା ସେତୁପତିଙ୍କୁ ଶିଷ୍ୟପଦରେ ଗ୍ରହଣ କରି ସ୍ୱାମୀଜୀ ବନ୍ଧନମୁକ୍ତ ସିଂହପରି ରାଜପ୍ରାସାଦ ପରିତ୍ୟାଗ କରି କନ୍ୟାକୁମାରୀ ଅଭିମୁଖେ ପ୍ରସ୍ଥାନ କଲେ ।

## ସ୍ୱାମୀଜୀଙ୍କ ଭାରତ-ଭ୍ରମଣ

ସ୍ୱାମୀଜୀଙ୍କ ଭାରତ-ଭ୍ରମଣ କାହାଣୀ କେବଳ ସଂକ୍ଷିପ୍ତ ଭାବରେ କୁହାଯାଇ ପାରେ । କେତେବେଳେ ଅବା ସେ ରାଜାଧିରାଜଙ୍କ ଶୀତଳ ମର୍ମର ହର୍ମ୍ୟରେ ବିଶ୍ରାମ କରୁଥିଲେ; ପାଖରେ ନରପତି ଆଦେଶ ପାଳନ ଲାଗି ଯୋଡ଼ହସ୍ତରେ ଦଣ୍ଡାୟମାନ ରହୁଥିଲେ । ଅନ୍ୟ କେତେବେଳେ ରୌଦ୍ର-ଦୀପ୍ତ ପ୍ରଚଣ୍ଡ ମରୁର ତପ୍ତ ବାଲୁକାପୂର୍ଣ୍ଣ ବକ୍ଷରେ କ୍ଷୁତ୍‌ପିପାସାରେ ସ୍ୱାମୀଜୀ କାତର ହେଉଥିଲେ; ସମ୍ମୁଖରେ ସାମାନ୍ୟ ବଣିକ ଖାଦ୍ୟପାନୀୟର ଲୋଭ ଦେଖାଇ ବ୍ୟଙ୍ଗ-ପରାୟଣ ଥିଲେ । କେତେବେଳେ ଅବା ରାଜା, ମହାରାଜା, ଉଚ୍ଚବଂଶଜାତ ଧନୀ ଓ ସମ୍ଭ୍ରାନ୍ତ ବ୍ୟକ୍ତିଗଣଙ୍କ ଆଗ୍ରହପୂର୍ଣ୍ଣ ଆମନ୍ତ୍ରଣ ଆଗ୍ରାହ୍ୟ କରି ଦରିଦ୍ର ଚର୍ମକାର ଗୃହରେ ଭିକ୍ଷାଗ୍ରହଣ କରି ତାକୁ କୃତାର୍ଥ କରୁଥିଲେ; ଅନ୍ୟ କେତେବେଳେ କ୍ରମାଗତ ପାଞ୍ଚ ଛଅଦିନ କାଳ ଆହାର-ପାନୀୟ ବିବର୍ଜିତ ହୋଇ ତରୁତଳେ ଅବସ୍ଥାନ କରି ପ୍ରସନ୍ନ ହାସ୍ୟ ସହକାରେ ଧର୍ମର ସୂକ୍ଷ୍ମତତ୍ତ୍ୱ ବ୍ୟାଖ୍ୟା କରୁଥିଲେ । ଆଦର, ସମ୍ମାନ, ଭକ୍ତି, ଉପେକ୍ଷା, ତାଡ଼ନା—କୌଣସିଟି ତାଙ୍କ ଚିତ୍ତକୁ ବିଚଳିତ କରିବା ଲାଗି ସମର୍ଥ ନ ଥିଲା । ସେ ଅପୂର୍ବ ତିତିକ୍ଷା, ଅସୀମ ଧୈର୍ଯ୍ୟ, ଅଲୌକିକ ତ୍ୟାଗଶକ୍ତି, ଅପାର ପରଦୁଃଖକାତରତା, ମାନବୀୟ ଭାଷାରେ ବ୍ୟକ୍ତ କରିବା ଅସମ୍ଭବ । ଯାହାକୁ ସମସ୍ତେ ଦୁଖକଷ୍ଟ କହନ୍ତି, ଯାହାର ସାମାନ୍ୟ ସ୍ପର୍ଶରେ ସମସ୍ତେ ବ୍ୟଥିତ ଚିତ୍ତରେ ଆର୍ତ୍ତନାଦ କରି 'ଭଗବାନଙ୍କର ବିଚାର ନାହିଁ' ଇତ୍ୟାଦି ମନ୍ତବ୍ୟ ପ୍ରକାଶ କରି ବସନ୍ତି, ମୂର୍ତ୍ତିମାନ ସନ୍ନ୍ୟାସ ଏହି ମହାପୁରୁଷ ଅବିଚଳିତ ଭାବରେ ତାହା ସହ୍ୟ କରି ଅଛନ୍ତି; କେବଳ ସହ୍ୟ ନୁହେଁ, ଏଥିପାଇଁ ଯେପରିକି ସେ ଆନନ୍ଦରେ ଉନ୍ମତ୍ତ

ଥାଆନ୍ତି । ସେ ଦୁଃଖକଷ୍ଟ ନିକଟରୁ ପଳାୟନର ଚେଷ୍ଟା କୌଣସି ଦିନ କରି ନାହାନ୍ତି ବରଂ ସ୍ୱୀୟ ସମଗ୍ର ଯୋଗୈଶ୍ୱର୍ଯ୍ୟ ଗୋପନ କରି ମାନବଜାତିର ସକଳ ଦୁର୍ବଳତା, ସମଗ୍ର ପାପଭାର, ସବୁ ଦୁଃଖକଷ୍ଟ ନିଜ କାନ୍ଧରେ ବହନ କରି ସାଧାରଣ ମଣିଷ ପରି ଜଗତର କଲ୍ୟାଣ କାମନାରେ ନବଜାଗରଣର ପୁଣ୍ୟବାର୍ତ୍ତା ନେଇ ପ୍ରତ୍ୟେକ ଦ୍ୱାରରେ ଯାଚି ଯାଇଛନ୍ତି । ଏହା ଅପେକ୍ଷା ଅଧିକ ସ୍ୱାର୍ଥତ୍ୟାଗ, ଅଧିକ ତପସ୍ୟା ବର୍ତ୍ତମାନ ଯୁଗରେ ଅନ୍ୟ କେଉଁଠି ଦେଖାଯାଏ କି ? ସେହି ହେତୁ ସ୍ୱାମୀଜୀ ଭାରତ ଭ୍ରମଣରେ ବାହାରିବା ଆଗରୁ ଜଣେ ଭକ୍ତିଭାଜନ ବନ୍ଧୁଙ୍କୁ ଗୋଟିଏ ଚିଠିରେ ଲେଖିଥିଲେ, ''ଆଶୀର୍ବାଦ କରିବେ, ଯେପରି ମୋ ହୃଦୟ ମହାନ୍ ଐଶୀ ବଳରେ ବଳୀୟାନ ହୁଏ ଏବଂ ସକଳ ପ୍ରକାର ମାୟା ଅନ୍ଧକାରରୁ ଦୂରରେ ରହେ; କାରଣ 'We have taken up the Cross, Thou hast laid it upon us and grant us strength that we bear it into death. Amen'—*Imitation of Christ* ; ଅର୍ଥାତ୍ ଆମେ କ୍ରସ୍ ଧାରଣ କରିଛୁ, ଆପଣ ତାହା ଆମ ଉପରେ ଲଦି ଦେଇଛନ୍ତି । ଆମକୁ ଶକ୍ତି ଦିଅନ୍ତୁ, ଯେପରି କି ଆମେ ଏହାକୁ ମୃତ୍ୟୁ ପର୍ଯ୍ୟନ୍ତ ବହନ କରୁ । ତଥାସ୍ତୁ—ଖ୍ରୀଷ୍ଟଙ୍କ ଅନୁସରଣରେ ।''

## କନ୍ୟାକୁମାରୀରେ ତନ୍ମୟ ଧ୍ୟାନ ଓ ଉପଲବ୍ଧି

ସମ୍ମୁଖରେ ଅନିଳାନ୍ଦୋଳିତ ବୀଚି-ବିକ୍ଷୋଭମୟୀ ଉଚ୍ଛ୍ୱସିତ ସୁନୀଳ ଜଳଧି; ପାଶ୍ଚାତ୍ରେ ଶୈଳ-କାନନ-କାନ୍ତାର-ପରିଶୋଭିତା ଶସ୍ୟଶ୍ୟାମଳା ଭାରତବର୍ଷ ଏବଂ ତାହାର ସର୍ବଶେଷ ପ୍ରସ୍ତରଖଣ୍ଡ ଉପରେ ଯୋଗାସନରେ ସମାସୀନ ନବଭାରତର ମନ୍ତ୍ରଗୁରୁ—ପରିବ୍ରାଜକାଚାର୍ଯ୍ୟ ବିବେକାନନ୍ଦ ! କି ମହିମମୟ ଦୃଶ୍ୟ !!

ସ୍ୱାମୀଜୀ ଭାବୁଥିଲେ—ଶ୍ରୀଗୁରୁଙ୍କ ଆଦେଶବାଣୀ ଶିରୋଧାର୍ଯ୍ୟ କରି ସମଗ୍ର ଭାରତବର୍ଷ ଭ୍ରମଣ କରିଛି; ଧନୀ, ନିର୍ଦ୍ଧନ, ଉଚ୍ଚ, ନୀଚ, ରାଜା, ମହାରାଜା, ପଣ୍ଡିତ, ମୂର୍ଖ ପ୍ରତ୍ୟେକର ଦ୍ୱାରେ ଦ୍ୱାରେ ଯାଇଛି, ଅପରୋକ୍ଷ ଅନୁଭୂତିଲବ୍ଧ ସତ୍ୟ ପ୍ରଚାର କରିବା ଲାଗି ଯଥାସାଧ୍ୟ ଚେଷ୍ଟା କରିଛି; ପରିବ୍ରାଜକ ବ୍ରତ ଉଦ୍ଯାପିତ ହୋଇଛି । ବର୍ତ୍ତମାନ ମୁଁ କ'ଣ କରିବି ? ଆଉ କି କାମ ବାକି ରହିଲା ?

ଶ୍ରୀଶ୍ରୀଜଗନ୍ମାତାଙ୍କ ଶ୍ରୀମନ୍ଦିର ପାଖରେ ପ୍ରସ୍ତରାସନରେ ଉପବିଷ୍ଟ ଯୋଗୀବର ଧ୍ୟାନସ୍ଥ ହେଲେ । ମହାପୁରୁଷଙ୍କ ତପୋମାର୍ଜିତ ନିର୍ମଳ ପବିତ୍ର ଚିତ୍ତ-ଦର୍ପଣରେ ମାତୃଭୂମିର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଚିତ୍ରସମୂହ ଗୋଟି ଗୋଟି ହୋଇ ପ୍ରତିଫଳିତ ହେବାକୁ ଲାଗିଲା । ଆଶା-ଆନନ୍ଦ-ଉଦ୍‌ବେଗ-ଅମର୍ଷ ସ୍ତମ୍ଭିତ ହୃଦୟ ବୀର ସନ୍ନ୍ୟାସୀଙ୍କ ଯୋଗଜ ସୂକ୍ଷ୍ମଦୃଷ୍ଟି ସମ୍ମୁଖରେ 'ବର୍ତ୍ତମାନ ଭାରତ' ଦେଦୀପ୍ୟମାନ ହୋଇ ଉଠିଲା । 'ଏହି ମୋର ଭାରତବର୍ଷ—ମୋର ପ୍ରିୟ ମାତୃଭୂମି' ଭାବୁ ଭାବୁ ତାଙ୍କର ନେତ୍ରଦ୍ୱୟ ଅଶ୍ରୁସିକ୍ତ ହେଲା ।

ସେ ଦେଖିଲେ, ଧର୍ମକ୍ଷେତ୍ର ଭାରତବର୍ଷ ଦୁର୍ଭିକ୍ଷ, ମହାମାରୀ, ଦୈନ୍ୟ, ଦୁଃଖ, ରୋଗ ଓ ଶୋକରେ ଜର୍ଜରିତ । ଗୋଟିଏ ଦିଗରେ ପ୍ରବଳ ବିଳାସ-ମୋହରେ ଉନ୍ମତ୍ତ ଏବଂ କ୍ଷମତା-ମଦ-ଗର୍ବିତ ଧନୀଗଣ ଦରିଦ୍ରମାନଙ୍କୁ ନିଷ୍ପେଷିତ କରି ବିଳାସତୃଷ୍ଣା ପରିତୃପ୍ତ କରୁଛନ୍ତି । ଅପର ଦିଗରେ ଅନାହାରରେ ଜୀର୍ଣ୍ଣଶୀର୍ଣ୍ଣ 'ଛିନ୍ନବସନ, ଯୁଗଯୁଗାନ୍ତର ନିରାଶବ୍ୟଞ୍ଜିତ-ବଦନ ନରନାରୀ, ବାଳକ ବାଳିକାଗଣ' ହା ଅନ୍ନ, ହା ଅନ୍ନ ରବରେ ଗଗନ ବିଦୀର୍ଣ୍ଣ କରୁଛନ୍ତି । ଶିକ୍ଷାଦୀକ୍ଷା ଅଭାବରେ ନିମ୍ନଜାତିଗୁଡ଼ିକ ପୁରୋହିତ ସମ୍ପ୍ରଦାୟର ହୃଦୟହୀନ ନିଷ୍ଠୁର ବ୍ୟବହାର ଯୋଗୁଁ ସନାତନ ଧର୍ମ ପ୍ରତି ବୀତଶ୍ରଦ୍ଧ, କେବଳ ତାହା ନୁହେଁ, ସହସ୍ର ବ୍ୟକ୍ତି ହିନ୍ଦୁ ଧର୍ମକୁ ହିଁ ଅପରାଧୀ ମନେକରି ଧର୍ମାନ୍ତର ଗ୍ରହଣ କରିବାକୁ ଉଦ୍ୟତ । କୋଟି କୋଟି ଲୋକ ଦିନକୁ ଦିନ ଅଜ୍ଞାନାନ୍ଧକାରରେ ବୁଡ଼ିଯାଉଛନ୍ତି; ସେମାନଙ୍କ ହୃଦୟରେ ଉଚ୍ଚ ଆଶା ନାହିଁ, ବିଶ୍ୱାସ ନାହିଁ; ନୈତିକ ବଳ ନାହିଁ । ଶିକ୍ଷିତ ନାମଧେୟ ଅପୂର୍ବ ଶ୍ରେଣୀର ଜୀବଗଣ ସେମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ କରିବା ଦୂରେ ଥାଉ, ପାଶ୍ଚାତ୍ୟ ଶିକ୍ଷା ଯୋଗୁଁ ସ୍ୱେଚ୍ଛାଚାରୀ ହୋଇ ସେମାନଙ୍କୁ ପରିତ୍ୟାଗ କରୁଛନ୍ତି ଏବଂ ନବ ନବ ସମାଜ ଓ ସମ୍ପ୍ରଦାୟ ପ୍ରତିଷ୍ଠା କରି ହିନ୍ଦୁଧର୍ମର ମସ୍ତକ ଉପରେ ଅଗ୍ନିମୟ ଅଭିଶାପ ବର୍ଷଣ କରିବାକୁ ଛାଡୁ ନାହାନ୍ତି । ଧର୍ମ କେବଳ ପ୍ରାଣହୀନ ଆଚାର-ନିୟମର ସମଷ୍ଟି ଓ କୁସଂସ୍କାରର ଲୀଳାଭୂମି । ଫଳରେ ବର୍ତ୍ତମାନ ଭାରତ ପ୍ରାୟ 'ଆଶା, ଉଦ୍ୟମ, ଆନନ୍ଦ ଓ ଉତ୍ସାହର କଙ୍କାଳ ପରିପ୍ଳୁତ ମହାଶ୍ମଶାନରେ ପରିଣତ' ହୋଇଛି । କାମକାଞ୍ଚନତ୍ୟାଗୀ ଆଜନ୍ମ ସମାଧିଲିପ୍ସୁ ସନ୍ନ୍ୟାସୀଙ୍କ ବଜ୍ରକଠୋର ବିଶାଳ ହୃଦୟ କରୁଣାରେ ଦ୍ରବୀଭୂତ ହେଲା ।

ବୋଧିଦ୍ରୁମମୂଳସମାସୀନ ଶାକ୍ୟମୁନି ବୁଦ୍ଧଦେବଙ୍କ ପରି ତାଙ୍କ ପ୍ରାଣ ହଜାର ହଜାର ଅଜ୍ଞ, ମୋହାନ୍ଧ, ଅତ୍ୟାଚାର-ପ୍ରପୀଡ଼ିତ, ଉପେକ୍ଷିତ ଦେବଋଷିଙ୍କ ବଂଶଧର ଗଣଙ୍କ ପାଇଁ କାନ୍ଦି ଉଠିଲା । ସେ ଭାବିବାକୁ ଲାଗିଲେ, ''ଆମ୍ଭେମାନେ ଲକ୍ଷ ଲକ୍ଷ ସନ୍ନ୍ୟାସୀ ଏହିମାନଙ୍କ ଅନ୍ନରେ ଜୀବନ ଧାରଣ କରି ଏମାନଙ୍କ ଲାଗି କ'ଣ କରୁଛୁ ? ତାଙ୍କୁ ଦର୍ଶନଶାସ୍ତ୍ର ଶିକ୍ଷା ଦେଉଛୁ ! ଧିକ୍ ! ଭଗବାନ ଶ୍ରୀରାମକୃଷ୍ଣ କହୁଥିଲେ, ''ଖାଲି ପେଟରେ ଧର୍ମ ହୁଏ ନାହିଁ; ମୋଟା ଭାତ, ମୋଟା ଲୁଗାର ବନ୍ଦୋବସ୍ତ ଦରକାର ।' କ୍ଷୁଧିତ ବ୍ୟକ୍ତିକୁ ଧର୍ମୋପଦେଶ ଦେବାକୁ ଅଗ୍ରସର ହେବା ମୂଢ଼ତା ମାତ୍ର । ସେମାନଙ୍କର ଯଥେଷ୍ଟ ଧର୍ମ ଅଛି; ବର୍ତ୍ତମାନର ପ୍ରୟୋଜନ ଶିକ୍ଷାବିସ୍ତାର—ଦରକାର ଅଶନ-ବସନର ସଂସ୍ଥାନ; କିନ୍ତୁ କିପରି ଏହା ସମ୍ଭବ ହେବ ? ଏ କାର୍ଯ୍ୟରେ ଅଗ୍ରସର ହେବାକୁ ହେଲେ ପ୍ରଥମେ ଆବଶ୍ୟକ, ମଣିଷ, ଦ୍ୱିତୀୟରେ ଅର୍ଥ ।''

କଟିର କୌପୀନ ମାତ୍ର ସମ୍ବଳ, କପର୍ଦ୍ଦକହୀନ ସନ୍ନ୍ୟାସୀ ସେ; ସେ କ'ଣ କରିପାରିବେ ? ନିବିଡ଼ ନୈରାଶ୍ୟରେ ତାଙ୍କ ହୃଦୟ ଭରି ଉଠିଲା । ଗଭୀରରୁ ଗଭୀରତମ ଚିନ୍ତାରେ ତାଙ୍କ ହୃଦୟର ଅନ୍ତଃସ୍ଥଳ ଆଲୋଡ଼ିତ ହୋଇ ଉଠିଲା ।

ସହସା ନୈରାଶ୍ୟର ଘନ ଅନ୍ଧକାର ଭେଦ କରି ଆଶାର ଦିବ୍ୟଜ୍ୟୋତି ସ୍ଫୁରିତ ହେଲା । ବେଦନାବହ ପୁଲକର ତୀବ୍ରତମ ଅନୁଭୂତି ନେଇ ସେ ଭାବିବାରେ ରହିଲେ, "ଶ୍ରୀଶ୍ରୀଗୁରୁମହାରାଜାଙ୍କ ଆଶୀର୍ବାଦରେ ଏହି ମହାନ୍ କାର୍ଯ୍ୟଭାର ମୁଁ ଗ୍ରହଣ କରିବି । ତାଙ୍କର ଇଚ୍ଛାରେ ଅଦୂର ଭବିଷ୍ୟତରେ ଭାରତର ନଗର ଓ ଗ୍ରାମମାନଙ୍କରେ ହଜାର ହଜାର ନରନାରୀ ଜନ୍ମଗ୍ରହଣ କରିବେ, ଯେଉଁମାନେ ଗତାନୁଗତିକ ଭାବରେ ସ୍ୱାର୍ଥାନ୍ଧ ହୋଇ ଭୋଗ-ଲାଳସା ପଛରେ ଦଉଡ଼ିବେ ନାହିଁ, ଯେଉଁମାନେ ନରନାରାୟଣଙ୍କ ସେବାରେ ସର୍ବସ୍ୱ ଅର୍ପଣ କରି ଏହି ମହାନ୍ ଯୁଗଚକ୍ର-ବିବର୍ତ୍ତନରେ ସହାୟକ ହେବେ; କିନ୍ତୁ ଟଙ୍କା କେଉଁଠୁ ଆସିବ ? ଏହି ଚିନ୍ତାଭାର ମୁଣ୍ଡକୁ ନେଇ ହୃଦୟର ରକ୍ତ ମୋକ୍ଷଣ କରୁ କରୁ ସମଗ୍ର ଭାରତବର୍ଷ ଭ୍ରମଣ କଲି । ଧନୀ, ରାଜା, ମହାରାଜା, ସମସ୍ତଙ୍କ ଦ୍ୱାରକୁ ଯାଇଛି, ଦରିଦ୍ରଙ୍କ ପାଇଁ ସାହାଯ୍ୟ ପ୍ରାର୍ଥନା କରିଛି; କିନ୍ତୁ କେବଳ ମୌଖିକ ସହାନୁଭୂତି ଲାଭ କରିଛି ମାତ୍ର । କେବଳ ମାତ୍ର ହିନ୍ଦୁସ୍ଥାନର ମୁଖାପେକ୍ଷୀ ହୋଇ ରହିବା ଅନର୍ଥକ ସମୟ ନଷ୍ଟ କରିବା ପରି ହେବ । ଏହି ବିସ୍ତୀର୍ଣ୍ଣ ଜଳଧି ପାର ହୋଇ ଭାରତର ଲକ୍ଷ ଲକ୍ଷ ଦରିଦ୍ର ଲୋକଙ୍କ ପ୍ରତିନିଧି ସ୍ୱରୂପ ମୁଁ ପାଶ୍ଚାତ୍ୟ ଦେଶକୁ ଯିବି । ସେଠାରେ ମସ୍ତିଷ୍କ ବଳରେ ଅର୍ଥୋପାର୍ଜନ କରି ସ୍ୱଦେଶକୁ ଫେରି ଆସିବି ଏବଂ ଅବଶିଷ୍ଟ ଜୀବନ ମାତୃଭୂମିର ଉନ୍ନତିକଳ୍ପେ ବ୍ୟୟ କରିବି; କିମ୍ବା ଏହି ଚେଷ୍ଟାରେ ପ୍ରାଣତ୍ୟାଗ କରିବି ।"

X X X

ବିଶ୍ୱପ୍ରେମିକ ଉଠିଲେ । କ୍ରମ ଅବନତିର ସ୍ରୋତ ରୁଦ୍ଧ କରି ନବୀନ, ସଜୀବ, ପ୍ରାଣପ୍ରଦ ଭାବର ବନ୍ୟାରେ ଜଗତ ଉଦ୍‌ପ୍ଲାବିତ କରିବାକୁ, ଶ୍ରୀଗୁରୁଙ୍କ ଚରଣତଳେ ବସି ଯେଉଁ ସତ୍ୟ ଉପଲବ୍ଧି କରିଥିଲେ, ତାହା ତିଳେମାତ୍ର ଗୋପନ ନ କରି ପ୍ରଚାର କରିବାକୁ, ବିଶ୍ୱମାନବର ମଙ୍ଗଳକାମନାରେ ତିଳ ତିଳ କରି ଆତ୍ମଦାନ କରିବାକୁ ଓ ଭାରତର ଭୂତ ଗରିମାର ଧ୍ୱଂସାବଶେଷର ଜୀର୍ଣ୍ଣ ବକ୍ଷରେ ନବୀନ ସୃଷ୍ଟି ଗଢ଼ିବାକୁ ଏହିଥର ଗୁରୁବଳରେ ବଳୀୟାନ ଆଚାର୍ଯ୍ୟଦେବ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ ।

## ମନ୍ମଥବାବୁଙ୍କ ସହିତ ମାନ୍ଦ୍ରାଜକୁ ଆଗମନ

କନ୍ୟାକୁମାରୀ ପଥରେ ସ୍ୱାମୀଜୀ ଅନୁରୁଦ୍ଧ ହୋଇ ତ୍ରିବାଙ୍କୁଡ଼ ରାଜକୁମାରଙ୍କ ଗୃହଶିକ୍ଷକ ସୁନ୍ଦରରାମ ଆୟାରଙ୍କ ଭବନରେ ଅବସ୍ଥାନ କରିବାକୁ ବାଧ୍ୟ ହେଲେ । ତ୍ରିବାଙ୍କୁଡ଼ ରାଜ୍ୟ ବିଦ୍ୟାଳୟସମୂହର ଡାଇରେକ୍ଟର ରାମରାଓ ବାହାଦୁର ସ୍ୱାମୀଜୀଙ୍କ ସଙ୍ଗେ ଆଳାପ କରି ମୁଗ୍ଧ ହେଲେ ଏବଂ ତାଙ୍କୁ ନିଜ ଘରକୁ ଭିକ୍ଷାଗ୍ରହଣ କରିବା ଲାଗି ଆମନ୍ତ୍ରଣ କଲେ । ଉକ୍ତ ଦିବସ ତାଙ୍କ ଗୃହରେ ସ୍ଥାନୀୟ କଲେଜର ଅଧ୍ୟାପକଗଣ, ଶିକ୍ଷା ବିଭାଗ ଓ ରାଜକୀୟ ଉଚ୍ଚ କର୍ମଚାରୀବୃନ୍ଦ

ଆହୂତ ହୋଇଥିଲେ । ଏହି ସମସ୍ତ ସମ୍ଭ୍ରାନ୍ତ ଅତିଥିଗଣଙ୍କ ମଧ୍ୟରେ ମାନ୍ଦ୍ରାଜର ବିଖ୍ୟାତ ଅଧ୍ୟାପକ ରଙ୍ଗାଚାରୀଆର ଓ ଡେପୁଟୀ ଆକାଉଣ୍ଟାଣ୍ଟ ଜେନେରାଲ ଶ୍ରୀଯୁକ୍ତ ମନ୍ମଥନାଥ ଭଟ୍ଟାଚାର୍ଯ୍ୟଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ସମସ୍ତେ ଆଗ୍ରହ ସହକାରେ ସ୍ୱାମୀଜୀଙ୍କ ସହିତ ଧର୍ମ, ଦର୍ଶନ, ବିଜ୍ଞାନ, ସାହିତ୍ୟ ଇତ୍ୟାଦି ଆଲୋଚନା କରି ଆନନ୍ଦିତ ହେଲେ । ସୁଦୂର ବିଦେଶରେ ସ୍ୱୀୟ ସ୍ୱଦେଶବାସୀ ସନ୍ନ୍ୟାସୀଙ୍କ ପ୍ରତିଭା ଓ ମହତ୍ତ୍ୱର ପରିଚୟ ପାଇ ମନ୍ମଥବାବୁ ମୁଗ୍ଧ ହେଲେ ଏବଂ ସେହିଦିନଠାରୁ ତାଙ୍କୁ ଅକପଟ ଭାବରେ ସ୍ନେହ କଲେ ।

କିଛିଦିନ ପରେ ମନ୍ମଥ ବାବୁ ରାଜକାର୍ଯ୍ୟରେ ପଣ୍ଡିଚେରୀ ଆସିଲେ । ଦିନେ ସେ ଦେଖିପାରିଲେ, ଜଣେ ଯୁବକ ସନ୍ନ୍ୟାସୀ ଦଣ୍ଡକମଣ୍ଡଳୁ ହସ୍ତରେ ରାଜପଥରେ ଭ୍ରମଣ କରୁଛନ୍ତି । ତାଙ୍କୁ ଦେଖିବା ମାତ୍ରକେ ମନ୍ମଥ ବାବୁଙ୍କର ମନେହେଲା, "ଯାହାଙ୍କୁ ତ୍ରିଭେନ୍ଦ୍ରମଠାରେ ଦେଖିଥିଲି, ଏ ସେହି ଅଦ୍ଭୁତ ସନ୍ନ୍ୟାସୀ ନୁହଁନ୍ତି ତ ?" ଅପ୍ରତ୍ୟାଶିତ ଭାବରେ ସ୍ୱାମୀଜୀଙ୍କୁ ପାଇ ଆନନ୍ଦର ସୀମା ରହିଲା ନାହିଁ । କେତେଦିନ ପରେ କାର୍ଯ୍ୟ ସମାପ୍ତ କରି ସେ ସ୍ୱାମୀଜୀଙ୍କୁ ସାଙ୍ଗରେ ଧରି ମାନ୍ଦ୍ରାଜ ଅଭିମୁଖେ ଯାତ୍ରା କଲେ ।

ମାନ୍ଦ୍ରାଜରେ ଉପସ୍ଥିତ ହେବାର କେତେଦିନ ପରେ ସ୍ୱାମୀଜୀଙ୍କ ପ୍ରତିଭା ଓ ପାଣ୍ଡିତ୍ୟର ଖ୍ୟାତି ଶିକ୍ଷିତ-ସମାଜରେ ଆଲୋଚନାର ବିଷୟ ହୋଇ ଉଠିଲା । ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାବାନ ଛାତ୍ର ଓ ଅଧ୍ୟାପକଗଣ ପ୍ରତ୍ୟହ ତାଙ୍କ ନିକଟରେ ଧର୍ମ ଓ ସାହିତ୍ୟ ଆଲୋଚନା ନିମିତ୍ତ ସମବେତ ହେଉଥିଲେ । ଅନେକ ଯୁବକ ପାଶ୍ଚାତ୍ୟ ଦାର୍ଶନିକମାନଙ୍କ ଯୁକ୍ତିଜାଲ ବିସ୍ତାର କରି ତାଙ୍କ ସହିତ ତର୍କ କରୁଥିଲେ; କିନ୍ତୁ ବିଚାର କିଛି ଦୂର ଅଗ୍ରସର ହେଲେ ସେମାନେ ବୁଝୁଥିଲେ ଯେ ଏହି ସନ୍ନ୍ୟାସୀଙ୍କ ସମର୍ଥିତ ବେଦାନ୍ତ-ମତ ସହିତ ତୁଳନା କଲେ ସେମାନଙ୍କ ଯୁକ୍ତିଗୁଡ଼ିକ ବାଳକର ଅସ୍ଫୁଟ ଉକ୍ତି ପରି ଅକିଞ୍ଚିତକର । ଛାତ୍ରଜୀବନରେ ବିବେକାନନ୍ଦ କମ୍ ତାର୍କିକ ନ ଥିଲେ ! ପାଶ୍ଚାତ୍ୟ ଦର୍ଶନ ଶାସ୍ତ୍ର ଅଧ୍ୟୟନ କରି ଜଣେ ତରୁଣ ଯୁବକ ମନରେ ଧର୍ମ ଓ ଈଶ୍ୱରଙ୍କ ସମ୍ବନ୍ଧରେ ଯେଉଁ ସମସ୍ତ ସନ୍ଦେହର ସୃଷ୍ଟି ହୁଏ, ସେଗୁଡ଼ିକ ସହିତ ସେ ନିଜେ ମଧ୍ୟ ପ୍ରତ୍ୟକ୍ଷ ଭାବରେ ପରିଚିତ ଥିଲେ; ତେଣୁ ଉତ୍ତର ଦେବା ନିମିତ୍ତ ତାଙ୍କୁ ବିଶେଷ ଚିନ୍ତା କରିବାକୁ ପଡୁ ନ ଥିଲା । ଯାହାହେଉ, ମନ୍ମଥ ବାବୁଙ୍କ ଘର ଶୀଘ୍ର ଧର୍ମାଲୋଚନାର ଗୋଟିଏ କେନ୍ଦ୍ର ହୋଇଗଲା । ସ୍ୱାମୀଜୀଙ୍କ ସାମ୍ପ୍ରଦାୟିକ ବିଦ୍ୱେଷ ବୁଦ୍ଧିହୀନ ଉଦାର ଧର୍ମମତ ମାନ୍ଦ୍ରାଜର ଶିକ୍ଷିତ ସମ୍ପ୍ରଦାୟ ଉପରେ ଯେ ପ୍ରଭାବ ବିସ୍ତାର କରୁଥିଲା, ଏଥିରେ ସନ୍ଦେହ ନାହିଁ । ପାଣ୍ଡିତ୍ୟ ଓ ପ୍ରତିଭା ଅନ୍ତରାଳରେ ତାଙ୍କର ଯେଉଁ ସମବେଦନାକାତର ବିଶାଳ ହୃଦୟ, ନିର୍ବିଚାରରେ ସମସ୍ତଙ୍କୁ ଆଲିଙ୍ଗନ କରିବା ନିମିତ୍ତ ଓ ଆଶ୍ରୟ ଦେବା ନିମିତ୍ତ ପ୍ରସ୍ତୁତ ହୋଇଥିଲା, ତାହା ସହିତ ପ୍ରତ୍ୟକ୍ଷ ଭାବରେ ପରିଚିତ ହୋଇ ଏହି ଯୁବକ ସମ୍ପ୍ରଦାୟ ସ୍ୱାମୀଜୀଙ୍କୁ ଗୁରୁପଦରେ ବରଣ କରିଥିଲେ ।

## ନାସ୍ତିକ ବିଜ୍ଞାନ ଅଧ୍ୟାପକଙ୍କ ଦର୍ପଚୂର୍ଣ୍ଣ ଓ ଶିଷ୍ୟତ୍ୱ ଗ୍ରହଣ

ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଉପାଧିଧାରୀ ଯୁବକଗଣ ସ୍ୱାମୀଜୀଙ୍କ ଶିଷ୍ୟତ୍ୱ ଗ୍ରହଣ କରୁଛନ୍ତି ଶୁଣି ମାନ୍ଦ୍ରାଜ ସହରର ସୁପ୍ରସିଦ୍ଧ ନାସ୍ତିକ ଖ୍ରିଷ୍ଟାନ୍ କଲେଜର ବିଜ୍ଞାନ ଅଧ୍ୟାପକ ସିଙ୍ଗରାଭେଲୁ ମୁଦାଲିଅର ହାସ୍ୟ ସମ୍ବରଣ କରିପାରିଲେ ନାହିଁ । ଦିନେ ସଦଳବଳେ ସଜ୍ଜିତ ହୋଇ ସ୍ୱାମୀଜୀଙ୍କୁ ତର୍କ କରିବା ନିମିତ୍ତ ଆହ୍ୱାନ କଲେ । ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ, ସ୍ୱାମୀଜୀ କୌଣସି ମତେ ତାଙ୍କ ଯୁକ୍ତିଜାଲ ଖଣ୍ଡନ କରିବାକୁ ସମର୍ଥ ହେବେ ନାହିଁ; କିନ୍ତୁ ଅଳ୍ପ ସମୟ ପରେ ସେ ନୀରବ ରହିବାକୁ ବାଧ୍ୟ ହେଲେ ।

ସ୍ୱାମୀଜୀଙ୍କ ସ୍ୱଚ୍ଛ, ପ୍ରଶସ୍ତ ଲଲାଟରେ ମହିମାର ବିଚ୍ଛୁରିତ ଦ୍ୟୁତି–ଶାନ୍ତୋଜ୍ଜ୍ୱଳ ନେତ୍ରଦ୍ୱୟରେ କରୁଣାର ଚିରବିଗଳିତ–ଅମୃତନିର୍ଝର–ବିସ୍ମୟ–ସ୍ତମ୍ଭିତ ମୁଦାଲିୟର ତାଙ୍କ ଭିତରେ କ'ଣ ଦେଖିଲେ ଓ କ'ଣ ବୁଝିଲେ, ତାହା ସେ ଜାଣନ୍ତି । ବାହାର ଲୋକେ ଦେଖିଲେ, ତାଙ୍କ ଗଣ୍ଡରୁ ଅଶ୍ରୁଧାରା ବୋହୁଛି । ନାସ୍ତିକତା ଅନ୍ତର୍ହିତ ହୋଇଯାଇଛି । କହିବା ବାହୁଲ୍ୟ ଯେ, ଅନୁତପ୍ତ ହୃଦୟରେ ସେ ସ୍ୱାମୀଜୀଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ସ୍ୱାମୀଜୀ ତାଙ୍କୁ ଆଦର କରି 'କିଡି' ବୋଲି ଡାକୁଥିଲେ ଏବଂ ଯଥେଷ୍ଟ ସ୍ନେହ କରୁଥିଲେ । ଆଜୀବନ ସଂଯମୀ, ଦୃଢ଼ଚେତା ମୁଦାଲିୟରଙ୍କ ଗୁରୁଭକ୍ତି ଅତୁଳନୀୟ ! ସ୍ୱାମୀଜୀ ଆମେରିକାରେ ଥିବାବେଳେ ସେ ଶ୍ରୀଗୁରୁଙ୍କ ଆଦେଶରେ ନବପ୍ରତିଷ୍ଠିତ 'ପ୍ରବୁଦ୍ଧ ଭାରତ' ନାମକ ଇଂରାଜୀ ମାସିକ ପତ୍ରିକାର ସମ୍ପାଦନା ଭାର ଗ୍ରହଣ କଲେ ଏବଂ ସ୍ୱଳ୍ପକାଳ ପରେ ସଂସାରଧର୍ମକୁ ଜଳାଞ୍ଜଳି ଦେଇ ନରନାରାୟଣ ସେବାରେ ଆତ୍ମସମର୍ପଣ କଲେ ।

## ଚିକାଗୋ ଧର୍ମସଭାରେ ଯୋଗଦାନ ପ୍ରସ୍ତାବ

ଏହି ସମୟରେ ଯୁକ୍ତରାଷ୍ଟ୍ରର ଚିକାଗୋ ମହାମେଳାର ଅଙ୍ଗସ୍ୱରୂପ ଗୋଟିଏ ବିରାଟ ଧର୍ମସଭାର ଆୟୋଜନ ହେଉଥାଏ । ପୃଥିବୀର ଯାବତୀୟ ଧର୍ମସମ୍ପ୍ରଦାୟର ମୁଖପାତ୍ରରୂପେ ଉପଯୁକ୍ତ ପ୍ରତିନିଧିଗଣ ସଭାରେ ଯୋଗଦାନ କରିପାରିବେ ବୋଲି ଘୋଷଣା କରାହୋଇଥିଲା । ସ୍ୱାମୀଜୀଙ୍କର କେତେଜଣ ଉତ୍ସାହୀ ମାନ୍ଦ୍ରାଜୀ ଶିଷ୍ୟ ତାଙ୍କୁ ହିନ୍ଦୁଧର୍ମର ପ୍ରତିନିଧି ସ୍ୱରୂପ ଉକ୍ତ ସଭାକୁ ପଠାଇବା ଲାଗି ସଂକଳ୍ପ କଲେ । ଦିନେ ସତକୁ ସତ ସେମାନେ ପାଞ୍ଚଶହ ଟଙ୍କା ସଂଗ୍ରହ କରି ସ୍ୱାମୀଜୀଙ୍କ ହାତରେ ଦେଲେ । ହିନ୍ଦୁଧର୍ମର ପ୍ରତିନିଧିରୂପେ ବିରାଟ ସଭାରେ ଉପସ୍ଥିତ ହେବାଭଳି ଯୋଗ୍ୟତା ତାଙ୍କର ଅଛି କି ନାହିଁ, ଭାବି ସ୍ୱାମୀଜୀ ମହା ସମସ୍ୟାରେ ପଡ଼ିଲେ । ଅବଶେଷରେ ଶିଷ୍ୟବୃନ୍ଦଙ୍କ ହାତରେ ଉକ୍ତ ଅର୍ଥ ପ୍ରତ୍ୟାର୍ପଣ କରି କହିଲେ, "ବତ୍ସଗଣ ! ମୁଁ ଶ୍ରୀଶ୍ରୀଜଗନ୍ମାତାଙ୍କ ହସ୍ତରେ ଯନ୍ତ୍ରଟିଏ ମାତ୍ର ! ତାଙ୍କ ଇଚ୍ଛା ହେଲେ ସେ ମୋତେ ସେଠାକୁ ପଠାଇବେ । ଏହି ଟଙ୍କା ତୁମ୍ଭେମାନେ ଦରିଦ୍ର–ନାରାୟଣଙ୍କ ସେବାରେ ବ୍ୟୟ କର; ଦେଖାଯାଉ ମା'ଙ୍କ ଇଚ୍ଛା କ'ଣ ?"

ବହୁ କଷ୍ଟରେ ସଂଗୃହୀତ ଅର୍ଥ କାର୍ଯ୍ୟାନ୍ତରରେ ବ୍ୟୟ କରିବାକୁ ଆଦେଶ ପାଇ ସେମାନଙ୍କ ଛାତି ଦବିଗଲା । କିନ୍ତୁ ଗୁରୁଙ୍କ ଆଜ୍ଞା ଅଲଂଘନୀୟ ! ଦୁଃଖିତମନା ଶିଷ୍ୟବୃନ୍ଦଙ୍କୁ ପ୍ରବୋଧ ଦେଇ ସ୍ୱାମୀଜୀ କହିଲେ, "ମୁଁ ସନ୍ନ୍ୟାସୀ, ସଙ୍କଳ୍ପ କରି କୌଣସି କାର୍ଯ୍ୟ କରିବା ମୋ ପକ୍ଷରେ ଉଚିତ ନୁହେଁ । ଯଦି ଏହା ଭଗବାନଙ୍କ ଇଚ୍ଛା ହୁଏ, ସେ ଉପାୟ ନିର୍ଦ୍ଧାରଣ କରିବେ, ତୁମ୍ଭେମାନେ ବ୍ୟସ୍ତ ହେବା ଅନାବଶ୍ୟକ ।"

## ହାଇଦରାବାଦରେ

ସହସା ହାଇଦରାବାଦରୁ ମନ୍ମଥବାବୁଙ୍କ ବନ୍ଧୁ ଷ୍ଟେଟ୍ ଇଞ୍ଜିନିୟର ଶ୍ରୀଯୁକ୍ତ ମଧୁସୂଦନ ଚାଟାର୍ଜୀଙ୍କଠାରୁ ସ୍ୱାମୀଜୀଙ୍କୁ ସେଠାକୁ ଯିବା ଲାଗି ଚିଠି ଆସିଲା । ସ୍ଥାନୀୟ ସମ୍ଭ୍ରାନ୍ତ ବ୍ୟକ୍ତିବର୍ଗ ଓ ଶିକ୍ଷିତ-ସମାଜ ସ୍ୱାମୀଜୀଙ୍କୁ ସେମାନଙ୍କ ଭିତରେ ଅଳ୍ପ କେତେଦିନ ପାଇବା ଆଶାରେ ଉତ୍କଣ୍ଠିତ ହୋଇପଡ଼ିଛନ୍ତି ବୋଲି ଜାଣିପାରି ମନ୍ମଥବାବୁ ଓ ସ୍ୱାମୀଜୀଙ୍କ ଶିଷ୍ୟମଣ୍ଡଳୀ ତାଙ୍କ ସମ୍ମତି ନେଇ ମଧୁସୂଦନ ବାବୁଙ୍କୁ ଜଣାଇଦେଲେ ଯେ, ସ୍ୱାମୀଜୀ ଫେବୃଆରୀ ଦଶତାରିଖ ଦିନ ହାଇଦରାବାଦରେ ପହଞ୍ଚିବେ ।

ସ୍ୱାମୀଜୀ ଷ୍ଟେସନରେ ଅବତରଣ କରି ବିସ୍ମୟରେ ଚାହିଁ ଦେଖିଲେ ଯେ ତାଙ୍କୁ ଅଭ୍ୟର୍ଥନା କରିବା ନିମିତ୍ତ ବିପୁଳ ଜନତା ଆଗ୍ରହ ସହକାରେ ଅପେକ୍ଷା କରିଛନ୍ତି । ରାଜା ଶ୍ରୀନିବାସ ରାଓ, ମହାରାଜା ରମ୍ଭା ରାଓ, ପଣ୍ଡିତ ରତନଲାଲ, ସମସ୍-ଉଲ-ଉଲ୍ଲା ସୈୟଦ ଅଲି, ବିଲଗ୍ରାମୀ, ନବାବଲ୍ ନା ଇମାଦଜଙ୍ଗ ବାହାଦୂର, ନବାବ ସିକନ୍ଦର ନେଓ୍ୱାଜ ଜଙ୍ଗ ବାହାଦୂର, ରାୟ ହୁକୁମଚାନ୍ଦ ଏମ୍.ଏ.ଏଲ୍. ଏଲ୍,ଡି., ଶେଠ୍ ଚତୁର୍ଭୁଜ, ଶେଠ୍ ମୋତିଲାଲ, କ୍ୟାପ୍‌ଟେନ୍ ରଘୁନାଥ ପ୍ରଭୃତି ହାଇଦରାବାଦ ଓ ସିକନ୍ଦରାବାଦର ଗଣ୍ୟମାଣ୍ୟ ବ୍ୟକ୍ତିବର୍ଗ ପ୍ଲାଟଫର୍ମରେ ଉପସ୍ଥିତ । କୁଣ୍ଠା-ସଙ୍କୁଚିତ, ଲାଜ-ରକ୍ତିମ, କାଷ୍ଠବତ୍ ଦଣ୍ଡାୟମାନ ଦଣ୍ଡକମଣ୍ଡଳୁହସ୍ତ ତରୁଣ ସନ୍ନ୍ୟାସୀଙ୍କ ଦେବଦୁର୍ଲଭ ଅଙ୍ଗକାନ୍ତି ଦର୍ଶନ କରି ସମବେତ ଜନତା ଜୟଧ୍ୱନି କରି ଉଠିଲେ । ବାବୁ କାଳୀଚରଣ ଚାଟାର୍ଜୀ ତାଙ୍କ ହାତ ଧରି ଆକର୍ଷଣ-ପୂର୍ବକ ସମସ୍ତଙ୍କ ସଙ୍ଗେ ପରିଚୟ କରାଇଦେଲେ । ସମ୍ଭ୍ରାନ୍ତବ୍ୟକ୍ତିଗଣ ଆନନ୍ଦ ସହକାରେ ତାଙ୍କୁ ପୁଷ୍ପମାଲ୍ୟରେ ବିଭୂଷିତ କରି ମଧୁସୂଦନବାବୁଙ୍କ ବଙ୍ଗଳାକୁ ନେଇଗଲେ ।

ନିଜାମ ବାହାଦୂରଙ୍କ ଶାଳକ ନବାବ ସାର୍ ଖୁରସୀଦ୍ ଜଙ୍ଗ ବାହାଦୂର, ଆମିର-ଇ-କବିର, କେ.ସି.ଏସ୍.ଆଇ.ଙ୍କଦ୍ୱାରା ଆହୂତ ହୋଇ ସ୍ୱାମୀଜୀ ଫେବୃୟାରୀ ୧୨ ତାରିଖ ଦିନ ନିଜାମଙ୍କ ପ୍ରାସାଦରେ ଉପସ୍ଥିତ ହେଲେ । ନବାବ ବାହାଦୂର ହିନ୍ଦୁଧର୍ମପ୍ରତି ଯଥେଷ୍ଟ ଶ୍ରଦ୍ଧାସମ୍ପନ୍ନ ଥିଲେ ଏବଂ ହିମାଳୟରୁ କୁମାରୀକା ପର୍ଯ୍ୟନ୍ତ ସବୁ ପ୍ରସିଦ୍ଧ ତୀର୍ଥସ୍ଥାନସମୂହ ଦର୍ଶନ କରିଥିଲେ ।

ସ୍ୱାମୀଜୀଙ୍କୁ ସମ୍ଭ୍ରମର ସହିତ ଅଭ୍ୟର୍ଥନା କରି ସେ ନିଜ ପାଖରେ ଆସନ ପରିଗ୍ରହ କରାଇଲେ ଏବଂ ଆଗ୍ରହର ସହିତ ତାଙ୍କ ସଙ୍ଗେ ଧର୍ମବିଷୟକ

କଥୋପକଥନ କରିବାରେ ଲାଗିଲେ । ହିନ୍ଦୁଧର୍ମ, ମୁସଲମାନ ଧର୍ମ ଓ ଖ୍ରୀଷ୍ଟଧର୍ମ ସମ୍ବନ୍ଧରେ ଅଲୋଚନା କରିବାବେଳେ ସ୍ୱାମୀଜୀ ଉକ୍ତ ଧର୍ମତ୍ରୟର ମୂଳ ସୂତ୍ରଗୁଡ଼ିକ ଆଲୋଚନା କରି ସେମାନଙ୍କ ଭିତରେ ଥିବା ସମନ୍ୱୟଭୂମି ଦେଖାଇ ଦେଲେ ଏବଂ କଥାପ୍ରସଙ୍ଗରେ କହିଲେ ଯେ, ସେ ସଭ୍ୟଜଗତ ସମ୍ମୁଖରେ ବେଦାନ୍ତଶାସ୍ତ୍ର ସାହାଯ୍ୟରେ ଧର୍ମସମନ୍ୱୟ ପ୍ରଚାର କରିବା ନିମିତ୍ତ କୃତସଙ୍କଳ୍ପ ହୋଇଛନ୍ତି । ତାଙ୍କ ବିଶ୍ୱାସ ଯେ, ଦୂର ଭବିଷ୍ୟତରେ ସର୍ବପ୍ରକାର ଧର୍ମଦ୍ୱନ୍ଦ୍ୱ ଅନ୍ତର୍ହିତ ହେବ ଏବଂ ସମସ୍ତେ ନିର୍ବିବାଦରେ ସ୍ୱ ସ୍ୱ ଭାବାନୁଯାୟୀ ଈଶ୍ୱର ଉପାସନା କରିବା ଲାଗି ସୁଯୋଗ ପାଇବେ । ନବାବ ବାହାଦୂର ସ୍ୱାମୀଜୀଙ୍କ ଯୁକ୍ତିପୂର୍ଣ୍ଣ ବାକ୍ୟାବଳୀ ଶ୍ରବଣ କରି ଅତୀବ ଆନନ୍ଦିତ ହେଲେ ଏବଂ ସ୍ୱାମୀଜୀଙ୍କ ପାଶ୍ଚାତ୍ୟ ଦେଶ ଗମନର ବ୍ୟୟସ୍ୱରୂପ ଏକହଜାର ଟଙ୍କା ତତ୍‌କ୍ଷଣାତ୍ ଦେବାକୁ ଚାହିଁଲେ । ସ୍ୱାମୀଜୀ ବିନୀତ ଭାବରେ ପ୍ରତ୍ୟାଖ୍ୟାନ କରି କହିଲେ, ''ନବାବ ବାହାଦୂର ! ଏଥିପୂର୍ବରୁ ମୋର ପରମବନ୍ଧୁ ମହୀଶୂରର ମହାରାଜା ଏବଂ ଶିଷ୍ୟ ରାମନାଦର ରାଜା ମୋତେ ପାଶ୍ଚାତ୍ୟ ଦେଶକୁ ଯିବା ନିମିତ୍ତ ଅର୍ଥ ସାହାଯ୍ୟ କରିବାକୁ ପ୍ରସ୍ତୁତ ଥିଲେ; କିନ୍ତୁ ମୋର ମନେହୁଏ, ଏବେ ବି ସମୟ ଆସିନାହିଁ । ଯଦି କେବେ ପାଶ୍ଚାତ୍ୟ ଦେଶକୁ ଯିବା ଲାଗି ଭଗବାନଙ୍କ ଆଦେଶ ପାଏ, ତାହାହେଲେ ନବାବ ସାହେବଙ୍କୁ ନିବେଦନ କରିବି ।''

ସ୍ଥାନୀୟ ଶିକ୍ଷିତ-ବ୍ୟକ୍ତିବର୍ଗଙ୍କ ଆଗ୍ରହ ଯୋଗୁଁ ସ୍ୱାମୀଜୀ ମେହବୁବ କଲେଜରେ ଏକସହସ୍ର ଶ୍ରୋତାଙ୍କ ସମ୍ମୁଖରେ 'ପାଶ୍ଚାତ୍ୟ ଦେଶରେ ମୋ ବାର୍ତ୍ତା' ଶୀର୍ଷକ ଗୋଟିଏ ବକ୍ତୃତା ଦେଲେ । ପଣ୍ଡିତ ରତନଲାଲ ସଭାପତି ଆସନରେ ଥିଲେ । ସ୍ୱାମୀଜୀଙ୍କ ବକ୍ତୃତାଟି ଅତୀବ ହୃଦୟଗ୍ରାହୀ ଓ ଯୁକ୍ତିପୂର୍ଣ୍ଣ ହୋଇଥିଲା ।

## ଆମେରିକା-ଯାତ୍ରାର ଆୟୋଜନ

ଫେବୃୟାରୀ ସତର ତାରିଖ ଦିନ ସ୍ୱାମୀଜୀ ହାଇଦରାବାଦସ୍ଥ ବନ୍ଧୁ ଓ ଭକ୍ତମଣ୍ଡଳୀଙ୍କ ନିକଟରୁ ବିଦାୟ ଗ୍ରହଣ କରି ମାନ୍ଦ୍ରାଜକୁ ଫେରିଗଲେ । ସେ ଯଦିବା ଚିକାଗୋ ଧର୍ମସଭାକୁ ଯିବା ଚିନ୍ତା ଏକ ସମୟରେ ପରିତ୍ୟାଗ କରିଥିଲେ, ତାଙ୍କ ଶିଷ୍ୟ ଓ ଭକ୍ତମଣ୍ଡଳୀ ଉକ୍ତ ସଙ୍କଳ୍ପ ପରିତ୍ୟାଗ କରିପାରିଲେ ନାହିଁ । ସେମାନେ କେତେଜଣ ମିଳିତ ହୋଇ ଅର୍ଥସଂଗ୍ରହ ମାନସରେ ରାମନାଦ, ମହୀଶୂର ଓ ହାଇଦରାବାଦ ଗଲେ । ମହାମତି ଆନନ୍ଦଚାର୍ଲୁ, ମାନନୀୟ ଜଷ୍ଟିସ୍ ସୁବ୍ରମନ୍ୟ ଆୟାର ପ୍ରମୁଖ ଅନେକେ ତାଙ୍କୁ ଉକ୍ତ ଧର୍ମସଭାକୁ ପ୍ରେରଣକଳ୍ପେ ବଦ୍ଧପରିକର ହୋଇଛନ୍ତି ଦେଖି ସ୍ୱାମୀଜୀ ଚିନ୍ତିତ ହେଲେ । ଦିନେ ସେ ତାଙ୍କର ଅନ୍ୟତମ ଶିଷ୍ୟ ଶ୍ରୀଯୁକ୍ତ ଆଲାସିଙ୍ଗା ପେରୁମଲ ଏମ୍.ଏ.ଙ୍କୁ ଡାକି କହିଲେ, ''ଯଦି ମୋର ଆମେରିକା ଗମନ ଏକାନ୍ତ ହିଁ ମା'ଙ୍କର ଇଚ୍ଛା ହୁଏ, ତାହାହେଲେ ଅବଶ୍ୟ ମୋତେ ଯିବାକୁ ହେବ । ତୁମ୍ଭେମାନେ ମୋତେ ହିନ୍ଦୁଧର୍ମର ପ୍ରତିନିଧିସ୍ୱରୂପ ପ୍ରେରଣ

କରିବାକୁ ସଙ୍କଳ୍ପ କରିଛ । ମୁଁ ମଧ୍ୟ ଜନସାଧାରଣଙ୍କ ମୁଖପାତ୍ର ସ୍ୱରୂପ ଯିବାକୁ ଇଚ୍ଛା କରେ, କିନ୍ତୁ ଏ କାର୍ଯ୍ୟରେ ଜନସାଧାରଣଙ୍କ ସମ୍ମତି ଅଛି କି ନାହିଁ, ତାହା ଜାଣିବା ଏକାନ୍ତ ପ୍ରୟୋଜନ । ତେଣୁ କେବଳ ମାତ୍ର ରାଜା, ମହାରାଜାମାନଙ୍କ ନିକଟରୁ ସାହାଯ୍ୟ ଗ୍ରହଣ ନ କରି ଜନସାଧାରଣଙ୍କଠାରୁ ଭିକ୍ଷା କରି ଅର୍ଥ ସଂଗ୍ରହ କର ।'' ଗୁରୁ-ଆଜ୍ଞା ଶିରୋଧାର୍ଯ୍ୟ କରି ସେମାନେ ଦ୍ୱାରେ ଦ୍ୱାରେ ଭିକ୍ଷା କରିବାରେ ଲାଗିଲେ । ଏହି ନିଃସ୍ୱାର୍ଥପର, ପବିତ୍ର-ହୃଦୟ ମାନ୍ଦ୍ରାଜୀ ଯୁବକଗଣଙ୍କ ଅସୀମ ଗୁରୁଭକ୍ତି ଧର୍ମଜଗତର ବିଶେଷତଃ ଶ୍ରୀରାମକୃଷ୍ଣ ସଂଘର ଇତିହାସରେ ଅମର ହୋଇ ରହିବ ।

## ଶ୍ରୀଶ୍ରୀରାମକୃଷ୍ଣଦେବଙ୍କ ସ୍ୱପ୍ନାଦେଶ

ଇତିମଧ୍ୟରେ ଦିନେ ସ୍ୱାମୀଜୀ ସ୍ୱପ୍ନରେ ଦେଖିଲେ—ଶ୍ରୀଶ୍ରୀରାମକୃଷ୍ଣଦେବ ଦିବ୍ୟଦେହରେ ସମୁଦ୍ରକୂଳଠାରୁ ବିସ୍ତୀର୍ଣ୍ଣ ସଲୀଳ ଉପରେ ପଦବ୍ରଜରେ ଅଗ୍ରସର ହେଉଛନ୍ତି ଏବଂ ତାଙ୍କୁ ଅନୁସରଣ କରିବା ଲାଗି ହାତରେ ସଙ୍କେତ ଦେଉଛନ୍ତି । ଏହିଥର ସମସ୍ତ ଦ୍ୱିଧା-ସଙ୍କୋଚ-ସନ୍ଦେହ ବିଦୂରିତ ହେଲା, ସ୍ୱାମୀଜୀ ଆମେରିକା ଯିବା ନିମିତ୍ତ ପ୍ରସ୍ତୁତ ହେଲେ । ସହସା ତାଙ୍କର ମନେହେଲା, ଏପର୍ଯ୍ୟନ୍ତ ଶ୍ରୀଶ୍ରୀମାତାଠାକୁରାଣୀଙ୍କ ଆଦେଶ ନିଆ ହୋଇନାହିଁ । ତାଙ୍କ ଆଦେଶ ଓ ଆଶୀର୍ବାଦ ବ୍ୟତୀତ ସୁଦୂର ବିଦେଶକୁ ଯିବା କୌଣସିମତେ କର୍ତ୍ତବ୍ୟ ନୁହେଁ । ଅନେକ ଭାବିଚିନ୍ତି ଅବଶେଷରେ ସ୍ୱାମୀଜୀ ଶ୍ରୀଶ୍ରୀମାତାଠାକୁରାଣୀଙ୍କ ନିକଟକୁ ନିଜ ସଙ୍କଳ୍ପ ବିସ୍ତାରିତ ବର୍ଣ୍ଣନା କରି ଖଣ୍ଡିଏ ପତ୍ର ଲେଖିଲେ ।

## ଶ୍ରୀଶ୍ରୀମାତାଠାକୁରାଣୀଙ୍କର ଆମେରିକା-ଯାତ୍ରା ପାଇଁ ସମ୍ମତି ଦାନ

ପ୍ରାଣାଧିକ ପ୍ରିୟତମ ପୁତ୍ର ନରେନ୍ଦ୍ରନାଥଙ୍କ ପତ୍ର ପାଇ ସ୍ନେହବିହ୍ୱଳା ଜନନୀ ତାଙ୍କୁ ଦେଖିବା ନିମିତ୍ତ ବ୍ୟାକୁଳ ହୋଇପଡ଼ିଲେ । ରାମକୃଷ୍ଣ ସଂଘର ନେତା, ରାଜାଧିରାଜ-ସେବିତ, ବୀର ସନ୍ନ୍ୟାସୀ ବିବେକାନନ୍ଦ ତାଙ୍କ ଦୃଷ୍ଟିରେ ସଂସାରାନଭିଜ୍ଞ ବାଳକ ମାତ୍ର—ତାଙ୍କୁ କିପରି ସୁଦୂର ବିଦେଶ ଯାତ୍ରା ପାଇଁ ଅନୁମତି ଦେବେ ! ଇତିମଧ୍ୟରେ ଠାକୁରଙ୍କ ଆଦେଶ ସବୁ ସମସ୍ୟାର ମୀମାଂସା କରିଦେଲା । ଅଗତ୍ୟା ସ୍ନେହମୁଗ୍ଧ-ହୃଦୟକୁ ସଂଯତ କରି ଜଗତର କଲ୍ୟାଣ-କାମନାରେ ସେ ସ୍ୱାମୀଜୀଙ୍କ ସଙ୍କଳ୍ପରେ ଆନନ୍ଦରେ ସମ୍ମତି ପ୍ରଦାନ କଲେ ।

ଯଥାସମୟରେ ପତ୍ରର ଉତ୍ତର ଆସିଲା । ଶ୍ରୀଶ୍ରୀମାତାଠାକୁରାଣୀ ସମ୍ମତି ପ୍ରଦାନ କରିଛନ୍ତି । ପତ୍ରଖଣ୍ଡିକ ପରମ ଭକ୍ତିଭରେ ମୁଣ୍ଡରେ ମାରି ସ୍ୱାମୀଜୀ ଭାବାବେଗରେ ଅଶ୍ରୁସିକ୍ତ-ନେତ୍ରରେ ବାଳକ ପରି ଆନନ୍ଦ-ବିହ୍ୱଳ ହୋଇ କକ୍ଷମଧ୍ୟରେ ନୃତ୍ୟ କରିବାରେ ଲାଗିଲେ । ଏ ଅବସ୍ଥାରେ ଲୋକେ ଦେଖିଲେ କ'ଣ ମନେ କରିବେ ବୋଲି ଭାବି ସେ ନିଜ ଉଦ୍‌ବେଳିତ ହୃଦୟ ଶାନ୍ତ କରିବା ନିମିତ୍ତ ଅପରର ଅଲକ୍ଷ୍ୟରେ ସମୁଦ୍ରକୂଳକୁ ଚାଲିଗଲେ । ମନ୍ମଥବାବୁଙ୍କ ଭବନରେ

ନିୟମିତ ସମୟରେ ତାଙ୍କ ଶିଷ୍ୟ ଓ ଭକ୍ତବୃନ୍ଦ ତାଙ୍କ ପାଇଁ ଅପେକ୍ଷା କରିଥାନ୍ତି; ଏହି ସମୟରେ ସ୍ୱାମୀଜୀ ସେଠାରେ ଉପସ୍ଥିତ ହୋଇ କହିଲେ, ''ବତ୍ସଗଣ ! ଶ୍ରୀଶ୍ରୀମାଆଙ୍କ ଆଦେଶ ପାଇଛି, ସମସ୍ତ ସଂଶୟ-ଭାବନା ଦୂର ହୋଇଛି, ମୁଁ ଆମେରିକା ଯିବାକୁ ପ୍ରସ୍ତୁତ । କରୁଣାମୟୀ ଜନନୀ ଆଶୀର୍ବାଦ କରିଛନ୍ତି; ଆଉ ଚିନ୍ତା କ'ଣ ?'' ଆନନ୍ଦ ଓ ବିସ୍ମୟରେ ଉତ୍ସାହୋଦ୍ଦୀପ୍ତ ଶିଷ୍ୟବୃନ୍ଦ କେତେଦିନ ମଧ୍ୟରେ ସ୍ୱାମୀଜୀଙ୍କ ଯାତ୍ରାର ସୁବନ୍ଦୋବସ୍ତ କରିଦେଲେ । ସମସ୍ତ ପ୍ରସ୍ତୁତ— ଏହି ସମୟରେ ଖେତଡ଼ି ରାଜଭବନରୁ ମୁନ୍‌ସୀ ଜଗମୋହନ ଲାଲ୍ ଆସି ସମସ୍ତ ବନ୍ଦୋବସ୍ତ ଓଲଟ-ପାଲଟ କରିଦେଲେ ।

## ଖେତଡ଼ି-ଯାତ୍ରା

ପ୍ରାୟ ଦୁଇବର୍ଷ ପୂର୍ବେ ସ୍ୱାମୀଜୀ ଖେତଡ଼ି-ପତି ମହାରାଜା ମଙ୍ଗଳ ସିଂହଙ୍କୁ ପୁତ୍ର ପାଇବା ଲାଗି ଆଶୀର୍ବାଦ କରିଥିଲେ । ଗୁରୁକୃପା ହେତୁ ମହାରାଜା ପୁତ୍ରରତ୍ନ ଲାଭ କରିଥାନ୍ତି । ରାଜପୁତ୍ରଙ୍କ ଅନ୍ନପ୍ରାଶନ ଉତ୍ସବରେ ସ୍ୱାମୀଜୀ ଉପସ୍ଥିତ ହୋଇ ରାଜପରିବାରର ଆନନ୍ଦବର୍ଦ୍ଧନ କରନ୍ତୁ, ଏହି ଉଦ୍ଦେଶ୍ୟରେ ସ୍ୱାମୀଜୀଙ୍କୁ ଖେତଡ଼ି ନେଇଯିବା ଲାଗି ମୁନ୍‌ସୀଜୀ ମାନ୍ଦ୍ରାଜ ଆସିଥିଲେ । ସ୍ୱାମୀଜୀ ଓ ତାଙ୍କ ମାନ୍ଦ୍ରାଜୀ ଶିଷ୍ୟବୃନ୍ଦଙ୍କ କୌଣସି ଆପତ୍ତି ତିଷ୍ଠିଲା ନାହିଁ । ଜଗମୋହନ କହିଲେ, ''ଗୁରୁଜୀ ! ଅନ୍ତତଃ ଦିନକ ପାଇଁ ଆପଣଙ୍କୁ ଖେତଡ଼ି ଯିବାକୁ ହେବ, ଅନ୍ୟଥା ରାଜାସାହେବ ହୃଦୟରେ ନିଦାରୁଣ ଆଘାତ ପାଇବେ । ଆମେରିକା ଯିବା ବନ୍ଦୋବସ୍ତ ଲାଗି ଆପଣଙ୍କ ଭାବିବାର କୌଣସି ପ୍ରୟୋଜନ ନାହିଁ । ମହାରାଜା ସବୁ ବନ୍ଦୋବସ୍ତ କରିଦେବେ; ଆପଣ ମୋ ସଙ୍ଗେ ଖେତଡ଼ି ଚାଲନ୍ତୁ ।''

ଅବଶେଷରେ ଅନେକ ବାଦାନୁବାଦ ପରେ ସ୍ୱାମୀଜୀ ବୋମ୍ବାଇଠାରୁ ଆମେରିକା ଯାତ୍ରା କରିବେ ବୋଲି ସ୍ଥିର ହେଲା । ଖେତଡ଼ି ଯିବା ଆୟୋଜନ ଦେଖି ସ୍ୱାମୀଜୀ ଉପସ୍ଥିତ ଶିଷ୍ୟବୃନ୍ଦଙ୍କଠାରୁ ବିଦାୟ ନେଲେ । ଜଣ ଜଣ କରି ବିଶ୍ୱବିଦ୍ୟାଳୟର ଉଚ୍ଚତମ-ଉପାଧିଧାରୀ ଯୁବକ ପ୍ରକାଶ୍ୟ ରାଜପଥରେ ଅଶ୍ରୁପୂର୍ଣ୍ଣ ନୟନରେ ଶ୍ରୀଶ୍ରୀଗୁରୁଦେବଙ୍କ ଅଭୟ ଚରଣ ତଳେ ଲୋଟିପଡ଼ି ଦୀନଭାବରେ ଆଶୀର୍ବାଦ ଭିକ୍ଷା କଲେ । ଏ ଦୃଶ୍ୟ ଭାରତର-ହିନ୍ଦୁଙ୍କର ଏକାନ୍ତ ନିଜସ୍ୱ ! ବଡ଼ କରୁଣ ! ବଡ଼ ମର୍ମସ୍ପର୍ଶୀ !! ସନ୍ତାନାଧିକ ଶିଷ୍ୟବୃନ୍ଦଙ୍କୁ ଛାଡ଼ି ଯିବାରେ ସ୍ୱାମୀଜୀଙ୍କ ହୃଦୟ ବ୍ୟଥିତ ହେଲା; ବହୁ କଷ୍ଟରେ ସେ ଭାବାବେଗ ଦମନ କରି ମନ୍ଥର ପଦରେ ଯାଇ ଗାଡ଼ିରେ ବସିଲେ ।

ଖେତଡ଼ିଠାରେ ଶୁଭ ଅନ୍ନପ୍ରାଶନ ଉତ୍ସବ ନିର୍ବିଘ୍ନରେ ସମାହିତ ହେବା ପରେ ସ୍ୱାମୀଜୀ ରାଜଶିଷ୍ୟଙ୍କ ନିକଟରୁ ବିଦାୟ ଗ୍ରହଣ କରି ମୁନ୍‌ସୀ ଜଗମୋହନ ଲାଲଙ୍କୁ ସାଙ୍ଗରେ ନେଇ ବୋମ୍ବାଇରେ ପହଞ୍ଚିଲେ । ଶ୍ରୀଯୁକ୍ତ ଆଲାସିଙ୍ଗା

ପେରୁମଲ ଏଥିପୂର୍ବରୁ ଗୁରୁଦର୍ଶନ ଇଚ୍ଛାରେ ମାନ୍ଦ୍ରାଜରୁ ବୋମ୍ବାଇକୁ ଆସିଥିଲେ; ସେ ଷ୍ଟେସନରେ ହିଁ ସ୍ୱାମୀଜୀଙ୍କ ସଙ୍ଗେ ମିଳିତ ହେଲେ ।

## ବୋମ୍ବାଇରୁ ଆମେରିକା-ଯାତ୍ରା

ଜଗମୋହନ ଲାଲ୍ ବହୁମୂଲ୍ୟ ପରିଚ୍ଛଦ କିଣୁଥିବାର ଦେଖି ସ୍ୱାମୀଜୀ ଘୋର ଆପତ୍ତି କଲେ । ଜଗମୋହନ କହିଲେ ଯେ, ସେ ରାଜଗୁରୁ, ତେଣୁ ସେହି ଭାବରେ ସେ ସଜ୍ଜିତ ହେବା ଉଚିତ । ବକ୍ତୃତା କରିବା ନିମିତ୍ତ ମହାର୍ଘ ରେଶମର ଶେରଓ୍ୱାନୀ ଓ ପଗଡ଼ି ପସ୍ତୁତ ହେଲା । ସ୍ୱାମୀଜୀ ଅନନ୍ୟୋପାୟ ହୋଇ ଶିଷ୍ୟଙ୍କ ସଦିଚ୍ଛାରେ ଆଉ ବାଧା ଦେଲେ ନାହିଁ । ଦଣ୍ଡକମଣ୍ଡଳୁ ଓ ଭିକ୍ଷାପାତ୍ର ହସ୍ତରେ ଭ୍ରମଣାଭ୍ୟସ୍ତ ସ୍ୱାମୀଜୀ କିପରି ପ୍ରଚୁର ବସନ, ଭୂଷଣ ଓ ଦ୍ରବ୍ୟ ସମ୍ଭାରର ତତ୍ତ୍ୱାବଧାନ କରିବେ ଭାବି ବାଳକ ପରି ଅଧୀର ହୋଇପଡ଼ିଲେ ।

କ୍ରମେ ଯାତ୍ରାର ଦିନ ନିକଟବର୍ତ୍ତୀ ହୋଇ ଶେଷରେ ସେହି ଶୁଭ ଦିନ ଉପସ୍ଥିତ ହେଲା । ମୁନ୍‌ସୀ ଜଗମୋହନ ଆଗରୁ ନିଜ ତତ୍ତ୍ୱାବଧାନରେ ସ୍ୱାମୀଜୀଙ୍କ ନିମିତ୍ତ ଜାହାଜରେ ଗୋଟିଏ ପ୍ରଥମ ଶ୍ରେଣୀ କାବିନ୍ ରିଜର୍ଭ କରି ରଖିଥିଲେ । ସ୍ୱାମୀଜୀ ଅଶ୍ରୁପୂର୍ଣ୍ଣ ଲୋଚନରେ ଶିଷ୍ୟଦ୍ୱୟଙ୍କଠାରୁ ବିଦାୟ ଗ୍ରହଣ କରି ଜାହାଜରେ ଚଢ଼ିଲେ । ସହସା ତୀବ୍ର ବଂଶୀଧ୍ୱନି ତାଙ୍କ ହୃତ୍‌ମର୍ମ ଆଲୋଡ଼ିତ କରି ସ୍ୱଦେଶ ସହିତ ଆସନ୍ନ ବିଚ୍ଛେଦର ବେଦନାମୟ ବାର୍ତ୍ତା ଜ୍ଞାପନ କଲା । ଲୌହନିର୍ମିତ ବିରାଟକାୟ କୂର୍ମ୍ମ ମନ୍ଥର ଗତିରେ ଗନ୍ତବ୍ୟ ସ୍ଥାନ ଅଭିମୁଖେ ଯାତ୍ରା କଲା । ଦେଖୁ ଦେଖୁ ସ୍ୱଦେଶର ଶ୍ୟାମଳ ଛବିଖଣ୍ଡିକ ଅସ୍ପଷ୍ଟ ହୋଇଆସିଲା — ଅବଶେଷରେ ଶେଷ ଧୂସର ରେଖାଟି ପର୍ଯ୍ୟନ୍ତ ଦୂର ଦିଗ୍‌ବଳୟ ରେଖାରେ ବିଲୀନ ହୋଇଗଲା । ତାଙ୍କ ନିର୍ନିମେଷ ନେତ୍ର ସମ୍ମୁଖରେ ଫେନ-ଶୁଭ୍ରଶିର ତରଙ୍ଗମାଳା ଭୈରବକଲ୍ଲୋଳରେ ଉଚ୍ଛ୍ୱସିତ ହୋଇ ନୃତ୍ୟ କରିବାକୁ ଲାଗିଲା । ଡେକ୍ ଉପରେ ପଥର ମୂର୍ତ୍ତିପରି ଦଣ୍ଡାୟମାନ ସ୍ୱଦେଶପ୍ରେମିକ ସନ୍ନ୍ୟାସୀଙ୍କ ମର୍ମର ଅନ୍ତଃସ୍ଥଳରୁ ଗୋଟିଏ ଅସୀମ କ୍ରନ୍ଦନ ହୃଦୟର ରନ୍ଧ୍ରେ ରନ୍ଧ୍ରେ ଉଦ୍‌ବେଳିତ ହୋଇଉଠିଲା ।

ହେ ରହସ୍ୟମୟ ଆତ୍ମାରାମ ଗୁରୋ ! ତୁମେ ତ ନିଷ୍କୃତି ଦେଲ ନାହିଁ ! ଆଜି ସତରେ ତ୍ୟାଗପୂତ ଭାରତବର୍ଷରୁ ମୋତେ ଭୋଗବିଳାସ-ଲୀଳାଭୂମି ପାଶ୍ଚାତ୍ୟ ଦେଶକୁ ନେଇଗଲ ! ତୁମ ଇଚ୍ଛା ପୂର୍ଣ୍ଣ ହେଉ !

x x x

ହିନ୍ଦୁଧର୍ମ ସମ୍ବନ୍ଧରେ ବିଦେଶୀ ଲୋକଙ୍କ ଭ୍ରାନ୍ତ ଧାରଣା ଦୂର କରି ଏହାର ସାର୍ବଜନୀନ ଉଦାର ଭାବସମୂହ ଆଧୁନିକ ମନର ଉପଯୋଗୀ ବୈଜ୍ଞାନିକ ଯୁକ୍ତିମଣ୍ଡିତ କରି ପ୍ରଚାର କରିବା, ପାଶ୍ଚାତ୍ୟ ଦେଶର ଭୋଗୈକସର୍ବସ୍ୱ ଜଡ଼ବାଦର ଉନ୍ମତ୍ତକୋଳାହଳ ମଥିତ କରି ତ୍ୟାଗର ପୁଣ୍ୟବାଣୀ ଶୁଣାଇବା; ସ୍ୱଦେଶୀୟ ପାଶ୍ଚାତ୍ୟ-ସଭ୍ୟତାଶିକ୍ଷା-ପ୍ରାପ୍ତ, ସନାତନ ଧର୍ମରେ ଆସ୍ଥାହୀନ, ପରମୁଖାପେକ୍ଷୀ

ବିପଥ ପରିଚାଳିତ ମୂଢ଼ଗଣଙ୍କର କ'ଣ ଅବଲମ୍ବନୀୟ ତାହା ଉତ୍ତମରୂପେ ବୁଝାଇ ଦେବା ଆତ୍ମସମ୍ମାନଜ୍ଞାନହୀନ ନିର୍ଲ୍ଲଜ ହିନ୍ଦୁମାନଙ୍କୁ ବିଦେଶୀ ଲୋକଙ୍କ ଚରଣତଳେ ବସି ଧର୍ମଶିକ୍ଷା ଗ୍ରହଣରୁ ବିରତ କରି ନିଜ ଘରେ ଧର୍ମାନୁସନ୍ଧାନ କରାଇବା, ଭାରତର ଶ୍ରେଷ୍ଠତମ ଆଧ୍ୟାତ୍ମିକ ସତ୍ୟରତ୍ନ ସମୂହକୁ ଜଗତର ସଭ୍ୟତା-ଭଣ୍ଡାରକୁ ପ୍ରଦାନ କରିବା, ଗୋଟିଏ ଆସନ୍ନପ୍ରାୟ ଧ୍ୱଂସହସ୍ତରୁ ପରିତ୍ରାଣ ପାଇବା ଲାଗି ପାଶ୍ଚାତ୍ୟ ଜଗତକୁ ଭାରତର ପଦତଳେ ବସି ଧର୍ମଶିକ୍ଷା ଗ୍ରହଣକଳ୍ପେ ବଜ୍ରସ୍ୱରରେ ଆହ୍ୱାନ କରିବା ଏବଂ ''ସର୍ବୋପରି ସକଳ ଧର୍ମ ସତ୍ୟ ଏବଂ ସବୁଗୁଡ଼ିକ ଈଶ୍ୱରୋପଲବ୍ଧିର ବିଭିନ୍ନ ଉପାୟ ମାତ୍ର''—ସ୍ୱୀୟ ଆଚାର୍ଯ୍ୟ ଶ୍ରୀଶ୍ରୀରାମକୃଷ୍ଣ ଦେବଙ୍କର ଏହି ମୌଳିକ ଉପଦେଶ ବାଣୀ ସିଂହ-ବିକ୍ରମରେ ସଂକୀର୍ଣ୍ଣତା, ଧର୍ମାନ୍ଧତା, ରକ୍ଷଣଶୀଳତା ଓ ଘୃଣା ବିରୋଧରେ ପ୍ରଚାର କରିବା ନିମିତ୍ତ ୧୮୯୩ ଖ୍ରୀଷ୍ଟାବ୍ଦ, ମଇ ଏକତିରିଶ ତାରିଖ ଦିନ ସ୍ୱୀୟ ସ୍ୱାତନ୍ତ୍ର୍ୟ-ଗୌରବରେ ସମୁନ୍ନତଶିର ସ୍ୱାମୀ ବିବେକାନନ୍ଦ ଶ୍ରୀଶ୍ରୀଗୁରୁଙ୍କ ମଙ୍ଗଳମୟୀ ଇଚ୍ଛାରେ ଚାଳିତ ହୋଇ ଚିକାଗୋ ଅଭିମୁଖେ ଯାତ୍ରା କଲେ ।

## ପଞ୍ଚମ ଅଧ୍ୟାୟ

# ଆଚାର୍ଯ୍ୟ ବିବେକାନନ୍ଦ

## (୧୮୯୩-୧୮୯୬)

"ମୁଁ ଏପରି ଗୋଟିଏ ଧର୍ମ ପ୍ରଚାର କରିବାକୁ ଯାଉଛି, ବୌଦ୍ଧଧର୍ମ ଯାହାର ଗୋଟିଏ ବିଦ୍ରୋହୀ ସନ୍ତାନ ଭିନ୍ନ ଅନ୍ୟ କିଛି ନୁହେଁ ଏବଂ ଖ୍ରୀଷ୍ଟଧର୍ମ ଯାହାର ଗୋଟିଏ ଦୂର ପ୍ରତିଧ୍ୱନି ମାତ୍ର ।"

—ସ୍ୱାମୀ ବିବେକାନନ୍ଦ

## ସମୁଦ୍ରପଥେ—ଜାପାନ

ବୋମ୍ବାଇ ପରିତ୍ୟାଗ କରି ଅଚାର୍ଯ୍ୟଦେବ ରାସ୍ତାରେ କଲମ୍ବୋ, ପେନାଙ୍ଗ୍, ସିଙ୍ଗାପୁର, ହଂକଂ, କ୍ୟାଣ୍ଟନ, ନାଗାସାକୀ, କୋବ୍, ୟାକୋହାମା ପରିଦର୍ଶନ କରି ଅବଶେଷରେ ଭାଙ୍କୋଭର୍‌ଠାରେ ପହଞ୍ଚିଲେ । ଜାପାନୀମାନଙ୍କ କ୍ଷିପ୍ର ଉନ୍ନତି, ସାହସ ଓ ଉଦ୍ୟମ ଦର୍ଶନ କରି ଚମତ୍କୃତ ହୋଇ ସ୍ୱାମୀଜୀ ସ୍ୱଦେଶର ଦୁର୍ଦ୍ଦଶା ସ୍ମରଣ କରି ବ୍ୟଥିତ ହୃଦୟରେ ୟାକୋହୋମାଠାରୁ ନିଜ ମାନ୍ଦ୍ରାଜୀ ଶିଷ୍ୟମାନଙ୍କୁ ଗୋଟିଏ ପତ୍ରରେ ଲେଖିଥିଲେ, "ଜାପାନୀମାନଙ୍କ ସମ୍ବନ୍ଧରେ ମୋର କେତେ କଥା ମନରେ ଆସୁଛି, ତାହା ଗୋଟିଏ ସଂକ୍ଷିପ୍ତ ଚିଠିରେ ପ୍ରକାଶ କରିପାରିବି ନାହିଁ । ତେବେ ଏତିକି ମାତ୍ର କହିପାରେ ଯେ, ଆମ ଦେଶର ଯୁବକମାନେ ଦଳଦଳ ହୋଇ ପ୍ରତିବର୍ଷ ଚୀନ୍ ଓ ଜାପାନ ଯାଆନ୍ତୁ । ଜାପାନକୁ ଯିବା ବିଶେଷ ଦରକାର; ଜାପାନୀମାନଙ୍କ ଆଖିରେ ଭାରତ ସର୍ବପ୍ରକାର ଉଚ୍ଚ ଓ ମହତ୍ ପଦାର୍ଥର ସ୍ୱପ୍ନ-ରାଜ୍ୟ ପରି ।

x x x

"ଆଉ ତୁମେ ସବୁ କ'ଣ କରୁଛ ? ସାରା ଜୀବନ ଖାଲି ବାଜେକଥା କହୁଛ । ଆସ, ଏମାନଙ୍କୁ ଦେଖିଯାଅ; ତା ପରେ ଘରକୁ ଯାଇ ଲଜ୍ଜାରେ ମୁହଁ ଲୁଚାଅ । ଯେପରି କି ଭାରତ ଜରାଜୀର୍ଣ୍ଣ ଅବସ୍ଥାରେ ପଡ଼ି ବୁଦ୍ଧିହୀନ ହୋଇଯାଇଛି । ତୁମ୍ଭେମାନେ ଦେଶ ଛାଡ଼ି ବାହାରକୁ ଗଲେ ତୁମ ଜାତି ଚାଲିଯାଏ । ଏହି ହଜାର ବର୍ଷର ଜମାଟବନ୍ଧା କୁସଂସ୍କାର ବୋଝ ମୁଣ୍ଡରେ ଧରି ବସିଛ, ହଜାର ବର୍ଷ ହେଲା ଖାଦ୍ୟ ଅଖାଦ୍ୟର ଶୁଦ୍ଧି ଅଶୁଦ୍ଧି ବିଚାର କରି ଶକ୍ତି କ୍ଷୟ କରୁଛ । ପୌରହିତ୍ୟରୂପକ ଅହମିକାର ଗଭୀର ଘୂର୍ଣ୍ଣୀରେ ଭଉଁରୀ ବୁଲୁଛ । ଶତଶତ ଯୁଗର ଅବିଚ୍ଛେଦ୍ୟ ସାମାଜିକ ଅତ୍ୟାଚାରରେ ତୁମ୍ଭମାନଙ୍କର ସବୁ ମନୁଷ୍ୟତ୍ୱ ଏକବାରେ ନଷ୍ଟ ହୋଇ ଯାଇଛି—ତୁମର କ'ଣ ଅଛି କହିଲ ? ଆଉ ତୁମେ ଏବେ କ'ଣ ବା କରୁଛ ? ତୁମେ ବହି ହାତରେ ଧରି ସମୁଦ୍ର କୂଳରେ ଟହଲ ମାରୁଛ ? ଇଉରୋପୀୟ ମସ୍ତିଷ୍କ-ପ୍ରସୂତ କୌଣସି ତତ୍ତ୍ୱର ଗୋଟିଏ ବିନ୍ଦୁମାତ୍ର, ତା ପୁଣି ଖାଣ୍ଟି ଜିନିଷ ନୁହେଁ, ସେହି

ଚିନ୍ତାର କେତୋଟି ହଜମ ହୋଇ ନ ଥିବା ଅଂଶକୁ କ୍ରମାଗତ ଆଉଡ଼େଇବାରେ ଲାଗିଛି ଏବଂ ତୁମ ପ୍ରାଣ ଓ ମନ ସେହି ତିରିଶ ଟଙ୍କାର କିରାନୀଗିରି ଉପରେ ଅଟକିଛି; ତା ନ ହେଲେ ଖୁବ୍ ବଡ଼ ଗୋଟିଏ ଦୁଷ୍ଟ ଓକିଲ ହେବାର ମତଲବରେ ଅଛ । ଏହା ହିଁ ଭାରତୀୟ ଯୁବକମାନଙ୍କ ସର୍ବୋଚ୍ଚ ଦୁରାକାଙ୍କ୍ଷା । ପୁଣି ପ୍ରତ୍ୟେକ ପିଲାର ଆଖପାଖରେ ପଲେ ଶିଶୁ, ତାର ବଂଶଧରଗଣ, 'ବାବା ଖାଇବାକୁ ଦିଅ, ଦିଅ' ବୋଲି ଉଚ୍ଚ ସ୍ୱରରେ ଚିତ୍କାର କରି ହୁରି ପକାଉଛନ୍ତି । କହ ତ, ସମୁଦ୍ରରେ କ'ଣ ପାଣିର ଅଭାବ ଅଛି ଯେ ତୁମ୍ଭେମାନେ ବହି, ଗାଉନ୍ ବିଶ୍ୱବିଦ୍ୟାଳୟର ଡିପ୍ଲୋମା ପ୍ରଭୃତି ବୁଡ଼େଇ ଦେଇପାରୁ ନାହଁ ?''

''ଆସ ମଣିଷ ହୁଅ । ପ୍ରଥମେ ଦୁଷ୍ଟ ପୁରୋହିତମାନଙ୍କୁ ଦୂର କରିଦିଅ । କାରଣ ଏହି ମସ୍ତିଷ୍କହୀନ ଲୋକଗୁଡ଼ିକ କେବେହେଲେ ଭଲ କଥା ଶୁଣିବେ ନାହିଁ । ସେମାନଙ୍କ ହୃଦୟ ମଧ୍ୟ ଶୂନ୍ୟମୟ; ତାର କେବେହେଲେ ପ୍ରସାର ହେବ ନାହିଁ । ଶତଶତ ଶତାବ୍ଦୀର କୁସଂସ୍କାର ଓ ଅତ୍ୟାଚାର ମଧ୍ୟରେ ସେମାନଙ୍କର ଜନ୍ମ; ଆଗେ ସେଗୁଡ଼ିକୁ ନିର୍ମୂଳ କର । ଆସ ମଣିଷ ହୁଅ । ନିଜ ସଂକୀର୍ଣ୍ଣ ଗର୍ତ୍ତ ମଧ୍ୟରୁ ବାହାରିଆସି ବିଦେଶକୁ ଯାଇ ଦେଖ ସବୁ ଜାତି କିପରି ଉନ୍ନତି-ପଥରେ ଚାଲୁଛନ୍ତି । ତୁମେ କ'ଣ ମନୁଷ୍ୟକୁ ଭଲପାଅ ? ତୁମେ କ'ଣ ଦେଶକୁ ଭଲ ପାଅ ? ତା'ହେଲେ ଆସ ଆମେ ଭଲ ହେବା ପାଇଁ ପ୍ରାଣପଣେ ଚେଷ୍ଟା କରିବା । ପଛକୁ ଚାହଁ ନାହିଁ—ଅତି ପ୍ରିୟ ଆତ୍ମୀୟ ସ୍ୱଜନ କାନ୍ଦନ୍ତୁ ପଛକେ, ପଛକୁ ଚାହଁ ନା—ସାମନାକୁ ଆଗେଇ ଆସ । ଭାରତମାତା ଅନ୍ତତଃ ଏହିପରି ସହସ୍ର ଯୁବକଙ୍କ ବଳି ଚାହାଁନ୍ତି । ମନେରଖ—ମଣିଷ ଚାହାନ୍ତି, ପଶୁ ନୁହେଁ ।''

## ଚିକାଗୋ ଓ ବୋଷ୍ଟନ୍—ଅନଭିଜ୍ଞତାର ଦୁଃଖ ଓ ନୈରାଶ୍ୟ

ଟଙ୍କା ପଇସା ବ୍ୟବହାର ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅନଭିଜ୍ଞ ସ୍ୱାମୀଜୀ ବାଟରେ ନାନାପ୍ରକାର ପ୍ରତାରିତ ହୋଇ ଚିକାଗୋରେ ପହଞ୍ଚିଲେ । ଚିକାଗୋ ସହରର ଜନତାପୂର୍ଣ୍ଣ ରାଜପଥରେ ଗୈରିକ ବସନ ପରିହିତ ସନ୍ନ୍ୟାସୀ ନାନାପ୍ରକାର କୌତୂହଳୀ ଆମୋଦପ୍ରିୟ ଲୋକଙ୍କଦ୍ୱାରା ଉତ୍ତ୍ୟକ୍ତ ଓ ଅସ୍ଥିର ହୋଇପଡ଼ିଲେ । ଅବଶେଷରେ ଗୋଟିଏ ହୋଟେଲରେ କୌଣସି ମତେ ଆଶ୍ରୟ ଗ୍ରହଣ କରି ସେ ଦିନ ଅନ୍ତତଃ ପରିତ୍ରାଣ ପାଇଲେ ।

କେତେଦିନ ପରେ ସେ ଜାଣିପାରିଲେ, ଧର୍ମ ମହାସଭା ଖୋଲିବାକୁ ଆହୁରି ପ୍ରାୟ ତିନିମାସ ବାକି ଅଛି—ବିଶେଷତଃ ଯେଉଁମାନେ ଉକ୍ତ ସଭାର ନିୟମାବଳୀ ଅନୁସାରେ ପରିଚୟପତ୍ର ଆଣିନାହାନ୍ତି, ସେମାନେ ସଭାରେ ପ୍ରତିନିଧିରୂପେ ସ୍ଥାନ ପାଇବେ ନାହିଁ । ପ୍ରତିନିଧିରୂପେ ଧର୍ମମହାସଭାରେ ଯୋଗଦାନ କରିବା ସମୟ ଚାଲିଯାଇଛି—ତେଣୁ ସ୍ୱାମୀଜୀ ହିନ୍ଦୁଧର୍ମର ପ୍ରତିନଧିରୂପେ ଗୃହୀତ ହେବା ଲାଗି କୌଣସି ସୁଯୋଗ ଦେଖିପାରିଲେ ନାହିଁ ।

ଏପାଖରେ ଯେଉଁ ସମାନ୍ୟ ଅର୍ଥ ସେତେବେଳେ ତାଙ୍କ ପାଖରେ ଅବଶିଷ୍ଟ ଥିଲା, ତାହା ହୋଟେଲବାଲା ଇତ୍ୟାଦିଙ୍କର ଅତ୍ୟଧିକ ଦାବୀ ପୂରଣ କରିବାରେ ପ୍ରାୟ ପନ୍ଦରଦିନ ଭିତରେ ଶେଷ ହୋଇଗଲା । ଯଦିବା ତାଙ୍କର ସ୍ଥିର ବିଶ୍ୱାସ ଥିଲା ଯେ ଭଗବାନଙ୍କ ମଙ୍ଗଳମୟ ହସ୍ତ ତାଙ୍କୁ ସର୍ବଦା ରକ୍ଷା କରିଛି, ତଥାପି ଗୋଟିଏ ପ୍ରବଳତମ ସନ୍ଦେହର ଝଡ଼ ଉଠି ତାଙ୍କୁ ବ୍ୟାକୁଳ କରିପକାଇଲା । ବିଚଳିତ ହୃଦୟରେ କିଂକର୍ତ୍ତବ୍ୟବିମୂଢ଼ ସ୍ୱାମୀଜୀ ଭାବିବାକୁ ଲାଗିଲେ ଯେ ଉତ୍ତପ୍ତ ମସ୍ତିଷ୍କ କେତେଜଣ ଯୁବକଙ୍କ ପରାମର୍ଶରେ ସେ କାହିଁକି ଆମେରିକା ଆସିଲେ ? ଯାହା ହେଉ ଚିକାଗୋଠାରେ ସଂକଳ୍ପ-ସିଦ୍ଧିର କୌଣସି ଉପାୟ ନ ଦେଖି ସେ ଉକ୍ତ ସ୍ଥାନ ପରିତ୍ୟାଗ କରି ବୋଷ୍ଟନ୍ ଅଭିମୁଖେ ଯାତ୍ରାକଲେ ।

ଭଗବାନଙ୍କ ଇଚ୍ଛାନୁସାରେ ରାସ୍ତାରେ ତାଙ୍କର ଜଣେ ବର୍ଷୀୟସୀ ମହିଳାଙ୍କ ସଙ୍ଗେ ଆଳାପ ହେଲା । ଏହି ଭଦ୍ର ମହିଳା ତାଙ୍କର ଅଦ୍ଭୁତ ପୋଷାକକୁ ଦେଖି ପରିଚୟ ପାଇବା ଲାଗି ବ୍ୟଗ୍ର ହୋଇପଡ଼ିଲେ । ସେ ଯେତେବେଳେ ଶୁଣିଲେ, ଏହି ପ୍ରାଚ୍ୟ ଦେଶୀୟ ସନ୍ନ୍ୟାସୀ ଆମେରିକାରେ ବେଦାନ୍ତ ପ୍ରଚାର କରିବାକୁ ଆସିଛନ୍ତି, ସେତେବେଳେ ସେ କୌତୁହଳବଶତଃ ତାଙ୍କୁ ନିଜ ଘରେ ଆତିଥ୍ୟ ଗ୍ରହଣ କରିବା ନିମିତ୍ତ ନିମନ୍ତ୍ରଣ କଲେ ଏବଂ ସଙ୍ଗେ ସଙ୍ଗେ ଆଶା ଦେଲେ ଯେ, ସେ ସ୍ୱାମୀଜୀଙ୍କ ପ୍ରଚାର କାର୍ଯ୍ୟ ପାଇଁ ସୁବିଧା କରିଦେବେ । ସ୍ୱାମୀଜୀ ଏହି ମହିଳାଙ୍କ ଗୃହକୁ ଆସି ଅପେକ୍ଷାକୃତ ନିଶ୍ଚିନ୍ତ ହେଲେ । ସେ ସ୍ଥିର କଲେ ଯେ, କେତେ ମାସ ଚେଷ୍ଟା କରି ଯଦି ଆମେରିକାରେ ବେଦାନ୍ତ ପ୍ରଚାରର ସୁବିଧା କରି ନ ପାରନ୍ତି, ତାହାହେଲେ ସେଠାରୁ ଇଂଲଣ୍ଡକୁ ଚାଲିଯିବେ; ସେଠାରେ ମଧ୍ୟ କୌଣସି ସୁବିଧା ନ ପାଇଲେ ଦେଶକୁ ଫେରିଯାଇ ଶ୍ରୀଗୁରୁଙ୍କ ଦ୍ୱିତୀୟ ଆଦେଶ ପାଇଁ ଅପେକ୍ଷା କରିବେ ।

ଚିକାଗୋ ଧର୍ମସଭାରେ ପ୍ରତିନିଧିରୂପେ ଗୃହୀତ ହେବା ସମ୍ବନ୍ଧରେ ସଂପୂର୍ଣ୍ଣ ରୂପେ ନିରାଶ ହେଲେ ମଧ୍ୟ ତାଙ୍କର ଦୃଢ଼ ହୃଦୟ ବିଚଳିତ ହୋଇ ନ ଥିଲା । ସେ ଆଗତପ୍ରାୟ ବାଧା ଓ ବିପତ୍ତି ସହିତ ସଂଗ୍ରାମ କରିବା ଲାଗି "ଭଗବାନଙ୍କ ଉପରେ ବିଶ୍ୱାସରୂପକ ଦୃଢ଼ ବର୍ମରେ" ସଜ୍ଜିତ ହୋଇ ପ୍ରସ୍ତୁତ ଥିଲେ । ଏହି ମହିଳାଙ୍କ ଗୃହରୁ ସେ ତାଙ୍କର ଜଣେ ଶିଷ୍ୟଙ୍କ ପାଖକୁ ଚିଠି ଲେଖିଥିଲେ, "ଏଠାକୁ ଆସିବା ଆଗରୁ ଯେଉଁସବୁ ସୁନାର ସ୍ୱପ୍ନ ଦେଖୁଥିଲି, ତାହା ଭାଙ୍ଗିଯାଇଛି—ବର୍ତ୍ତମାନ ଅସମ୍ଭବ ସହିତ ଯୁଦ୍ଧ କରିବାକୁ ହେଉଛି । ଶତଶତ ବାର ମନେ ହୋଇଥିଲା, ଏ ଦେଶରୁ ଚାଲିଯିବି, କିନ୍ତୁ ପୁଣି ମନେ ହେଉଛି, ମୁଁ ତ ଜଣେ ଏକରୋକା ଦାନା । ଅଧିକନ୍ତୁ ମୁଁ ଭଗବାନଙ୍କ ଆଦେଶ ପାଇଛି । ମୋ ଆଖିକୁ କୌଣସି ରାସ୍ତା ଦେଖାଯାଉ ନାହିଁ ସତ୍ୟ; କିନ୍ତୁ ତାଙ୍କ ଆଖିକୁ ତ ସବୁ ଦିଶୁଛି । ମରେ ବା ବଞ୍ଚେ, ଉଦ୍ଦେଶ୍ୟ ଛାଡୁ ନାହିଁ ।"

ଏ ପର୍ଯ୍ୟନ୍ତ ଜଗତ୍‌ର କୌଣସି ମହତ୍ କାର୍ଯ୍ୟ ନିର୍ବିଘ୍ନରେ ସମ୍ପାଦିତ ହୋଇନାହିଁ । ପରାଜୟ ଓ ବ୍ୟର୍ଥତା ସହିତ ସଂଗ୍ରାମ କଲେ ତ ମାନବ-

ଚରିତ୍ରର ପ୍ରକୃତ ମହତ୍ତ୍ୱ ଫୁଟିଉଠେ ! ସେହି ହେତୁ ଦେଖାଯାଏ ଯେ, ଦୁର୍ଦ୍ଦଶାର ସର୍ବନିମ୍ନସ୍ତରରେ ପଡ଼ି ଯେତେବେଳେ ସେ ମୃତ୍ୟୁ ସ୍ଥିର ବୋଲି ବୁଝିଥିଲେ, ସେତେବେଳେ ମଧ୍ୟ ସେ ନିଜ ଶିଷ୍ୟବୃନ୍ଦଙ୍କୁ ଉତ୍ସାହ ଦେଇ ପତ୍ର ଲେଖୁଥିଲେ, "ଅଣ୍ଟା ଦମ୍ଭକର ବତ୍ସ; ପ୍ରଭୁ ମୋତେ ଏହି କାର୍ଯ୍ୟ ପାଇଁ ଡାକିଛନ୍ତି ! ମୁଁ ସାରା ଜୀବନ ନାନାବିଧ ଦୁଃଖକଷ୍ଟ ଭୋଗ କରିଛି; ପ୍ରାଣପ୍ରିୟ ନିକଟତମ ଆତ୍ମୀୟ-ସ୍ୱଜନମାନଙ୍କୁ ଏକପ୍ରକାର ଅନାହାରରେ ମରିବାର ଦେଖିଛି । ମୋତେ ଲୋକେ ଉପହାସ ଓ ଅବଜ୍ଞା କରିଛନ୍ତି, ଜୁଆଚୋର ଓ ବଦମାସ କହିଛନ୍ତି, ଯେଉଁମାନେ ମୋତେ ଅବଜ୍ଞା ଓ ଉପହାସ କରିଛନ୍ତି, ମୁଁ କେବଳ ସେହିମାନଙ୍କ ଲାଗି ଏସବୁ ସହ୍ୟ କରିଛି । ବତ୍ସ ! ଏହି ଜଗତ୍ ଦୁଃଖର ଆଗାର ସତ୍ୟ; କିନ୍ତୁ ମହାପୁରୁଷମାନଙ୍କ ପାଇଁ ଶିକ୍ଷାୟତନ ସ୍ୱରୂପ । ଲକ୍ଷ ଲକ୍ଷ ଦରିଦ୍ରଙ୍କ ହୃଦୟ ବେଦନା ଅନୁଭବ କର, ଅକପଟ ହୋଇ ସେମାନଙ୍କ ନିମିତ୍ତ ଭଗବାନଙ୍କ ନିକଟରେ ସାହାଯ୍ୟ ପ୍ରାର୍ଥନା କର—ସାହାଯ୍ୟ ନିଶ୍ଚୟ ଆସିବ । ମୁଁ ବର୍ଷ ପରେ ବର୍ଷ ଏହି ଚିନ୍ତାଭାର ମସ୍ତିଷ୍କରେ ଏବଂ ଏହି ଦୁଃଖଭାର ହୃଦୟରେ ଧାରଣ କରି ଭ୍ରମଣ କରୁଛି । ତଥାକଥିତ ଧନୀ ଓ ବଡ଼ଲୋକମାନଙ୍କ ଦ୍ୱାରେ ଦ୍ୱାରେ ଯାଇଛି । ଅବଶେଷରେ ହୃଦୟର ରକ୍ତ ମୋକ୍ଷଣ କରି କରି ଅର୍ଦ୍ଧେକ ପୃଥିବୀ ଅତିକ୍ରମ କରି ଏହି ସୁଦୂର ବିଦେଶରେ ସାହାଯ୍ୟ ଲାଭ ଆଶାରେ ଉପସ୍ଥିତ ହୋଇଛି । ଭଗବାନ ଦୟାମୟ ! ସେ ଅବଶ୍ୟ ସାହାଯ୍ୟ କରିବେ ! ମୁଁ ଏ ଦେଶରେ ଶୀତ ଓ ଅନାହାରରେ ମରିପାରେ, କିନ୍ତୁ ହେ ଯୁବକଗଣ ! ମୁଁ ତୁମ ପାଖରେ ଦରିଦ୍ର, ପତିତ, ଉତ୍ପୀଡ଼ିତଗଣଙ୍କ ପାଇଁ ଏହି ପ୍ରାଣପଣ ଚେଷ୍ଟାକୁ ଦାୟସ୍ୱରୂପ ଅର୍ପଣ କରୁଛି । ତୁମ୍ଭେମାନେ ଏହି ତିରିଶ କୋଟି ନରନାରୀଙ୍କ ଉଦ୍ଧାର-ବ୍ରତ ଗ୍ରହଣ କର—ଯେଉଁମାନେ ଦିନକୁ ଦିନ ଗଭୀରତମ ଅନ୍ଧକାରରେ ବୁଡ଼ିଯାଉଛନ୍ତି ! ପ୍ରଭୁଙ୍କ ନାମ ଜୟଯୁକ୍ତ ହେଉ; ଆମେ ନିଶ୍ଚୟ କୃତକାର୍ଯ୍ୟ ହେବା । ଏହି ଚେଷ୍ଟାରେ ଶହେଜଣ ପ୍ରାଣତ୍ୟାଗ କରିପାରନ୍ତି; କିନ୍ତୁ ପୁଣି ହଜାରେ ଜଣ ଏହି କାମ ପାଇଁ ପ୍ରସ୍ତୁତ ହୋଇଯିବେ । ବିଶ୍ୱାସ—ସହାନୁଭୂତି ! ଅଗ୍ନିମୟ ବିଶ୍ୱାସ—ଜ୍ୱଳନ୍ତ ସହାନୁଭୂତି । ଆଗେଇ ଯାଅ, ଆଗେଇ ଯାଅ ।"

X X X

ସ୍ୱାମୀଜୀ ମହିଳାମାନଙ୍କ ପରାମର୍ଶ ଅନୁସାରେ ପରିଚ୍ଛଦ ପରିବର୍ତ୍ତନ କରିବାକୁ ବାଧ୍ୟ ହେଲେ । ସଦାସର୍ବଦା ବ୍ୟବହାର କରିବା ନିମିତ୍ତ ଗୋଟିଏ ଲମ୍ବା କଳା କୋଟ୍ ତିଆରି କରାଇଲେ । ଗୈରିକ ପଗଡ଼ୀ ଓ ଶେରୱାନୀ କେବଳ ମାତ୍ର ବକ୍ତୃତା ଦେବା ବେଳ ପାଇଁ ରଖିଦେଲେ । ଦିନେ ଘଟଣାକ୍ରମେ ପୂର୍ବୋକ୍ତ ମହିଳାଙ୍କ ଘରେ ହାର୍ଭାର୍ଡ ବିଶ୍ୱବିଦ୍ୟାଳୟର ପ୍ରଖ୍ୟାତନାମା ଗ୍ରୀକ୍‌ଭାଷା ଅଧ୍ୟାପକ ଶ୍ରୀଯୁକ୍ତ ଜେ. ଏଚ୍. ରାଇଟ୍‌ଙ୍କ ସହିତ ସ୍ୱାମୀଜୀଙ୍କର ପରିଚୟ ହେଲା । ସେ କେତେ ସମୟ କଥୋପକଥନ ପରେ ସ୍ୱାମୀଜୀଙ୍କ ଉଦ୍ଦେଶ୍ୟ ଅବଗତ ହୋଇ କହିଲେ, "ଆପଣ ଚିକାଗୋ ମହାସଭାକୁ ହିନ୍ଦୁଧର୍ମର ପ୍ରତିନିଧି-ସ୍ୱରୂପ ଯାଆନ୍ତୁ; ତାହାହେଲେ

ବେଦାନ୍ତ ପ୍ରଚାର କାର୍ଯ୍ୟରେ ଅଧିକତର ସାଫଲ୍ୟ ଲାଭ କରିବେ ।'' ତାହାର ଉତ୍ତରରେ ସ୍ୱାମୀଜୀ ତାଙ୍କ ଚିର ଅଭ୍ୟସ୍ତ ସରଳତା ସହିତ ପ୍ରକୃତ ଅସୁବିଧାଗୁଡ଼ିକ ଖୋଲି କହିଲେ । ଅଧ୍ୟାପକ ଆଶ୍ଚର୍ଯ୍ୟ ହୋଇ କହିଲେ, ''ସ୍ୱାମୀଜୀ ! ଆପଣଙ୍କୁ ପରିଚୟ ପତ୍ର ମାଗିବା ଯାହା, ସୂର୍ଯ୍ୟଙ୍କୁ ଆଲୋକ ଦେବା ଅଧିକାର ସାବ୍ୟସ୍ତ କରିବାକୁ କହିବା ଠିକ୍ ସେଇଆ ।'' ରାଇଟ୍ ସାହେବ ତତ୍କ୍ଷଣାତ ଉକ୍ତ ମହାସଭା ସହ ସଂଶ୍ଲିଷ୍ଟ ତାଙ୍କ ବନ୍ଧୁ ମି: ବନି ସାହେବଙ୍କୁ ଖଣ୍ଡିଏ ଚିଠି ଲେଖି ସ୍ୱାମୀଜୀଙ୍କ ହାତରେ ଦେଲେ । ସେଥିର ଅନ୍ୟ କଥା ଭିତରେ ଏହା ମଧ୍ୟ ଲେଖାଥିଲା ଯେ, ''ଦେଖିଲି, ଏହି ଅଜ୍ଞାତନାମା ହିନ୍ଦୁ ସନ୍ୟାସୀ ଆମର ସବୁ ପଣ୍ଡିତଙ୍କୁ ଏକାଠି କଲେ ଯାହା ହେବ, ତା'ଠାରୁ ବେଶୀ ପଣ୍ଡିତ ।'' ଏହି ପତ୍ରଖଣ୍ଡିକ ଓ ଅଧ୍ୟାପକ ଦେଇଥିବା ଖଣ୍ଡିଏ ରେଳ ଟିକଟ ନେଇ ସ୍ୱାମୀଜୀ ପୁନର୍ବାର ଚିକାଗୋ ଅଭିମୁଖେ ଯାତ୍ରା କଲେ ।

## ଚିକାଗୋରେ ନିଃସ୍ୱ ଅବସ୍ଥାରେ ଅପୂର୍ବ ଆଶ୍ରୟଲାଭ

ସ୍ୱାମୀଜୀ ଯେଉଁ ଉତ୍ସାହ, ଯେଉଁ ଆନନ୍ଦ ନେଇ ବୋଷ୍ଟନରୁ ବାହାରିଥିଲେ, ଚିକାଗୋ ରେଳଷ୍ଟେସନରେ ଅବତରଣ କରିବା ମାତ୍ରକେ ତାହା ଅନ୍ତର୍ହିତ ହେଲା । ଏହି ବିରାଟ ସହରରେ ସେ କିପରି ଡାକ୍ତର ବ୍ୟାରୋଜ୍‌ଙ୍କ ଅଫିସ୍ ଖୋଜି ବାହାର କରିବେ ! ପଥ ମଧ୍ୟରେ ଦୁଇଚାରିଜଣ ଭଦ୍ରଲୋକଙ୍କୁ ପଚାରିଲେ ସତ୍ୟ; ସେମାନେ ସ୍ୱାମୀଜୀଙ୍କୁ ନିଗ୍ରୋ ମନେକରି ଘୃଣାରେ ମୁହଁ ଫେରାଇ ଚାଲିଗଲେ; ଏପରି କି ରାତ୍ରିରେ ରହିବା ଆଶାରେ ଗୋଟିଏ ହୋଟେଲର ସନ୍ଧାନ ନେବାକୁ ଯାଇ ବିଫଳକାମ ହେଲେ । ଅବଶେଷରେ କୌଣସି ସ୍ଥାନରେ ଆଶ୍ରୟ ନ ପାଇ ରେଲୱେ ମାଲଗୋଦାମ ସମ୍ମୁଖରେ ପଡ଼ିଥିବା ଗୋଟିଏ ପ୍ରକାଣ୍ଡ 'ପ୍ୟାକିଙ୍ଗ କେସ୍' ଭିତରେ ପ୍ରବେଶ କଲେ । ବାହାରେ ସେତେବେଳେ ବରଫ ପଡୁଥାଏ । ପ୍ରଖର ଥଣ୍ଡା ପବନର ତୀବ୍ର ସ୍ପର୍ଶ — 'ପ୍ୟାକିଙ୍ଗ୍ କେସ୍' ଭିତରେ ଘନୀଭୂତ ଅନ୍ଧକାର ! ଦୁଃସହ ଶୀତରୁ ଦେହକୁ ବଞ୍ଚାଇବା ଭଳି ସାମାନ୍ୟ ଖଣ୍ଡିଏ ଶୀତଲୁଗା ମଧ୍ୟ ତାଙ୍କର ନ ଥିଲା । ଅସୀମ ଉତ୍କଣ୍ଠାରେ ରଜନୀ ଅତିବାହିତ କରି ପ୍ରଭାତରେ ଆଶା ଓ ଉଦ୍ୟମରେ ଛାତି ଦମ୍ଭ କରି ରାଜପଥରେ ବାହାରିଲେ । ସମସ୍ତ ରାତ୍ରି ଅନାହାରରେ ଯାପନ କରିଥିବାରୁ ପ୍ରବଳ କ୍ଷୁଧାର ତାଡ଼ନାରେ ତାଙ୍କ ସର୍ବାଙ୍ଗ ଅବଶ ହୋଇ ଆସିଲା — ସେ ଆଉ ଅଗ୍ରସର ହୋଇପାରୁ ନ ଥିଲେ । ଅନନ୍ୟୋପାୟ ହୋଇ କିଞ୍ଚିତ୍ ଖାଦ୍ୟଦ୍ରବ୍ୟ ଆଶାରେ ଦ୍ୱାର ଦ୍ୱାର ବୁଲି ଭିକ୍ଷା କଲେ । ତାଙ୍କର ମଳିନ ଜୀର୍ଣ୍ଣ ବସନ, ଯାତନାକ୍ଲିଷ୍ଟ ମୁଖମଣ୍ଡଳ ଦେଖି କାହାରି କରୁଣାର ଉଦ୍ରେକ ହେଲା ନାହିଁ । କିଏ ଭର୍ତ୍ସନା କଲା, କିଏ ଦୁଆର ମୁହଁରୁ ବାହାର କରିଦେବା ଲାଗି ବଳପ୍ରୟୋଗ କରିବାକୁ ଉଦ୍ୟତ ହେଲା, କେହି ଅବା ପ୍ରବଳ ଉପେକ୍ଷା-ମିଶ୍ରିତ ଘୃଣାରେ ଦ୍ୱାର ବନ୍ଦ କରିଦେଲା । ଶ୍ରାନ୍ତ, କ୍ଲାନ୍ତ, ଅବସନ୍ନ ଦେହରେ ବିବେକାନନ୍ଦ

ରାଜପଥ ଦାଢ଼ରେ ବସିପଡ଼ିଲେ; ପ୍ରଶାନ୍ତ ଚିତ୍ତରେ ପୂର୍ଣ୍ଣ ନିର୍ଭରତା ସହ ଶ୍ରୀଗୁରୁଙ୍କୁ ସ୍ମରଣ କରିବାରେ ରହିଲେ । ସହସା ତାଙ୍କ ସମ୍ମୁଖରେ ଥିବା ସୁବୃହତ୍ ପ୍ରାସାଦର ଦ୍ୱାର ଖୋଲିଲା । ଜଣେ ଅପୂର୍ବ ସୁନ୍ଦରୀ ରମଣୀ ଧୀରେ ଧୀରେ ଆସି ସ୍ୱାମୀଜୀଙ୍କୁ ମଧୁର ସ୍ୱରରେ ପଚାରିଲେ, ''ମହାଶୟ ! ଆପଣ କ'ଣ ଧର୍ମମହାସଭାର ଜଣେ ପ୍ରତିନିଧି ?'' ସ୍ୱାମୀଜୀ ବିସ୍ମୟାପ୍ଲୁତ କଣ୍ଠରେ ସଂକ୍ଷେପରେ ନିଜ ଦୁରବସ୍ଥା ବର୍ଣ୍ଣନା କଲେ ଏବଂ କହିଲେ ଯେ, ସେ ବ୍ୟାରୋଜ ସାହେବଙ୍କ ଅଫିସ ଠିକଣା ହଜାଇ ଦେଇଛନ୍ତି । ଦୟାର୍ଦ୍ର-ହୃଦୟା ମହିଳା ସ୍ୱାମୀଜୀଙ୍କୁ ନିଜ ଘରକୁ ନେଇ ଭୃତ୍ୟବର୍ଗଙ୍କୁ ତାଙ୍କ ସେବା କରିବା ଲାଗି ନିର୍ଦ୍ଦେଶ ଦେଲେ ଏବଂ ପ୍ରାତଃଭୋଜନ ଶେଷ ହେଲେ ସେ ନିଜେ ସ୍ୱାମୀଜୀଙ୍କୁ ଧର୍ମସଭାକୁ ନେଇଯିବେ ବୋଲି କହିଲେ ।

ଔପନ୍ୟାସିକର ଶ୍ରେଷ୍ଠତମ କଳ୍ପନା ପରି ଅନନୁଭବନୀୟ ଘଟଣା-ବୈଚିତ୍ର୍ୟ ମଧ୍ୟରେ ବିବେକାନନ୍ଦଙ୍କର ପ୍ରବାସଜୀବନରେ ଆଉ ଗୋଟିଏ ଅଧ୍ୟାୟ ସମାପ୍ତ ହେଲା । ଭଗବାନ ଏହିପରି ଦୁଃଖର କଷଟି-ପଥରରେ କଷି ମହାପୁରୁଷମାନଙ୍କୁ ପରୀକ୍ଷା କରନ୍ତି । ଏହି ସହୃଦୟା ମହିଳାଙ୍କ ନାମ ଶ୍ରୀମତୀ ଜର୍ଜ ଡବ୍ଲ୍ୟୁ. ହେଲ୍ । ଅଯାଚିତ ଭାବରେ ସେ ସ୍ୱାମୀଜୀଙ୍କ ମାତୃସ୍ଥାନୀୟା ହୋଇ ତାଙ୍କୁ ପ୍ରଚାର କାର୍ଯ୍ୟରେ ଯଥେଷ୍ଟ ସହାୟତା କରିଥିଲେ । ଯାହା ହେଉ, ସ୍ୱାମୀଜୀ ବିଶ୍ରାମ ପରେ ଏହାଙ୍କ ସହିତ ଯାଇ ଧର୍ମମହାସଭାରେ ହିନ୍ଦୁଧର୍ମର ପ୍ରତିନିଧି ସ୍ୱରୂପ ଗୃହୀତ ହେଲେ ଏବଂ ପ୍ରତିନିଧିବର୍ଗଙ୍କ ନିମିତ୍ତ ନିର୍ଦ୍ଦିଷ୍ଟ ଗୃହରେ ଅତିଥିରୂପେ ବାସ କଲେ ।

## ଚିକାଗୋ ଧର୍ମସଭା — ସ୍ୱାମୀଜୀଙ୍କ ବର୍ଣ୍ଣନା

ଧର୍ମସଭାର ପ୍ରଥମ ଅଧିବେଶନ ବିଷୟରେ ବିସ୍ତାରିତ ବର୍ଣ୍ଣନା କରି ସ୍ୱାମୀଜୀ ନିଜେ ଜନୈକ ଶିଷ୍ୟଙ୍କୁ ଲେଖିଥିଲେ — ''ମହାସଭା ଖୋଲିବା ଦିନ ସକାଳେ ଆମେ ସମସ୍ତେ 'ଶିଳ୍ପ-ପ୍ରାସାଦ' ନାମକ ଅଟ୍ଟାଳିକାରେ ସମବେତ ହେଲୁ ।

''ସେଠାରେ ମହାସଭା ଅଧିବେଶନ ନିମିତ୍ତ ବୃହତ୍ ଓ କେତେଗୋଟି କ୍ଷୁଦ୍ର କ୍ଷୁଦ୍ର ଅସ୍ଥାୟୀ ଗୃହ ନିର୍ମିତ ହୋଇଥିଲା । ସେଠାରେ ସବୁ ଜାତିର ଲୋକ ସମବେତ ହୋଇଥିଲେ । ଭାରତବର୍ଷରୁ ଆସିଥିଲେ — ବ୍ରାହ୍ମସମାଜରୁ ପ୍ରତାପଚନ୍ଦ୍ର ମଜୁମଦାର ଓ ବୋମ୍ବାଇର ନଗରକାର, ଜୈନ ସମାଜର ବୀରଚାନ୍ଦ ଗାନ୍ଧି ଏବଂ ବ୍ରହ୍ମ-ବିଦ୍ୟା ସମିତିରୁ ଆନିବେଶାନ୍ତ ଓ ଚକ୍ରବର୍ତ୍ତୀ । ମଜୁମଦାରଙ୍କ ସହିତ ମୋର ଆଗରୁ ପରିଚୟ ଥିଲା ଏବଂ ଚକ୍ରବର୍ତ୍ତୀ ମୋ ନାମ ଜାଣିଥିଲେ । ବସାରୁ ଶିଳ୍ପ-ପ୍ରାସାଦ ପର୍ଯ୍ୟନ୍ତ ଖୁବ୍ ଧୁମ୍‌ଧାମ୍ ସହିତ ଆମେ ଗଲୁ ଏବଂ ଆମ ସମସ୍ତଙ୍କୁ ପ୍ଲାଟଫର୍ମ ଉପରେ ଶ୍ରେଣୀବଦ୍ଧ ଭାବରେ ବସାଇ ଦିଆଗଲା । କଳ୍ପନା କରି ଦେଖ — ତଳେ ଗୋଟିଏ ହଲ୍; ତା'ପରେ ପ୍ରକାଣ୍ଡ ଗ୍ୟାଲେରୀ, ସେଥିରେ ଆମେରିକାର ବଛା ବଛା ଛଅ ସାତ ହଜାର ସୁଶିକ୍ଷିତ ନରନାରୀ ଖୁନ୍ଦାଖୁନ୍ଦି ହୋଇ ବସିଥାନ୍ତି; ପ୍ଲାଟଫର୍ମ

ଉପରେ ପୃଥିବୀର ସବୁ ଜାତିର ପଣ୍ଡିତଙ୍କ ସମାବେଶ । ଆଉ ମୁଁ, ଯେ ଜାତହେବା ଦିନଠାରୁ କେବେହେଲେ ସାଧାରଣଙ୍କ ସମ୍ମୁଖରେ ବକ୍ତୃତା ଦେଇନାହିଁ, ସେ ଏହି ମହାସଭାରେ ବକ୍ତୃତା ଦେବ ! ସଙ୍ଗୀତ, ବକ୍ତୃତା ପ୍ରଭୃତି ନିୟମିତ ରୀତିପୂର୍ବକ ଧୁମ୍‌ଧାମ୍ ସହିତ ସଭା ଆରମ୍ଭ ହେଲା । ସେତେବେଳେ ଜଣଜଣ କରି ପ୍ରତିନିଧିଙ୍କୁ ସଭା ସମକ୍ଷରେ ପରିଚିତ କରି ଦିଆହେଲା; ସେମାନେ ଅଗ୍ରସର ହୋଇ କିଛି କିଛି କହିଲେ; ଅବଶ୍ୟ ମୋ ଛାତି ଧଡ଼ଧଡ଼ ହେଉଥିଲା ଓ ଜିଭ ପ୍ରାୟ ଶୁଖିଗଲା । ମୁଁ ଏତେ ଘାବଡ଼େଇଗଲି ଯେ ପୂର୍ବାହ୍ନରେ ବକ୍ତୃତା କରିବାକୁ ମୋର ଭରସା ପାଇଲା ନାହିଁ । ମଜୁମଦାର ବେଶ୍ କହିଲେ, ଚକ୍ରବର୍ତ୍ତୀ ଆହୁରି ସୁନ୍ଦର କହିଲେ । ଖୁବ୍ କରତାଳି-ଧ୍ୱନି ହେଲା । ସେମାନେ ସମସ୍ତେ ବକ୍ତୃତା ତିଆରି କରି ଆଣିଥିଲେ । ମୁଁ ନିର୍ବୋଧ; ମୁଁ କିଛି ପ୍ରସ୍ତୁତ କରିନାହିଁ । ମୁଁ ଦେବୀ ସରସ୍ୱତୀଙ୍କୁ ପ୍ରଣାମ କରି ଅଗ୍ରସର ହେଲି । ବ୍ୟାରୋଜ ସାହେବ ମୋର ପରିଚୟ କରାଇଦେଲେ । ମୋ ଗୈରିକ ବସନ ଶ୍ରୋତୃବର୍ଗଙ୍କ ଚିତ୍ତ ଆକୃଷ୍ଟ କରିଥିଲା ।''

''ମୁଁ ଆମେରିକାବାସୀଙ୍କୁ ଧନ୍ୟବାଦ ଦେଇ ଏବଂ ଆଉ ପଦେ ଦି'ପଦ କଥା କହି ଗୋଟିଏ କ୍ଷୁଦ୍ର ବକ୍ତୃତା ଦେଲି । ଯେତେବେଳେ ମୁଁ 'ଆମେରିକାବାସୀ ଭଉଣୀ ଓ ଭାଇମାନେ' କହି ସମ୍ବୋଧନ କଲି, ସେତେବେଳେ ଦୁଇମିନିଟ୍ ପର୍ଯ୍ୟନ୍ତ ଏପରି କରତାଳି-ଧ୍ୱନି ହେଲା ଯେ, କାନ ତାବ୍‌ଦା ପଡ଼ିଗଲା । ତା'ପରେ ମୁଁ ବକ୍ତୃତା ଆରମ୍ଭ କଲି । ଯେତେବେଳେ ମୋ ବକ୍ତୃତା ସରିଲା, ମୁଁ ସେତେବେଳେ ହୃଦୟର ଆବେଗରେ ଏକପ୍ରକାର ଅବଶ ହୋଇ ବସିପଡ଼ିଲି । ପରଦିନ ସବୁ ଖବରକାଗଜରେ ବାହାରିଲା, ମୋ ବକ୍ତୃତାଟି ସେଦିନ ସମସ୍ତଙ୍କ ପ୍ରାଣଙ୍କୁ ସ୍ପର୍ଶ କରିଛି; ସୁତରାଂ ସେତେବେଳେ ସମଗ୍ର ଆମେରିକା ମୋତେ ଜାଣିପାରିଲା । ସେହି ଶ୍ରେଷ୍ଠ ଟୀକାକାର ଶ୍ରୀଧର ସ୍ୱାମୀ ସତ କହିଥିଲେ, 'ମୂକଂ କରୋତି ବାଚାଳଂ'—ହେ ଭଗବାନ ! ତୁମେ ଜଣେ ଘୁଙ୍ଗାକୁ ମହାବକ୍ତା କରିପାର । ତାଙ୍କ ନାମ ଜୟଯୁକ୍ତ ହେଉ ! ସେହିଦିନଠାରୁ ମୁଁ ଜଣେ ବିଖ୍ୟାତ ଲୋକ ହୋଇଗଲି । ପୁଣି ଯେଉଁଦିନ ହିନ୍ଦୁଧର୍ମ ସମ୍ବନ୍ଧରେ ମୋ ବକ୍ତୃତା ପାଠକଲି, ସେଦିନ ହଲ୍‌ରେ ଏତେ ଲୋକ ହୋଇଥିଲେ ଯେ, ଆଉ କେଉଁଦିନ ଏତେ ଲୋକ ନ ଥିଲେ ।''

୧୮୯୩ ସେପ୍‌ଟେମ୍ବର ଏଗାର ତାରିଖ ଜଗତର ଇତିହାସରେ ଗୋଟିଏ ସ୍ମରଣୀୟ ଦିବସ ! ପ୍ରାଚ୍ୟ ଓ ପାଶ୍ଚାତ୍ୟର ବିଭିନ୍ନ ଧର୍ମସମ୍ପ୍ରଦାୟର ସର୍ବଶ୍ରେଷ୍ଠ ପ୍ରତିନିଧିଗଣ ଏକତ୍ର ସମ୍ମିଳିତ—ଏହି ବିରାଟ ସଭାରେ ସହସ୍ର ସହସ୍ର ଉନ୍ମୁଖ ନରନାରୀଙ୍କ ସମ୍ମୁଖରେ ସ୍ୱୀୟ ଅଦ୍ୱିତୀୟ ଆଶୀର୍ବାଣୀ ଉଚ୍ଚାରଣ କରିବା ନିମିତ୍ତ ସ୍ୱାମୀ ବିବେକାନନ୍ଦ ଦଣ୍ଡାୟମାନ ହୋଇଥିଲେ ।

## ଶ୍ରୀମତୀ ଆନିବେଶାନ୍ତଙ୍କ ବର୍ଣ୍ଣନା

ବ୍ରହ୍ମବିଦ୍ୟା ସମିତିର ନେତ୍ରୀ ଶ୍ରୀମତୀ ଆନିବେଶାନ୍ତ ୧୯୧୪ ମାର୍ଚ୍ଚ ମାସ 'ବ୍ରହ୍ମବାଦିନ୍' ପତ୍ରିକାରେ ଏହି ଘଟଣାର ଉଲ୍ଲେଖ କରି ଲେଖିଥିଲେ, ''ମହିମାମୟ ମୂର୍ତ୍ତି, ଗୈରିକ ବସନ ଭୂଷିତ, ଚିକାଗୋ ସହରର ଧୂମମଳିନ ଧୂସର ବକ୍ଷରେ ଭାରତୀୟ ସୂର୍ଯ୍ୟଙ୍କ ପରି ଭାସ୍ୱର, ଉନ୍ନତଶିର, ମର୍ମଭେଦୀ ଦୃଷ୍ଟିପୂର୍ଣ୍ଣ ଚକ୍ଷୁ, ଚଞ୍ଚଳ ଓଷ୍ଠାଧର, ମନୋହର ଅଙ୍ଗଭଙ୍ଗୀ—ଧର୍ମମହାସଭାର ପ୍ରତିନିଧିଗଣଙ୍କ ପାଇଁ ନିର୍ଦ୍ଦିଷ୍ଟ କକ୍ଷରେ ସ୍ୱାମୀ ବିବେକାନନ୍ଦ ମୋ ଦୃଷ୍ଟିପଥରେ ପ୍ରଥମେ ଏହିପରି ଭାବରେ ପ୍ରତିଭାତ ହୋଇଥିଲେ । ସେ ସନ୍ନ୍ୟାସୀରୂପେ ଖ୍ୟାତ; କିନ୍ତୁ ତାହା ସମର୍ଥନ-ଯୋଗ୍ୟ ନୁହେଁ; କାରଣ, ପ୍ରଥମ ଦୃଷ୍ଟିରେ ସେ ଯୋଦ୍ଧାପରି ମନେ ହେଉଥିଲେ ଏବଂ ସେ ପ୍ରକୃତରେ ଜଣେ ଯୋଦ୍ଧା-ସନ୍ନ୍ୟାସୀ ଥିଲେ । ଏହି ଭାରତ-ଗୌରବ, ଜାତିର ମୁଖୋଜ୍ଜ୍ୱଳକାରୀ, ସର୍ବାପେକ୍ଷା ପୁରାତନ ଧର୍ମର ପ୍ରତିନିଧି ଉପସ୍ଥିତ ଅନ୍ୟାନ୍ୟ ପ୍ରତିନିଧିବର୍ଗଙ୍କ ମଧ୍ୟରେ ସର୍ବକନିଷ୍ଠ ହେଲେ ମଧ୍ୟ ପ୍ରାଚୀନତମ ଓ ଶ୍ରେଷ୍ଠତମ ସତ୍ୟର ଜୀବନ୍ତଘନ ବିଗ୍ରହସ୍ୱରୂପ ସ୍ୱାମୀଜୀ ଅନ୍ୟାନ୍ୟ କାହାଠାରୁ ନ୍ୟୁନ ନ ଥିଲେ । ଦ୍ରୁତ ଉନ୍ନତିଶୀଳ, ଉଦ୍ଧତ ପାଶ୍ଚାତ୍ୟ ଜଗତରେ ଭାରତମାତା ତାଙ୍କର ଯୋଗ୍ୟତମ ସନ୍ତାନଙ୍କୁ ଦୂତରୂପେ ନିଯୁକ୍ତ କରି ଗୌରବାନ୍ୱିତା ହୋଇଥିଲେ । ଏହି ଦୂତ ତାଙ୍କ ପୁଣ୍ୟ ଜନ୍ମଭୂମିର ଗୌରବ କାହାଣୀ ବିସ୍ମୃତ ନ ହୋଇ ଭାରତର ବାର୍ତ୍ତା ଘୋଷଣା କରିଥିଲେ । ଶକ୍ତିମାନ୍, ଦୃଢ଼ସଂକଳ୍ପ, ପୁରୁଷକାରସମ୍ପନ୍ନ ସ୍ୱାମୀଜୀଙ୍କର ସ୍ୱମତ ସମର୍ଥନ କରିବା ପାଇଁ ଯଥେଷ୍ଟ କ୍ଷମତା ଥିଲା ।''

''ଅପର ଦୃଶ୍ୟ ଆରମ୍ଭ ହେଲା—ସ୍ୱାମୀଜୀ ସଭାମଞ୍ଚ ଉପରେ ଦଣ୍ଡାୟମାନ ହେଲେ । ଅପରାପର ଶକ୍ତିମାନ ପ୍ରତିଭାସମ୍ପନ୍ନ ପ୍ରତିନିଧିଗଣ ଯଦିବା ନିଜ ନିଜ ବାର୍ତ୍ତା ସୁନ୍ଦର ଭାବରେ ବ୍ୟକ୍ତ କରିଥିଲେ, ଏହି ଅପ୍ରତିଦ୍ୱନ୍ଦ୍ୱୀ ପ୍ରାଚ୍ୟ ପ୍ରଚାରକଙ୍କ ଅତୁଳନୀୟ ଆଧ୍ୟାତ୍ମିକ ବାର୍ତ୍ତାର ମହିମା ସମ୍ମୁଖରେ ସେଗୁଡ଼ିକ ଅବନତ ହେବାକୁ ବାଧ୍ୟ ହୋଇଥିଲେ । ତାଙ୍କ କଣ୍ଠୋତ୍ଥିତ ପ୍ରତ୍ୟେକ ଝଙ୍କାରମୟ ଶବ୍ଦ ଆଗ୍ରହାନ୍ୱିତ ମନ୍ତ୍ରମୁଗ୍ଧବତ୍ ବିପୁଳ ଜନସଂଘର ମାନସପଟରେ ଦୃଢ଼ଭାବରେ ଅଙ୍କିତ ହୋଇ ଯାଇଥିଲା ।''

ବ୍ରହ୍ମବିଦ୍ୟା ସଂପ୍ରଦାୟ ଯଦି ବା ସ୍ୱାମୀଜୀଙ୍କୁ ପଦେ ପଦେ ବାଧା ପ୍ରଦାନ କରିଥିଲେ ଏବଂ ସର୍ବ ପ୍ରଯତ୍ନେ ତାଙ୍କ ପ୍ରଚାର କାର୍ଯ୍ୟରେ ବିଘ୍ନ ଘଟାଇବାକୁ ଚେଷ୍ଟା କରିଥିଲେ, ତଥାପି ଏହି ବୈଦ୍ୟୁତିକ ଶକ୍ତିଶାଳୀ ତେଜସ୍ୱୀ ହିନ୍ଦୁ-ସନ୍ନ୍ୟାସୀଙ୍କ ପୂତ ପ୍ରଭାବକୁ ସେମାନେ ଅତିକ୍ରମ କରିପାରି ନ ଥିଲେ; ସେହି ହେତୁ ବିବେକାନନ୍ଦଙ୍କ ମିଥ୍ୟାଗ୍ଲାନି ରଚନା କରି ଥିଓସୋଫିଷ୍ଟମାନେ ଯେଉଁ ଅଗୌରବ ସଞ୍ଚୟ କରିଥିଲେ, ବହୁବର୍ଷ ପରେ ଶ୍ରୀମତୀ ଆନିବେଶାନ୍ତ ତାହା କ୍ଷାଳନ କରିବା ଲାଗି 'ବ୍ରହ୍ମବାଦିନ୍'

ପତ୍ରିକାରେ[୧] "ସ୍ୱାମୀ ବିବେକାନନ୍ଦ ଓ ତାଙ୍କ କାର୍ଯ୍ୟ ସମ୍ବନ୍ଧରେ ମୋର ଧାରଣା" ନାମକ ପ୍ରବନ୍ଧ ଲେଖିଥିଲେ, ଏଥିରେ ସନ୍ଦେହ ନାହିଁ ! ଏ କ୍ଷେତ୍ରରେ ଶ୍ରୀମତୀ ବେଶାନ୍ତ ଯଥେଷ୍ଟ ସତ୍‌ସାହସର ପରିଚୟ ଦେଇଥିଲେ ଏବଂ ସେଥିପାଇଁ ସେ ଧନ୍ୟବାଦର ପାତ୍ରୀ ।

## ଧର୍ମସଭାରେ ବିବେକାନନ୍ଦ

ସାର୍ବଜନୀନ ଭ୍ରାତୃଭାବର ପ୍ରତିଷ୍ଠା ଓ ପ୍ରଚାରକଳ୍ପେ ଅନୁଷ୍ଠିତ ମହାସଭାରେ ପୂର୍ବବର୍ତ୍ତୀ ବକ୍ତାଗଣ ଚିରାଚରିତ ରୀତି ଅନୁସରଣ କରି ଶ୍ରୋତୃବୃନ୍ଦଙ୍କୁ ସମ୍ବୋଧନ କରିଥିଲେ; କିନ୍ତୁ ବିଶ୍ୱମାନବର ମିଳନ-ମନ୍ଦିରର କେନ୍ଦ୍ରସ୍ଥଳରେ ଠିଆ ହୋଇ 'ପୃଥିବୀର ସର୍ବାପେକ୍ଷା ପ୍ରାଚୀନ ସନ୍ନ୍ୟାସୀ ସମ୍ପ୍ରଦାୟର ମୁଖପାତ୍ର' ବିବେକାନନ୍ଦ ହିଁ ପ୍ରଥମେ ମହାସଭାକୁ 'ଭଉଣୀ ଓ ଭାଇମାନେ' ବୋଲି ସମ୍ବୋଧନ କଲେ । ହୃଦୟର ଅନ୍ତସ୍ଥଳରୁ ଉତ୍‌ଥିତ ଏହି ଅକପଟ ଆହ୍ୱାନ ନିଖିଳ ହୃଦୟର ଗୋପନ ପ୍ରୀତି-ଉତ୍ସର ମୁଖାବରଣ ଉନ୍ମୋଚନ କରିଦେଲା ।

ସେହି ହେତୁ ଭାଇ ସମ୍ବୋଧନରେ ପ୍ରୀତି ଉତ୍‌ଫୁଲ୍ଲ ବିଶ୍ୱ ଉଦ୍‌ଗ୍ରୀବ ଓ ଉତ୍କର୍ଣ୍ଣ ହୋଇ ଶୁଣିଲା, ଆଗତପ୍ରାୟ ବିଂଶ ଶତାବ୍ଦୀ ନବଯୁଗର ଆଦର୍ଶ, ସମସ୍ତ ପ୍ରକାର ଧର୍ମଦ୍ୱନ୍ଦ୍ୱ, ସ୍ୱାଧୀନତା ନାମରେ ବ୍ୟକ୍ତିଗତ ସ୍ୱେଚ୍ଛାଚାର, ଜାତୀୟତା ନାମରେ ପରସ୍ପର ଲୋଲୁପତା, ଧର୍ମନାମରେ ପରଧର୍ମ ପ୍ରତି ଅଯଥା ଆକ୍ରମଣ ପରିତ୍ୟାଗ ! ପ୍ରତ୍ୟେକର ଜାତିଗତ, ଧର୍ମଗତ, ସମାଜଗତ ସ୍ୱାତନ୍ତ୍ର୍ୟ ରକ୍ଷାକରି ପରସ୍ପର ଭାବ-ବିନିମୟ କରିବାକୁ ହେବ; ଈର୍ଷା ସଂକୀର୍ଣ୍ଣତା ତ୍ୟାଗ କରି ନିଜ ନିଜ ସାମର୍ଥ୍ୟ ଅନୁଯାୟୀ ଅପରକୁ ଲୌକିକ ଓ ଆଧ୍ୟାତ୍ମିକ ଉନ୍ନତି ନିମିତ୍ତ ସାହାଯ୍ୟ କରିବାକୁ ହେବ ।

ସେପ୍‌ଟେମ୍ବର ଉଣେଇଶ ତାରିଖ ଦିନ ସ୍ୱାମୀଜୀଙ୍କ 'ହିନ୍ଦୁଧର୍ମ' ନାମକ ପ୍ରସିଦ୍ଧ ବକ୍ତୃତା ହୋଇଯିବା ପରେ ଧର୍ମସଭାର ପ୍ରତିନିଧିବର୍ଗଙ୍କ ମଧ୍ୟରେ କେତେଜଣ ଗୋଟିଏ ଗୁଜବ ଉଠାଇଲେ ଯେ, ଏହା ବର୍ତ୍ତମାନ ପ୍ରଚଳିତ ହିନ୍ଦୁଧର୍ମ ନୁହେଁ । ବିବେକାନନ୍ଦ ଯେଉଁ ଭାବରେ ଆତ୍ମାର ମହିମା ଘୋଷଣା କଲେ, ସେ ସମ୍ବନ୍ଧରେ ଅଧିକାଂଶ ହିନ୍ଦୁ ଅଜ୍ଞ । ସୂକ୍ଷ୍ମ ତର୍କଯୁକ୍ତି ଦେଇ ସେ ମୂର୍ତ୍ତିପୂଜାର ଦାର୍ଶନିକ ବ୍ୟାଖ୍ୟା କରି ପାଶ୍ଚାତ୍ୟ ଜଗତ୍ ଆଖିରେ ଧୂଳି ପକାଇବାକୁ ଉଦ୍ୟତ ହୋଇଛନ୍ତି; କାରଣ ଜଡ଼ୋପାସକ ପୌତ୍ତଳିକ ହିନ୍ଦୁମାନଙ୍କର ଏପରି ବ୍ୟାଖ୍ୟା ସ୍ୱପ୍ନରେ ବି ଅଗୋଚର—ବିଶେଷତଃ ବିବେକାନନ୍ଦ ଅତିନୀଚ ବଂଶୋଦ୍‌ଭବ ଏବଂ ଜାତିଚ୍ୟୁତ; ସମାଜଚ୍ୟୁତ ନଗଣ୍ୟ ବ୍ୟକ୍ତି; ଧର୍ମାଲୋଚନା ଏହାଙ୍କ ପକ୍ଷରେ ଅନଧିକାର ଚର୍ଚ୍ଚା ମାତ୍ର—ଇତ୍ୟାଦି ବିବିଧ ନିନ୍ଦା ପ୍ରଚାର କରି ତାଙ୍କର ଜଣେ ସ୍ୱଦେଶବାସୀ ରେଭରେଣ୍ଡ ଧର୍ମପ୍ରଚାରକ, ଧର୍ମସଭା କର୍ତ୍ତୃପକ୍ଷଙ୍କୁ ଉକ୍ତ ଅଶାନ୍ତ,

---

୧. My impressions of Swami Vivekananda and his work.

ଚରିତ୍ରହୀନ ବାଳକକୁ ସଭାରୁ ବାହାର କରି ଦେବାଲାଗି ପରାମର୍ଶ ଦେଲେ । ଏହି ସମୟୋଚିତ ପରାମର୍ଶକୁ ଧର୍ମସଭାର ସୁବିବେଚକ କର୍ତ୍ତୃପକ୍ଷ ଅବଶ୍ୟ ସହସା ବିଶ୍ୱାସ କରିପାରିଲେ ନାହିଁ; କିନ୍ତୁ ସେମାନେ ସ୍ୱାମୀଜୀଙ୍କୁ ତାଙ୍କ ବକ୍ତୃତା ସମ୍ବନ୍ଧରେ ପ୍ରତିବାଦୀ ପକ୍ଷରୁ ଉତ୍‌ଥାପିତ ଆପତ୍ତିଗୁଡ଼ିକୁ ଖଣ୍ଡନ କରିବା ଲାଗି ଆହ୍ୱାନ କଲେ । ବେଦାନ୍ତ ଦର୍ଶନ ସହିତ ବର୍ତ୍ତମାନ ପ୍ରଚଳିତ ହିନ୍ଦୁଧର୍ମର କି ସମ୍ବନ୍ଧ ଅଛି, ତତ୍‌ସମ୍ବନ୍ଧୀୟ ଆଲୋଚନା ସଭାରେ ଆଚାର୍ଯ୍ୟଦେବ ସେପ୍‌ଟେମ୍ବର ବାଇଶି ତାରିଖ ଦିନ ଗୋଟିଏ ହୃଦୟଗ୍ରାହୀ ଭାଷଣ ଦେଲେ । ଏହିଦିନ ଅପରାହ୍ଣରେ ଭାରତର ବର୍ତ୍ତମାନ ଧର୍ମସମୂହର ଆଲୋଚନା ସଭାରେ ସେ ପ୍ରତିବାଦୀଗଣଙ୍କଦ୍ୱାରା ଉତ୍‌ଥାପିତ ବିଦ୍ୱେଷପୂର୍ଣ୍ଣ ଯୁକ୍ତିଗୁଡ଼ିକୁ ଦୃଢ଼ତାର ସହିତ ଖଣ୍ଡନ କରି ହିନ୍ଦୁଧର୍ମର ଶ୍ରେଷ୍ଠତା ଓ ବିଶାଳତା ପ୍ରତିପନ୍ନ କଲେ । ପଚିଶ ତାରିଖରେ ଯେତେବେଳେ ସେ 'ହିନ୍ଦୁଧର୍ମର ସାର' ନାମକ ବକ୍ତୃତା ଦେଉ ଦେଉ ସହସା ନୀରବ ହୋଇ ସମବେତ ଜନସଂଘକୁ ଲକ୍ଷ୍ୟ କରି ପଚାରିଲେ, ଏହି ସଭାରେ ଯେଉଁମାନେ ହିନ୍ଦୁଧର୍ମ ଓ ଶାସ୍ତ୍ର ସହିତ ପ୍ରତ୍ୟକ୍ଷ ଭାବରେ ପରିଚିତ ସେମାନେ ହାତ ଟେକନ୍ତୁ—ପ୍ରାୟ ସାତହଜାର ବ୍ୟକ୍ତିଙ୍କ ମଧ୍ୟରୁ ମାତ୍ର ତିନି ଚାରିଗୋଟି ହାତ ଟେକା ହେଲା । 'ଯୋଦ୍ଧା ସନ୍ନ୍ୟାସୀ' ଗୈରିକ ଉଷ୍ଣୀଷ-ମଣ୍ଡିତ ଶିର ଉପରକୁ ଟେକି ଦୃଢ଼ ସମ୍ବଦ୍ଧ ବାହୁଦ୍ୱୟ ବକ୍ଷୋପରେ ସ୍ଥାପନା କରି ଭର୍ତ୍ସନା-ଦୃପ୍ତ କଣ୍ଠରେ କହି ଉଠିଲେ, "ତେବେ ବି ତୁମେ ଆମ ଧର୍ମକୁ ସମାଲୋଚନା କରିବାର ସ୍ପର୍ଦ୍ଧା ରଖିଛ !" ସମଗ୍ର ସଭା ନୀରବ ରହିଲା । ଈଷତ୍ ହସି ସ୍ୱାମୀଜୀ ପୁଣି ବକ୍ତୃତା ଆରମ୍ଭ କଲେ ।

ଅବଶେଷରେ ସେପ୍‌ଟେମ୍ବର ସତେଇଶ ତାରିଖ ଦିନ ଧର୍ମସଭାର ଶେଷ ଅଧିବେଶନରେ ଯୁଗଧର୍ମ ପ୍ରବର୍ତ୍ତକ ଆଚାର୍ଯ୍ୟ ପୃଥିବୀର ସୁସଭ୍ୟ ଜାତିମାନଙ୍କ ନିକଟରେ ବଜ୍ରରବରେ ଘୋଷଣା କଲେ, ଯେଉଁମାନେ ଏହି ସଭାର କାର୍ଯ୍ୟପ୍ରଣାଳୀ ପର୍ଯ୍ୟବେକ୍ଷଣ କରି ସୁଦ୍ଧା କୌଣସି ଗୋଟିଏ ଧର୍ମ କାଳେ ଜଗତ୍‌ର ଏକମାତ୍ର ଧର୍ମ ହୋଇଯିବ, ଅଥବା କୌଣସି ଧର୍ମବିଶେଷ ଈଶ୍ୱରଲାଭର ଏକମାତ୍ର ପନ୍ଥା ଏବଂ ଅନ୍ୟାନ୍ୟ ଧର୍ମଗୁଡ଼ିକ ଭ୍ରାନ୍ତ—ଏପରି ଧାରଣା ହୃଦୟରେ ପୋଷଣ କରିବେ, ସେମାନେ ବାସ୍ତବିକ୍ କରୁଣାର ପାତ୍ର । ସ୍ୱୀୟ ଗୁରୁ ଶ୍ରୀରାମକୃଷ୍ଣ ପରମହଂସଙ୍କ ସମନ୍ୱୟବାର୍ତ୍ତା ଘୋଷଣା କରି ସେ ଭବିଷ୍ୟତର ସାର୍ବଭୌମିକ ଆଦର୍ଶ ସମ୍ବନ୍ଧରେ କହିଲେ, "ପ୍ରତ୍ୟେକ ଜାତି ବା ପ୍ରତ୍ୟେକ ଧର୍ମ ଅନ୍ୟ ଜାତି ବା ଅନ୍ୟ ଧର୍ମ ସହିତ ପରସ୍ପର ଭାବ ବିନିମୟ କରିବ, ଅଥଚ ପ୍ରତ୍ୟେକ ନିଜ ନିଜ ସ୍ୱାତନ୍ତ୍ର୍ୟ ରକ୍ଷା କରିବେ ଏବଂ ପ୍ରତ୍ୟେକେ ହିଁ ନିଜ ଅନ୍ତର୍ନିହିତ ଶକ୍ତି ଅନୁପାତରେ ଉନ୍ନତି ପଥରେ ଅଗ୍ରସର ହେବେ । ଆଜିଠାରୁ ସବୁ ଧର୍ମ-ପତାକାରେ ଲେଖି ଦିଅ, 'ଯୁଦ୍ଧ ନୁହେଁ, ସାହାଯ୍ୟ; ଧ୍ୱଂସ ନୁହେଁ, ଆତ୍ମସ୍ଥ କରି ନେବା; ଭେଦ-ଦ୍ୱନ୍ଦ୍ୱ ନୁହେଁ, ସାମଞ୍ଜସ୍ୟ ଓ ଶାନ୍ତି' ।"

ଖ୍ରୀଷ୍ଟଧର୍ମ ଓ ପାଶ୍ଚାତ୍ୟ ସଭ୍ୟତା ଭାରତର ଧର୍ମ ଓ ସମାଜକୁ ଯଥେଷ୍ଟ ଉନ୍ନତ ଓ ମାର୍ଜିତ କରିଛି ବୋଲି ଚାଟୁବାକ୍ୟସୁଲଭ ଦୁର୍ବଳତା ସାହାଯ୍ୟରେ କୃତଜ୍ଞତା ପ୍ରକାଶ କରି 'କରତାଳି' ଲାଭ କରିବା ଆଶାରେ ବିବେକାନନ୍ଦ ପାଶ୍ଚାତ୍ୟ ଦେଶକୁ ଯାଇ ନ ଥିଲେ । ସେ ଯାଇଥିଲେ, ଶିକ୍ଷାଗୁରୁ ରୂପେ, ଅଦ୍ୱୈତବାଦର ମଣିମୟ ଦୀପ ନେଇ ଭୋଗାନ୍ଧକାରାଚ୍ଛନ୍ନ ପାଶ୍ଚାତ୍ୟ ଜାତିକୁ ମୁକ୍ତିପଥ ଦେଖାଇବାକୁ ! ନିଜ ଇଚ୍ଛାରେ ନୁହେଁ, ଭଗବାନଙ୍କ ମଙ୍ଗଳ-ଇଚ୍ଛାର ଦାସ ସ୍ୱରୂପ ! ତାଙ୍କ ବାର୍ତ୍ତା ଜଗତ୍ ଶୁଣିବାକୁ ବାଧ୍ୟ । ଯେଉଁମାନେ ନୀଚ ଈର୍ଷାର ବଶବର୍ତ୍ତୀ ହୋଇ ଏହି ମହତ୍ କାର୍ଯ୍ୟରେ ବିଘ୍ନ ଉତ୍ପାଦନ କରିବାକୁ ଚେଷ୍ଟା କରିଥିଲେ, ସେମାନେ ସ୍ୱଦେଶୀ ହୁଅନ୍ତୁ ବା ବିଦେଶୀ ହୁଅନ୍ତୁ କିଛି ଯାଏ ଆସେ ନାହିଁ—ସେମାନଙ୍କ ଅଯାଚିତ ପରାମର୍ଶ ଉଦାର-ହୃଦୟ ମାର୍କିନ ଜାତି ଗ୍ରହଣ କଲା ନାହିଁ; ସେମାନେ ଆଗ୍ରହ ସହକାରେ ନବଯୁଗର ଆଚାର୍ଯ୍ୟଙ୍କୁ ଆଦର ଓ ସମ୍ଭ୍ରମରେ ବରଣ କରିନେଲେ । ଶତାବ୍ଦୀରୁ ଶତାବ୍ଦୀ ପର୍ଯ୍ୟନ୍ତ ସେମାନଙ୍କୁ ନରକ ଭୀତି, ଅତ୍ୟୁତ୍କଟ ପାପଭୀତି ଓ ସୁଖମୟ ସ୍ୱର୍ଗଲାଭର ପ୍ରଲୋଭନ ଦେଖାଇ ଦିଆଯାଉଛି—ଯୁଗ ଯୁଗ ଧରି ସେମାନେ ଶୁଣି ଆସିଛନ୍ତି ଯେ ସେମାନେ ପାପୀ, ଅପବିତ୍ର, ଅଧମ ! ସହସା ସେମାନେ ଶୁଣିଲେ, ସୁଦୂର ପ୍ରାଚ୍ୟ ଦେଶରୁ ସମାଗତ ଆଚାର୍ଯ୍ୟ ସେମାନଙ୍କୁ ସମ୍ବୋଧନ କରି ଅଭୟ ଦେଇ କହୁଛନ୍ତି, ''ହିନ୍ଦୁଗଣ ତୁମ୍ଭମାନଙ୍କୁ ପାପୀ ବୋଲି ଅସ୍ୱୀକାର କରନ୍ତି । ପାପୀ ? ତୁମ୍ଭେମାନେ ଅମୃତର ସନ୍ତାନ ! ଏହି ପୃଥିବୀରେ ପାପ ବୋଲି କିଛି ନାହିଁ—ଯଦି ଥାଏ, ତେବେ ମନୁଷ୍ୟକୁ ପାପୀ ବୋଲି କହିବା ଗୋଟିଏ ଘୋରତର ପାପ ! ତୁମେ ସର୍ବଶକ୍ତିମାନ ଆତ୍ମା—ଶୁଦ୍ଧ, ମୁକ୍ତ, ମହାନ୍ ! ଉଠ, ଜାଗ—ନିଜ ସ୍ୱରୂପ ବିକାଶ କରିବାକୁ ଚେଷ୍ଟା କର ।''

## ପ୍ରଚାରକାର୍ଯ୍ୟ—ସାଧାରଣରେ ଓ ସଂବାଦପତ୍ରରେ ଆଲୋଚନା

ମାର୍କିନ୍ ଜାତି ବିବେକାନନ୍ଦଙ୍କ ପ୍ରଶଂସାରେ ଶତମୁଖ ହୋଇ ଉଠିଲେ । ଧର୍ମସଭା ଅଧିବେଶନରେ ପ୍ରଥମ ଅଭିଭାଷଣ ପରଠାରୁ ଶତ ଶତ ବ୍ୟକ୍ତି ସ୍ୱାମୀଜୀଙ୍କ ସହିତ ପରିଚିତ ହେବା ପାଇଁ ବ୍ୟଗ୍ର ହୋଇ ଉଠିଲେ । ଅପରିଚିତ ସନ୍ନ୍ୟାସୀଙ୍କ ନାମ ସମଗ୍ର ସଭ୍ୟ ଜଗତରେ ବିଦ୍ୟୁତ୍ ପ୍ରବାହ ପରି ବ୍ୟାପିଗଲା । ସଂବାଦପତ୍ରଗୁଡ଼ିକ ଦୁନ୍ଦୁଭି-ନିନାଦରେ ଧର୍ମ-ମହାସଭାରେ ତାଙ୍କ ବିଜୟ ଘୋଷଣା କରିବାରେ ଲାଗିଲେ । 'ନିଉୟର୍କ ହେରାଲ୍ଡ' ନାମକ ସୁପ୍ରସିଦ୍ଧ ପତ୍ରିକା ତାଙ୍କ ସମ୍ବନ୍ଧରେ ଆଲୋଚନା କରି ଲେଖିଥିଲେ, ଚିକାଗୋ ଧର୍ମମହାସଭାରେ ବିବେକାନନ୍ଦ ହିଁ ଶ୍ରେଷ୍ଠତମ ବିଗ୍ରହ । ତାଙ୍କ ବକ୍ତୃତା ଶ୍ରବଣ କଲେ ମନେହୁଏ, ଧର୍ମମାର୍ଗରେ ଏହି ପରି ସମୁନ୍ନତ ଜାତି ପାଖକୁ ଆମ ଧର୍ମପ୍ରଚାରକଙ୍କୁ ପ୍ରେରଣ କରିବା ନିତାନ୍ତ ନିର୍ବୋଧତା ।

'ଦି ପ୍ରେସ୍ ଅଫ୍ ଆମେରିକା' ଲେଖିଲେ

"ହିନ୍ଦୁଦର୍ଶନ ଓ ବିଜ୍ଞାନରେ ସୁପଣ୍ଡିତ, ସମବେତ ପାରିଷଦଗଣଙ୍କ ମଧ୍ୟରେ ଅଗ୍ରଗଣ୍ୟ ପ୍ରଚାରକ ସ୍ୱାମୀ ବିବେକାନନ୍ଦ — ତାଙ୍କ ଅଭିଭାଷଣଦ୍ୱାରା ବିରାଟ ସଭାକୁ ଯେପରି କି ସମ୍ମୋହିନୀ ଶକ୍ତି ବଳରେ ମୋହିତ କରି ରଖିଲେ । ସେତେବେଳେ ପ୍ରତ୍ୟେକ ଖ୍ରିସ୍ତାନ୍ ସମ୍ପ୍ରଦାୟର ଅନ୍ତର୍ଗତ ଧର୍ମଯାଜକ ଏବଂ ପ୍ରଚାରକଗଣ ସମସ୍ତେ ଉପସ୍ଥିତ ଥିଲେ; କିନ୍ତୁ ସ୍ୱାମୀଜୀଙ୍କ ବାଗ୍ମିତାର ବାତ୍ୟାତରଙ୍ଗରେ ସେମାନଙ୍କ ବକ୍ତବ୍ୟଗୁଡ଼ିକ ଭାସିଗଲା । ତାଙ୍କ ଜ୍ଞାନ-ପ୍ରଦୀପ୍ତ ସୌମ୍ୟ-ମୁଖମଣ୍ଡଳ-ନିଃସୃତ ବକ୍ତୃତାପ୍ରବାହ ଇଂରାଜୀ ଭାଷା ମାଧୁରୀରେ ସୁପରିସ୍ଫୁଟ ହୋଇ ତାଙ୍କ ଚିରାଚରିତ ଧର୍ମବିଶ୍ୱାସଗୁଡ଼ିକ ଶ୍ରୋତାମଣ୍ଡଳୀଙ୍କ ହୃଦୟରେ ଗଭୀର ଭାବେ ଅଙ୍କିତ କରି ଦେଇଗଲା ।"

୧୮୯୪ ଅପ୍ରେଲ ପାଞ୍ଚ ତାରିଖରେ Boston Evening Transcript ମନ୍ତବ୍ୟ ପ୍ରକାଶ କରିଥିଲେ, "He is really a great man, noble, simple, sincere and learned beyond comparison with most of our scholars." ଅର୍ଥାତ୍ ସେ ପ୍ରକୃତରେ ଜଣେ ମହାପୁରୁଷ, ଉଦାର, ସରଳ, ଉତ୍ସାହୀ ଓ ବିଦ୍ୱାନ୍; ଆମ ପଣ୍ଡିତମାନଙ୍କ ମଧ୍ୟରୁ ଅନେକେ ତାଙ୍କ ସଙ୍ଗେ 'ତୁଳନୀୟ' ହୋଇପାରିବେ ନାହିଁ ।

ମହାବୋଧି ସୋସାଇଟିର ସାଧାରଣ ସମ୍ପାଦକ ଶ୍ରୀଯୁକ୍ତ ଧର୍ମପାଳ ୧୮୯୪ ଅପ୍ରେଲ ବାର ତାରିଖର 'ଇଣ୍ଡିଆନ୍ ମିରର୍' ପତ୍ରିକାରେ ଲେଖିଥିଲେ — "ସ୍ୱାମୀ ବିବେକାନନ୍ଦଙ୍କର ସୁବୃହତ୍ ପ୍ରତିକୃତିଗୁଡ଼ିକ ଚିକାଗୋର ରାସ୍ତାଘାଟରେ ଲଟକା ହୋଇଛି; ତା ତଳେ 'ସନ୍ନ୍ୟାସୀ ବିବେକାନନ୍ଦ' ଲିଖିତ ହୋଇଛି । ହଜାର ହଜାର ବିଭିନ୍ନ ସମ୍ପ୍ରଦାୟର ପଥିକ ଏହି ପ୍ରତିକୃତିଗୁଡ଼ିକ ପ୍ରତି ଭକ୍ତିଭରେ ସମ୍ମାନ ପ୍ରଦର୍ଶନ କରି ଚାଲିଯାଉଛନ୍ତି ।"

ଚିକାଗୋ ମହାମେଳାର ଅଙ୍ଗୀୟ ବିଜ୍ଞାନ ସଭାର ସଭାପତି ଶ୍ରୀଯୁକ୍ତ ସ୍ନେଲ ଲଣ୍ଡନର ସୁପ୍ରସିଦ୍ଧ 'ପାଇଓନିୟର' ପତ୍ରିକାରେ ଉକ୍ତ ମହାମେଳା ସମ୍ପର୍କରେ ଯେଉଁ ବିବରଣୀ ପ୍ରଦାନ କରିଥିଲେ, ତାହାର ନିମ୍ନଲିଖିତ କିୟଦଂଶ ପାଠକଲେ ପାଠକବର୍ଗ ବୁଝିପାରିବେ, ଆଚାର୍ଯ୍ୟଦେବ ପାଶ୍ଚାତ୍ୟ ସମାଜ ଓ ଧର୍ମ ଉପରେ କି ଅସାଧାରଣ ପ୍ରଭାବ ବିସ୍ତାର କରିଥିଲେ ।

"ହିନ୍ଦୁଧର୍ମ ଏହି ମହାସଭା ଏବଂ ଜନସାଧାରଣଙ୍କ ଉପରେ ଯେଉଁ ପ୍ରଭାବ ବିସ୍ତାର କରିଛି, ଅନ୍ୟ କୌଣସି ଧର୍ମସଂଘ ସେପରି କରିବାକୁ ସମର୍ଥ ହୋଇନାହିଁ । ହିନ୍ଦୁଧର୍ମର ଏକମାତ୍ର ଆଦର୍ଶ ପ୍ରତିନିଧି ସ୍ୱାମୀ ବିବେକାନନ୍ଦ ହିଁ ଏହି ମହାସଭାର ଅବିସମ୍ବାଦିତ ଭାବରେ ସର୍ବାପେକ୍ଷା ଲୋକପ୍ରିୟ ଓ ପ୍ରଭାବଶାଳୀ ବ୍ୟକ୍ତି । ସେ ଏହି ଧର୍ମମହାମଣ୍ଡଳୀର ବକ୍ତୃତାମଞ୍ଚରେ ଏବଂ ବିଜ୍ଞାନ ଶାଖା ସଭାରେ ପ୍ରାୟଶଃ ବକ୍ତୃତା କରିଛନ୍ତି; ଏହି ବିଜ୍ଞାନ ସଭାରେ ସଭାପତି ରୂପେ ବରିତ ହୋଇ ମୁଁ ସମ୍ମାନୀତ ହୋଇଛି । ଖ୍ରୀଷ୍ଟିଆନ ବା ଅଣ-ଖ୍ରୀଷ୍ଟିଆନ କୌଣସି ବକ୍ତା କୌଣସି ସମୟରେ

ହିଁ ଏପରି ଉତ୍ସାହ ସହିତ ସମାଦର ପ୍ରାପ୍ତ ହୋଇନାହାନ୍ତି । ସେ ଯେଉଁଠାକୁ ଯାଉଥାନ୍ତି, ସେଠି ଜନତା ବୃଦ୍ଧି ପାଉଥାଏ ଏବଂ ଲୋକେ ତାଙ୍କର ପ୍ରତ୍ୟେକ କଥା ଶୁଣିବା ଲାଗି ଆଗ୍ରହରେ ଉଦ୍‌ଗ୍ରୀବ ହୋଇ ରହିଥାନ୍ତି । ମହାସଭା ପରଠାରୁ ସେ ଯୁକ୍ତରାଷ୍ଟ୍ରର ପ୍ରଧାନ ପ୍ରଧାନ ନଗରମାନଙ୍କରେ ବିପୁଳ ଜନମଣ୍ଡଳୀ ସମ୍ମୁଖରେ ବକ୍ତୃତା ଦେଉଛନ୍ତି ଏବଂ ସର୍ବତ୍ର ଅଶେଷ ପ୍ରକାରେ ଅଭିନନ୍ଦିତ ହେଉଛନ୍ତି । ସେ ଖ୍ରୀଷ୍ଟିଆନ ଧର୍ମମନ୍ଦିରର ବେଦିଉପରୁ ବକ୍ତୃତା ଦେବାଲାଗି ଅନେକଥର ଆହୂତ ହୋଇଛନ୍ତି । ଯେଉଁମାନେ ତାଙ୍କ ବକ୍ତୃତା ଶୁଣିଛନ୍ତି, ବିଶେଷତଃ ଯେଉଁମାନେ ତାଙ୍କ ସହିତ ବ୍ୟକ୍ତିଗତ ଭାବରେ ପରିଚିତ, ସେମାନେ ସର୍ବଦା ମୁକ୍ତକଣ୍ଠରେ ତାଙ୍କର ପ୍ରଶଂସା କରିଛନ୍ତି । ଅତ୍ୟନ୍ତ ଧର୍ମାନ୍ଧ ଖ୍ରୀଷ୍ଟିଆନ ମଧ୍ୟ ତାଙ୍କ ସମ୍ବନ୍ଧରେ କହିଛନ୍ତି, ''ସ୍ୱାମୀଜୀ ମଣିଷଙ୍କ ଭିତରେ 'ଅତି-ମାନବ' ।''

''ଏହି ଦେଶରେ ହିନ୍ଦୁତ୍ୱର କାର୍ଯ୍ୟକାରୀ ଶକ୍ତିଗୁଡ଼ିକ ସ୍ୱାମୀ ବିବେକାନନ୍ଦଙ୍କ ପରିଶ୍ରମ ଫଳରେ ବିଶେଷ ଭାବରେ ପ୍ରେରଣା ଲାଭ କରିଛନ୍ତି । ଏହି ଦେଶରେ ବର୍ତ୍ତମାନ ପ୍ରଚଳିତ ଇଂରେଜୀଭାବାପନ୍ନ, ଶକ୍ତିହୀନ, ଅସାର, ଅପ୍ରକୃତ, ହିନ୍ଦୁଧର୍ମର ପ୍ରତିବାଦ ସ୍ୱରୂପ—ପ୍ରକୃତ ହିନ୍ଦୁଧର୍ମର ଏପରି ବିଶ୍ୱସ୍ତ କୌଣସି ପ୍ରତିନିଧି ଇତିପୂର୍ବେ ଆମେରିକାର ତତ୍ତ୍ୱାନୁସନ୍ଧିତ୍ସୁମାନଙ୍କ ନିକଟରେ ଉପସ୍ଥିତ ହୋଇ ନ ଥିଲେ । ସାମୟିକ ଉତ୍ତେଜନାରେ ନୁହେଁ—ବାସ୍ତବିକ ଆମେରିକାବାସୀ ନିଃସନ୍ଦେହ ରୂପେ ସତକୁ ସତ ସ୍ୱାମୀଜୀଙ୍କ ପ୍ରସ୍ଥାନ ପରେ ତାଙ୍କ ପୁନରାଗମନ ପ୍ରତ୍ୟାଶାରେ ଅଥବା ଶଙ୍କର ମତାବଲମ୍ବୀ ତାଙ୍କ ସହଯୋଗୀମାନଙ୍କ ମଧ୍ୟରୁ କାହାରି ଆଗମନକୁ ସାଗ୍ରହ ପ୍ରତୀକ୍ଷା କରିବେ । ପ୍ରୋଟେଷ୍ଟାଣ୍ଟ ଖ୍ରୀଷ୍ଟାନ ସମ୍ପ୍ରଦାୟ ମଧ୍ୟରେ ଯେଉଁମାନେ ଅତ୍ୟନ୍ତ ରକ୍ଷଣଶୀଳ, ସେମାନଙ୍କ ମଧ୍ୟରୁ ଅଳ୍ପ, ଅତି ଅଳ୍ପସଂଖ୍ୟକ ବ୍ୟକ୍ତି ସ୍ୱାମୀଜୀଙ୍କ ସଫଳତାରେ ଈର୍ଷାପରାୟଣ ହୋଇ ତାଙ୍କ ସମ୍ବନ୍ଧରେ ବିରୁଦ୍ଧ ମନ୍ତବ୍ୟ ପ୍ରକାଶ କରିଛନ୍ତି; କିନ୍ତୁ ଏ'ପ୍ରକାର ମନ୍ତବ୍ୟ ଅସ୍ୱାଭାବିକ ଏବଂ ଅପ୍ରଚଳିତ ଧର୍ମମତାଲମ୍ବୀମାନଙ୍କ ନିକଟରୁ ହିଁ ଆସିଛି; କିନ୍ତୁ ଭାରତ ଭୂମିର ଗୈରିକବସନଧାରୀ ସନ୍ନ୍ୟାସୀଙ୍କ ସାର୍ବଜନୀନ ମହାନୁଭବତା ଓ ସଦାଶୟତାଗୁଣ ଏବଂ ଜ୍ଞାନଗୌରବ ଓ ବ୍ୟକ୍ତିଗତ ଚରିତ୍ରମାଧୁର୍ଯ୍ୟ ହେତୁ ଏ' ଦେଶରୁ ସାମ୍ପ୍ରଦାୟିକ ବିଦ୍ୱେଷ ଓ ହିଂସା ତିରୋହିତ ହୋଇଛି ।

''ଭାରତବର୍ଷ ସ୍ୱାମୀଜୀଙ୍କୁ ପ୍ରେରଣ କରିଛି—ସେଥିପାଇଁ ଆମେରିକା ଧନ୍ୟବାଦ ଦେଉଛି । ବିଶ୍ୱଜନୀନ ଭ୍ରାତୃତ୍ୱ ଓ ହୃଦୟ ମନର ଉଦାରତା ଯେଉଁମାନେ ଏବେ ମଧ୍ୟ ଶିକ୍ଷା କରି ନାହାନ୍ତି, ଆମେରିକାର ସେହି ସନ୍ତାନମାନଙ୍କୁ ସ୍ୱୀୟ ଆଦର୍ଶ ପ୍ରଦର୍ଶନ କରି ଶିକ୍ଷା ପ୍ରଦାନ କରିବା, ଯଦି ସମ୍ଭବପର ହୁଏ, ତେବେ ସ୍ୱାମୀଜୀଙ୍କ ପାରି ଆଉ କେତେଜଣ ଆଦର୍ଶ ପୁରୁଷଙ୍କୁ ପଠାଇବା ନିମିତ୍ତ ଆମେରିକା ପ୍ରାର୍ଥନା ଜଣାଇଛି ଏବଂ ଯେଉଁମାନେ ସେମାନଙ୍କ ଉପଦେଶଦ୍ୱାରା ସବୁ ପ୍ରାଣୀଙ୍କଠାରେ ଭଗବାନଙ୍କ ସ୍ୱରୂପ ଉପଲବ୍ଧି କରିବାକୁ ସମର୍ଥ ହୋଇନାହାନ୍ତି ଏବଂ ସର୍ବଭୂତାଶ୍ରୟ

ଅଦ୍ୱିତୀୟ ବ୍ରହ୍ମସତ୍ତା ଅନୁଭବ କରିବାକୁ ଶିଖି ନାହାନ୍ତି, ସେମାନଙ୍କୁ ସମୁନ୍ନତ କରିବା ନିମିତ୍ତ ଆଉ କେତେଜଣ ଆଦର୍ଶ ପୁରୁଷଙ୍କ ପ୍ରୟୋଜନ ଆମେରିକା ବୋଧ କରୁଛି ।''

ଏହିପରି ମାସ ମାସ ଧରି ଆଚାର୍ଯ୍ୟଦେବଙ୍କ ପବିତ୍ର ଚରିତ୍ର, ଅଦ୍ଭୁତ ପ୍ରତିଭା ଏବଂ ତାଙ୍କ ପ୍ରଚାରିତ ବାର୍ତ୍ତା ସମ୍ବନ୍ଧରେ ଆମେରିକାର ସମ୍ବାଦପତ୍ରଗୁଡ଼ିକରେ ଯୁକ୍ତିପୂର୍ଣ୍ଣ ଆଲୋଚନା ପ୍ରକାଶିତ ହେବାକୁ ଲାଗିଲା । ସମ୍ବାଦପତ୍ରରେ ପ୍ରତିନିଧିଗଣ, ଖ୍ୟାତନାମା ଅଧ୍ୟାପକବୃନ୍ଦ, ଦାର୍ଶନିକ, ବ୍ରହ୍ମବାଦୀ ଏବଂ ସୁଶିକ୍ଷିତ ପଣ୍ଡିତମଣ୍ଡଳୀ ଓ ସତ୍ୟାନ୍ୱେଷୀ ବ୍ୟକ୍ତିବୃନ୍ଦ ତାଙ୍କ ସହିତ ଦେଖା କରିବା ଲାଗି ଦଳ ଦଳ ହୋଇ ଆସୁଥିଲେ । ସେ ରାସ୍ତାକୁ ବାହାରିଲେ ହିଁ ସହସ୍ର ସହସ୍ର ବ୍ୟକ୍ତି କେବଳ ତାଙ୍କୁ ଦେଖିବା ନିମିତ୍ତ ଉନ୍ମତ୍ତ ହୋଇ ଉଠୁଥିଲେ । ବସ୍ତୁତଃ ଯେଉଁ ସମ୍ମାନର ଶତାଂଶରୁ ଏକାଂଶ ମଧ୍ୟ ଜଣେ ସାଧାରଣ ଲୋକର ମସ୍ତିଷ୍କବିକୃତି ଆଣିପାରେ, ସେ ଅବିଚଳିତ ହୃଦୟରେ ତାହା ସହ୍ୟ କରିନେଲେ । ଏହି ଜଗତ୍‌ବ୍ୟାପୀ ଖ୍ୟାତିକୁ ସେ ନିଜସ୍ୱ ବୋଲି ଦିନେ ହେଲେ ଗ୍ରହଣ କରିନାହାନ୍ତି; ବରଂ ଯେଉଁ ସଭ୍ୟତା ଓ ଶିକ୍ଷାଦୀକ୍ଷା କ୍ରୋଡ଼ରେ ତାଙ୍କର ଜନ୍ମ, ସେ ସେହି ସନାତନ ଧର୍ମର ମହିମାକୁ ହିଁ ଏହି ସମସ୍ତ ସମ୍ମାନ, ଖ୍ୟାତି ଓ ଯଶ ମଧ୍ୟରେ ନିବିଡ଼ତର ଭାବରେ ଅନୁଭବ କରିଛନ୍ତି । ସେ ବୁଝିଥିଲେ, କାଳର ସ୍ରୋତ ଫେରିଛି । ସଭ୍ୟ ଜଗତ ନିକଟକୁ ପୁନରାୟ ଅମୃତର ବାର୍ତ୍ତା ବହନ କରିବା ନିମିତ୍ତ ଭାରତ ପ୍ରସ୍ତୁତ ହୋଇଛି ଏବଂ ତାହାର ଫଳସ୍ୱରୂପ ତାଙ୍କୁ ଏ ଦେଶକୁ ଆସିବାକୁ ପଡ଼ିଛି ! ସେ ନିଜକୁ ଯନ୍ତ୍ରସ୍ୱରୂପ ମନେ କରୁଥିଲେ, ତେଣୁ ସାଧାରଣ ଲୋକଙ୍କ ନିନ୍ଦା ବା ସ୍ତୁତି ପ୍ରତି ଦୃଷ୍ଟିପାତ ନ କରି ସେ ନିଃସଙ୍କୋଚରେ ନିଜ ବାର୍ତ୍ତା ବ୍ୟକ୍ତ କରୁଥିଲେ । ସେହି ହେତୁ ସେ ସମୟେ ସମୟେ ଭାବାବେଗରେ ଦୃଢ଼ ଭାବରେ କହୁଥିଲେ, ''ମୁଁ ଜଣେ ସାମାନ୍ୟ ଦୂତମାତ୍ର ମୋ କାର୍ଯ୍ୟ ହେଲା ସମାଚାର ବହନ କରିବା ।''

ଏହି ଦେଶବ୍ୟାପୀ ସମ୍ମାନ ଓ ପ୍ରତିପତ୍ତି ମଧ୍ୟରେ ଯଶୋଲାଭ ଯୋଗୁଁ ଉତ୍‌ଫୁଲ୍ଲ ହୋଇ ସେ ତାଙ୍କ ପ୍ରିୟ ମାତୃଭୂମି କଥା ବିସ୍ମୃତ ହୋଇ ନ ଥିଲେ, ହୋଇପାରନ୍ତି ନାହିଁ । ନିର୍ଭୀକ ସନ୍ନ୍ୟାସୀ ଧର୍ମ-ମହାସଭାରେ ଠିଆ ହୋଇ ସମଗ୍ର ଖ୍ରିସ୍ତାନ୍‌ଗଣଙ୍କୁ ସମ୍ବୋଧନ କରି ପଚାରିଲେ, ''ଦରିଦ୍ର ପୌତ୍ତଳିକଗଣଙ୍କ ପାପୀ ଆତ୍ମାର ଉଦ୍ଧାର ଲାଗି ତୁମ୍ଭେମାନେ ଲକ୍ଷ ଲକ୍ଷ ମୁଦ୍ରା ବ୍ୟୟ କରି ଧର୍ମପ୍ରଚାରକ ପଠାଉଛ, ସେମାନଙ୍କ ଦେହରକ୍ଷା ଲାଗି ଦି'ମୁଠା ଭାତର ବନ୍ଦୋବସ୍ତ କରିପାରିବ କି ? ଯେତେବେଳେ ଲକ୍ଷ ଲକ୍ଷ ଲୋକ ଦୁର୍ଭିକ୍ଷ ଓ ଅନାହାରରେ ମରିଯାଉଛନ୍ତି, ସେତେବେଳେ ତୁମେ ଖ୍ରିସ୍ତାନ୍‌ମାନେ ସେମାନଙ୍କୁ ବଞ୍ଚାଇବା ଲାଗି କିଛି କରିଛ କି ? ତୁମ୍ଭେମାନେ ଭାରତର ନଗରମାନଙ୍କରେ ବଡ଼ ବଡ଼ ଗୀର୍ଜା ନିର୍ମାଣ କରିଛ, କିନ୍ତୁ ଆମର ଯଥେଷ୍ଟ ଧର୍ମ ଅଛି । ଆମେ ଚାହୁଁଛୁ ରୁଟି, ତୁମେ ଦେଉଛ ପଥର ! କ୍ଷୁଧିତ ବ୍ୟକ୍ତିର ଦୁଃଖକଷ୍ଟ ପ୍ରତି ଦୃକ୍‌ପାତ ନ କରି ତାକୁ ଧର୍ମୋପଦେଶ ପ୍ରଦାନ

କରିବା ବା ଦର୍ଶନଶାସ୍ତ୍ର ଶିକ୍ଷା ଦେବାକୁ ଯିବା, ମନୁଷ୍ୟତ୍ୱର ଅବମାନନା କରିବା ନୁହେଁ କି ? ମୁଁ ମୋର ସ୍ୱଦେଶବାସୀ ଅନାହାରକ୍ଳିଷ୍ଟ ଜନଗଣଙ୍କ ଅନ୍ନସଂସ୍ଥାନ ଆଶାରେ ତୁମ ଦେଶକୁ ଆସିଛି, କିନ୍ତୁ ମୁଁ ବେଶ୍ ବୁଝିଛି, ଖ୍ରୀଷ୍ଟାନ୍‌ମାନଙ୍କଠାରୁ ଅଣ-ଖ୍ରୀଷ୍ଟାନ୍‌ମାନଙ୍କ ନିମିତ୍ତ କୌଣସି ପ୍ରକାରର ସାହାଯ୍ୟ ପ୍ରାର୍ଥନା କରିବା ଦୁରାଶା ମାତ୍ର ।''

ଧର୍ମସଭା ଶେଷ ହେବାର ଅବ୍ୟବହିତ ପରେ ଗୋଟିଏ 'ବକ୍ତୃତା କମ୍ପାନୀ' ସ୍ୱାମୀଜୀଙ୍କୁ ଯୁକ୍ତରାଷ୍ଟ୍ରର ବିଭିନ୍ନ ନଗରରେ ବକ୍ତୃତା ଦେବା ଲାଗି ଆହ୍ୱାନ କଲେ । ସ୍ୱାମୀଜୀ ଆଗ୍ରହରେ ସେମାନଙ୍କ ପ୍ରସ୍ତାବରେ ସମ୍ମତି ପ୍ରଦାନ କରି ଯୁକ୍ତରାଷ୍ଟ୍ରରେ ବିଭିନ୍ନ ନଗରରେ ବକ୍ତୃତା ଦେବାରେ ଲାଗିଲେ । ଜନପ୍ରିୟ ଆଚାର୍ଯ୍ୟଙ୍କ ଅଭିନବ ବାର୍ତ୍ତା ଆମେରିକାବାସୀ ଆଗ୍ରହର ସହିତ ଶ୍ରବଣ କଲେ । ସେ ପ୍ରତ୍ୟେକ ନଗରରେ ସସମ୍ମାନେ ଅଭ୍ୟର୍ଥିତ ହେଲେ ଏବଂ ପ୍ରତ୍ୟେକ ନଗରରୁ ସାଗ୍ରହ ଆହ୍ୱାନ ଆସିଲା ।

ଉଲଗ୍ନ ନରମାଂସାହାରୀ ଅସଭ୍ୟ ଭାରତବାସୀଙ୍କ ସମ୍ବନ୍ଧରେ ମିଶନାରୀମାନଙ୍କ କୃପାରୁ ପାଶ୍ଚାତ୍ୟ ଜଗତରେ ଯେଉଁ କିମ୍ଭୁତକିମାକାର ଧାରଣାର ସୃଷ୍ଟି ହୋଇଥିଲା, ସ୍ୱାମୀଜୀଙ୍କଠାରୁ ଭାରତର ରୀତିନୀତି, ଆଚାର ବ୍ୟବହାର ଓ ଧର୍ମ ବିଷୟରେ ବିବରଣୀ ଶୁଣି ଅନେକଙ୍କର ସେ ଧାରଣା ପରିବର୍ତ୍ତିତ ହୋଇଗଲା । ଅନେକ ସୁବିଜ୍ଞ ସ୍ୱଦେଶହିତୈଷୀ ପଣ୍ଡିତ ଓ ଧର୍ମଯାଜକ ବିବେକାନନ୍ଦଙ୍କ କଥାର ସତ୍ୟତା ଉପଲବ୍‌ଧି କଲେ ଏବଂ ପ୍ରାଣେ ପ୍ରାଣେ ବୁଝିଲେ ଯେ ହିନ୍ଦୁର ପ୍ରାଚୀନ ସଭ୍ୟତାର ପଦତଳେ ବସି ଶିକ୍ଷାଗ୍ରହଣ କରିବା ଦିନ ସତରେ ଉପସ୍ଥିତ ହୋଇଛି । ଅର୍ଥଲୋଲୁପ, ଜଡ଼ୋପାସକ, ଦେହାତ୍ମବାଦୀ ପାଶ୍ଚାତ୍ୟ ଜାତିକୁ ଆସନ୍ନ ଧ୍ୱଂସ ହାତରୁ ଆତ୍ମରକ୍ଷା କରିବାକୁ ହେଲେ ବେଦାନ୍ତର ଅପୂର୍ବ ଧର୍ମ ଯେ କୌଣସି ପ୍ରକାରରେ ହେଉ ଗ୍ରହଣ କରିବାକୁ ହେବ ।

ସେ କେବଳ ହିନ୍ଦୁଧର୍ମର ପ୍ରଚାରକରୂପେ ପାଶ୍ଚାତ୍ୟ ଦେଶକୁ ଯାଇ ନ ଥିଲେ, ପରନ୍ତୁ ଆଚାର୍ଯ୍ୟରୂପେ ସେମାନଙ୍କ ସମ୍ମୁଖରେ ଦୃପ୍ତସିଂହ ପରି ଦଣ୍ଡାୟମାନ ହୋଇଥିଲେ । ସେ ଉଚ୍ଚସ୍ୱରରେ ଖ୍ରୀଷ୍ଟାନ୍‌ମାନଙ୍କୁ ପୁନଃ ପୁନଃ ପ୍ରଶ୍ନ କରିବାକୁ ଲାଗିଲେ, ''ତୁମ୍ଭମାନଙ୍କ ଖ୍ରୀଷ୍ଟଧର୍ମ କାହିଁ ? ଏହି ସ୍ୱାର୍ଥ ସଂଗ୍ରାମ, ଅବିରାମ ଧ୍ୱଂସର ଚେଷ୍ଟାରେ ଯୀଶୁଖ୍ରୀଷ୍ଟଙ୍କର ସ୍ଥାନ କେଉଁଠି ?''

ଯୁକ୍ତରାଷ୍ଟ୍ରର ପ୍ରତି ସହରରେ ସେ ବହୁ ସମ୍ଭ୍ରାନ୍ତ ଓ ପ୍ରତିପତ୍ତିଶାଳୀ ବନ୍ଧୁ ଲାଭ କରିଥିଲେ; ଏପରି କି ଅନେକ ଧର୍ମଯାଜକ ତାଙ୍କ ଉଦାର ଧର୍ମବ୍ୟାଖ୍ୟାରେ ଚମତ୍କୃତ ହୋଇ ତାଙ୍କୁ ନିଜ ନିଜ ଗୀର୍ଜାରେ ବକ୍ତୃତା ଦେବାକୁ ଆହ୍ୱାନ କରିଥିଲେ । ସାଧାରଣରେ ଶ୍ରଦ୍ଧା ବା ଦୃଷ୍ଟି ଆକର୍ଷଣ କରିବା ନିମିତ୍ତ ଯଦି ସେ ଶ୍ରୁତିମଧୁର ଚାଟୁବାକ୍ୟ କହୁଥାନ୍ତେ, ତାହାହେଲେ ସେ ଯେଉଁ ଜଗତ୍‌ବ୍ୟାପି ପ୍ରତିଷ୍ଠା ଲାଭ କରିଥିଲେ, ତାହା ହୋଇଥାନ୍ତା କି ନାହିଁ, ସନ୍ଦେହ; ଏପରି କି ହୁଏତ ତାଙ୍କ ପ୍ରଚାର କାର୍ଯ୍ୟର ଉଦ୍ଦେଶ୍ୟ ବ୍ୟର୍ଥ ହୋଇଯାଇଥାନ୍ତା । ସେ ଅଦ୍ୱୈତବାଦର ସୁଦୃଢ଼

ଭିତ୍ତି ଉପରେ ଠିଆ ହୋଇ ବେଦାନ୍ତନିହିତ ସାର ସତ୍ୟଗୁଡ଼ିକୁ ଆଧୁନିକ ମନର ଉପଯୋଗୀ ଯୁକ୍ତିମଣ୍ଡିତ କରି ସରଳ ଭାବରେ ପ୍ରକାଶ କରୁଥିଲେ; ତାହା ମଧ୍ୟରେ ଦେଶାଚାର ଓ ଲୋକାଚାର ସହିତ ଆପୋଷର ଭାବ ବିନ୍ଦୁମାତ୍ର ପରିଲକ୍ଷିତ ହେଉ ନ ଥିଲା । ସେ ବିଚାର କରୁ ନ ଥିଲେ, ସାଧାରଣରେ ତାଙ୍କ ବାର୍ତ୍ତା କି ଭାବରେ ଗୃହୀତ ହେଉଛି ଅଥବା ଏହା ଶ୍ରବଣ କରି ସେମାନଙ୍କ ମନରେ କି ଭାବର ଉଦୟ ହେଉଛି । ଏହା ସ୍ୱାଭାବିକ ଯେ, ଅନେକ ସମୟରେ ତାଙ୍କ ନିର୍ଭୀକ ସମାଲୋଚନାରେ ବିରକ୍ତ ହୋଇ ଅନେକ ତାଙ୍କ ସହିତ ତର୍କ କରିବାକୁ ବାହାରୁ ଥିଲେ । ନିଜ ମତ ସମର୍ଥନ କରିବା ଲାଗି ସ୍ୱାମୀଜୀ କେତେବେଳେ ହେଲେ ଅପ୍ରସ୍ତୁତ ନ ଥିଲେ । ପ୍ରତ୍ୟେକ ବକ୍ତୃତା ପରେ ସେ ପ୍ରାୟ ଏହିପରି ଦ୍ୱନ୍ଦ୍ୱଯୁଦ୍ଧ ଲାଗି ଆହୂତ ହେଉଥିଲେ । ସ୍ୱାମୀଜୀଙ୍କ ତର୍କପ୍ରଣାଳୀ ସମ୍ବନ୍ଧରେ ସମାଲୋଚନା କରିବାକୁ ଯାଇ 'ଜାଭା ଷ୍ଟେଟ ରେଜିଷ୍ଟର' ଲେଖିଥିଲେ—

''ଯେଉଁ ବ୍ୟକ୍ତି ସ୍ୱାମୀଜୀଙ୍କୁ ନିଜ ତର୍କବୁଦ୍ଧିଦ୍ୱାରା ପରାଜିତ କରିବାକୁ ପ୍ରୟାସୀ ହୋଇଛି, ତା ଦୁର୍ଭାଗ୍ୟକୁ ତାର ସମସ୍ତ ଚେଷ୍ଟା ବିଫଳ ହୋଇଛି । ତାଙ୍କ ପ୍ରତ୍ୟୁତ୍ତର ବିଦ୍ୟୁତ୍‌ସ୍ଫୁରଣ ପରି ସମୁଦ୍‌ଗୀର୍ଣ୍ଣ ହେଉଥିଲା ଏବଂ ଦୁଃସାହସିକ ପ୍ରଶ୍ନକର୍ତ୍ତା ଭାରତୀୟ କ୍ଷୁରଧାର-ବୁଦ୍ଧିଦ୍ୱାରା ଆହତ ହୋଇ ସ୍ତବ୍ଧ ହୋଇପଡୁଥିଲା । ତାଙ୍କ ମାନସିକ କାର୍ଯ୍ୟପ୍ରଣାଳୀ ଏତେ ତୀକ୍ଷ୍ଣ, ଏପରି ସମୁଜ୍ଜ୍ୱଳ, ଏପରି ତତ୍ତ୍ୱ ପରପୂର୍ଣ୍ଣ ଓ ସମାର୍ଜିତ ଯେ, ତାହା ସମୟ ସମୟରେ ଶ୍ରୋତୃବୃନ୍ଦଙ୍କୁ ବିଦ୍ୟୁତ୍‌ପରି ଆହତ କରୁଥିଲା ଏବଂ ଅତ୍ୟନ୍ତ କୌତୁହଳାକ୍ରାନ୍ତ ହୋଇ ସର୍ବଦା ଅନୁଧାବନ କରିବାର ବିଷୟ ହୋଇ ଯାଉଥିଲା ।''

## ଖ୍ରୀଷ୍ଟିଆନ ମିଶନାରୀ ଓ ଥିୟୋସଫିଷ୍ଟମାନଙ୍କ ନିନ୍ଦା ପ୍ରଚାର

ଅନ୍ତରର ପ୍ରକୃତ ଭାବ ଗୋପନ କରି ସତ୍ୟକୁ ଟାଣିବୁଣି ବିକୃତ ଭାବରେ ପ୍ରକାଶ କରିବା ପ୍ରୟାସ କେବେହେଲେ ତାଙ୍କଠାରେ ପରିଲକ୍ଷିତ ହେଉ ନ ଥିଲା; ତେଣୁ ତାଙ୍କ ସମାଲୋଚନା ବେଳେ ବେଳେ ତୀବ୍ର ଓ ଅସହନୀୟ ବୋଧ ହେଉଥିଲା । ଯୀଶୁଖ୍ରୀଷ୍ଟ ଓ ତାଙ୍କ ଉପଦେଶ ପ୍ରତି ସ୍ୱାମୀଜୀଙ୍କର ଯଥେଷ୍ଟ ଶ୍ରଦ୍ଧା ଥିଲେ ମଧ୍ୟ ସେ ବର୍ତ୍ତମାନ ପ୍ରଚଳିତ ଖ୍ରୀଷ୍ଟଧର୍ମର ଦୋଷ, ତ୍ରୁଟି ଓ ଭଣ୍ଡାମିଗୁଡ଼ିକୁ ସ୍ପଷ୍ଟଭାବରେ ଅଙ୍ଗୁଳି ଦେଇ ଦେଖାଉଥିଲେ । ସ୍ୱାମୀଜୀଙ୍କର ଏହି ନିର୍ଭୀକ ସମାଲୋଚନାରେ ଚିନ୍ତାଶୀଳ ଭାବୁକ ମାତ୍ରେ ହିଁ ସନ୍ତୁଷ୍ଟ ହେଉଥିଲେ; କିନ୍ତୁ ଜଗତରେ ସମସ୍ତେ ଉଦାରହୃଦୟ ନୁହନ୍ତି ଓ ସତ୍ ସମାଲୋଚନା ଶୁଣିବାକୁ ପ୍ରସ୍ତୁତ ନୁହଁନ୍ତି । ସମଗ୍ର ଯୁକ୍ତରାଷ୍ଟ୍ରବ୍ୟାପୀ ତାଙ୍କ ଅପ୍ରତିହତ ପ୍ରତିଷ୍ଠା ଦର୍ଶନ କରି, ନିଜ ଅର୍ଥୋପାର୍ଜନ ଲାଗି ବିଘ୍ନସ୍ୱରୂପ ମନେକରି କେତେଜଣ ହୀନଚେତା ଖ୍ରୀଷ୍ଟିଆନ ମିଶନାରୀ ନଗରେ ନଗରେ ତାଙ୍କ କୁତ୍ସା ରଚନା କରି ବୁଲିଲେ ଏବଂ ତାଙ୍କର ପ୍ରତ୍ୟେକ ବନ୍ଧୁଙ୍କୁ ଶତ୍ରୁରେ ପରିଣତ କରିବା ଚେଷ୍ଟାରେ ରହିଲେ । ସେମାନେ

କେବଳ ମାତ୍ର ସ୍ୱାମୀଜୀଙ୍କ ପବିତ୍ର ଚରିତ୍ରରେ କଳଙ୍କାରୋପ କରି କ୍ଷାନ୍ତ ହେଲେ ନାହିଁ, ଅଧିକନ୍ତୁ ସୁନ୍ଦରୀ ଯୁବତୀ ସ୍ତ୍ରୀମାନଙ୍କୁ ଟଙ୍କା ଦେଇ ବଶୀଭୂତ କରି ସ୍ୱାମୀଜୀଙ୍କୁ ପ୍ରଲୋଭିତ କରିବା ଲାଗି ଉଦ୍ୟମ କଲେ । ବ୍ରହ୍ମବାଦୀ ନେତାଗଣ ଏହି ସମସ୍ତ ମିଶନାରୀଗଣଙ୍କ ପଛରେ ରହି ଇନ୍ଧନ ଯୋଗାଉଥିଲେ । ବିବେକାନନ୍ଦଙ୍କ ଅପରାଧ ଯେ, ସେ ପ୍ରକାଶ୍ୟରେ ଘୋଷଣା କରନ୍ତି, ଭାରତୀୟ ଋଷିମାନଙ୍କର କୌଣସି ଗୁପ୍ତ ବିଦ୍ୟା ନାହିଁ ଏବଂ ସେ ହିମାଳୟରୁ କୁମାରୀକା ପର୍ଯ୍ୟନ୍ତ ଭ୍ରମଣ କରି ସୁଦ୍ଧା ଆକାଶରେ ଚଢ଼େଇଙ୍କ ପରି ଉଡୁଥିବା କୌଣସି ମହାତ୍ମାଙ୍କୁ ସାକ୍ଷାତ୍ କରିନାହାନ୍ତି । ବିଶେଷତଃ ହିନ୍ଦୁଧର୍ମରେ ଗୁପ୍ତ ବା ଗୋପନୀୟ କିଛି ନାହିଁ, ଯେହେତୁ ଏହା ଯୁକ୍ତିସହ ସତ୍ୟର ସମଷ୍ଟି, ପ୍ରକାଶ୍ୟ ଦିବାଲୋକ ଅନାୟାସରେ ସହ୍ୟ କରିପାରେ । ଯାହାହେଉ, ଉକ୍ତ ବ୍ରହ୍ମବାଦୀମାନଙ୍କର ବିବେକାନନ୍ଦ-ଭୀତି କ୍ରମେ ଏତେଦୂର ବର୍ଦ୍ଧିତ ହେଲା ଯେ ସେମାନେ ପ୍ରଚାର କରିଦେଲେ, ସମିତିର କୌଣସି ସଭ୍ୟ ଯଦି କେହି ଭ୍ରମରେ ମଧ୍ୟ ବିବେକାନନ୍ଦଙ୍କ ବକ୍ତୃତା ଶୁଣିବାକୁ ଯାଏ, ତାହା ହେଲେ ସେ ସମିତିର ସବୁପ୍ରକାର ସହାନୁଭୂତି ହରାଇବ, ଇତ୍ୟାଦି । ପୁଣି ସୁଯୋଗ ବୁଝି ଏହି ହୀନକାର୍ଯ୍ୟରେ ଯୋଗ ଦେଲେ, ତାଙ୍କର ସ୍ୱଦେଶବାସୀ ଜଣେ ଖ୍ୟାତନାମା 'ରେଭ୍‌ରେଣ୍ଡ' ଧର୍ମପ୍ରଚାରକ । ସେ ନାନାପ୍ରକାର ନିଜ କପୋଳକଳ୍ପିତ ଜଘନ୍ୟ ଅପବାଦ ରଚନା କରି ସ୍ୱାମୀଜୀଙ୍କୁ ଅପଦସ୍ଥ କରିବାକୁ ଚେଷ୍ଟା କଲେ । ଏମାନେ ସମସ୍ତେ ମିଶି ସ୍ୱାମୀଜୀଙ୍କୁ ପ୍ରଚାର କାର୍ଯ୍ୟରୁ ନିରସ୍ତ କରିବା ନିମିତ୍ତ ଭୟ ପ୍ରଦର୍ଶନ କରିବାକୁ ମଧ୍ୟ କୁଣ୍ଠିତ ହେଲେ ନାହିଁ ।

ବିବେକାନନ୍ଦଙ୍କ ବ୍ରହ୍ମଚର୍ଯ୍ୟ-ବଜ୍ର-ଗଠିତ ଚରିତ୍ର ନିନ୍ଦୁକର ଶ୍ଳେଷ ଓ କୁତ୍ସା-ବାକ୍ୟରେ ବିଚଳିତ ହେବାର ବସ୍ତୁ ନୁହେଁ । ସେ ନିର୍ବିକାର ଚିତ୍ତରେ ଓ ନୀରବରେ ଆପଣା କାର୍ଯ୍ୟ କରିଯିବାରେ ଲାଗିଲେ ଏବଂ ଆତ୍ମରକ୍ଷା ଲାଗି କୌଣସି ଚେଷ୍ଟା ନ କରି କେବଳ କହୁଥାନ୍ତି, "ସାଧାରଣ ମାନବର କର୍ତ୍ତବ୍ୟ ତାହାର ଈଶ୍ୱର-ସ୍ୱରୂପ ସମାଜର ଆଦେଶ ପାଳନ କରିବା; ଜ୍ୟୋତିଃର ତନୟଗଣ (Children of light) କେବେହେଲେ ସେପରି କରନ୍ତି ନାହିଁ ।  ଏହା ହିଁ ସନାତନ ନିୟମ । ଜଣେ ନିଜକୁ ପାରିପାର୍ଶ୍ୱିକ ଅବସ୍ଥା ଓ ସାମାଜିକ ମତାମତ ସହିତ ଖାପ ଖୁଆଇ ପାରିଲେ ତାହାର ସର୍ବଶୁଭଦାତା ସମାଜଠାରୁ ବିବିଧ ସୁଖସମ୍ପଦ ପାଏ । ଅପର ବ୍ୟକ୍ତି ଏକାକୀ ଦଣ୍ଡାୟମାନ ଥାଏ ଏବଂ ସମାଜକୁ ନିଜ ଆଡ଼କୁ ଟେକି ଧରେ । ମୋ ହୃଦୟର ଅଭ୍ୟନ୍ତରସ୍ଥ ବାଣୀ ନ ଶୁଣି ମୁଁ କାହିଁକି ବାହାର ଲୋକଙ୍କ ଖିଆଲ ଅନୁସାରେ ଚଳିବାକୁ ଯିବି ? ଏହି ନିର୍ବୋଧ ଜଗତ୍ ମୋତେ ଯାହା ତାହା କରିବାକୁ କହୁଛି; ସେସବୁ କରିବାକୁ ହେଲେ ମୋତେ ଗୋଟିଏ ନିମ୍ନସ୍ତରର ଜୀବ-ବିଶେଷରେ ପରିଣତ ହେବାକୁ ହେବ, ତଦପେକ୍ଷା ମୃତ୍ୟୁ ବରଂ ଶ୍ରେୟସ୍କର । ମୋର ଯାହା କିଛି କହିବାର ଅଛି, ତାହା ମୁଁ ନିଜ କଥାରେ କହିବି । ମୁଁ ମୋ

ବାକ୍ୟଗୁଡ଼ିକୁ ହିନ୍ଦୁ, ଖ୍ରୀଷ୍ଟାନ୍ ବା ଅନ୍ୟ କୌଣସି ଛାଞ୍ଚରେ ଢାଳିବି ନାହିଁ । ମୁଁ ସେଗୁଡ଼ିକୁ କେବଳ ନିଜ ଛାଞ୍ଚରେ ଢାଳିବି ମାତ୍ର ।''

ସ୍ୱାମୀଜୀଙ୍କ ବିରୋଧରେ ଏହି ସମ୍ମିଳିତ ଷଡ଼ଯନ୍ତ୍ର ଯୋଗୁଁ ତାଙ୍କ ବନ୍ଧୁବାନ୍ଧବମାନେ ଭୟ କଲେ । ସେମାନେ ସ୍ୱାମୀଜୀଙ୍କୁ ସାବଧାନ ହେବା ଲାଗି ପରାମର୍ଶ ଦେଲେ ଏବଂ ସ୍ଥାନୀୟ କୌଣସି ପ୍ରକାର ସାମାଜିକ ବ୍ୟବହାରର ସମାଲୋଚନା ନ କରିବାକୁ କହିଲେ ଓ ସୁମିଷ୍ଟ ବାକ୍ୟରେ ସେମାନଙ୍କୁ ସନ୍ତୁଷ୍ଟ କରିବା ଲାଗି ପରାମର୍ଶ ଦେଲେ; କିନ୍ତୁ ତାଙ୍କ ଅମାନବ ପ୍ରକୃତି ଦକ୍ଷିଣେଶ୍ୱରର ପଞ୍ଚବଟୀ–ତଳେ ସଂପୂର୍ଣ୍ଣ ଭିନ୍ନ ଧାତୁରେ ଗଢ଼ା ହୋଇଥିଲା । ଏହି ସମସ୍ତ ନୀଚ ଷଡ଼ଯନ୍ତ୍ରକାରୀମାନଙ୍କ ପ୍ରାଣପଣ ଚେଷ୍ଟାଗୁଡ଼ିକୁ ପ୍ରଚଣ୍ଡ ଅବହେଳା ସହକାରେ ଉପେକ୍ଷା କରି ସେ ଜଣେ ସହୃଦୟା ମହିଳାଙ୍କୁ ଲେଖିଥିଲେ, ''x x କ'ଣ ? ସଂସାରର କ୍ରୀତଦାସମାନେ କ'ଣ କହୁଛନ୍ତି, ତଦ୍ୱାରା ମୋ ହୃଦୟର ବିଚାର କରିବି ! ଛିଃ ! ଭଉଣୀ, ତୁମେ ସନ୍ନ୍ୟାସୀକୁ ଚିହ୍ନିନାହଁ । ବେଦ କହେ, 'ସନ୍ନ୍ୟାସୀ ବେଦଶୀର୍ଷ', କାରଣ ସେ ଗୀର୍ଜା, ଧର୍ମମତ, ଋଷି, Prophet, ଶାସ୍ତ୍ର ପ୍ରଭୃତି ବ୍ୟାପାରର ଧାର ଧରେ ନା । ମିଶନାରୀ ବା ଅନ୍ୟ ଯେ କେହି ହେଉ, ସେମାନେ ଯଥାସାଧ୍ୟ ଚିତ୍କାର ଓ ଆକ୍ରମଣ କରନ୍ତୁ, ମୁଁ ସେଗୁଡ଼ିକୁ ଗ୍ରାହ୍ୟ କରେ ନାହିଁ । ଭର୍ତ୍ତୃହରିଙ୍କ ଭାଷାରେ—

'ଚଣ୍ଡାଳଃ କିମୟଂ ଦ୍ୱିଜାତିରଥବା ଶୂଦ୍ରୋଽୟଂ ତାପସଃ
କିମ୍ବା ତତ୍ତ୍ୱାବିବେକପେଶଳମତିର୍ଯୋଗୀଶ୍ୱରଃ କୋଽପି କିମ୍ ।
ଇତ୍ୟୁତ୍ପନ୍ନବିକଳ୍ପ ଜଳ୍ପମୁଖରୈଃ ସମ୍ଭାଷ୍ୟମାନା ଜନୈ—
ର୍ନକ୍ରୁଦ୍ଧାଃ ପଥି ନୈବ ତୁଷ୍ଟମନସୋ ଯାନ୍ତି ସ୍ୱୟଂ ଯୋଗିନଃ ।।'

କି ଚଣ୍ଡାଳ, କି ବ୍ରାହ୍ମଣ, କି ଶୂଦ୍ର, କି ତପସ୍ୱୀ, ଅଥବା ତତ୍ତ୍ୱବିଚାରରେ ପଣ୍ଡିତ କୌଣସି ଯୋଗୀଶ୍ୱର ? ଏହିରୂପେ ନାନା ଲୋକେ ନାନା ଆଲୋଚନା କଲେ ମଧ୍ୟ ଯୋଗୀଗଣ କ୍ରୁଦ୍ଧ ହୁଅନ୍ତି ନାହିଁ, ସନ୍ତୁଷ୍ଟ ବି ହୁଅନ୍ତି ନାହିଁ । ସେମାନେ ନିଜ ଇଚ୍ଛାମତେ ଚଳନ୍ତି । ତୁଳସୀଦାସ ମଧ୍ୟ କହିଛନ୍ତି—

'ହାଥୀ ଚଲେ ବାଜାରମେ କୁତ୍ତା ଭୌଁଖେ ହାଜାର,
ସାଧୁଓଁକା ଦୁର୍ଭାବ ନହୀଁ ଯବ ନିନ୍ଦେ ସଂସାର ।'

ଯେତେବେଳେ ହାତୀ ବଜାର ଭିତରେ ଚାଲିଯାଏ, ହଜାର ହଜାର କୁକୁର ପଛେ ପଛେ ଚିତ୍କାର କରନ୍ତି; କିନ୍ତୁ ହାତୀ ଫେରି ଚାହେଁ ନାହିଁ । ସେହିପରି ଯେତେବେଳେ ସମାଜରେ କୌଣସି ମହାପୁରୁଷ ଆବିର୍ଭୂତ ହୁଅନ୍ତି, ସେତେବେଳେ ଦଳେ ସଂସାରୀ ଲୋକ କ୍ରମାଗତ ତାଙ୍କ ବିରୋଧରେ ଚିତ୍କାର କରିଥାନ୍ତି ।''

ସହିଷ୍ଣୁତା–କାଠିଣ୍ୟରେ ଦୁର୍ଭେଦ୍ୟ ପାଷାଣ–ପ୍ରାଚୀର ପରି ତାଙ୍କ ସୁଦୃଢ଼ ବ୍ୟକ୍ତିସ୍ୱାତନ୍ତ୍ର୍ୟ ସର୍ବଦା ସକଳ ଅବସ୍ଥାରେ ଶିର ଉନ୍ନତ କରିଥାଏ । ତାଙ୍କ ତ୍ୟାଗପୂତମହିମା ଏକାନ୍ତ ଅପରିଚିତ ବ୍ୟକ୍ତିର ସ୍ଥୂଳଦୃଷ୍ଟିରେ ମଧ୍ୟ ଅନାଡ଼ମ୍ବର

ସହକାରେ ପ୍ରତିଭାତ ହୁଏ; ତେଣୁ ଜନସାଧାରଣ ଏ'ସବୁ ଅସମ୍ଭବ ନିନ୍ଦାକୁ ସହସା ବିଶ୍ୱାସ କରିପାରିଲେ ନାହିଁ; ବରଂ ଏହାଦ୍ୱାରା ବିପରୀତ ଫଳ ଫଳିଲା; କାରଣ ଅନେକେ ବିବେକାନନ୍ଦଙ୍କ ଚରିତ୍ର ଘନିଷ୍ଠ ଭାବରେ ପରୀକ୍ଷା କରିବାକୁ ଯାଇ ତାଙ୍କ ବନ୍ଧୁ ହୋଇଗଲେ । ତେବେ ବି ଆଚାର୍ଯ୍ୟଦେବଙ୍କ ଚରିତ୍ରର ଆଉ ଗୋଟିଏ ଦିଗ ଥିଲା, ଯାହା ଅପୂର୍ବ ଓ ମନୋହର । ଅନ୍ୟାୟ ଭାବରେ ଉତ୍ପୀଡ଼ିତ ଓ ନିନ୍ଦିତ ହୋଇ ମଧ ତାଙ୍କ ଜିହ୍ୱା ଭୁଲରେ ସୁଦ୍ଧା କେବେ କାହା ଉପରେ ଅଭିଶାପ ବର୍ଷଣ କରି ନାହିଁ । ଯଦି ଦୈବାତ୍ କିଏ ତାଙ୍କୁ ଗାଳିଦେଲା, ସେତେବେଳେ ଗମ୍ଭୀର ଭାବରେ 'ଶିବ' 'ଶିବ' କହି କହି ତାଙ୍କ ବଦନମଣ୍ଡଳ ଅପୂର୍ବ ବିଭାରେ ଉଦ୍ଭାସିତ ହୋଇ ଉଠୁଥିଲା; ଯଦି କେହି ତାଙ୍କୁ ପ୍ରତିକାର କରିବା ବିଷୟ କ୍ଷୁବ୍ଧ–ଉତ୍ତେଜନାବଶତଃ ସ୍ମରଣ କରାଇ ଦେଉଥିଲା, ସେ ସସ୍ନେହ ହସରେ ଉତ୍ତର ଦେଉଥିଲେ, ''ଇଏ ତ ପ୍ରିୟତମ ପ୍ରଭୁଙ୍କ ବାଣୀ ।''

## ଭାରତରେ ବିଜୟୋତ୍ସବ

ଯେଉଁଦିନ ଚିକାଗୋ ଧର୍ମମହାସଭାରେ ଆଚାର୍ଯ୍ୟଦେବଙ୍କ ଅଦ୍ଭୁତ ସାଫଲ୍ୟର ବାର୍ତ୍ତା ପ୍ରତି ପଲ୍ଲୀ ଏବଂ ପ୍ରତି ନଗରରେ ଉତ୍ତେଜନାବିଳସିତ ଉଲ୍ଲାସ ସହିତ ପ୍ରଚାରିତ ହେଲା, ସେହିଦିନଠାରୁ ହିନ୍ଦୁଜାତିର ଇତିହାସରେ ଗୋଟିଏ ଗୌରବମୟ ଅଧ୍ୟାୟର ଆରମ୍ଭ ହେଲା । ହିମାଳୟରୁ କୁମାରୀକା ପର୍ଯ୍ୟନ୍ତ ସବୁ ଭାରତବାସୀ ଏହି ଅପରିଚିତ ସନ୍ନ୍ୟାସୀଙ୍କ କାର୍ଯ୍ୟାବଳୀର ବିବରଣୀ କୌତୁକ–ମିଶ୍ରିତ ଆଗ୍ରହ ସହକାରେ ଶୁଣିବାକୁ ଲାଗିଲେ । ରାମନାଦର ରାଜା ଭାସ୍କର ବର୍ମା ସେତୁପତି ଓ ଖେତଡ଼ି ରାଜା ଅଜିତ୍ ସିଂହ ବାହାଦୁର ପ୍ରକାଶ୍ୟ ଦରବାରରେ ଆଡ଼ମ୍ବର ସହକାରେ ପ୍ରଜାବୃନ୍ଦଙ୍କୁ ଆହ୍ୱାନ କରି ହିନ୍ଦୁଜାତିର ମୁଖୋଜ୍ଜ୍ୱଳକାରୀ ଶ୍ରୀଗୁରୁଙ୍କ କାର୍ଯ୍ୟାବଳୀର ପ୍ରଶଂସା କଲେ ଏବଂ ଚିକାଗୋ ଧର୍ମମହାସଭାରେ ସେ ଯେ ହିନ୍ଦୁଧର୍ମର ଶ୍ରେଷ୍ଠତା ପ୍ରତିପାଦନ କରିବାକୁ ସମର୍ଥ ହୋଇଛନ୍ତି, ସେଥିଲାଗି ତାଙ୍କୁ ଧନ୍ୟବାଦ ଦେଇ ପତ୍ର ଲେଖିଲେ ।

ମାନ୍ଦ୍ରାଜଠାରେ ରାଜା ସାର୍ ରାମସ୍ୱାମୀ ମୁଦାଲିୟର୍ ଏବଂ ଦେଓ୍ୱାନ ବାହାଦୂର[୧] ସାର୍ ସୁବ୍ରମଣ୍ୟ ଆୟାର୍ ସି.ଆଇ.ଇ. ବାହାଦୁରଙ୍କ ନେତୃତ୍ୱରେ ଗୋଟିଏ ବଡ଼ ସଭା ଡକା ଯାଇଥିଲା । ନଗରର ଖ୍ୟାତନାମା ପଣ୍ଡିତ ଓ ସମ୍ଭ୍ରାନ୍ତ ବ୍ୟକ୍ତିଗଣ ଉପସ୍ଥିତ ରହି ସ୍ୱାମୀଜୀଙ୍କ ପ୍ରଚାର–କାର୍ଯ୍ୟକୁ ସମର୍ଥନ କଲେ ଏବଂ ଉକ୍ତ ସଭାର ବିବରଣୀ ସହ ତାଙ୍କୁ ଉତ୍ସାହିତ କରି ଖଣ୍ଡିଏ ଚିଠି ଲେଖିଲେ ।

ସ୍ୱାମୀଜୀଙ୍କ ଜନ୍ମଭୂମି କଲିକତା ନଗରୀ ଉତ୍ସାହ ଓ ଆନନ୍ଦରେ ଉନ୍ମତ୍ତ ପ୍ରାୟ ହୋଇଗଲା । ସ୍ୱାମୀଜୀଙ୍କ ମହିମା–ସମୁଜ୍ଜ୍ୱଳ ପ୍ରଚାର କାର୍ଯ୍ୟକୁ ସମର୍ଥନ କରି

---

୧. ଶ୍ରୀଯୁକ୍ତ ସୁବ୍ରମଣ୍ୟ ଆୟାର ପରେ ଭାରତବାସୀଙ୍କ ପ୍ରତି ସରକାରଙ୍କ ଅନ୍ୟାୟ ବ୍ୟବହାରର ପ୍ରତିବାଦ ସ୍ୱରୂପ 'ସାର' ଉପାଧି ପରିତ୍ୟାଗ କରିଥିଲେ ।

ତାଙ୍କୁ ଉତ୍ସାହ ପ୍ରଦାନ କରିବା ନିମିତ୍ତ ୧୮୯୪ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ପାଞ୍ଚ ତାରିଖ ବୁଧବାର ଦିନ ରାଜା ପ୍ୟାରୀମୋହନ ମୁଖାର୍ଜୀ ସି.ଏସ୍.ଆଇ. ବାହାଦୂରଙ୍କ ସଭାପତିତ୍ୱରେ କଲିକତା ଟାଉନହଲ୍‌ଠାରେ ଗୋଟିଏ ବିରାଟ ଜନସଭା ଆହୂତ ହେଲା । ସଭା ଆରମ୍ଭ ହେବାର ବହୁତ ଆଗରୁ ଟାଉନହଲ୍‌ଟି ହଜାର ହଜାର ଶ୍ରୋତାଙ୍କଦ୍ୱାରା ପରିପୂର୍ଣ୍ଣ ହୋଇଯାଇଥିଲା । ପଣ୍ଡିତ ରାଜକୁମାର ନ୍ୟାୟରତ୍ନ, ମଧୁସୂଦନ ସ୍ମୃତିତୀର୍ଥ, କାମାକ୍ଷାନାଥ ତର୍କବାଗୀଶ, ରାମନାଥ ତର୍କସିଦ୍ଧାନ୍ତ, ମହେଶଚନ୍ଦ୍ର ଶିରୋମଣି, ତାରାପଦ ବିଦ୍ୟାସାଗର, କେଦାରନାଥ ବିଦ୍ୟାରତ୍ନ, ଈଶାନଚନ୍ଦ୍ର ମୁଖୋପାଧ୍ୟାୟ ପ୍ରଭୃତି ଖ୍ୟାତନାମା ପଣ୍ଡିତବର୍ଗ ଓ ମହାରାଜକୁମାର ବିନୟକୃଷ୍ଣ ଦେବ, ମାନନୀୟ ଜଷ୍ଟିସ୍ ଗୁରୁଦାସ ବାନାର୍ଜୀ, ମାନନୀୟ ସୁରେନ୍ଦ୍ରନାଥ ବନ୍ଦୋପାଧ୍ୟାୟ, ବାବୁ ନଗେନ୍ଦ୍ରନାଥ ଘୋଷ (ଇଣ୍ଡିଆନ୍ ନେସନର ସମ୍ପାଦକ), ନରେନ୍ଦ୍ରନାଥ ସେନ୍ (ଇଣ୍ଡିଆନ୍ ମିରର୍‌ର ସମ୍ପାଦକ), ଡାକ୍ତର ଜେ. ବି. ଡେଲୀ (ଇଣ୍ଡିଆନ୍ ଡେଲି ନିଉଜ ପତ୍ରିକା), ବାବୁ ଭୂପେନ୍ଦ୍ରନାଥ ବସୁ, ରାୟ ଯତୀନ୍ଦ୍ରନାଥ ଚଉଧୁରୀ (ଟାକୀର ଜମିଦାର) ଏବଂ କଲିକତାର ଅନ୍ୟାନ୍ୟ ଖ୍ୟାତନାମା ପଣ୍ଡିତ ଓ ସମ୍ଭ୍ରାନ୍ତ ବ୍ୟକ୍ତିବର୍ଗ ଓ ବିଦ୍ୱାନ୍‌ମଣ୍ଡଳୀ ଏହି ସଭାରେ ସମବେତ ହୋଇଥିଲେ ।

ଉପସ୍ଥିତ ଭଦ୍ରମହୋଦୟଗଣ ବିବେକାନନ୍ଦଙ୍କ ଗୌରବଗର୍ବରେ ଉତ୍‌ଫୁଲ୍ଲ ହୋଇ ଉଦ୍ଦୀପନାପୂର୍ଣ୍ଣ ବକ୍ତୃତାଦ୍ୱାରା ଆଚାର୍ଯ୍ୟଦେବଙ୍କ କାର୍ଯ୍ୟପ୍ରଣାଳୀ ସମର୍ଥନ କଲେ । ସମଗ୍ର ସଭା ଏକବାକ୍ୟରେ ହିନ୍ଦୁସମାଜ ପକ୍ଷରୁ ସ୍ୱାମୀ ବିବେକାନନ୍ଦଙ୍କୁ ଧନ୍ୟବାଦ ଦେବା ପ୍ରସ୍ତାବକୁ ସମର୍ଥନ କଲା । ମାନନୀୟ ସଭାପତି ମହୋଦୟ ସର୍ବସମ୍ମତି କ୍ରମେ ହିନ୍ଦୁ ସମାଜ ପକ୍ଷରୁ ଚିକାଗୋ ଧର୍ମସଭାର ସଭାପତି ଓ ସ୍ୱାମୀଜୀଙ୍କ ନିକଟକୁ ଧନ୍ୟବାଦ-ସୂଚକ ପତ୍ର ଲେଖିଥିଲେ ।

ରାଜା ବାହାଦୂରଙ୍କ ପତ୍ରର ଉତ୍ତରରେ ଡକ୍ଟର ବ୍ୟାରୋଜ୍ ସାହେବ ଲେଖିଥିଲେ—

୨୯୫୭, ଇଣ୍ଡିଆନ୍ ଆଭେନିଉ, ଚିକାଗୋ,
ଅକ୍ଟୋବର ୧୨, ୧୮୯୪

ରାଜା ପ୍ୟାରୀମୋହନ ମୁଖାର୍ଜୀ, ସି.ଏସ.ଆଇ.

ପ୍ରିୟ ମହାଶୟ !

କଲିକତା ଟାଉନ୍‌ହଲ୍‌ରେ ଅନୁଷ୍ଠିତ ସଭାର ବିବରଣ ସହ ଆପଣ ମୋତେ ଯେଉଁ ପତ୍ର ଲେଖିଥିଲେ, ତାହା ବର୍ତ୍ତମାନ ପାଇଲି । ମୁଁ ଏତଦ୍ୱାରା ସାତିଶୟ ସମ୍ମାନିତ ହୋଇଛି । ଚିକାଗୋ ଧର୍ମମହାମଣ୍ଡଳୀରେ ଆପଣଙ୍କ ବନ୍ଧୁ ସ୍ୱାମୀ ବିବେକାନନ୍ଦ ସସମ୍ମାନେ ଗୃହୀତ ହୋଇଥିଲେ । ସେ ବାଗ୍ମିତା-ଶକ୍ତିରେ ଚୁମ୍ବକ ଆକର୍ଷଣ ପରି ସମସ୍ତଙ୍କୁ ଆକୃଷ୍ଟ କରିଥିଲେ ଏବଂ ନିଜ ବ୍ୟକ୍ତିଗତ ପ୍ରଭାବ ସମ୍ୟକ୍‌ରୂପେ ବିସ୍ତାର କରିବାକୁ ସମର୍ଥ ହୋଇଥିଲେ । ତାଙ୍କ ଯତ୍ନରେ ଧର୍ମାନୁଶୀଳନ ଲାଗି ଲୋକଙ୍କ ଚିନ୍ତା ଓ ଆଗ୍ରହ ବିଶେଷ ଭାବରେ ଉଦ୍ରେକ ହୋଇଛି । ପ୍ରଧାନ

ପ୍ରଧାନ ବିଶ୍ୱବିଦ୍ୟାଳୟରେ ତାଙ୍କ ବକ୍ତୃତା ଓ ଅଧ୍ୟାପନା ଲାଗି ବନ୍ଦୋବସ୍ତ ହୋଇଛି, ଆମେରିକାର ଜନମଣ୍ଡଳୀ ଭାରତବର୍ଷ ସମ୍ବନ୍ଧରେ ଗଭୀର ପ୍ରୀତି ଓ କୃତଜ୍ଞତା ପୋଷଣ କରିଛନ୍ତି । ଆମ୍ଭମାନଙ୍କ ବିଶ୍ୱାସ ଯେ, ଆପଣମାନଙ୍କ ସୁପ୍ରାଚୀନ ପବିତ୍ର ସାହିତ୍ୟରୁ ଆମ୍ଭମାନଙ୍କୁ ଅନେକ ବିଷୟ ଗ୍ରହଣ କରିବାକୁ ହେବ ।

ଆପଣଙ୍କର ଏକାନ୍ତ ବିଶ୍ୱସ୍ତ,
ଜନ୍ ହେନେରୀ ବ୍ୟାରୋଜ

## ଆମେରିକା ଭ୍ରମଣ ଓ ପ୍ରଚାର

ଚିକାଗୋ ଧର୍ମମହାସଭାର ଅବ୍ୟବହିତ ପରଠାରୁ ପ୍ରାୟ ଏକ ବର୍ଷ ପର୍ଯ୍ୟନ୍ତ ଆଚାର୍ଯ୍ୟଦେବ ଯୁକ୍ତରାଷ୍ଟ୍ରର ନଗରେ ନଗରେ ଯେଉଁ ବକ୍ତୃତା ଦେଇଥିଲେ, ତାହାର ବିବରଣୀ ଦେବା କଷ୍ଟସାଧ୍ୟ । ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ଆଚାର୍ଯ୍ୟଦେବଙ୍କ ବକ୍ତୃତା ଓ ଚରିତ୍ର ସମ୍ବନ୍ଧରେ ଆଲୋଚନାଗୁଡ଼ିକରୁ ଜଣାପଡ଼େ ଯେ, ୧୮୯୪ ଖ୍ରୀଷ୍ଟାବ୍ଦ ଫେବୃଆରୀ ମାସରେ ସେ ଡେଟ୍ରୟେଟସ୍ଥିତ ଇଉନିଟାରିଆନ୍ ଗୀର୍ଜାରେ ଧାରାବାହିକ ଭାବରେ କେତେଗୋଟି ବକ୍ତୃତା ଦେଇଥିଲେ । ଡେଟ୍ରୟେଟ୍‌ରେ ସ୍ୱାମୀଜୀ ପ୍ରଥମେ ମିଶିଗାନ୍‌ର ପୂର୍ବତନ ଗଭର୍ଣ୍ଣରଙ୍କ ପତ୍ନୀ ଅସାଧାରଣ ବିଦୁଷୀ ମହିଳା ଶ୍ରୀମତୀ ଜନ୍. ଜେ. ବ୍ୟାଙ୍ଗ୍‌ଲୋଙ୍କ ଅତିଥିରୂପେ ଏବଂ ପରେ ଦୁଇ ସପ୍ତାହ କାଳ ଚିକାଗୋ ମହାମେଳା କମିଶନ୍‌ର ସଭାପତି, ଯୁକ୍ତରାଷ୍ଟ୍ରର ଅନ୍ୟତମ ସିନେଟ୍- ସଭ୍ୟ ଶ୍ରୀଯୁକ୍ତ ଟମାସ୍ ଡବ୍‌ଲିଉ. ପାମାର୍‌ଙ୍କ ଭବନରେ ଅବସ୍ଥାନ କରିଥିଲେ ।

ମାର୍ଚ୍ଚ, ଅପ୍ରେଲ, ମେ ଓ ଜୁନ—ଏହି ଚାରିମାସ କାଳ ସେ ଅବିରାମ ଚିକାଗୋ, ନଉୟର୍କ ଓ ବୋଷ୍ଟନର ଚତୁଃପାର୍ଶ୍ୱବର୍ତ୍ତୀ କ୍ଷୁଦ୍ର-ବୃହତ୍ ନଗରମାନଙ୍କରେ ବକ୍ତୃତା ଦେଇଥିଲେ । ଜୁନ୍ ମାସରେ ସେ ନିଜେ ଇଂଲଣ୍ଡ ଅନ୍ତର୍ଗତ 'ଗ୍ରୀନ ଏକର' ରେ ଗୋଟିଏ ସମ୍ମିଳନୀରେ ବକ୍ତୃତା ଦେବା ଲାଗି ଗଲେ । ସେଠାରେ କେତେଜଣ ଉତ୍ସାହୀ ଛାତ୍ର ବେଦାନ୍ତ ଦର୍ଶନ ଶିକ୍ଷା କରିବା ନିମିତ୍ତ ତାଙ୍କର ଶରଣାପନ୍ନ ହେଲେ । ସ୍ୱାମୀଜୀ ମଧ୍ୟ ଆଗ୍ରହରେ ସେମାନଙ୍କୁ ଶିକ୍ଷା ଦେବାରେ ଲାଗିଲେ । ଏହି ଛାତ୍ରଗଣ ସେମାନଙ୍କ ଅଧ୍ୟାପକଙ୍କ ପ୍ରତି ସମ୍ମାନ ଓ ଶ୍ରଦ୍ଧା ପ୍ରଦର୍ଶନ ନିମିତ୍ତ ଗଛତଳେ ଭାରତୀୟ ରୀତି ଅନୁସାରେ ଆଚାର୍ଯ୍ୟଦେବଙ୍କୁ ଘେରି ତଳେ ବସୁଥିଲେ । ଏହାପରେ ସେ ଶରତ୍‌କାଳ ଗୋଟିକଯାକ ବିଭିନ୍ନ ସ୍ଥାନରେ ଭ୍ରମଣ କରି ଅକ୍ଟୋବର ମାସ ଶେଷରେ ବଲ୍‌ଟିମୋର୍ ଓ ୱାସିଂଟନ୍ ନଗରରେ ବକ୍ତୃତା କରି ସାରି ନିଉୟର୍କକୁ ଫେରି ଆସିଲେ । ନିଉୟର୍କରେ ଗୋଟିଏ କ୍ଷୁଦ୍ର ପାରିବାରିକ ସଭାରେ 'ବ୍ରୁକ୍‌ଲିନ୍ ନୈତିକ ସଭା' ର ସଭାପତି ପ୍ରସିଦ୍ଧ ପଣ୍ଡିତ ଡାକ୍ତର ଲୁଇସ୍. ଜି. ଜେମ୍‌ସ ସ୍ୱାମୀଜୀଙ୍କ ବକ୍ତୃତା ଶୁଣି ମୁଗ୍‌ଧ ହୋଇଥଲେ ଏବଂ ସେହି ନୈତିକ ସଭାରେ ହିନ୍ଦୁଧର୍ମ ସମ୍ବନ୍ଧରେ ବକ୍ତୃତା କରିବା ନିମିତ୍ତ ସ୍ୱାମୀଜୀଙ୍କୁ ନିମନ୍ତ୍ରଣ କଲେ । ସଭାପକ୍ଷରୁ ସ୍ୱାମୀଜୀ 'ପଉଚ୍ ମ୍ୟାନ୍‌ସନ୍' ନାମକ ସୁବୃହତ୍ ଭବନରେ ହିନ୍ଦୁଧର୍ମ

ସମ୍ବନ୍ଧରେ ସହସ୍ର ସହସ୍ର ଶ୍ରୋତାଙ୍କ ସମ୍ମୁଖରେ ପ୍ରତ୍ୟହ ଧାରାବାହିକ ରୂପେ ବକ୍ତୃତା ପ୍ରଦାନ କରିବାରେ ଲାଗିଲେ ।

ବ୍ରୁକ୍‌ଲିନ ନୈତିକ ସଭାରେ ପ୍ରଦତ୍ତ ବକ୍ତୃତାଗୁଡ଼ିକ ସ୍ୱାମୀଜୀଙ୍କ ବେଦାନ୍ତ ପ୍ରଚାର କାର୍ଯ୍ୟର ଆରମ୍ଭ ବୋଲି ଧରିନିଆଯାଏ । ଏହି ସମୟରୁ ସ୍ୱାମୀଜୀ ନାନା ସ୍ଥାନରେ ଭ୍ରମଣ କରି ବକ୍ତୃତା ପ୍ରଦାନ କରିବାରୁ ନିବୃତ୍ତ ହେଲେ ଏବଂ ନିଉୟର୍କରେ ସ୍ଥାୟୀ ଭାବରେ ବେଦାନ୍ତ ଓ ଯୋଗ ଶିକ୍ଷା ଦେବା ନିମିତ୍ତ ଗୋଟିଏ କ୍ଲାସ ଖୋଲିବାକୁ ସଂକଳ୍ପ କଲେ । ବକ୍ତୃତା କମ୍ପାନୀ ସାହାଯ୍ୟରେ ବ୍ୟବସାୟ ହିସାବରେ ବକ୍ତୃତାଦାନ ଖୁବ୍ ଲାଭଜନକ ହେଲେ ମଧ୍ୟ ସେ ଉକ୍ତ କମ୍ପାନୀ ସହିତ ସମ୍ପର୍କ ତୁଟାଇ ଦେଲେ । ବକ୍ତୃତା ଦେଇ ଅର୍ଥୋପାର୍ଜନ କରିବା ତାଙ୍କର ମନଃପୂତ ହେଲା ନାହିଁ । ନିଉୟର୍କକୁ ଆସି ସେ ଘୋଷଣା କଲେ ଯେ, ସର୍ବସାଧାରଣ ବିନା ମୂଲ୍ୟରେ ତାଙ୍କ ବକ୍ତୃତା ଓ ଉପଦେଶ ଗ୍ରହଣ କରିବାର ସୁବିଧା ପାଇବେ । ବ୍ରୁକ୍‌ଲିନ୍ ଓ ଗ୍ରୀନ୍ ଏକର୍‌ଠାରେ ସ୍ୱାମୀଜୀ ଯେଉଁ କେତେଜଣ ଶିଷ୍ୟ ଗ୍ରହଣ କରିଥିଲେ, ସେମାନେ ଆଗ୍ରହର ସହିତ ନବପ୍ରତିଷ୍ଠିତ କ୍ଲାସରେ ଯୋଗ ଦେଲେ । ୧୮୯୫ ଖ୍ରୀଷ୍ଟାବ୍ଦ ଫେବୃୟାରୀ ମାସଠାରୁ ଏହି କାର୍ଯ୍ୟ ନିୟମିତ ରୂପେ ଆରମ୍ଭ ହେଲା । କ୍ରମାଗତ ଯଶଃ ଓ ଖ୍ୟାତିର ବିବରଣ ଶୁଣି ଶୁଣି ସେ ବିରକ୍ତ ହୋଇ ପଡ଼ିଲେ; ତେଣୁ ବକ୍ତୃତା କରିବା ଅପେକ୍ଷା ବ୍ୟକ୍ତି-ବିଶେଷଙ୍କ ଧର୍ମସମ୍ପର୍କୀୟ ସମସ୍ୟା ସମାଧନା କରିବା ଏବଂ ଶିଷ୍ୟଗଣଙ୍କ ଅନଭ୍ୟସ୍ତ ମନକୁ ଭାରତୀୟ ସାଧନାର ଉପଯୋଗୀ କରିବା ନିମିତ୍ତ ସମଧିକ ଯତ୍ନବାନ୍ ହେଲେ ।

ସାଧାରଣଙ୍କ ସାଗ୍ରହ ଆହ୍ୱାନରୁ ନିଷ୍କୃତି ପାଇବା ଲାଗି ତାଙ୍କୁ ଅନେକ ଚେଷ୍ଟା କରିବାକୁ ପଡ଼ିଥିଲା ସତ୍ୟ; କିନ୍ତୁ ତଥାପି ସେ ସଂକଳ୍ପଚ୍ୟୁତ ହେଲେ ନାହିଁ । ଯଦି ବାସ୍ତବିକ କାହାର ପ୍ରକୃତ ଧର୍ମଲାଭ କରିବା ନିମିତ୍ତ ଏକାନ୍ତ ଆଗ୍ରହ ଜାଗିଥାଏ, ତେବେ ସେ ଜଣେ ଭାରତୀୟ ଶିଷ୍ୟ ପରି ଗୁରୁଙ୍କ ଗୃହକୁ ଆସୁ, ଏହା ହିଁ ବୋଧହୁଏ ତାଙ୍କ ଉଦ୍ଦେଶ୍ୟ ଥିଲା । ବକ୍ତୃତାର ସାମୟିକ ଉତ୍ତେଜନାରେ ଯେଉଁ ଉତ୍ସାହ ପରିଦୃଷ୍ଟ ହୁଏ, ତାହା ଅତି ଅଳ୍ପ ସ୍ଥାନରେ ସ୍ଥାୟୀ ଫଳ ପ୍ରସବ କରେ, ଏହା ସ୍ୱାମୀଜୀ ଅନତି ବିଳମ୍ବରେ ବୁଝି ପାରିଲେ ।

## ବେଦାନ୍ତ ପ୍ରଚାରରେ ବାଧା

ଅକ୍ଳାନ୍ତକର୍ମୀ ଆଚାର୍ଯ୍ୟଦେବଙ୍କ ପ୍ରତ୍ୟେକ ଭଙ୍ଗୀ ମଧ୍ୟରେ ଏପରି ଗୋଟିଏ ଦୃଶ୍ୟମାନ ଅନାସକ୍ତିର ଭାବ ଫୁଟି ଉଠୁଥିଲା, ଯାହାର ଗୋଟିଏ ସୁସ୍ପଷ୍ଟ କାରଣ ଖୋଜି ପାଇବା ଆମେରିକାବାସୀମାନଙ୍କ ପକ୍ଷରେ ଅସାଧ୍ୟ ଥିଲା । କାରଣ ସେମାନେ ଜାଗତିକ ଜ୍ଞାନର ମାପକାଠିରେ ଏହି ଭାରତୀୟ ଯୋଗୀଙ୍କୁ ମାପିବାକୁ ଯାଇ ପ୍ରଥମତଃ ଗୋଟିଏ ଭୁଲ କରି ବସୁଥିଲେ ଯେ, ଏହି ବ୍ୟକ୍ତି ଅର୍ଥୋପାର୍ଜନର ସହଜ ପନ୍ଥାଟି ପରିତ୍ୟାଗ କରି ବଡ଼ ଭଲ କାମ କରିନାହାନ୍ତି । ବକ୍ତୃତା ଦେଇ

ସ୍ୱାମୀଜୀ ବେଳେ ବେଳେ ପ୍ରଚୁର ଅର୍ଥ ପାଉଥିଲେ ସତ, କିନ୍ତୁ ତାହା ହସ୍ତଗତ ହେବା ଆଗରୁ ସେ ଦାନ କରି ଦେଉଥିଲେ । ଆମେରିକା ଓ ଭାରତବର୍ଷର ଅନେକ ଦାତବ୍ୟ ଭଣ୍ଡାର ସ୍ୱାମୀଜୀଙ୍କଠାରୁ ଅପ୍ରତ୍ୟାଶିତଭାବରେ ଆଶାତୀତ ସାହାଯ୍ୟ ପ୍ରାପ୍ତ ହୋଇ ଅନେକ ସମୟରେ ବିସ୍ମିତ ହେଉଥିଲେ । ସ୍ୱାମୀଜୀଙ୍କ ଆୟ-ବ୍ୟୟ, ହିସାବ-ନିକାଶର ଯଦି ଖଣ୍ଡିଏ ଖାତା ଥାଆନ୍ତା, ତାହାହେଲେ ଦେଖାଯାଇଥାନ୍ତା ଯେ, ଯେଉଁ ଅନୁପାତରେ ଦାନ କରି ଲୋକେ ଦାତା ବୋଲାଉଛନ୍ତି ସେ ତାଠାରୁ ଢେର ବେଶୀ ଦାନ କରୁଥିଲେ । ଏହିଠାରେ ଦେଖିବାକୁ ମିଳେ, ପାଶ୍ଚାତ୍ୟ ଦେଶର ମୋହମୟୀ ବିଳାସର ମରୀଚିକା — ପ୍ରବଳ ଅର୍ଥଲାଳସା ତାଙ୍କ ସନ୍ନ୍ୟାସକୁ ବିଚଳିତ କରିପାରି ନାହିଁ । ଯେଉଁ ସମାଜରେ ପ୍ରତି ପଦରେ ପ୍ରଚୁର ଅର୍ଥର ପ୍ରୟୋଜନ, ସେହି ସମାଜ ବକ୍ଷରେ ସେ କାଲି କ୍ୱେଉଁଠି ରହିବେ କ'ଣ ଖାଇବେ ଇତ୍ୟାଦି ବିଷୟରେ ଚିନ୍ତା ନ କରି ଦିନ ପରେ ଦିନ କଟାଇ ଦେଉଥିଲେ । ପ୍ରଥମେ ପ୍ରଥମେ ଆମେରିକା ଲୋକେ ତାଙ୍କ ପ୍ରଶଂସା ଧ୍ୱନିରେ ଗଗନ ବିଦୀର୍ଣ୍ଣ କରିଥିଲେ ବି କେହି ଧର୍ମଶିକ୍ଷା ନିମିତ୍ତ ଶିଷ୍ୟରୂପେ ତାଙ୍କ ପାଦତଳେ ବସୁ ନ ଥିଲେ । ତାଙ୍କ ଗୁଣମୁଗ୍ଧ ଲୋକେ ତାଙ୍କୁ ବନ୍ଧୁ ଭାବରେ ସମ୍ମାନ କରିଛନ୍ତି, ଭଲ ପାଇଛନ୍ତି — ଗୁରୁରୂପେ, ଆଚାର୍ଯ୍ୟରୂପେ ଭକ୍ତି କରିନାହାନ୍ତି; କିନ୍ତୁ ଯେତେବେଳେ ବିଶେଷ ଭାବରେ ପର୍ଯ୍ୟବେକ୍ଷଣ କରି ସେମାନେ ଦେଖିଲେ ଯେ, ତାଙ୍କ କଥା ଓ କାର୍ଯ୍ୟରେ କୌଣସି ପାର୍ଥକ୍ୟ ନାହିଁ, ଯେତେବେଳେ ସେମାନେ ବୁଝିଲେ ଯେ, ସେମାନେ ନିଜ ଭିତରେ ଏଭଳି ଜଣେ ବ୍ୟକ୍ତିଙ୍କୁ ପାଇଛନ୍ତି, ଯେ ତଥାକଥିତ ଇନ୍ଦ୍ରିୟଭୋଗ-ସୁଖକୁ ତୃଣବତ୍ ଜ୍ଞାନ କରନ୍ତି, ଆଦର ପ୍ରତିପ୍ରତ୍ତି, ସମ୍ମାନ, ଯଶ, ଅର୍ଥ, କୌଣସିଥିରେ ତାଙ୍କ ଚିତ୍ତ ବିଚଳିତ ହୁଏ ନାହିଁ, ଯେତେବେଳେ ସେମାନେ ଦେଖିଲେ ଯେ, ଏହି ଅଦ୍ଭୁତ ପୁରୁଷ ସମ୍ପୂର୍ଣ୍ଣ ନିଃସ୍ୱାର୍ଥପର ଭାବରେ ସେମାନଙ୍କର କଲ୍ୟାଣ କାମନାରେ ହିନ୍ଦୁଶାସ୍ତ୍ର ଓ ଧର୍ମର ଅଗାଧ ସମୁଦ୍ର-ମଥିତ-ସୁଧା, ଅଦ୍ୱୈତାମୃତ ନେଇ ସେମାନଙ୍କ ଦ୍ୱାରଦେଶରେ ଉପସ୍ଥିତ, ସେତେବେଳେ ସେମାନେ ତାଙ୍କ ପଦତଳେ ବସି ଧର୍ମଶିକ୍ଷା ଗ୍ରହଣ କରିବାକୁ ଆସିଲେ ।

ଅବଶ୍ୟ ସଙ୍ଗେ ସଙ୍ଗେ ଏହା ମଧ୍ୟ ଭୁଲିଗଲେ ଚଳିବ ନାହିଁ ଯେ, ଯଦିବା ଚିକାଗୋ ମହାସଭା ପରଠାରୁ ବିବେକାନନ୍ଦ ଜଣେ ବିଖ୍ୟାତ ଲୋକ ହୋଇ ଯାଇଥିଲେ, ତଥାପି ବେଦାନ୍ତ ପ୍ରଚାର କାର୍ଯ୍ୟକୁ ସୁପ୍ରତିଷ୍ଠିତ କରିବା ଲାଗି ତାଙ୍କୁ ଅନେକ ଅସମ୍ଭବ ସହିତ ଯୁଦ୍ଧ କରିବାକୁ ପଡ଼ିଥିଲା । ୧୮୯୩ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ଏଗାର ତାରିଖ ଦିନ ଜଗଜ୍ଜନନୀ ତାଙ୍କ ପ୍ରିୟତମ ପୁତ୍ରକୁ ବିରାଟ ସଭା ମଧ୍ୟରେ ଠିଆ କରାଇ ଭାବୀ ଶତାବ୍ଦୀର ଚିନ୍ତା-ରାଜ୍ୟରେ ଜଣେ ଅପ୍ରତିହତ ଯୋଦ୍ଧାପଦ ପ୍ରଦାନ କରି ମହିମା-ସମୁନ୍ନତ ଶିରରେ ଯେପରି 'ଯଶର କଣ୍ଟକମୟ ମୁକୁଟ' ପିନ୍ଧାଇ ଦେଇଥିଲେ, ସେପରି ସଙ୍ଗେ ସଙ୍ଗେ ତାଙ୍କ ଅବଶିଷ୍ଟ ଜୀବନକୁ ଯଥାସାଧ କଣ୍ଟକାକୀର୍ଣ୍ଣ, ବାଧା ଓ ବିପତ୍ତିବହୁଳ କରିବାରେ ମଧ୍ୟ ତ୍ରୁଟି କରି ନ ଥିଲେ ।

ପୃଥିବୀର ବିଭିନ୍ନ ପ୍ରକାର ସଭ୍ୟ ଓ ଅର୍ଦ୍ଧସଭ୍ୟ ଜାତିଙ୍କ ସମ୍ମିଶ୍ରଣରେ ଗଠିତ ମାର୍କିନ୍ ଜାତି ଉତ୍ତରାଧିକାର ସୂତ୍ରରେ ପାଇଥିବା ଅନ୍ଧ କୁସଂସ୍କାର, ଅସାର ଅହଙ୍କାର, ଉଦ୍ଦାମ ଭାବପ୍ରବଣତା, ଅବ୍ୟବସ୍ଥିତ-ଚିତ୍ତତାକୁ ଯେ କୌଣସି ବିଦେଶୀ ଚିନ୍ତାଶୀଳ ବ୍ୟକ୍ତି ଆମେରିକାରେ ପଦାର୍ପଣ କରିବା ମାତ୍ରେ ବୁଝି ପାରନ୍ତି । ଯେ କୌଣସି ପ୍ରକାର ନୂତନ ମତବାଦ ବା ଧର୍ମ ହେଉ ନା କାହିଁକି, ତାହା ଯୁକ୍ତିପୂର୍ଣ୍ଣ ହେଉ ବା ଭ୍ରମପ୍ରମାଦର ସମଷ୍ଟି ହେଉ, ତାହାର ସମର୍ଥକ ଆମେରିକାରେ ନିଶ୍ଚୟ ମିଳିବେ । ଯେ କୌଣସି ପ୍ରକାରେ ହେଉ, କେତେଜଣ ଲୋକଙ୍କ ମନରେ ଉତ୍ତେଜନା ସୃଷ୍ଟି କରିପାରିଲେ ଅର୍ଥୋପାର୍ଜନର ଗୋଟିଏ ସୁଗମ ପନ୍ଥା ନିର୍ମାଣ କରି ନିଆଯାଇପାରେ । ଆମେରିକାବାସୀଙ୍କ ଏହି ଦୁର୍ବଳତାକୁ ସୁଲଭ ମୃଗୟାରେ ପରିଣତ କରି ଧର୍ମତତ୍ତ୍ୱ, ପ୍ରେତତତ୍ତ୍ୱ, ଭୌତିକକାଣ୍ଡ, ମହାତ୍ମାମାନଙ୍କର ଜଳ, ସ୍ଥଳ ଓ ଶୂନ୍ୟରେ ଅବାଧ ବିଚରଣ ଆଦି ବୈଚିତ୍ର୍ୟପୂର୍ଣ୍ଣ ମତବାଦ ପୂର୍ବରୁ ପ୍ରଚାରିତ ହୋଇଥିଲା ଏବଂ ପ୍ରଚୁର ଅର୍ଥ ଦକ୍ଷିଣା ଦେଇ ସ୍ଥୂଳଦୃଷ୍ଟି, ଅନ୍ଧବିଶ୍ୱାସୀ ନରନାରୀ ମୁକ୍ତି ଓ ଆଧ୍ୟାତ୍ମିକ ଉନ୍ନତି କାମନାରେ ଏହି ସମସ୍ତ ଅଲୌକିକ ରହସ୍ୟ-ଜଡ଼ିତ ସମିତିର ସଭ୍ୟ ହୋଇ ନିଜକୁ କୃତାର୍ଥ ମନେ କରୁଥିଲେ । ଏହିପ୍ରକାର ପାରିପାର୍ଶ୍ୱିକ ଅବସ୍ଥା ମଧ୍ୟରେ ବେଦାନ୍ତର ବ୍ରହ୍ମଜ୍ଞାନ ପ୍ରଚାର କରିବାକୁ ଯୁକ୍ତିପନ୍ଥୀ ବିବେକାନନ୍ଦଙ୍କୁ ଯେ କି ଅସୀମ ଧୈର୍ଯ୍ୟ ସହକାରେ କଠୋର ପରିଶ୍ରମ କରିବାକୁ ହୋଇଥିଲା, ତାହା ସହଜରେ ଅନୁମେୟ ।

ଏହି ସମସ୍ତ ଉଦ୍‌ଭ୍ରାନ୍ତ-ଚିତ୍ତ ଅଲୌକିକ ରହସ୍ୟ ପଛରେ ଧାବମାନ ନରନାରୀଙ୍କ ମଧ୍ୟରୁ ପ୍ରକୃତ ସତ୍ୟତତ୍ତ୍ୱାନ୍ୱେଷୀ ଓ ଈଶ୍ୱର-ଲିପ୍‌ସୁ ବ୍ୟକ୍ତିମାନଙ୍କୁ ବହୁ ଆୟାସ ସହକାରେ ବାଛି ବାହାର କରିବା ପରେ ବିବେକାନନ୍ଦ ଶିକ୍ଷାଦାନ କାର୍ଯ୍ୟରେ ଅଗ୍ରସର ହେବାକୁ ସମର୍ଥ ହୋଇଥିଲେ ।

ଏହି ସମସ୍ତ ସମିତିର କର୍ତ୍ତୃପକ୍ଷଗଣ ବିବେକାନନ୍ଦଙ୍କୁ ସେମାନଙ୍କ ସହିତ ଯୋଗଦାନ କରିବା ନିମିତ୍ତ ପ୍ରଥମେ ପ୍ରଲୋଭନ ଓ ଅନୁରୋଧ, ଅବଶେଷରେ ନାନା ପ୍ରକାର ଭୟ ପ୍ରଦର୍ଶନ କରିବାରେ ଲାଗିଲେ । ତାଙ୍କ ମତ, କାର୍ଯ୍ୟ ବା ଚିନ୍ତାରେ ଗୁପ୍ତ ବିଷୟ କିଛି ନ ଥିଲା; ସେ ନିର୍ଭୀକଭାବରେ ପ୍ରକାଶ୍ୟରେ ଘୋଷଣା କଲେ, ''ମୁଁ ସତ୍ୟଗ୍ରାହୀ ଓ ସତ୍ୟର ଉପାସକ; ସତ୍ୟ କେବେ କୌଣସି ଅବସ୍ଥାରେ ମିଥ୍ୟା ସହିତ ସନ୍ଧି କରିବ ନାହିଁ । ଯଦି ସମଗ୍ର ଜଗତ ଆଜି ଏକମତ ହୋଇ ମୋ ବିରୋଧରେ ଦଣ୍ଡାୟମାନ ହୁଏ, ତେବେ ମଧ୍ୟ ସତ୍ୟ ବଳବତ୍ତର ରହିବ ।''

ତା'ପରେ ଖ୍ରୀଷ୍ଟିଆନ୍ ମିଶନାରୀଗଣ ! ଏମାନେ ବିବେକାନନ୍ଦ-ପ୍ରଚାରିତ ଧର୍ମମତକୁ ତର୍କ ଓ ଯୁକ୍ତିଦ୍ୱାରା ଖଣ୍ଡନ କରି ନ ପାରି ପ୍ରତିପଦରେ ତାଙ୍କ ବ୍ୟକ୍ତିଗତ ଚରିତ୍ରକୁ ସମାଲୋଚନା କରିବାକୁ ଆରମ୍ଭ କଲେ । ଯେ କେହି ତାଙ୍କ ବନ୍ଧୁ ହେଲେ, ତାଙ୍କୁ ଶତ୍ରୁରେ ପରିଣତ କରିବାକୁ ଚେଷ୍ଟା ହେଲା । ହୁଏତ କୌଣସି ଗୋଟିଏ ପରିବାରକୁ ଧର୍ମୋପଦେଶ ଦେବା ଲାଗି ସ୍ୱାମୀଜୀ ଆହୂତ ହୋଇଛନ୍ତି, ଏମାନେ

ପୂର୍ବାହ୍ନରେ ତାହା ଜାଣିପାରି ଏହି ପରିବାରସ୍ଥ ବ୍ୟକ୍ତିବର୍ଗଙ୍କୁ ନାନା ପ୍ରକାରେ ବୁଝାଇବାକୁ ଲାଗିଲେ ଯେ, ଏହାଙ୍କ କଥା ଓ କାର୍ଯ୍ୟରେ ମେଳ ନାହିଁ, ଏହାଙ୍କ ଚରିତ୍ର ଏହି ପ୍ରକାର ଇତ୍ୟାଦି ଇତ୍ୟାଦି । ସେମାନେ ଏସବୁ ଶୁଣି କେହି ଅବା ପତ୍ର ଲେଖି ଆହ୍ୱାନ ପ୍ରତ୍ୟାହାର କରି ନେଉଥିଲେ; ଅନ୍ୟ କେଉଁଠାରେ ସ୍ୱାମୀଜୀ ପହଞ୍ଚି ଦେଖୁଥିଲେ ଯେ ପରିବାରର ଲୋକେ ଦ୍ୱାର ବନ୍ଦ କରି ଅନ୍ୟ କୁଆଡ଼େ ଚାଲିଯାଇଛନ୍ତି । ପୁଣି ଏପରି ଘଟଣା ଘଟୁଥିଲା ଯେ, ଏହି ଲୋକମାନେ ପରେ ନିଜ ଭୁଲ ସ୍ୱୀକାର କରି ସ୍ୱାମୀଜୀଙ୍କ ପାଖକୁ ଆସି ଅନୁତାପ କରୁଥିଲେ । ସ୍ୱାମୀଜୀଙ୍କ ଆମେରିକାନ୍ ଶିଷ୍ୟ ଓ ଶିଷ୍ୟାମାନଙ୍କ ମଧ୍ୟରେ ଏଭଳି ଲୋକଙ୍କ ସଂଖ୍ୟା ନିତାନ୍ତ ଅଳ୍ପ ନୁହେଁ । ଯାହା ହେଉ, ଏହି ମିଶନାରୀ ପ୍ରଭୁଗଣ ପ୍ରକାରାନ୍ତରେ ସ୍ୱାମୀଜୀଙ୍କ ପ୍ରଚାରକାର୍ଯ୍ୟରେ ସୁବିଧା କରି ଦେଉଥିଲେ ।

କିନ୍ତୁ ନିଉୟର୍କରେ ଧର୍ମପ୍ରଚାର କାର୍ଯ୍ୟରେ ପ୍ରବୃତ୍ତ ହେବା ଆଗରୁ ସ୍ୱାମୀଜୀଙ୍କୁ ଆଉ ଗୋଟିଏ ପ୍ରବଳତମ ପ୍ରତିଦ୍ୱନ୍ଦୀ ପକ୍ଷର ସମ୍ମୁଖୀନ ହେବାକୁ ପଡ଼ିଲା । ଏମାନେ ଆମେରିକାର ଲବ୍ଧପ୍ରତିଷ୍ଠ 'ସ୍ୱାଧୀନ ଚିନ୍ତକ' । ଏହି ଦଳ ମଧ୍ୟରେ ନାସ୍ତିକ, ଜଡ଼ବାଦୀ, ସନ୍ଦେହବାଦୀ, ଯୁକ୍ତିବାଦୀ—ବିଭିନ୍ନ ପ୍ରକାର ମତାବଲମ୍ବୀ ବ୍ୟକ୍ତି ଥିଲେ ମଧ୍ୟ ଧର୍ମ ବା ତତ୍‌ସଂଶ୍ଲିଷ୍ଟ ବ୍ୟାପାରକୁ ଜୁଆଚୋରୀ ଓ କୁସଂସ୍କାର ବୋଲି ଜ୍ଞାନ କରି ଉପେକ୍ଷା କରିବା ବିଷୟରେ ସମସ୍ତେ ଏକମତ । ଏମାନେ ଦମ୍ଭ ସହକାରେ ଦିନେ ବିବେକାନନ୍ଦଙ୍କୁ ତାଙ୍କ ସମାଜ-ଗୃହରେ ବକ୍ତୃତା ଦେବା ଲାଗି ନିମନ୍ତ୍ରଣ କଲେ ।

ସ୍ୱାମୀଜୀ ସେମାନଙ୍କଦ୍ୱାରା ଉତ୍‌ଥାପିତ-ଯୁକ୍ତିଗୁଡ଼ିକ ଖଣ୍ଡନ କରି ଅଦ୍ୱୈତବାଦର ଶ୍ରେଷ୍ଠତା ପ୍ରତିପାଦନ କଲେ । ତା'ପରଠାରୁ ଅନେକ 'ସ୍ୱାଧୀନ ଚିନ୍ତକ' ସ୍ୱାମୀଜୀଙ୍କ ଉପଦେଶରେ ଅନୁପ୍ରାଣିତ ହୋଇ ଶିଷ୍ୟତ୍ୱ ଗ୍ରହଣ କଲେ । 'ସ୍ୱାଧୀନ ଚିନ୍ତକ' ମାନେ ନୀରବ ହେବା ପରେ ପରେ ବିବେକାନନ୍ଦଙ୍କ ପ୍ରଚାର କାର୍ଯ୍ୟ ନିର୍ବିଘ୍ନରେ କ୍ଷିପ୍ରତା ସହିତ ପ୍ରସାରଲାଭ କରିଥିଲା । ବିବେକାନନ୍ଦଙ୍କ ପ୍ରଚାର କାର୍ଯ୍ୟରେ ଏହା ଗୋଟିଏ ସୁପ୍ରସିଦ୍ଧ ଘଟଣା ।

**ସ୍ୱାମୀଜୀଙ୍କ ପାଶ୍ଚାତ୍ୟ ଦେଶକୁ ପ୍ରଚାର କାର୍ଯ୍ୟରେ ଯିବାର କାରଣ**

ଦଳେ ଲୋକ କହନ୍ତି ଯେ, ହିନ୍ଦୁଧର୍ମ ଗୋଟିଏ ପ୍ରଚାରଶୀଳ ଧର୍ମ ନୁହେଁ ଏବଂ ବିବେକାନନ୍ଦଙ୍କ ଆମେରିକା ବା ପାଶ୍ଚାତ୍ୟ ଦେଶ ଭ୍ରମଣ ଐତିହାସିକ ଦୃଷ୍ଟିରୁ ରାମମୋହନ ଓ କେଶବଚନ୍ଦ୍ରଙ୍କ ଅନୁକରଣ ମାତ୍ର । ବିବେକାନନ୍ଦଙ୍କଠାରେ ଏମାନେ ରାମମୋହନ ଓ କେଶବଚନ୍ଦ୍ରଙ୍କର ବହୁ ପ୍ରଭାବ ଦେଖିବାକୁ ପାଆନ୍ତି ।

ବିବେକାନନ୍ଦଙ୍କ ପାଶ୍ଚାତ୍ୟ ଦେଶ ଗମନ ସମ୍ବନ୍ଧରେ ଐତିହାସିକ ଦୃଷ୍ଟି ଯଦି କେବଳମାତ୍ର ବ୍ୟକ୍ତିବିଶେଷର ଅନୁକରଣ ରୂପେ ନ ଦେଖେ, ତାହାହେଲେ ଦେଖିବାକୁ ମିଳେ ଯେ ନିଖିଳ ଧର୍ମମତଗୁଡ଼ିକର ଜନନୀସ୍ୱରୂପା ଭାରତବର୍ଷ ବହୁବାର

ତାହାର ଆଧ୍ୟାତ୍ମିକ ଜଗତକୁ ତତ୍ତ୍ୱ ଦାନ କରିଛି । ପୁଣି ଦେଖାଯାଏ, ଯେତେବେଳେ କୌଣସି ଶକ୍ତିମାନ୍ ଜାତି ଜାଗ୍ରତ ହୋଇ ପୃଥିବୀକୁ ଏକ ଅଖଣ୍ଡ ରାଜନୈତିକ ସୂତ୍ରରେ ବାନ୍ଧିବା ଲାଗି ପ୍ରୟାସୀ ହୋଇଛି, ସେତେବେଳେ ସେହି ସୂତ୍ର ଅବଲମ୍ବନ କରି ଭାରତୀୟ ଚିନ୍ତାରାଜି ସମଗ୍ର ଜଗତକୁ ପ୍ରସରି ଯାଇଛି । ଗ୍ରୀକ୍, ରୋମକ, ବେବିଲୋନୀୟ ଇତ୍ୟାଦି ପ୍ରାଚୀନ ସଭ୍ୟତାର ଗଠନକଳ୍ପେ ଭାରତ କି କି ଉପାଦନ ଦେଇଥିଲା, ତାହା ମଧ୍ୟ ଚିନ୍ତାଶୀଳ ଐତିହାସିକଙ୍କ ସୂକ୍ଷ୍ମ ଦୃଷ୍ଟି ଏଡ଼ାଇ ପାରି ନାହିଁ । ବୌଦ୍ଧ ଧର୍ମର ଜଗତ୍ ଉପପ୍ଲାବନ, ଅଶୋକଙ୍କ ଧର୍ମପ୍ରଚାରକ ପ୍ରେରଣ—ଏହା ହିଁ ଐତିହାସିକ ଘଟଣା । ଠିକ୍ ସେହି କାରଣରୁ ଯେତେବେଳେ ତମୋଭାବବହୁଳ ରଜଃଶକ୍ତି ସାହାଯ୍ୟରେ ବଳଦୃପ୍ତ ପାଶ୍ଚାତ୍ୟ ଜାତିଗୁଡ଼ିକ ଜାତିଗତ ସ୍ୱାର୍ଥ ସାଧନରେ ଉଦ୍‌ବୁଦ୍ଧ ହୋଇ ସମଗ୍ର ଜଗତରେ ଗୋଟିଏ ଯୋଗସୂତ୍ର ସ୍ଥାପନ କରିଥିଲେ, ସେତେବେଳେ ବହୁ ଦିବସ ପରେ ଭାରତ ଏହି ଅଭିନବ ସଭ୍ୟତାଭଣ୍ଡାରରେ ନିଜ ଯୁଗଯୁଗାନ୍ତର ସଞ୍ଚିତ ଚିନ୍ତାସମୂହ ଦେବା ନିମିତ୍ତ ପ୍ରସ୍ତୁତ ହେଲା ଏବଂ ସେହି ଚେଷ୍ଟାର ପ୍ରଥମ ଫଳ ହେଲା, ବିବେକାନନ୍ଦଙ୍କ ପାଶ୍ଚାତ୍ୟ ଦେଶକୁ ଗମନ । ତେଣୁ ଏହା ଆପାତଦୃଷ୍ଟିରେ ବ୍ୟକ୍ତିବିଶେଷଙ୍କ ଅନୁକରଣ ବୋଲି ଭ୍ରମ ହେଲେ ହେଁ ଇତିହାସର ପୁନରାବୃତ୍ତି ମାତ୍ର ।

ପୁଣି ପାଶ୍ଚାତ୍ୟ ଦେଶକୁ ଗମନ ବିଷୟଟି ଯଦିବା ଅନୁକରଣ ହୋଇଥାଏ, ତଥାପି ପ୍ରତ୍ୟେକ ଚକ୍ଷୁଷ୍ମାନ ବ୍ୟକ୍ତି ଦେଖିପାରିବ ଯେ, ବିବେକାନନ୍ଦ କୌଣସି ବିଚାରରେ ରାମମୋହନ ବା କେଶବଚନ୍ଦ୍ରଙ୍କ ପ୍ରତିଧ୍ୱନି ନୁହନ୍ତି; ବରଂ ବିବେକାନନ୍ଦ ହେଉଛନ୍ତି, କେଶବଚନ୍ଦ୍ରଙ୍କ ବିରୋଧରେ ପ୍ରତିବାଦ—ତୀବ୍ର ପ୍ରତିବାଦ ! ରାମମୋହନଙ୍କ କର୍ମକ୍ଷେତ୍ର ଅଧିକତର ବିସ୍ତୃତ ଥିଲା । ସେ ବିଲାତ ଯିବାର ଚାଳିଶ ବର୍ଷ ପରେ କେଶବଚନ୍ଦ୍ର ବିଲାତ ଯାଇଥିଲେ ଏବଂ କେଶବଚନ୍ଦ୍ର ବିଲାତ ଯିବାର ବାଇଶି ବର୍ଷ ପରେ ବିବେକାନନ୍ଦଙ୍କ ପାଶ୍ଚାତ୍ୟ ଦେଶରେ ବେଦାନ୍ତ ପ୍ରଚାର ଆରମ୍ଭ ହୋଇଥିଲା । ୧୮୩୦, ୧୮୭୧, ୧୮୯୩—ଏହି ତିନିଗୋଟି ସ୍ମରଣୀୟ ସାଲଗୁଡ଼ିକୁ ଐତିହାସିକ ଚକ୍ଷୁରେ ଦେଖିଲେ ଦେଖାଯିବ ଯେ; ବଙ୍ଗ ପ୍ରଦେଶରେ ୧୮୩୦ ରୁ ୧୮୯୩ ମଧ୍ୟରେ ଆଧୁନିକ ଧର୍ମଚିନ୍ତା-ଇତିହାସରେ କି ପରିବର୍ତ୍ତନ, କି ପ୍ରତିକ୍ରିୟା ଦେଖାଦେଇଛି । ଏଗୁଡ଼ିକ ମଧ୍ୟରୁ ଗୋଟିକର ଅନ୍ୟ ଉପରେ ପ୍ରଭାବ ରହିବା ଅନିବାର୍ଯ୍ୟ; କିନ୍ତୁ ପ୍ରତ୍ୟେକର ଯେ ସ୍ୱାତନ୍ତ୍ର୍ୟ ଅଛି, ବୈଶିଷ୍ଟ୍ୟ ଅଛି, ତାହା ଅନ୍ଧ ବ୍ୟତୀତ ଅନ୍ୟ କିଏ ଅସ୍ୱୀକାର କରିବ ? କିନ୍ତୁ ଦୁଃଖର କଥା, ସବୁ ସମାଜରେ ଅନ୍ଧ ଅଛନ୍ତି ଏବଂ ଥାଆନ୍ତି ମଧ୍ୟ ।

## ନିଉୟର୍କରେ

ନିଉୟର୍କରେ ପ୍ରଶ୍ନୋତ୍ତର କ୍ଲାସରେ ସ୍ୱାମୀଜୀ ଧାରାବାହିକ ରୂପେ ଜ୍ଞାନଯୋଗ ଓ ରାଜଯୋଗ ସମ୍ବନ୍ଧରେ ବକ୍ତୃତା ଦେଉଥିଲେ । ନାତିବୃହତ୍

କକ୍ଷଟିରେ ଉତ୍ସୁକ ଛାତ୍ର ଓ ଛାତ୍ରୀଗଣଙ୍କ ଲାଗି ସ୍ଥାନାଭାବ ହେଉଥିଲା । ତଥାପି ସେମାନେ କଷ୍ଟ ସ୍ୱୀକାର କରି ଭାରତୀୟ ପ୍ରଥାନୁସାରେ ଚକା ପକାଇ ସେମାନଙ୍କ ପ୍ରିୟ ଆଚାର୍ଯ୍ୟଙ୍କୁ ଘେରି ବସୁଥିଲେ । ରାଜଯୋଗ ସମ୍ବନ୍ଧରେ ତାଙ୍କ ବକ୍ତୃତା ଶୁଣି କେତେଜଣଙ୍କ ଆଗ୍ରହ ଏତେ ବଢ଼ିଲା ଯେ ସେମାନେ ସ୍ୱାମୀଜୀଙ୍କଠାରୁ ଯୋଗ ଶିକ୍ଷା କରିବାକୁ ଆରମ୍ଭ କଲେ ଏବଂ ଏହି ବିଷୟରେ ସଫଳକାମ ହେବା ନିମିତ୍ତ ଯୋଗଶାସ୍ତ୍ର ନିର୍ଦ୍ଦେଶାନୁଯାୟୀ ବ୍ରହ୍ମଚର୍ଯ୍ୟ, ସାତ୍ତ୍ୱିକ ଆହାର ଇତ୍ୟାଦି ନିୟମଗୁଡ଼ିକ ମଧ୍ୟ ଶ୍ରଦ୍ଧା ସହିତ ପ୍ରତିପାଳନ କରିବାକୁ ଲାଗିଲେ । ଏହି ସମୟରେ ସ୍ୱାମୀଜୀ ନିଜେ ମଧ୍ୟ ଯୋଗୀପରି ଦୈହିକ କଠୋରତା ଅବଲମ୍ବନ କଲେ; କାରଣ ଜ୍ଞାତସାରରେ ବା ଅଜ୍ଞାତସାରରେ ସେ ସର୍ବଦା ଶିଷ୍ୟମାନଙ୍କ ସମ୍ମୁଖରେ ଗୋଟିଏ ଜୀବନ୍ତ ଆଦର୍ଶ ରୂପେ ବିରାଜୁଥିଲେ । ଏହିରୂପେ ତାଙ୍କ ନିଉୟର୍କସ୍ଥ କ୍ଷୁଦ୍ର ଆବାସସ୍ଥଳଟି ସନ୍ନ୍ୟାସୀ ଓ ସଂଯମୀଗଣଙ୍କ ଅଭିନବ ଆଧ୍ୟାତ୍ମିକ ଅନୁଭୂତି ଲାଭ ପାଇଁ ଅବିରତ ଚେଷ୍ଟାର ଗୋଟିଏ କ୍ଷୁଦ୍ର ମଠରେ ପରିଣତ ହୋଇଗଲା ।

ରାଜଯୋଗ ସମ୍ବନ୍ଧୀୟ ବକ୍ତୃତାଗୁଡ଼ିକର ଖ୍ୟାତି ଏତେ ସୁବିସ୍ତୃତ ହୋଇଗଲା ଯେ, ଯେଉଁଦିନ ରାଜଯୋଗ ସମ୍ବନ୍ଧରେ ବକ୍ତୃତା ହେବା କଥା ଥାଏ; ସେଦିନ ନଗରର ଦାର୍ଶନିକ, ବୈଜ୍ଞାନିକ ଓ ଅଧ୍ୟାପକଗଣ ଆସି ତାଙ୍କ କ୍ଷୁଦ୍ର କକ୍ଷଟିକୁ ପୂର୍ଣ୍ଣ କରିଦେଉଥିଲେ ଏବଂ ଆଗ୍ରହ ସହିତ ଅଭିନିବେଶ ସହକାରେ ଯୋଗଶାସ୍ତ୍ର ସମ୍ବନ୍ଧରେ ତାଙ୍କ ଯୁକ୍ତିପୂର୍ଣ୍ଣ ବୈଜ୍ଞାନିକ ବ୍ୟାଖ୍ୟା ଶ୍ରବଣ କରୁଥିଲେ । ଏହିରୂପେ ଜୁନ୍‌ମାସ ମଧ୍ୟରେ ତାଙ୍କ ବକ୍ତୃତାଗୁଡ଼ିକ ଏକତ୍ର କରି 'ରାଜଯୋଗ' ନାମକ ଖଣ୍ଡିଏ ପୁସ୍ତକ ପ୍ରକାଶିତ ହେଲା । ସ୍ୱାମୀଜୀ ଏହାର ପରିଶିଷ୍ଟରେ ପାତଞ୍ଜଳ ଦର୍ଶନର ଗୋଟିଏ ସୁବିସ୍ତୃତ ଓ ଯୁକ୍ତିପୂର୍ଣ୍ଣ ଭାଷ୍ୟ ଯୋଗ କରିଦେଲେ । ଉଚ୍ଚତମ ମନସ୍ତତ୍ତ୍ୱର ସୂକ୍ଷ୍ମ ଓ ଯୁକ୍ତିପୂର୍ଣ୍ଣ ବିଶ୍ଳେଷଣ ମାଧ୍ୟମରେ ପୁସ୍ତକ ଖଣ୍ଡିକ ମନୀଷୀ ପାଠକ-ସମାଜରେ ଚିରଦିନ ପ୍ରତିଷ୍ଠା ଲାଭ କରିଛି, ସନ୍ଦେହ ନାହିଁ । ଏହି ପୁସ୍ତକ ଖଣ୍ଡିକ ପାଠ କରି ଆମେରିକାର ଜଗତ୍‌ଖ୍ୟାତ ମନସ୍ତାତ୍ତ୍ୱିକ ପଣ୍ଡିତ ଅଧ୍ୟାପକ ଜେମସ୍ ଏତେ ମୁଗ୍ଧ ହେଲେ ଯେ, ସ୍ୱୟଂ ସ୍ୱାମୀଜୀଙ୍କ ବାସସ୍ଥାନକୁ ଆସି ତାଙ୍କ ସହିତ ପରିଚିତ ହେଲେ ଏବଂ ଅବଶେଷରେ ତାଙ୍କର ଜଣେ ଅକପଟ ବନ୍ଧୁ ହୋଇଗଲେ । ଏହି ପୁସ୍ତକ ଖଣ୍ଡିକ ପ୍ରକାଶିତ ହେବାର କେତେ ସପ୍ତାହ ମଧ୍ୟରେ ଏହାର ତିନିଗୋଟି ସଂସ୍କରଣ ଦରକାର ପଡ଼ିଥିଲା । ଏଥିରୁ ବୁଝାଯାଏ, ଆମେରିକାବାସୀ ପଣ୍ଡିତମଣ୍ଡଳୀ ସ୍ୱାମୀଜୀଙ୍କ ଅଲୌକିକ ପ୍ରତିଭାପ୍ରସୂତ ପ୍ରଥମ ପୁସ୍ତକ ଖଣ୍ଡିକୁ ସାଦର ଅଭ୍ୟର୍ଥନା କରିବାକୁ କୃପଣତା ଦେଖାଇ ନାହାନ୍ତି ।

ଇତିମଧ୍ୟରେ ସ୍ୱାମୀଜୀ ବହୁ ପ୍ରତିଷ୍ଠାବାନ ଶିଷ୍ୟ ଏବଂ ପ୍ରଚାର କାର୍ଯ୍ୟରେ ସର୍ବତୋଭାବେ ସହାୟକ ବନ୍ଧୁ ଲାଭ କରିଥିଲେ । ସେମାନଙ୍କ ମଧ୍ୟରେ ଶ୍ରୀମତୀ ମେରି ଲୁଇସ୍ (ସ୍ୱାମୀ ଅଭୟାନନ୍ଦ), ଡାକ୍ତର ସ୍ୟାଣ୍ଡସ୍‌ବର୍ଗ (ସ୍ୱାମୀ କୃପାନନ୍ଦ), ଶ୍ରୀମତୀ ଓଲି ବୁଲ, ଡାକ୍ତର ଏଲେନ୍ ଡି, କୁମାରୀ ୱାଲଡୋ, ଅଧ୍ୟାପକ ୱେମାନ

ଓ ରାଇଟ୍, ଡାକ୍ତର ଷ୍ଟ୍ରୀଟ୍ ଏବଂ ଅନେକ ଖ୍ରିଷ୍ଟାନ୍ ଧର୍ମପ୍ରଚାରକ ଏବଂ ସାଧାରଣ ଶିକ୍ଷିତ ଓ ସମ୍ଭ୍ରାନ୍ତ ବ୍ୟକ୍ତି ସ୍ୱାମୀଜୀଙ୍କ ଶିକ୍ଷାରେ ସମଧିକ ଆକୃଷ୍ଟ ହୋଇଥିଲେ । କିଛିଦିନ ପରେ ସୁବିଖ୍ୟାତ ଗାୟିକା ଶ୍ରୀମତୀ କ୍ୟାଲ୍‌ଭେ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ନିଉୟର୍କ ଧନୀସମାଜର ଶ୍ରୀଯୁକ୍ତ ଓ ଶ୍ରୀମତୀ ଫ୍ରାନ୍‌ସିସ୍ ଲିଗେଟ ଏବଂ କୁମାରୀ ଜେ. ମ୍ୟାକ୍‌ଲାଉଡ୍ ମଧ୍ୟ ସ୍ୱାମୀଜୀଙ୍କ ଶିଷ୍ୟତ୍ୱ ଗ୍ରହଣ କରି ବିବିଧ ପ୍ରକାରେ ତାଙ୍କ ପ୍ରଚାର କାର୍ଯ୍ୟରେ ସାହାଯ୍ୟ କରିବାରେ ଲାଗିଲେ । 'ଡିକ୍‌ସନ୍ ସୋସାଇଟି'ର ସଭ୍ୟଗଣ ସ୍ୱାମୀଜୀଙ୍କ ବକ୍ତୃତା ଶ୍ରବଣ କରି ଗଭୀର ଶ୍ରଦ୍ଧା ସହକାରେ ହିନ୍ଦୁ ଆଦର୍ଶରେ ଜୀବନ ଗଠନ କରିବା ନିମିତ୍ତ ଉତ୍ସାହ ସହକାରେ କାର୍ଯ୍ୟ ଆରମ୍ଭ କରିଦେଲେ ।

୧୮୯୫ ଖ୍ରୀଷ୍ଟାବ୍ଦରେ ସ୍ୱାମୀଜୀଙ୍କୁ ଯେପରି କଠୋର ପରିଶ୍ରମ କରିବାକୁ ହୋଇଥିଲା, ତାହା ଭାବିଲେ ବିସ୍ମିତ ହେବାକୁ ହୁଏ । ଅପରିଚିତ ବିଦେଶରେ ସମ୍ପୂର୍ଣ୍ଣ ବିଭିନ୍ନ ସାମାଜିକ ରୀତି-ନୀତି, ଆଚାର-ବ୍ୟବହାର ମଧ୍ୟରେ ଏବଂ ନାନା ପ୍ରକାର ପ୍ରତିକୂଳ ବ୍ୟବସ୍ଥା ବିରୋଧରେ ତ୍ୟାଗପୂତ ହିନ୍ଦୁଧର୍ମ ପ୍ରଚାର କରିବା ଯେ କିପରି ସୁକଠିନ କାର୍ଯ୍ୟ, ତାହା ଅତି ସହଜରେ ଅନୁମେୟ । ଆମେରିକାର ପ୍ରଚୁର ବିଳାସ ମଧ୍ୟରେ କର୍ମଶକ୍ତି, ପ୍ରବଳ ଉତ୍ସାହ ସମୟେ ସମୟେ ଯେପରି କି ବନ୍ଦ ହୋଇଯାଉଥିଲା; ସେତେବେଳେ ଆଜନ୍ମ ତ୍ୟାଗୀ ସନ୍ନ୍ୟାସୀ ଗଭୀର କ୍ଷୋଭ ସହିତ ନିଜ ଜୀବନର ଗତ ଦିବସଗୁଡ଼ିକ ପ୍ରତି ଲକ୍ଷ୍ୟ କରି କହି ଉଠୁଥିଲେ, "I long – oh long for my rags, my shaven head, my sleep under the trees and my food from begging !" (ମୁଁ ଚାହେଁ, ମୋର ସେହି ପୁରୁଣା କୌପୀନ, ଲଣ୍ଡିତ ମସ୍ତକ, ବୃକ୍ଷତଳେ ଶୟନ ଓ ଭିକ୍ଷାଲବ୍ଧ ପଦାର୍ଥରୁ ଆହାର ପୁଣି ମୁଁ ଚାହେଁ !)

## 'ସହସ୍ର-ଦ୍ୱୀପୋଦ୍ୟାନ'ରେ ଶିଷ୍ୟ ଓ ଶିଷ୍ୟାଗଣଙ୍କୁ ଶିକ୍ଷାଦାନ

ଅବିଶ୍ରାନ୍ତ ଉଚ୍ଚତମ ଦାର୍ଶନିକ ତତ୍ତ୍ୱର ବିଶ୍ଳେଷଣ-ସମନ୍ୱିତ ବକ୍ତୃତା ପ୍ରଦାନ ଏବଂ ଶିକ୍ଷାଦାନ କାର୍ଯ୍ୟରେ ପରିଶ୍ରାନ୍ତ ହୋଇ ସ୍ୱାମୀଜୀ କେତେଦିନ ବିଶ୍ରାମଲାଭର ଏକାନ୍ତ ପ୍ରୟୋଜନୀୟତା ଅନୁଭବ କଲେ । ତାଙ୍କର ଜଣେ ଶିଷ୍ୟାଙ୍କର ସେଣ୍ଟ ଲରେନ୍‌ସ ନଦୀ ବକ୍ଷରେ 'ସହସ୍ର-ଦ୍ୱୀପୋଦ୍ୟାନ' ନାମକ ଦ୍ୱୀପରେ ଗୋଟିଏ ମନୋରମ ଗୃହ ଥିଲା; ସେ ଏହି ଗୃହଟିକୁ ଆଗ୍ରହରେ ସ୍ୱାମୀଜୀଙ୍କ ବ୍ୟବହାର ଲାଗି ଅର୍ପଣ କରିବାକୁ ପ୍ରସ୍ତୁତ ହେଲେ । ସ୍ୱାମୀଜୀ ଉକ୍ତ ପ୍ରସ୍ତାବରେ ସମ୍ମତ ହୋଇ କତିପୟ ଏକାନ୍ତ ଅନୁରାଗୀ ଶିଷ୍ୟ ଓ ଶିଷ୍ୟାଙ୍କ ସହିତ ଉକ୍ତ ସ୍ଥାନକୁ ଗଲେ । ଏହି ସ୍ଥାନରେ ସୌଭାଗ୍ୟକ୍ରମେ ଯେଉଁମାନେ ସ୍ୱାମୀଜୀଙ୍କ ପବିତ୍ର ସଙ୍ଗଲାଭ କରିବାର ଅଧିକାର ପାଇଥିଲେ ସେମାନଙ୍କ ମଧ୍ୟରୁ ଅନ୍ୟତମ କୁମାରୀ ଏସ୍.ଇ. ୱାଲ୍‌ଡୋ ଲେଖିଛନ୍ତି —

"ଏହି ଗନ୍ଧର୍ବ ରାଜ୍ୟରେ ଆମ୍ଭେମାନେ ଆଚାର୍ଯ୍ୟଦେବଙ୍କ ସହିତ ସାତୋଟି ସପ୍ତାହ ଦିବ୍ୟାନନ୍ଦରେ ତାଙ୍କ ଅତିନ୍ଦ୍ରୀୟ ରାଜ୍ୟର ବାର୍ତ୍ତାସମନ୍ୱିତ ଅପୂର୍ବ ରଚନାବଳୀ ଶ୍ରବଣପୂର୍ବକ ଅତିବାହିତ କରିଥିଲୁ—ସେତେବେଳେ ଆମେ ଜଗତକୁ ଭୁଲି ଯାଇଥିଲୁ, ଜଗତ ମଧ୍ୟ ଆମମାନଙ୍କୁ ଭୁଲି ଯାଇଥିଲା । ଏହି ସମୟରେ ପ୍ରତିଦିନ ସାନ୍ଧ୍ୟ ଭୋଜନ ସମାପନ ପରେ ଆମେ ସମସ୍ତେ ଉପର ମହଲା ବାରଣ୍ଡାରେ ବସି ଆଚାର୍ଯ୍ୟ ଦେବଙ୍କ ଆଗମନକୁ ପ୍ରତୀକ୍ଷା କରି ରହୁଥିଲୁ । ବେଶୀ ବେଳ ଅପେକ୍ଷା କରିବାକୁ ହେଉ ନ ଥିଲା; କାରଣ ଆମେ ସମବେତ ହେଉ ନ ହେଉଣୁ ତାଙ୍କ କୋଠରୀ ଦ୍ୱାର ଖୋଲୁଥିଲା ଏବଂ ସେ ଧୀରେ ଧୀରେ ବାହାରକୁ ଆସି ତାଙ୍କର ନିର୍ଦ୍ଦିଷ୍ଟ ଆସନ ଗ୍ରହଣ କରୁଥିଲେ । ସେ ଆମ୍ଭମାନଙ୍କ ସହିତ ପ୍ରତ୍ୟହ ଦୁଇଘଣ୍ଟା ଏବଂ ସମୟେ ସମୟେ ଆହୁରି ଅଧିକ ସମୟ କଟାଉଥିଲେ । ଗୋଟିଏ ଅପୂର୍ବ ସୌନ୍ଦର୍ଯ୍ୟମୟ ରଜନୀରେ (ଯେଉଁଦିନ ପୂର୍ଣ୍ଣିମା ଚନ୍ଦ୍ର ବିରାଜୁଥିଲା) କଥାବାର୍ତ୍ତା ହେଉ ହେଉ ଚନ୍ଦ୍ର ଅସ୍ତ ହୋଇଗଲା, ଆମେ ଯେପରି କାଳକ୍ଷେପଣ କଥା ଜାଣିପାରିଲୁ ନାହିଁ, ସ୍ୱାମୀଜୀ ମଧ୍ୟ ଠିକ୍ ସେହିପରି ଜାଣିପାରିଲେ ନାହିଁ । ଏହି ସମସ୍ତ କଥୋପକଥନ ଲିପିବଦ୍ଧ କରିବା ସମ୍ଭବପର ହୋଇ ନ ଥିଲା— ତାହା କେବଳ ଶ୍ରୋତୃବୃନ୍ଦଙ୍କ ହୃଦୟରେ ଲିଖିତ ହୋଇ ରହିଛି । ଏହିସବୁ ଦିବ୍ୟ ଅବସରରେ ଆମେ ଯେଉଁ ଉଚ୍ଚାଙ୍ଗ ଗଭୀର ଧର୍ମାନୁଭୂତି ଲାଭ କରୁଥିଲୁ, ତାହା ଆମ ଭିତରୁ କେହି ଭୁଲି ପାରିବେ ନାହିଁ । ସ୍ୱାମୀଜୀ ଏହି ସମୟରେ ତାଙ୍କ ହୃଦୟର କବାଟ ଖୋଲି ଦେଉଥିଲେ; ଧର୍ମଲାଭ କରିବା ନିମିତ୍ତ ତାଙ୍କୁ ଯେଉଁ ସବୁ ବାଧାବିଘ୍ନ ଅତିକ୍ରମ କରି ଯିବାକୁ ହୋଇଥିଲା; ସେଗୁଡ଼ିକ ଯେପରି ପୁନର୍ବାର ଆମ୍ଭମାନଙ୍କ ନେତ୍ରଗୋଚର ହେଉଥିଲା; ଯେପରି କି ତାଙ୍କ ଗୁରୁଦେବ ସୂକ୍ଷ୍ମ ଶରୀରରେ ତାଙ୍କ ମୁଖାବଲମ୍ବନ କରି ଆମମାନଙ୍କ ନିକଟରେ କଥା କହୁଥାଆନ୍ତି, ଆମର ସବୁ ସନ୍ଦେହ ମେଣ୍ଟାଇ ଦେଉଥାନ୍ତି, ସବୁ ପ୍ରଶ୍ନର ଉତ୍ତର ଦିଅନ୍ତି ଏବଂ ସମୁଦାୟ ଭୟ ଦୂର କରି ଦିଅନ୍ତି । ଅନେକ ସମୟରେ ସ୍ୱାମୀଜୀ ଯେପରି ଆମମାନଙ୍କ ଉପସ୍ଥିତ ହିଁ ଭୁଲି ଯାଉଥିଲେ, ଆମେ କାଳେ ତାଙ୍କ ଚିନ୍ତାପ୍ରବାହରେ ବାଧା ଦେବୁ, ଏହି ଭୟରେ ଆମେ ଯେପରି କି ନିଃଶ୍ୱାସ ବନ୍ଦ କରି ବସୁଥିଲୁ । ସେ ଆସନରୁ ଉଠି ବାରଣ୍ଡାରେ ସଂକୀର୍ଣ୍ଣ ସୀମା ମଧ୍ୟରେ ପଦଚାରଣ କରୁ କରୁ ଅନର୍ଗଳ କଥା କହି ଯାଉଥିଲେ । ଏହିସବୁ ସମୟରେ ସେ ଯେପରି କୋମଳ-ପ୍ରକୃତି ଥିଲେ ଓ ସମସ୍ତଙ୍କ ସ୍ନେହ ଆକର୍ଷଣ କରି ପାରୁଥିଲେ, ସେପରି ଆଉ କେବେ ହୋଇ ନାହିଁ । ତାଙ୍କ ଗୁରୁଦେବ ଯେପରି ତାଙ୍କ ଶିଷ୍ୟମାନଙ୍କୁ ଶିକ୍ଷା ଦେଉଥିଲେ, ଏହା ହୁଏତ ଅନେକାଂଶରେ ସେହି ଧରଣର — ସେ ନିଜେ ନିଜ ଆତ୍ମା ସହିତ ଭାବ-ଗଦ୍‌ଗଦ ହୋଇ କଥା କହି ଯାଉଥିଲେ ଏବଂ ଶିଷ୍ୟମାନେ ଶୁଣି ଯାଉଥିଲେ ।

"ସ୍ୱାମୀ ବିବେକାନନ୍ଦଙ୍କ ପରି ଜଣେ ଲୋକଙ୍କ ସହିତ ବାସ କରିବା ହିଁ ଅବିଶ୍ରାନ୍ତ ଉଚ୍ଚ ଉଚ୍ଚ ଅନୁଭୂତି ଲାଭ କରିବା । ପ୍ରାତଃକାଳରୁ ରାତ୍ରି ପର୍ଯ୍ୟନ୍ତ ସେହି

ଗୋଟିଏ ଭାବ—ଆମେ ଗୋଟିଏ ଘନୀଭୂତ ଧର୍ମ-ଭାବ-ରାଜ୍ୟରେ ବାସ କରୁଥିଲୁ ।

"ସ୍ୱାମୀଜୀ ବାଳକଙ୍କ ପରି କ୍ରୀଡ଼ାଶୀଳ ଓ କୌତୁକପ୍ରିୟ ହେଲେ ମଧ୍ୟ ଏବଂ ଉଲ୍ଲାସ ସହକାରେ ପରିହାସ କରି କଥାର ଚଟାପଟ ଉତ୍ତର ଦେବାରେ ଅଭ୍ୟସ୍ତ ଥିଲେ ସୁଦ୍ଧା କେବେ କୌଣସି ମୁହୂର୍ତ୍ତରେ ତାଙ୍କ ଜୀବନର ମୂଳମନ୍ତ୍ରରୁ ଲକ୍ଷ୍ୟଭ୍ରଷ୍ଟ ହେଉ ନ ଥିଲେ । ପ୍ରତ୍ୟେକ ପଦାର୍ଥରୁ କିଛି ନା କିଛି କରିବା ଲାଗି ଓ ଉଦାହରଣ ଦେବା ଲାଗି ଉପାଦାନ ପାଉଥିଲେ ଏବଂ ଗୋଟିଏ ସମୟରେ ସେ ଆମମାନଙ୍କୁ କୌତୁକଜନକ ହିନ୍ଦୁ ପୌରାଣିକ ଗଳ୍ପରୁ ଗଭୀର ଦର୍ଶନ ଭିତରକୁ ନେଇ ଯାଉଥିଲେ । ସ୍ୱାମୀଜୀ ପୌରାଣିକ ଗଳ୍ପର ଅସରନ୍ତି ଭଣ୍ଡାର ଥିଲେ । ପ୍ରକୃତ ପକ୍ଷରେ ଏହି ପ୍ରାଚୀନ ଆର୍ଯ୍ୟମାନଙ୍କ ଅପେକ୍ଷା କୌଣସି ଜାତି ଭିତରେ ଏତେ ବେଶୀ ପୌରାଣିକ ଗଳ୍ପର ପ୍ରଚଳନ ନାହିଁ । ସେ ଆମମାନଙ୍କୁ ଏହିସବୁ ଗଳ୍ପ ଶୁଣାଇ ପ୍ରୀତି ଅନୁଭବ କରୁଥିଲେ ଏବଂ ଆମକୁ ବି ଶୁଣିବାକୁ ଭଲ ଲାଗୁଥିଲା; କାରଣ ସେ ଏହିସବୁ ଗଳ୍ପ ଅନ୍ତରାଳରେ ଯେଉଁ ସତ୍ୟ ନିହିତ ଅଛି, ତାହା ଦେଖାଇ ଦେଉଥିଲେ ଏବଂ ଏଥିରୁ ମୂଲ୍ୟବାନ ଧର୍ମୋପଦେଶ ଆବିଷ୍କାର କରିବାକୁ ଭୁଲୁ ନ ଥିଲେ । କୌଣସି ଭାଗ୍ୟବାନ ଛାତ୍ରମଣ୍ଡଳୀ ଏଭଳି ପ୍ରତିଭାବାନ ଆଚାର୍ଯ୍ୟଙ୍କୁ ପାଇ ନିଜକୁ ଧନ୍ୟ ମନେ କରିବାର ଏପରି ସୁଯୋଗ ପାଇଥିଲେ କି ନା, ସନ୍ଦେହ ।"[୧]

କୁମାରୀ ଏମ୍. ସି. ଫାଙ୍କି ଏହି ପ୍ରସଙ୍ଗରେ ଲେଖିଛନ୍ତି—

"ମନେ ମନେ ଦୃଢ଼ସଂକଳ୍ପ ଥିଲା ଯେ, କୌଣସି ସମୟରେ ଓ କୌଣସି ସ୍ଥାନରେ ନିଶ୍ଚୟ ତାଙ୍କୁ ସାକ୍ଷାତ୍ କରିବୁ; ଏଥିପାଇଁ ଆମକୁ ସମଗ୍ର ପୃଥିବୀକୁ ଅତିକ୍ରମ କରିବାକୁ ହେଲେ ହେଁ ଆପତ୍ତି ନାହିଁ । ପ୍ରାୟ ଦୁଇବର୍ଷ ପର୍ଯ୍ୟନ୍ତ ଆମେ ତାଙ୍କୁ ଖୋଜି ପାଇଲୁ ନାହିଁ ଏବଂ ମନେକଲୁ, ସେ ଅବା ଭାରତକୁ ଫେରିଗଲେଣି; କିନ୍ତୁ ଦିନେ ଅପରାହ୍ଣରେ ଜଣେ ବନ୍ଧୁ ସମ୍ବାଦ ଦେଲେ, ସେ ଏବେ ମଧ୍ୟ ଏ' ଦେଶରେ ଅଛନ୍ତି ଏବଂ ଗ୍ରୀଷ୍ମ ଛୁଟିଟା 'ସହସ୍ର-ଦ୍ୱୀପୋଦ୍ୟାନ'ରେ କଟାଉଛନ୍ତି । ତାଙ୍କୁ ଖୋଜି ପାଇଲେ ତାଙ୍କଠାରୁ ଶିକ୍ଷାଲାଭ କରିବୁ, ଏହି ଦୃଢ଼ସଂକଳ୍ପ ନେଇ ଆମେମାନେ ପରଦିନ ସକାଳେ ଯାତ୍ରା କଲୁ ।

"ଅନେକ ଅନୁସନ୍ଧାନ ପରେ ଅବଶେଷରେ ତାଙ୍କ ସାକ୍ଷାତ୍ ପାଇଲୁ । ସେ ଜନକୋଳାହଳଠାରୁ ଦୂରରେ ଆସି ରହୁଛନ୍ତି; ଏପରି ଅବସ୍ଥାରେ ତାଙ୍କ ଶାନ୍ତିଭଙ୍ଗ କରିବାର ଦୁଃସାହସ କରିଛୁ, ଏହା ଭାବି ଆମେ ବିଶେଷ ଭୟ କରୁଥିଲୁ; କିନ୍ତୁ ସେ ଆମ ପ୍ରାଣରେ ଏପରି ଏକ ଅଗ୍ନି ପ୍ରଜ୍ୱଳିତ କରିଥିଲେ, ଯାହା ନିର୍ବାପିତ ହେବାର ନୁହେଁ । ଏହି ଅଦ୍ଭୁତ ବ୍ୟକ୍ତି ଓ ତାଙ୍କ ଉପଦେଶ ସମ୍ବନ୍ଧରେ ଆମକୁ ଅଧିକ କିଛି ଜାଣିବାକୁ ହେବ । ସେଦିନ ଥାଏ ଅନ୍ଧକାରମୟ ରଜନୀ, ଝିପି ଝିପି ବର୍ଷା

---

୧. ଦେବବାଣୀ — ସ୍ୱାମୀ ବିବେକାନନ୍ଦ

ହେଉଥାଏ, ପୁଣି ଆମେ ଦୀର୍ଘପଥ ଅତିକ୍ରମ କରି ଆସିଥିବାରୁ କ୍ଳାନ୍ତି ଅନୁଭବ କରୁଥାଉ, କିନ୍ତୁ ତାଙ୍କ ସାକ୍ଷାତ୍ ନ ମିଳିଲେ ଆମ ମନରେ ଶାନ୍ତି ନାହିଁ ।

''ସେ କ'ଣ ଆମକୁ ଶିଷ୍ୟାରୂପେ ଗ୍ରହଣ କରିବେ ? ଯଦି ନ କରନ୍ତି, ତେବେ ଉପାୟ କ'ଣ ? ଆମର ହଠାତ୍ ମନେହେଲା ଯେ ଜଣେ ବ୍ୟକ୍ତି, ଯେ କି ଆମର ଅସ୍ତିତ୍ୱ ପର୍ଯ୍ୟନ୍ତ ଜାଣନ୍ତି ନାହିଁ, ତାଙ୍କୁ ଦେଖିବା ଲାଗି ଶତ ଶତ କ୍ରୋଶ ପଥ ଅତିକ୍ରମ କରି ଆସିବା ହୁଏତ ମୂର୍ଖତା ଛଡ଼ା ଅନ୍ୟ କିଛି ନୁହେଁ । x x x ପରେ ଏହି ଘଟଣା ସମ୍ବନ୍ଧରେ ଆଚାର୍ଯ୍ୟଦେବ ଆମମାନଙ୍କୁ ଦେଖାଇ ଏହିପରି କହୁଥିଲେ, ''ମୋର ଏହି ଶିଷ୍ୟଦ୍ୱୟ ଯେଉଁମାନେ ଶତ ଶତ କ୍ରୋଶ ପଥ ଅତିକ୍ରମ କରି ମୋ ସହିତ ସାକ୍ଷାତ୍ କରିବାକୁ ଆସିଥିଲେ, ପୁଣି ସେମାନେ ରାତ୍ରିକାଳରେ ଝଡ଼ବୃଷ୍ଟିର ସମ୍ମୁଖୀନ ହୋଇ ବି ଆସିଥିଲେ ।' ତାଙ୍କୁ କ'ଣ କହିବୁ, ଆଗରୁ ମନେ ମନେ ସ୍ଥିର କରି ରଖିଥିଲୁ । କିନ୍ତୁ ଯେତେବେଳେ ଆମେ ସତକୁ ସତ ତାଙ୍କର ସାକ୍ଷାତ୍ ପାଇଲୁ, ସଙ୍ଗେ ସଙ୍ଗେ ଆମେ ସେହି କଥା ଏକଦମ୍ ଭୁଲିଗଲୁ; ଆଉ ଆମ ଭିତରୁ ଜଣେ କୌଣସି ମତେ ଅସ୍ପଷ୍ଟ ସ୍ୱରରେ କହିପାରିଲା, 'ଆମେ ଡେଟ୍ରଏଟ୍‌ରୁ ଆସିଛୁ ଏବଂ ଶ୍ରୀମତୀ x x x ଆମକୁ ଆପଣଙ୍କ ପାଖକୁ ପଠାଇଛନ୍ତି ।' ଆଉ ଜଣେ କହିଲେ, 'ଭଗବାନ ଈଶା ଏବେ ମଧ୍ୟ ପୃଥିବୀରେ ଥିଲେ, ଆମେ ଯେପରି ତାଙ୍କ ନିକଟକୁ ଯାଇଥାନ୍ତୁ ଏବଂ ଉପଦେଶ ଭିକ୍ଷା କରିଥାନ୍ତୁ, ଆମେ ଆପଣଙ୍କ ନିକଟକୁ ଠିକ୍ ସେହିପରି ଆସିଛୁ ।' ସେ ଆମମାନଙ୍କୁ ସସ୍ନେହ ଦୃଷ୍ଟିରେ ଚାହିଁ ମୃଦୁ ସ୍ୱରରେ କହିଲେ, 'ଯଦି ଭଗବାନ ଖ୍ରୀଷ୍ଟଙ୍କପରି ତୁମକୁ ଏହି ମୁହୂର୍ତ୍ତରେ ମୁକ୍ତ କରି ଦେବାର କ୍ଷମତା ମୋର ଥାଆନ୍ତା !' x x x ଆମେ ସେଠାରେ ମୋଟରେ ବାରଜଣ ଥିଲୁ ଏବଂ ମନେ ହେଉଥିଲା, ଯେପରି କି ଜ୍ୱାଳାମୟୀ ଐଶୀଶକ୍ତି (Pentecostal Fire) ଅବତରଣ କରି ପ୍ରାଚୀନ କାଳର ଖ୍ରିସ୍ତାନ୍ ଶିଷ୍ୟମାନଙ୍କ ପରି ଆଚାର୍ଯ୍ୟଦେବଙ୍କୁ ମଧ୍ୟ ସ୍ପର୍ଶ କରିଥିଲା । ଦିନେ ଅପରାହ୍ନରେ ତ୍ୟାଗ-ମାହାତ୍ମ୍ୟ କଥା କହୁଥିବା ବେଳେ ସେ ଗୈରିକବସନଧାରୀ ସନ୍ନ୍ୟାସୀମାନଙ୍କ ଆନନ୍ଦ ଓ ସ୍ୱାଧୀନତା ବର୍ଣ୍ଣନା କରୁ କରୁ ଉଠିପଡ଼ିଲେ ଏବଂ ଅଳ୍ପସମୟ ଭିତରେ ତ୍ୟାଗ-ବୈରାଗ୍ୟର ଚରମ ସୀମାସ୍ୱରୂପ (Song of the Sannyasi) 'ସନ୍ନ୍ୟାସୀଙ୍କ ଗୀତି' ଶୀର୍ଷକ କବିତା ଲେଖି ପକାଇଲେ । ମୋର ମନେହୁଏ, ତାଙ୍କ ଅପରିସୀମ ଧୈର୍ଯ୍ୟ ଓ କୋମଳତା ହିଁ ମୋତେ ଏହି ସମୟରେ ସର୍ବାପେକ୍ଷା ମୁଗ୍ଧ କରିଥିଲା । ପିତା ତା'ର ସନ୍ତାନମାନଙ୍କୁ ଯେଉଁ ଚକ୍ଷୁରେ ଦେଖେ, ସେ ଆମକୁ ଠିକ୍ ସେହି ଦୃଷ୍ଟିରେ ଦେଖୁଥିଲେ — ଯଦିବା ଆମ ଭିତରୁ ଅନେକେ ତାଙ୍କଠାରୁ ବୟସରେ ବଡ଼ ଥିଲେ । ପ୍ରାତଃକାଳ କ୍ଲାସର କଥୋପକଥନ ଶୁଣି ସମୟେ ସମୟେ ଆମମାନଙ୍କର ମନେ ହେଉଥିଲା, ଯେପରି କି ସେ ବ୍ରହ୍ମକୁ କରାମଳକବତ୍ ପ୍ରତ୍ୟକ୍ଷ କରିଛନ୍ତି; ଏହି ସମୟରେ ହୁଏତ ସେ କକ୍ଷ ପରିତ୍ୟାଗ କରି ଉଠି ଯାଉଥିଲେ ଏବଂ ଅଳ୍ପକ୍ଷଣ ପରେ ଫେରିଆସି କହୁଥିଲେ, 'ମୁଁ ବର୍ତ୍ତମାନ

ତୁମମାନଙ୍କ ପାଇଁ ରାନ୍ଧିବାକୁ ଯାଉଛି ।' ଆଉ କେତେ ଧୈର୍ଯ୍ୟ ସହିତ ସେ ଚୁଲ୍ଲୀ ପାଖରେ ଠିଆ ହୋଇ ଆମ ପାଇଁ କିଛି ଭାରତୀୟ ଖାଦ୍ୟ ତିଆରି କରୁଥିଲେ । ଡେଟ୍ରଏଟରେ ସେ ଶେଷଥର ମଧ୍ୟ ଆମମାନଙ୍କ ନିମିତ୍ତ ଅତି ଉପାଦେୟ ବ୍ୟଞ୍ଜନ ପ୍ରସ୍ତୁତ କରିଥିଲେ । ପ୍ରତିଭାଶାଳୀ, ପଣ୍ଡିତାଗ୍ରଗଣ୍ୟ, ଜଗଦ୍‌ବିଖ୍ୟାତ ବିବେକାନନ୍ଦ ଶିଷ୍ୟଗଣଙ୍କ କ୍ଷୁଦ୍ର କ୍ଷୁଦ୍ର ଅଭାବଗୁଡ଼ିକ ସ୍ୱହସ୍ତରେ ପୂରଣ କରି ଦେଉଛନ୍ତି— ଶିଷ୍ୟମାନଙ୍କ ପକ୍ଷରେ କି ଅପୂର୍ବ ଉଦାହରଣ ! ସେ ଏହିସବୁ ସମୟରେ କେତେ କୋମଳ, କେତେ କରୁଣ ସ୍ୱଭାବ ହେଉଥିଲେ ! କେତେ କୋମଳତାମୟ ପୁଣ୍ୟ-ସ୍ମୃତି ସେ ଆମମାନଙ୍କୁ ଉତ୍ତରାଧିକାର ସୂତ୍ରରେ ଦେଇଯାଇଛନ୍ତି !''

x x x

ବହୁଦିନ ପରେ ସ୍ୱାମୀଜୀ ନଗରୀର କୋଳାହଳ, ପ୍ରତିଦ୍ୱନ୍ଦୀ-ସଂଘର୍ଷ, ବକ୍ତୃତାପ୍ରଦାନ ଇତ୍ୟାଦିରୁ ନିଷ୍କୃତି ପାଇ ଯେପରି ଶ୍ୱସ୍ତି-ନିଃଶ୍ୱାସ ପକାଉଥିଲେ । 'ସହସ୍ରଦ୍ୱୀପୋଦ୍ୟାନ'କୁ ଆସିବାର ଠିକ୍ ପୂର୍ବେ ସେ 'ଗ୍ରୀନ୍ ଏକର ସମ୍ମିଳନୀ'ରେ ବକ୍ତୃତା କରିବା ଲାଗି ନିମନ୍ତ୍ରିତ ହୋଇଥିଲେ; କିନ୍ତୁ ସେ ଏହାକୁ ପ୍ରତ୍ୟାଖ୍ୟାନ କରିବାକୁ ବାଧ୍ୟ ହୋଇଥିଲେ । ସେ ପଣ୍ଡିତ ଦାର୍ଶନିକମଣ୍ଡଳୀ ସମ୍ମୁଖରେ ବକ୍ତୃତା କରିବା ଅପେକ୍ଷା ଭବିଷ୍ୟତ ବେଦାନ୍ତ ପ୍ରଚାର କାର୍ଯ୍ୟର ସହଯୋଗୀ ରୂପେ କେତେଜଣ ଶିଷ୍ୟଙ୍କୁ ତିଆରି କରିବା ଅଧିକତର ପ୍ରୟୋଜନୀୟ ମନେ କରିଥିଲେ, ତାହାର କିୟଦଂଶ ଜଣେ ଶିଷ୍ୟ ଲିପିବଦ୍ଧ କରି ରଖିଥିଲେ; ପରେ ଏହା (Inspired Talks) 'ଦେବବାଣୀ' ନାମକ ପୁସ୍ତକରୂପେ ପ୍ରକାଶିତ ହୋଇଛି । ଯାହା ହେଉ, ଏହି ସ୍ଥାନରେ ସ୍ୱାମୀଜୀ ପାଞ୍ଚଜଣଙ୍କୁ ବ୍ରହ୍ମଚର୍ଯ୍ୟ ଓ ଦୁଇଜଣଙ୍କୁ ସନ୍ନ୍ୟାସ ପ୍ରଦାନ କରିଥିଲେ । ଅବଶେଷରେ ପୁନରାୟ ନବୋତ୍ସାହ ସହିତ ସେ ନିଉୟର୍କକୁ ଫେରିଆସି ବେଦାନ୍ତ ପ୍ରଚାର କାର୍ଯ୍ୟରେ ବ୍ରତୀ ହେଲେ ।

## ନ୍ୟୁୟର୍କକୁ ପ୍ରତ୍ୟାବର୍ତ୍ତନ ଓ ଇଂଲଣ୍ଡ ଯାତ୍ରା

ନ୍ୟୁୟର୍କକୁ ଫେରିଆସି ଆଚାର୍ଯ୍ୟଦେବ ଇଂଲଣ୍ଡ ଯିବାକୁ ପ୍ରସ୍ତୁତ ହେଲେ । ମେ ମାସରେ ସ୍ୱାମୀଜୀ ବେଦାନ୍ତାନୁରାଗିଣୀ କୁମାରୀ ହେନରିଏଟା ମୁଲର୍‌ଙ୍କଦ୍ୱାରା ଇଂଲଣ୍ଡକୁ ନିମନ୍ତ୍ରିତ ହୋଇଥିଲେ । ଅବଶେଷରେ ଶ୍ରୀଯୁକ୍ତ ଇ.ଟି.ଷ୍ଟର୍ଡି ସ୍ୱାମୀଜୀଙ୍କୁ ପୁନଃ ପୁନଃ ଲଣ୍ଡନକୁ ଆସିବା ନିମିତ୍ତ ପତ୍ର ଲେଖିବାରେ ଲାଗିଲେ । ଇତିମଧ୍ୟରେ ସ୍ୱାମୀଜୀଙ୍କ ବନ୍ଧୁ, ନ୍ୟୁୟର୍କର ଜନୈକ ଧନକୁବେର ସ୍ୱୟଂ ସ୍ୱାମୀଜୀଙ୍କୁ ସଙ୍ଗରେ ନେଇ ଫ୍ରାନ୍‌ସ ଓ ଇଂଲଣ୍ଡ ଯିବା ଲାଗି ପ୍ରସ୍ତାବ କରିବାରୁ ସ୍ୱାମୀଜୀ ଆନନ୍ଦରେ ସମ୍ମତ ହେଲେ । କ୍ରମାଗତ ଦୁଇବର୍ଷ କାଳ ଅବିଶ୍ରାନ୍ତ ଶାରୀରିକ ଓ ମାନସିକ ପରିଶ୍ରମ ପରେ ସମୁଦ୍ରଯାତ୍ରାରେ ତାଙ୍କ ସ୍ୱାସ୍ଥ୍ୟର ଉନ୍ନତି ହେବ ବୋଲି ଆଶା କରି ଗୁରୁଗତପ୍ରାଣ ଶିଷ୍ୟବୃନ୍ଦ ମଧ୍ୟ ଆପତ୍ତି କଲେ ନାହିଁ । ଅବଶେଷରେ ପ୍ରଚାରକାର୍ଯ୍ୟର ଭାର ସ୍ୱାମୀ ଅଭୟାନନ୍ଦ, କୃପାନନ୍ଦ ଏବଂ ଭଗିନୀ ହରିଦାସୀଙ୍କ ହସ୍ତରେ ସମର୍ପଣ

କରି ସ୍ୱାମୀଜୀ ଅଗଷ୍ଟ ମାସ ମଧ୍ୟଭାଗରେ ନିଉୟର୍କରୁ ଯାଇ ଫ୍ରାନ୍‌ସର ରାଜଧାନୀ ପ୍ୟାରୀସ୍‌ରେ ପହଞ୍ଚିଲେ । ଆଧୁନିକ ଇଉରୋପୀୟ ସଭ୍ୟତାର ଜନ୍ମଭୂମି ପ୍ୟାରୀସ୍ ନଗରର ଐତିହାସିକ ଦ୍ରଷ୍ଟବ୍ୟ ସ୍ଥାନଗୁଡ଼ିକ ଦର୍ଶନ କରିସାରି ସ୍ୱାମୀଜୀ ଇଂଲଣ୍ଡ ଅଭିମୁଖେ ଯାତ୍ରା କଲେ ।

## ଭାରତରେ ବିବେକାନନ୍ଦଙ୍କ ନିନ୍ଦା ପ୍ରଚାର

ଆମେରିକା ପରିତ୍ୟାଗ କରିବା ପୂର୍ବରୁ ସ୍ୱାମୀଜୀ ସମ୍ବାଦ ପାଇଲେ ଯେ, ଭାରତର କୌଣସି କୌଣସି ମିଶନାରୀ ସମ୍ବାଦପତ୍ରରେ ତାଙ୍କ ନିନ୍ଦା ରଟନା କରାଯାଉଛି । ସ୍ୱାମୀଜୀଙ୍କ ଆହାର୍ଯ୍ୟ ଦ୍ରବ୍ୟ ସମ୍ବନ୍ଧରେ କେତେ କଥା ଶ୍ରବଣ କରି ହିନ୍ଦୁମାନଙ୍କ ମଧ୍ୟରୁ ଅନେକେ ତାଙ୍କର ବିରୋଧୀ ହୋଇଛନ୍ତି । ତାଙ୍କ ଆଚାର ବ୍ୟବହାର ସମ୍ବନ୍ଧରେ ଜଘନ୍ୟ ବିବରଣୀ ସହ ପୁସ୍ତିକା, ଇସ୍ତାହାର ଇତ୍ୟାଦି ବଣ୍ଟା ହେଉଛି । ରକ୍ଷଣଶୀଳ ହିନ୍ଦୁ-ସମ୍ପ୍ରଦାୟର ମୁଖପତ୍ରସ୍ୱରୂପ 'ବଙ୍ଗବାସୀ' କାଗଜ ଏହି ସମୟରୁ ବିବେକାନନ୍ଦଙ୍କ ନିନ୍ଦାପ୍ରଚାରକୁ ଅନ୍ୟତମ ବ୍ରତରୂପେ ଗ୍ରହଣ କରି କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲା । ଖ୍ରିସ୍ତାନ ମିଶନାରୀମାନଙ୍କର କ୍ରୋଧ ଜାତ ହେବା ସ୍ୱାଭାବିକ, କାରଣ ସ୍ୱାମୀଜୀ ଖ୍ରିସ୍ତାନମାନଙ୍କୁ ହିନ୍ଦୁଧର୍ମ ପ୍ରତି ଶ୍ରଦ୍ଧା-ସମ୍ପନ୍ନ, ଏପରି କି ଅନେକଙ୍କୁ ହିନ୍ଦୁ କରିଦେଇଥିଲେ; ବିଶେଷତଃ ସ୍ୱାମୀଜୀ ତାଙ୍କ ସ୍ୱାର୍ଥର ଯଥେଷ୍ଟ ହାନି ଘଟାଉଥିଲେ । ମିଶନାରୀମାନେ ଇଉରୋପ ଓ ଆମେରିକାକୁ ଯାଇ ଅସଭ୍ୟ, ନାରମାଂସଭୁକ୍, ବନ୍ୟ-ବର୍ବର 'ହିଦେନ୍'ମାନଙ୍କ ପୈଶାଚିକ ଆଚାର-ବ୍ୟବହାର ବର୍ଣ୍ଣନା କରି ସେମାନଙ୍କୁ 'ଅନ୍ଧକାରରୁ ଆଲୋକକୁ ଆଣିବା ନିମିତ୍ତ' ଧନୀ ଓ ବଡ଼ଲୋକମାନଙ୍କଠାରୁ ପ୍ରଚୁର ଅର୍ଥ ଗ୍ରହଣ କରିଥାଆନ୍ତି । କିନ୍ତୁ ବିବେକାନନ୍ଦଙ୍କ ବକ୍ତୃତା ଯୋଗୁଁ ଅନେକ ଲୋକଙ୍କର ମିଶନାରୀବର୍ଣ୍ଣିତ କାହାଣୀ ପ୍ରତି ଅଶ୍ରଦ୍ଧା ଜନ୍ମିଥିଲା; କାଳେ ସେମାନେ ଆଉ 'ହିଦେନ୍'ମାନଙ୍କୁ ପ୍ରଭୁ ଈଶାଙ୍କ ସ୍ୱର୍ଗରାଜ୍ୟକୁ ଆଣିବା ନିମିତ୍ତ ଅର୍ଥ ସାହାଯ୍ୟ ନ ଦିଅନ୍ତି, ଏହି ଆଶଙ୍କାରେ ଯେ ମିଶନାରୀଜଣଙ୍କ ଉଦ୍‌ବିଗ୍ନ ହୋଇପଡ଼ିବେ ଏବଂ ବିବେକାନନ୍ଦଙ୍କ ନିନ୍ଦା ପ୍ରଚାର କରିବେ, ଏହା ସ୍ୱାଭାବିକ । ଯଦିବା ବରାହନଗର ମଠରେ ଥିବା ତାଙ୍କର ଗୁରୁଭ୍ରାତାମାନେ ଏହି କାହାଣୀଗୁଡ଼ିକୁ ବିଶ୍ୱାସ କରୁ ନ ଥିଲେ, ସ୍ୱାମୀଜୀଙ୍କ ମାନ୍ଦ୍ରାଜୀ ଓ ଅନ୍ୟ ଭାରତୀୟ ଶିଷ୍ୟବୃନ୍ଦ କ୍ରମାଗତ ଗୁରୁନିନ୍ଦା ଶ୍ରବଣ କରି ବିଚଳିତ ହୋଇ ଉଠିଲେ । ଦୁଇବର୍ଷ କାଳ କାପୁରୁଷ ନିନ୍ଦୁକଗଣଙ୍କଦ୍ୱାରା ହେୟଭାବରେ ଆକ୍ରାନ୍ତ ହୋଇ ମଧ୍ୟ ସ୍ୱାମୀଜୀ ପ୍ରକାଶ୍ୟରେ କୌଣସି ପ୍ରତ୍ୟୁତ୍ତର କରି ନାହାନ୍ତି; ବର୍ତ୍ତମାନ ଶିଷ୍ୟମାନଙ୍କ ମନୋଭାବ ଅବଗତ ହୋଇ ସେ ପ୍ୟାରିସ୍ ନଗରରୁ ଇଂଲଣ୍ଡକୁ ଯିବା ଆଗରୁ ସେମାନଙ୍କୁ ଖଣ୍ଡିଏ ପତ୍ର ଲେଖିବାର ଆବଶ୍ୟକତା ବୋଧ କଲେ, କାରଣ କୌଣସି କୌଣସି ମିଶନାରୀପୁଙ୍ଗବ ତାଙ୍କୁ କେବଳ ରାଜନୈତିକ ବକ୍ତା ବୋଲି ପ୍ରଚାର କରୁଥିଲେ ।

ତ୍ୟାଗ ଓ ବୈରାଗ୍ୟର ମହିମା କୀର୍ତ୍ତନ କରିବାକୁ ଯାଇ ସ୍ୱାମୀଜୀ ବେଳେ ବେଳେ ଭାବାବେଗରେ ପାଶ୍ଚାତ୍ୟ ସଭ୍ୟତାର ବିଳାସ-ତୃଷ୍ଣା, ପରଧନଲୋଲୁପତା, ସ୍ୱାର୍ଥପର ଆନ୍ତର୍ଜାତିକ ଆଇନ୍‌ଗୁଡ଼ିକୁ ତୀବ୍ରଭାବେ ଆକ୍ରମଣ କରୁଥିଲେ; ସେହିସବୁ ବକ୍ତୃତାର ଅଂଶବିଶେଷ ଉଦ୍ଧାର କରି ମିଶନାରୀଗଣ ତାଙ୍କୁ କେବଳ ରାଜନୈତିକ ବକ୍ତାରୂପେ ପ୍ରତିପନ୍ନ କରିବାକୁ ଚେଷ୍ଟା କରିଥିଲେ । କଲିକତାରେ ଗୋଟିଏ ପ୍ରକାଶ୍ୟ ସଭାରେ ରେଭରେଣ୍ଡ କାଳୀମୋହନ ବାନାର୍ଜୀ ତାଙ୍କୁ ରାଜନୈତିକ ବକ୍ତା ବୋଲି ବର୍ଣ୍ଣନା କରିବାରୁ ସ୍ୱାମୀଜୀ ନିଜ ଶିଷ୍ୟମାନଙ୍କୁ ପ୍ରତିବାଦ କରିବା ଲାଗି ଆଦେଶ ଦେଇଥିଲେ ଏବଂ ଏହି ଭଦ୍ର ବ୍ୟକ୍ତିଙ୍କୁ ସମ୍ବାଦପତ୍ର ଜରିଆରେ ନିଜ ମତ ସମର୍ଥନ କରିବା ଲାଗି ଆହ୍ୱାନ ଦେବା ନିମିତ୍ତ ପରାମର୍ଶ ଦେଇଥିଲେ । ନାନା କାରଣରୁ ସ୍ୱାମୀଜୀ ଶିଷ୍ୟବୃନ୍ଦଙ୍କୁ ସାନ୍ତ୍ୱନା ଦେବା ଅଭିପ୍ରାୟରେ ଲେଖିଥିଲେ— ''ମୁଁ ଆଶ୍ଚର୍ଯ୍ୟ ହେଉଛି ଯେ, ତୁମ୍ଭେମାନେ ମିଶନାରୀମାନଙ୍କ ପ୍ରଚାରିତ ନିର୍ବୋଧ-ବାକ୍ୟଗୁଡ଼ିକ ଶୁଣି ବିଚଳିତ ହୋଇପଡ଼ିଛ ! ଯଦି କୌଣସି ହିନ୍ଦୁ ମୋତେ ରକ୍ଷଣଶୀଳ ହିନ୍ଦୁମାନଙ୍କ ପରି ଆହାର-ପ୍ରଣାଳୀ ଅବଲମ୍ବନ କରିବାକୁ ଅଯାଚିତ ପରାମର୍ଶ ଦିଏ, ତାହାହେଲେ ସେମାନଙ୍କୁ କହ, ସେମାନେ ଯେପରି ଜଣେ ବ୍ରାହ୍ମଣ ପାଚକ ଓ ତା ସଙ୍ଗେ କେତେ ଟଙ୍କା ପଠାନ୍ତୁ ! ଗୋଟିଏ ପଇସା ସାହାଯ୍ୟ ଦେବାର କ୍ଷମତା ନାହିଁ—ଅଥଚ ବିଜ୍ଞ ଲୋକଙ୍କ ପରି ଉପଦେଶ ଦେବା ବେଳକୁ ଖୁବ୍ ଯୋଗ୍ୟତା ଅଛି ଦେଖି ମୁଁ ହାସ୍ୟ ସମ୍ବରଣ କରିପାରୁ ନାହିଁ । ଅନ୍ୟ ଦିଗରେ ଯଦି ମିଶନାରୀମାନେ କହନ୍ତି ଯେ ମୁଁ 'କାମ କାଞ୍ଚନ' ତ୍ୟାଗରୂପକ ସନ୍ନ୍ୟାସ ଜୀବନର ମହତ୍ତମ ବ୍ରତ ଭଙ୍ଗ କରିଛି, ତେବେ ସେମାନଙ୍କୁ କହ, ସେମାନେ ଘୋର ମିଥ୍ୟାବାଦୀ । x x x ମନେରଖ ମୁଁ କାହାରି ନିର୍ଦ୍ଦେଶରେ ଚଳିବାକୁ ପ୍ରସ୍ତୁତ ନୁହେଁ; ମୁଁ ମୋର ଜୀବନର ଉଦ୍ଦେଶ୍ୟ ଭଲରୂପେ ଜାଣିଛି । ମୁଁ କୌଣସି ପ୍ରକାର ହଟ୍ଟଗୋଳ, ନିନ୍ଦା ଇତ୍ୟାଦିକୁ ଖାତିର କରେ ନାହିଁ । ମୁଁ କ'ଣ କୌଣସି ବ୍ୟକ୍ତିବିଶେଷ ବା ଜାତିବିଶେଷର କ୍ରୀତଦାସ ?... ତୁମେ କ'ଣ କହିବାକୁ ଚାହଁ ଯେ, କୁସଂସ୍କାରାଚ୍ଛନ୍ନ, ନିଷ୍ଠୁର ପ୍ରକୃତି, ଦୁର୍ବଳଚେତା, ନାସ୍ତିକ ଭାବାପନ୍ନ ତଥାକଥିତ ଶିକ୍ଷିତ ବ୍ୟକ୍ତିଗଣଙ୍କ ମଧ୍ୟରେ ବାସ କରିବା ଲାଗି ମୁଁ ଜନ୍ମଗ୍ରହଣ କରିଛି ? ମୁଁ ସବୁପ୍ରକାର କାପୁରୁଷତାକୁ ଘୃଣା କରେ । ଏହି ସମସ୍ତ କାପୁରୁଷ ଓ ରାଜନୈତିକ ନିର୍ବୋଧତା ସହିତ ମୋର କୌଣସି ସଂଶ୍ରବ ନାହିଁ । ଈଶ୍ୱର ଓ ସତ୍ୟ ହିଁ ମୋର ଏକମାତ୍ର ରାଜନୀତି—ଏହା ବ୍ୟତୀତ ଆଉସବୁ ଆବର୍ଜନା ମାତ୍ର ।''

ଯୁଗପ୍ରୟୋଜନରେ ଅବତୀର୍ଣ୍ଣ ମହାପୁରୁଷଗଣ ସତ୍ୟ ଓ ଲୋକାଚାର ସହିତ ଆପୋଷ ସମାଧାନ କରି ଶାନ୍ତ, ଶିଷ୍ଟ ଓ ସଦାଳାପୀ ମଣିଷ ସାଜି ସମାଜରେ ଚଳପ୍ରଚଳ ହେବା ଲାଗି ଜନ୍ମଗ୍ରହଣ କରନ୍ତି ନାହିଁ । ସେମାନଙ୍କୁ ସାଧାରଣ ଲୋକଙ୍କ ସ୍ତରକୁ ଟାଣିବାର ଚେଷ୍ଟା ବୃଥା ! ହିନ୍ଦୁଧର୍ମର ପୁନରୁତ୍‌ଥାନ ଲାଗି ଯେଉଁ ମହାଶକ୍ତି ବିବେକାନନ୍ଦଙ୍କ ମଧ୍ୟରେ ପୁଞ୍ଜୀଭୂତ ହୋଇଥିଲା, ତାହାର ଜଗତ୍-ଉପପ୍ଲାବୀ

ପ୍ରବାହ ରୋଧ କରିବା ଲାଗି କେତେଜଣ ମେରୁଦଣ୍ଡହୀନ ବ୍ରାହ୍ମ-ପ୍ରଚାରକ ଯେ ପ୍ରତିଦ୍ୱନ୍ଦ୍ୱୀରୂପେ ପଥରୋଧ କରିବା ନିମିତ୍ତ ଅଗ୍ରସର ହୋଇଥିଲେ, ସେ କ୍ଷୁଦ୍ର ପ୍ରୟାସ ସମ୍ବନ୍ଧରେ ଉଲ୍ଲେଖ ନ କରି ଉପେକ୍ଷା କରିବା ହିଁ ଶ୍ରେୟସ୍କର ।

## ଲଣ୍ଡନରେ ପ୍ରଚାର କାର୍ଯ୍ୟ

ଇଂରେଜମାନେ ତାଙ୍କ ଅଧୀନସ୍ଥ ଜାତିର ଧର୍ମପ୍ରଚାରକ ସନ୍ନ୍ୟାସୀଙ୍କୁ କେଉଁଭାବରେ ଗ୍ରହଣ କରିବେ ଭାବି ସ୍ୱାମୀଜୀ ଈଷତ୍ ସନ୍ଦିଗ୍ଧ ଚିତ୍ତରେ ଲଣ୍ଡନ ମହାନଗରୀରେ ପ୍ରବେଶ କଲେ; କିନ୍ତୁ କେତେଦିନ ପରେ ସେ ଆଶ୍ଚର୍ଯ୍ୟ ହେଲେ ଯେ, ଅଭିଜାତ ସମ୍ପ୍ରଦାୟର ମୁଖପାତ୍ର ସ୍ୱରୂପ ସମ୍ଭ୍ରାନ୍ତ ବ୍ୟକ୍ତିବର୍ଗ ପର୍ଯ୍ୟନ୍ତ ତାଙ୍କୁ ସ୍ୱାଳୟରେ ଆତିଥ୍ୟ ଗ୍ରହଣ କରିବା ଲାଗି ନିମନ୍ତ୍ରଣ କଲେ । ଆଚାର୍ଯ୍ୟଦେବ ଯେଉଁଠାକୁ ଯାଉଥିଲେ, ସେଠାରେ ଜନସାଧାରଣଙ୍କ ଭିତରେ ଗୋଟିଏ ତୁମୂଳ ଆନ୍ଦୋଳନର ସୃଷ୍ଟି ହେଉଥିଲା ବୋଲି ପାଶ୍ଚାତ୍ୟାବାସୀଗଣ ତାଙ୍କୁ 'Cyclonic Hindu' ଆଖ୍ୟା ଦେଇଥିଲେ । ଏହି 'Cyclonic Hindu'ଙ୍କ ଆଗମନର ତିନିସପ୍ତାହ ମଧ୍ୟରେ ତାଙ୍କ ଯଶଃକାହାଣୀ ନାଗରିକମାନଙ୍କର ବିଶେଷ ଆଲୋଚନାର ବିଷୟ ହୋଇ ଉଠିଲା । ପ୍ରତିଦିନ ସନ୍ଧ୍ୟାରେ ବକ୍ତୃତା ଓ ସକାଳେ ପ୍ରଶ୍ନୋତ୍ତର କ୍ଲାସର ଅଧିବେଶନ ଚାଲିଲା । ସମ୍ବାଦପତ୍ରର ପ୍ରତିନିଧିଗଣ ଏବଂ ସାଧାରଣ ଲୋକ ପ୍ରତ୍ୟହ ଦଳଦଳ ହୋଇ ତାଙ୍କ ସହିତ ସାକ୍ଷାତ୍ କରିବାକୁ ଆସିଲେ; ଗୋଟିଏ କଥାରେ କହିଲେ, ନିଉୟର୍କରେ ସେ ଯେଉଁପରି କାର୍ଯ୍ୟ କରୁଥିଲେ ଲଣ୍ଡନରେ ତା'ର ପୁନରାଭିନୟ ଚାଲିଲା ।

ସ୍ୱାମୀଜୀ ଅନୁରକ୍ତ ବନ୍ଧୁମାନଙ୍କ ଇଚ୍ଛାକ୍ରମେ 'ପିକାଡେଲୀ ପ୍ରିନ୍ସେସ୍ ହଲ' ରେ ଆତ୍ମ-ଜ୍ଞାନ ସମ୍ବନ୍ଧରେ ସହସ୍ରାଧିକ ଶ୍ରୋତାଙ୍କ ସମ୍ମୁଖରେ ଗୋଟିଏ ଗଭୀର ଦାର୍ଶନିକ ତତ୍ତ୍ୱସମନ୍ୱିତ ବକ୍ତୃତା ଦେଲେ । ଏହି ବକ୍ତୃତା ପ୍ରସଙ୍ଗରେ ସ୍ୱାମୀଜୀ ବହିର୍ମୁଖୀ ପାଶ୍ଚାତ୍ୟ-ଦର୍ଶନ-ବିଜ୍ଞାନର ତ୍ରୁଟି ପ୍ରଦର୍ଶନ କରି ଯେଉଁ ଯୁକ୍ତିପୂର୍ଣ୍ଣ ସମାଲୋଚନା କରିଥିଲେ, ପରଦିନ ସମ୍ବାଦପତ୍ରଗୁଡ଼ିକରେ ତାହାର ବିସ୍ତୃତ ସମାଲୋଚନା ବାହାରିଲା ଏବଂ ସମ୍ପାଦକଗଣ ଏହି ପ୍ରାଚ୍ୟ ଅଚାର୍ଯ୍ୟଙ୍କ ଉପଦେଶଗୁଡ଼ିକୁ ସମ୍ପୂର୍ଣ୍ଣ ଭାବରେ ସମର୍ଥନ କଲେ । 'ୱେଷ୍ଟମିନିଷ୍ଟର ଗେଜେଟ୍' ନାମକ ବିଖ୍ୟାତ ପତ୍ରିକାର ଜନୈକ ପ୍ରତିନିଧି ସ୍ୱାମୀଜୀଙ୍କ ସହିତ ସାକ୍ଷାତ୍ କରି ଉକ୍ତ ପତ୍ରିକାରେ 'ଲଣ୍ଡନରେ ଭାରତୀୟ ଯୋଗୀ' ଶୀର୍ଷକ ଗୋଟିଏ ତଥ୍ୟପୂର୍ଣ୍ଣ ପ୍ରବନ୍ଧ ସ୍ୱାମୀଜୀଙ୍କ ସମ୍ବନ୍ଧରେ ଲେଖିଥିଲେ । ଉକ୍ତ ପ୍ରତିନିଧିଙ୍କ ସହିତ କଥୋପକଥନ ପ୍ରସଙ୍ଗରେ ସ୍ୱାମୀଜୀ କହିଥିଲେ ଯେ, ତାଙ୍କ ଗୁରୁ ଶ୍ରୀଶ୍ରୀରାମକୃଷ୍ଣ ପରମହଂସଙ୍କଠାରୁ ସେ ଯେଉଁ ବାର୍ତ୍ତା ପାଇଛନ୍ତି, ତାକୁ ଜଗତ୍‌ରେ ପ୍ରଚାର କରିବା ହେଉଛି ତାଙ୍କ ଉଦ୍ଦେଶ୍ୟ — କୌଣସି ନୂତନ ସମ୍ପ୍ରଦାୟ ପ୍ରତିଷ୍ଠା କରିବା ତାଙ୍କ ଅଭିପ୍ରାୟ ନୁହେଁ । ସେ କୌଣସି ବିଶେଷ ଧର୍ମମତର ପ୍ରଚାରକ ମଧ୍ୟ ନୁହନ୍ତି; ତାଙ୍କ ବିଶ୍ୱାସ, ବେଦାନ୍ତର ଉଦାର ଜ୍ଞାନସମଷ୍ଟି

ସକଳ ଧର୍ମ ଓ ସମ୍ପ୍ରଦାୟ ନିଜ ନିଜ ଧର୍ମସମ୍ବନ୍ଧୀୟ ସ୍ୱାତନ୍ତ୍ର୍ୟ ବଜାୟ ରଖି ଗ୍ରହଣ କରି ପାରନ୍ତି ।

ବେଦାନ୍ତର ତ୍ୟାଗ, ବିବେକ ଓ ବୈରାଗ୍ୟର ଭିତ୍ତି ଉପରେ ଦ୍ରୁତ ଉନ୍ନତିଶୀଳ, ଆପାତ–ମନୋରମ, ପାଶ୍ଚାତ୍ୟ ସଭ୍ୟତାକୁ ପ୍ରତିଷ୍ଠିତ ନ କଲେ ଏହାର ଧ୍ୱଂସ ଅବଶ୍ୟମ୍ଭାବୀ ବୋଲି ସେ ବାରମ୍ବାର କହିଥିଲେ । ଗଭୀର ଦୂର–ଦୃଷ୍ଟି ସାହାଯ୍ୟରେ ଭାବୀ ଶତାବ୍ଦୀର ଭୟାବହ ଧ୍ୱଂସର କରାଳ ଦୃଶ୍ୟ ଦର୍ଶନ କରି ବୋଧହୁଏ ଆଚାର୍ଯ୍ୟ ଦୃଢ଼ତାର ସହିତ କହିଥିଲେ, ''ସାବଧାନ ! ମୁଁ ଦିବ୍ୟଚକ୍ଷୁରେ ଦେଖୁଛି, ସମଗ୍ର ପାଶ୍ଚାତ୍ୟ ଜଗତ ଗୋଟିଏ ଆଗ୍ନେୟଗିରି ଉପରେ ପ୍ରତିଷ୍ଠିତ ହୋଇଛି, ଏହା ଯେ କୌଣସି ମୁହୂର୍ତ୍ତରେ ଅଗ୍ନି ଉଦ୍‌ଗୀରଣ କରି ପାଶ୍ଚାତ୍ୟ ଜଗତକୁ ଧ୍ୱଂସ କରି ଦେଇପାରେ । ଏବେ ମଧ୍ୟ ଯଦି ତୁମ୍ଭେମାନେ ସାବଧାନ ନ ହୁଅ, ତାହାହେଲେ ଆଗାମୀ ପଚାଶ ବର୍ଷ ମଧ୍ୟରେ ତୁମ୍ଭମାନଙ୍କର ଧ୍ୱଂସ ଅବଶ୍ୟମ୍ଭାବୀ ।''

## ମିସ୍ ନୋବ୍‌ଲ ବା ନିବେଦିତାଙ୍କ ପ୍ରଥମ ଗୁରୁଦର୍ଶନ

ପ୍ରାୟ ମାସକ ମଧ୍ୟରେ ସ୍ୱାମୀଜୀ ଲଣ୍ଡନରେ ଯଥେଷ୍ଟ ପ୍ରତିଷ୍ଠା ଲାଭ କରିଥିଲେ । ଏହି ସମୟରେ ଗୋଟିଏ ବକ୍ତୃତା ସଭାରେ କୁମାରୀ ମାର୍ଗାରେଟ୍ ଇ. ନୋବ୍‌ଲ (ସିଷ୍ଟର୍ ନିବେଦିତା) ସ୍ୱାମୀଜୀଙ୍କ ସହିତ ପରିଚିତା ହେଲେ । ଏହି ଅସାଧାରଣ ବିଦୁଷୀ ମହିଳା ଗୋଟିଏ ବିଦ୍ୟାଳୟର ଶିକ୍ଷୟିତ୍ରୀ ଥିଲେ ଏବଂ ପାର୍ଶ୍ୱବର୍ତ୍ତୀ ପଣ୍ଡିତସମାଜରେ ତାଙ୍କର ଯଥେଷ୍ଟ ଖ୍ୟାତି ଓ ପ୍ରତିପତ୍ତି ଥିଲା । କୁମାରୀ ନୋବଲ୍ ସ୍ୱାମୀଜୀଙ୍କ ପ୍ରତି ଯଥେଷ୍ଟ ଶ୍ରଦ୍ଧାସମ୍ପନ୍ନ ହେଲେ ମଧ୍ୟ ସହସା ତାଙ୍କୁ ଆଚାର୍ଯ୍ୟ ବୋଲି ସମ୍ବୋଧନ କଲେ ନାହିଁ । ପ୍ରତିଦିନ ସେ ସ୍ୱାମୀଜୀଙ୍କ ବକ୍ତୃତା ଓ ପ୍ରଶ୍ନୋତ୍ତର କ୍ଲାସକୁ ନିୟମିତ ରୂପେ ଆସୁଥିଲେ । ସ୍ୱାମୀଜୀଙ୍କ ପବିତ୍ର ନିଃସ୍ୱାର୍ଥପର ଚରିତ୍ରମାଧୁରୀରେ ମୁଗ୍‌ଧ ହୋଇ ଅବଶେଷରେ କୁମାରୀ ନୋବ୍‌ଲ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରିବା ଲାଗି ସଂକଳ୍ପ କଲେ, କିନ୍ତୁ ସେ ତାଙ୍କ ମନୋଗତ ଭାବ ପ୍ରକାଶ ନ କରି ନୀରବରେ ଏହି ଅଦ୍ଭୁତକର୍ମୀ ସନ୍ନ୍ୟାସୀଙ୍କୁ ବିଭିନ୍ନ ପ୍ରକାରେ ପର୍ଯ୍ୟବେକ୍ଷଣ କରିବାକୁ ଲାଗିଲେ ।

ସ୍ୱାମୀଜୀ ଆମେରିକା ପରି ଇଂଲଣ୍ଡରେ ମଧ୍ୟ ପ୍ରଚାର କାର୍ଯ୍ୟରେ ଯଥେଷ୍ଟ ସାଫଲ୍ୟ ଲାଭ କରିଥିଲେ । ଇଂଲଣ୍ଡ ପରିତ୍ୟାଗ କରି ଆମେରିକା ଯିବା ଆଗରୁ ସେ ଜଣେ ଶିଷ୍ୟକୁ ଲେଖିଥିଲେ, ''ଇଂଲଣ୍ଡରେ ମୋ ପ୍ରଚାରକାର୍ଯ୍ୟ ଆଶାତୀତ ପ୍ରତିଷ୍ଠା ଲାଭ କରିଛି । ଆଗାମୀ ସପ୍ତାହରେ ମୁଁ ଆମେରିକା ଯାତ୍ରା କରିବି ବୋଲି ଶୁଣି ଅନେକ ବିଷଣ୍ଣ ହୋଇ ପଡ଼ିଛନ୍ତି । ମୁଁ ଚାଲିଗଲେ ଯେମିତି କାମ ହୋଇଛି, ତାହାର ଫଳ ଅନେକାଂଶରେ ନଷ୍ଟ ହୋଇଯିବ ବୋଲି କେତେକ ଆଶଙ୍କା କରୁଛନ୍ତି ସତ୍ୟ; କିନ୍ତୁ ମୋ ଧାରଣା ସେପରି ନୁହେଁ । ମୁଁ ମଣିଷ ଅଥବା କୌଣସି ବିଷୟ

ଉପରେ ନିର୍ଭର କରେ ନାହିଁ—ପ୍ରଭୁ ହିଁ ମୋର ଏକମାତ୍ର ଆଶ୍ରୟ । ସେ ମୋତେ ଯନ୍ତ୍ରସ୍ୱରୂପ ବ୍ୟବହାର କରି କାମ କରୁଛନ୍ତି ।''

୧୮୯୬ ଖ୍ରୀଷ୍ଟାବ୍ଦ ଜାନୁଆରୀ ୫ଠର ତାରିଖରେ 'ଇଣ୍ଡିଆନ ମିରର୍' ପତ୍ରିକା ସ୍ୱାମୀଜୀଙ୍କ ପ୍ରଚାରକାର୍ଯ୍ୟ ସମ୍ବନ୍ଧରେ ଲେଖିଥିଲେ—

''ଆମେମାନେ ଆନନ୍ଦର ସହିତ ଲେଖୁଛୁ ଯେ, ସ୍ୱାମୀ ବିବେକାନନ୍ଦ ଲଣ୍ଡନର ବହୁ ବିଶିଷ୍ଟ ଭଦ୍ରଲୋକ ଓ ମହିଳାଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି । ତାଙ୍କ ହିନ୍ଦୁ-ଦର୍ଶନ ଓ ଯୋଗ ସମ୍ବନ୍ଧୀୟ କ୍ଲାସରେ ବହୁ ଉତ୍ସାହୀ ଓ ଶ୍ରଦ୍ଧାବାନ ଶ୍ରୋତୃମଣ୍ଡଳୀ ଉପସ୍ଥିତ ରହନ୍ତି । ଲଣ୍ଡନରୁ ଜଣେ ସମ୍ବାଦଦାତା ଲେଖିଛନ୍ତି—'ଲଣ୍ଡନ ସହରର କତିପୟ ବିଭବଶାଳିନୀ, ବିଳାସିନୀ, ସମ୍ଭ୍ରାନ୍ତ ମହିଳା ଚୌକି ଅଭାବରେ ଚଟାଣ ଉପରେ ଚକା ପକାଇ ବସି ଗୁରୁଭକ୍ତ ଭାରତୀୟ ଶିଷ୍ୟଙ୍କ ପରି ଭକ୍ତିଭରେ ସ୍ୱାମୀଜୀଙ୍କ ଉପଦେଶ ଶୁଣୁଛନ୍ତି, ଏହା ବାସ୍ତବିକ ଦୃଶ୍ୟ ।' ଆମେ ଶୁଣିଛୁ, କ୍ୟାନ୍‌ନସ୍, ଉଇଲବର୍ ଫୋର୍ସ, ହେଜ୍ ପ୍ରଭୃତି ବିଶିଷ୍ଟ ଧର୍ମପ୍ରଚାରକଗଣଙ୍କଦ୍ୱାରା ସେ ସସମ୍ମାନେ ପରିଗୃହୀତ ହୋଇଛନ୍ତି । ପ୍ରଥମୋକ୍ତ ଭଦ୍ରବ୍ୟକ୍ତିଙ୍କ ବାସଭବନରେ ସ୍ୱାମୀଜୀଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ ନିମିତ୍ତ ଗୋଟିଏ ସଭା ଆହୂତ ହୋଇଥିଲା; ସେଥିରେ ଲଣ୍ଡନର ଅନେକ ଗଣ୍ୟମାନ୍ୟ ଭଦ୍ରଲୋକ ଓ ମହିଳା ଉପସ୍ଥତ ଥିଲେ । x x x ଉକ୍ତ ଲଣ୍ଡନ ସଂବାଦଦାତା ଆହୁରି ଜଣାଇଛନ୍ତି ଯେ, ସ୍ୱାମୀଜୀ ଇଂରେଜୀଭାଷୀ ଜନଗଣଙ୍କ ହୃଦୟରେ ଭାରତବର୍ଷ ପ୍ରତି ଯେଉଁ ସ୍ନେହ ଓ ସହାନୁଭୂତି ଜାଗ୍ରତ କରାଇଛନ୍ତି, ତାହା ନିଶ୍ଚୟ ଭାରତର ଉନ୍ନତି-ସହାୟକ ଶକ୍ତି ମଧ୍ୟରେ ଶୀର୍ଷସ୍ଥାନ ଅଧିକାର କରିବ ।''

ଇଂଲଣ୍ଡରେ ପ୍ରଚାର କାର୍ଯ୍ୟରେ ବ୍ୟସ୍ତ ଥିବା ସମୟରେ ସ୍ୱାମୀଜୀ ଆମେରିକାରୁ ପୁନଃ ପୁନଃ ଶିଷ୍ୟ ଓ ଭକ୍ତଗଣଙ୍କ ଆହ୍ୱାନପତ୍ର ପାଉଥିଲେ । ଆମେରିକାରେ ପ୍ରଚାରକାର୍ଯ୍ୟର ପ୍ରସାରତା ହେତୁ ସମସ୍ତେ ସତ୍ୱର ତାଙ୍କ ଉପସ୍ଥିତି ଚାହୁଁଥିଲେ, ଏଣେ ବନ୍ଧୁ ଓ ଶିଷ୍ୟମଣ୍ଡଳୀ ତାଙ୍କୁ ଲଣ୍ଡନରେ ରହିଯିବା ନିମିତ୍ତ ଅନୁରୋଧ କରୁଥିଲେ । ଗ୍ରୀଷ୍ମକାଳରେ ପୁନରାୟ ଲଣ୍ଡନକୁ ଫେରି ଆସିବା ଆଶ୍ୱାସନା ଦେଇ ସେ ଆମେରିକା ଯିବାଟାକୁ ଯୁକ୍ତିଯୁକ୍ତ ମନେକଲେ । ଇତିମଧ୍ୟରେ ବୋଷ୍ଟନବାସିନୀ ଜନୈକା ଧନାଢ଼୍ୟା ମହିଳା ସ୍ୱାମୀଜୀଙ୍କ ପ୍ରଚାରକାର୍ଯ୍ୟର ସମସ୍ତ ବ୍ୟୟଭାର ବହନ କରିବେ ବୋଲି ଅଙ୍ଗୀକାର କରି ଖଣ୍ଡିଏ ପତ୍ର ଲେଖିବାରୁ ସ୍ୱାମୀଜୀ ଏହାକୁ ପ୍ରଭୁଙ୍କ ଲୀଳା ବୋଲି ଭାବି ଆମେରିକା ଯିବା ଲାଗି ପ୍ରସ୍ତୁତ ହେଲେ । ଇଂଲଣ୍ଡର ଶିଷ୍ୟମାନଙ୍କୁ ଗୋଟିଏ ସମିତି ଗଠନ କରି ଶ୍ରୀଶ୍ରୀଭଗବଦ୍‌ଗୀତା ଓ ଅନ୍ୟାନ୍ୟ ହିନ୍ଦୁଶାସ୍ତ୍ର ନିୟମିତ ରୂପେ ଆଲୋଚନା କରିବା ନିମିତ୍ତ ଉପଦେଶ ଦେଲେ ।

ତିନିମାସରୁ ସାମାନ୍ୟ ଅଧିକ ସମୟ ଲଣ୍ଡନରେ ରହି ସ୍ୱାମୀଜୀ ଯେଉଁ ପ୍ରତିଷ୍ଠା ଲାଭ କରିଥିଲେ, ତାହା କେବଳମାତ୍ର ଅପୂର୍ବ ବକ୍ତୃତା-ଶକ୍ତି ବଳରେ ନୁହେଁ,

ତାଙ୍କର ଅସାଧାରଣ କର୍ମଜୀବନ, ବାକ୍ୟ ଓ କାର୍ଯ୍ୟର ସୌସାଦୃଶ୍ୟ, ଚରିତ୍ରଗତ ଶୁଭ୍ର ସମ୍ମୋହିନୀ ଶକ୍ତି ପ୍ରତ୍ୟେକ ବ୍ୟକ୍ତିଙ୍କୁ ଆକୃଷ୍ଟ କରୁଥିଲା । ଯେ କୌଣସି ଚିନ୍ତାଶୀଳ ବ୍ୟକ୍ତି ଅତି ଅଳ୍ପ ସମୟ ପାଇଁ ତାଙ୍କ ସହିତ କଥୋପକଥନ କରିଛନ୍ତି, ସେ ମଧ୍ୟ ଚିନ୍ତା କରିବା ପାଇଁ ଓ ଜୀବନରେ ପରିଣତ କରିବା ପାଇଁ କେତେ ନୂତନ ତତ୍ତ୍ୱ, ନୂତନ ନୀତି, ନୂତନ ଆଦର୍ଶ ପାଇଛନ୍ତି, ତାହାର ଇୟତ୍ତା ନାହିଁ । ପ୍ରତ୍ୟେକ ଲୋକ ଶ୍ରଦ୍ଧାମୁଗ୍ଧ ହୃଦୟରେ ଅନୁଭବ କରିଛନ୍ତି—ଈଶ୍ୱରଙ୍କ ଦୂତସ୍ୱରୂପ ଏହି ମହାପୁରୁଷ ଦୁର୍ବଳ ଓ ସଂକୀର୍ଣ୍ଣଚେତା ମାନବର କଲ୍ୟାଣ କାମନାରେ ଗୋଟିଏ ଉଦାର ଧର୍ମର ବାର୍ତ୍ତା ବହନ କରି ଆଣିଛନ୍ତି ।

## ବିବେକାନନ୍ଦ ଓ ଇଙ୍ଗରସୋଲ୍

ଆମେରିକାର ସୁପ୍ରସିଦ୍ଧ ବକ୍ତା ଶ୍ରୀଯୁକ୍ତ ରବର୍ଟ ଇଙ୍ଗରସୋଲ୍‌ଙ୍କ ପରି ସ୍ୱାତନ୍ତ୍ର୍ୟପରାୟଣ ବ୍ୟକ୍ତି ମଧ୍ୟ ସ୍ୱାମୀଜୀଙ୍କ ବିଶ୍ୱସ୍ତ ବନ୍ଧୁ ହୋଇଥିଲେ—ଏଥିରୁ ବୁଝାଯାଏ ତାଙ୍କ ବ୍ୟକ୍ତିଗତ ଚରିତ୍ରର କି ଅସାଧାରଣ ପ୍ରଭାବ ଥିଲା ।

ଦର୍ଶନ ଓ ସାହିତ୍ୟରେ ସୁପଣ୍ଡିତ ଇଙ୍ଗରସୋଲ୍ ସନ୍ଦେହବାଦୀ ଓ ଭୋଗବାଦୀ ଥିଲେ । ଧର୍ମ, ଈଶ୍ୱର, ଉପାସନା ଆଦି ବିଷୟଗୁଡ଼ିକୁ ସେ ସର୍ବଦା ଉପହାସ ସହକାରେ ଉପେକ୍ଷା କରୁଥିଲେ; ଅଥଚ ସେ ଏତେ ଜନପ୍ରିୟ ବକ୍ତା ଥିଲେ ଯେ, କେବଳ ବକ୍ତୃତା କରି ଲକ୍ଷ ଲକ୍ଷ ଟଙ୍କା ଅର୍ଜନ କରୁଥିଲେ । ଅପର ଦିଗରେ ସ୍ୱାମୀ ବିବେକାନନ୍ଦ କଠୋର ସଂଯମୀ ସନ୍ନ୍ୟାସୀ, ପ୍ରତ୍ୟେକ ଧର୍ମର ସମର୍ଥକ ଓ ବେଦାନ୍ତ ଦର୍ଶନର ପ୍ରଚାରକ; ଏହି ଉଭୟଙ୍କର ମିଳନ ବାସ୍ତବିକ ବିସ୍ମୟାବହ ! ଦିନେ କୌଣସି ଦାର୍ଶନିକ ତତ୍ତ୍ୱ ଆଲୋଚନା କରୁ କରୁ ଇଙ୍ଗରସୋଲ୍ କହି ପକାଇଲେ, ''ଏହି ଜଗତଟି ଗୋଟିଏ କମଳାଲେମ୍ବୁପରି; ଯେତେଦୂର ପାର, ଏହାର ରସ ନିଗାଡ଼ି ପାନ କରିବା ଉଚିତ୍ । ପରଲୋକ ବୋଲି ଯାହା କୁହାଯାଏ, ତା'ର ଯେତେବେଳେ କୌଣସି ନିଶ୍ଚିତ ପ୍ରମାଣ ମିଳୁ ନାହିଁ, ସେତେବେଳେ ଇହଜୀବନକୁ ଗୋଟିଏ ମିଥ୍ୟା ଆଶାରେ ପ୍ରତାରିତ କରି କୌଣସି ଲାଭ ନାହିଁ । କିଏ ଜାଣେ କେବେ ମୃତ୍ୟୁ ହୋଇଯିବ—ଅତଏବ ଯଥାସାଧ୍ୟ ତତ୍ପରତା ସହିତ ଜଗତକୁ ଉପଭୋଗ କରିବା ଉଚିତ୍ ।''

ସ୍ୱାମୀଜୀ ମୃଦୁହାସ୍ୟ କରି ତତ୍‌କ୍ଷଣାତ୍ ଉତ୍ତର ଦେଲେ, ''କିନ୍ତୁ ଜଗତ୍-ରୂପକ କମଳାଲେମ୍ବୁର ରସ ବାହାର କରିବା ପ୍ରଣାଳୀ ମୁଁ ତୁମ ଅପେକ୍ଷା ଭଲ କରି ଜାଣେ, ତେଣୁ ତୁମ ଅପେକ୍ଷା ବେଶୀ ରସ ପାଏ । ମୁଁ ଜାଣେ, ମୋର ମୃତ୍ୟୁ ନାହିଁ; ସେହିହେତୁ ତୁମପରି ମୋର ତରତର ହେବାର ଆବଶ୍ୟକତା ନାହିଁ । ମୋର ଜଗତକୁ ଡରିବା ଲାଗି କୌଣସି କାରଣ ନାହିଁ; ସ୍ତ୍ରୀ, ପୁତ୍ର, ପରିବାର, ସମ୍ପତ୍ତି ଇତ୍ୟାଦିର କୌଣସି ବନ୍ଧନ ନାହିଁ—ମୋ ପାଖରେ ଜଗତର ସକଳ ନରନାରୀ ସମାନ ସ୍ନେହର ପାତ୍ର—ସମସ୍ତେ ମୋ ଦୃଷ୍ଟିରେ ଈଶ୍ୱର-ସ୍ୱରୂପ ! ଭାବିଲ

ଦେଖି, ମଣିଷକୁ ଭଗବାନ ବୋଲି ବିଚାର କରି ମୁଁ କେତେ ଆନନ୍ଦିତ ହୁଏ ! ମୁଁ ନିରୁଦ୍‌ବେଗରେ ରସପାନ କରୁଛି । ତୁମେ ବି ମୋ ପ୍ରଣାଳୀରେ ଏହି ଜଗତ୍‌-ରୂପକ କମଳାଲେମ୍ବୁର ରସ ନିଗାଡ଼ିବାକୁ ଆରମ୍ଭ କର — ଦେଖିବ, ସହସ୍ରଗୁଣରେ ଅଧିକ ରସ ମିଳିବ । ଗୋଟିଏ ଟୋପା ବି ବାଦ ପଡ଼ିବ ନାହିଁ ।'' ସ୍ୱାମୀଜୀଙ୍କର ଏହିପରି ସ୍ପଷ୍ଟ, ସରଳ ଅଥଚ ସ୍ନେହପୂର୍ଣ୍ଣ ଉତ୍ତରଗୁଡ଼ିକ ଇଙ୍ଗରସୋଲ୍‌ଙ୍କ ଦୃଢ଼ ହୃଦୟକୁ ଜୟ କରି ନେଇଥିଲା । ମତର ବିଭିନ୍ନତା ସତ୍ତ୍ୱେ ଆମେରିକାର ଦୁଇଜଣ ତତ୍‌କାଳୀନ ସୁପ୍ରସିଦ୍ଧ ବକ୍ତାଙ୍କ ବନ୍ଧୁତ୍ୱ ବାସ୍ତବିକ ମଧୁର ଦୃଶ୍ୟ !

## ସ୍ୱାମୀଜୀଙ୍କ ସ୍ପଷ୍ଟବାଦିତା ଓ ତାହାର ଫଳ

ପୁଣି ଏପରି ଘଟଣା ଘଟିଛି, ଯେତେବେଳେ ଅନେକେ ସ୍ୱାମୀଜୀଙ୍କ ନିର୍ଭୀକ ସ୍ପଷ୍ଟ ଉତ୍ତର ଯୋଗୁଁ ଆହତ ହୋଇ ବିରକ୍ତିର ସହିତ ସଭାସ୍ଥଳ ପରିତ୍ୟାଗ କରିଛନ୍ତି । ସ୍ୱଜାତି ବା ସ୍ୱଦେଶର ନିନ୍ଦା ସେ କେବେହେଲେ ସହିପାରୁ ନ ଥିଲେ । ସ୍ୱଧର୍ମ ବା ସ୍ୱଜାତିର ପକ୍ଷ ସମର୍ଥନ କରି ଦୃପ୍ତ-ସିଂହ ପରି ଯେତେବେଳେ ସେ ଗ୍ରୀବା ଉନ୍ନତ କରି ଠିଆ ହୋଇ ଯାଉଥିଲେ, ସେତେବେଳେ ତାଙ୍କୁ ଦେଖିଲେ ମନେ ହେଉଥିଲା, ଯେପରି କି ସେ ଅଭିମାନଶୂନ୍ୟ, ଉଦାସୀନ ସନ୍ନ୍ୟାସୀ ନୁହଁନ୍ତି; ମଧ୍ୟଯୁଗର କୌଣସି ଗର୍ବିତ ଜାତ୍ୟାଭିମାନୀ ଉଦ୍ଧତ ଅହଂକାରୀ ରାଜପୁତ ବୀର !

ଲଣ୍ଡନରେ ଏପରି ଘଟଣା ପ୍ରାୟ ଘଟୁଥିଲା; କାରଣ ଅନେକ ଇଂରେଜ ପଣ୍ଡିତ ଭାରତବର୍ଷ ସମ୍ବନ୍ଧରେ ମିଶନାରୀମାନଙ୍କ ଅଦ୍ଭୁତ ବିବରଣ ପାଠ କରି ଅଜ୍ଞ ଥିଲେ ହେଁ ବିଜ୍ଞ ସମାଲୋଚକ ଆସନରେ ବସିବାକୁ ଦ୍ୱିଧା ବୋଧ କରୁ ନ ଥିଲେ । ଦିନେ ସଭାରେ ସ୍ୱାମୀଜୀ ଭାରତର ଗୌରବ ବର୍ଣ୍ଣନା କରୁଥିଲେ; ଏହି ସମୟରେ ପୂର୍ବୋକ୍ତ ପ୍ରକାର ଜଣେ ସମାଲୋଚକ ପ୍ରଶ୍ନ ପଚାରିଲେ, ''ଭାରତର ହିନ୍ଦୁମାନେ କ'ଣ କରିଛନ୍ତି — ସେମାନେ ଏପର୍ଯ୍ୟନ୍ତ ଗୋଟିଏ ହେଲେ ଜାତିକୁ ଜୟ କରିପାରି ନାହାନ୍ତି ।'' ସ୍ୱାମୀଜୀ ସହସା ଉତ୍ତର ଦେଲେ, ''ପାରି ନାହାନ୍ତି ନୁହେଁ; ସେମାନେ କରିନାହାନ୍ତି ! ପୁଣି ଏହା ହିଁ ହିନ୍ଦୁ ଜାତିର ଗୌରବ ଯେ, ସେମାନେ କେବେହେଲେ ଭିନ୍ନ ଜାତିର ରକ୍ତରେ ଧରିତ୍ରୀକୁ ରଞ୍ଜିତ କରି ନାହାନ୍ତି । କାହିଁକି ସେମାନେ ଅନ୍ୟ ଦେଶକୁ ଅଧିକାର କରିବେ ? ତୁଚ୍ଛ ଧନ ଲାଳସାରେ ? ଭଗବାନ ଚିରଦିନ ଭାରତକୁ ଦାତାର ମହିମାମୟ ଆସନରେ ପ୍ରତିଷ୍ଠା କରିଛନ୍ତି ! ସେମାନେ ଜଗତର ଧର୍ମଗୁରୁ ! ପରସ୍ୱାପହାରୀ ରକ୍ତପିପାସୁ ଦସ୍ୟୁ ନ ଥିଲେ ! ଆଉ ସେହି କାରଣରୁ ମୁଁ ମୋ ପିତୃପୁରୁଷଙ୍କ ଗୌରବରେ ଗର୍ବ ଅନୁଭବ କରେ ।''

ଆଉ ଜଣେ ପଚାରିଲେ, ''ଆପଣଙ୍କ ମହାପୁରୁଷଗଣ ଯଦି ମାନବସମାଜକୁ ଧର୍ମଦାନ କରିବା ନିମିତ୍ତ ଏତେ ବ୍ୟଗ୍ର ଥିଲେ, ତାହାହେଲେ ସେମାନେ ଏ'ଦେଶକୁ ଧର୍ମପ୍ରଚାର କରିବା ଲାଗି ଆସିନାହାନ୍ତି କାହିଁକି ?'' ମୃଦୁ ହାସ୍ୟରେ ସ୍ୱାମୀଜୀ କହିଲେ, ''ସେତେବେଳେ ତୁମ ପୂର୍ବ ପୁରୁଷମାନେ ବଣ୍ୟ-ବର୍ବର ଥିଲେ;

ସବୁଜବର୍ଣ୍ଣ ବୃକ୍ଷପତ୍ର ରସରେ ଉଲଗ୍ନ ଦେହକୁ ରଞ୍ଜିତ କରି ଗିରିଗୁହାରେ ବାସ କରୁଥିଲେ; ସେମାନେ କ'ଣ ଅରଣ୍ୟରେ ଧର୍ମପ୍ରଚାର କରିଥାଆନ୍ତେ ?''

କେହି ଅବା ସ୍ୱାମୀଜୀଙ୍କୁ ଯୀଶୁଖ୍ରୀଷ୍ଟ ବା ଖ୍ରୀଷ୍ଟିୟାନ ଧର୍ମ ସମ୍ବନ୍ଧରେ ମନ୍ତବ୍ୟ ପ୍ରକାଶ କରୁଥିବା ଶୁଣି ମନେ ମନେ ମହା ବିରକ୍ତ ହେଉଥିଲେ ଏବଂ ଅନଧିକାର ଚର୍ଚ୍ଚା ମନେକରି ପଚାରୁଥିଲେ, ''ସ୍ୱାମୀଜୀ ! ଆପଣ ଖ୍ରିଷ୍ଟାନ୍ ନୁହଁନ୍ତି, ଖ୍ରୀଷ୍ଟଧର୍ମର ଆଦର୍ଶ କିପରି ବୁଝିବେ ?''

ତତ୍କ୍ଷଣାତ୍ ଉତ୍ତର ମିଳୁଥିଲା, ''ସେ ପ୍ରାଚ୍ୟଦେଶର ଜଣେ ସର୍ବତ୍ୟାଗୀ ସନ୍ନ୍ୟାସୀ ଥିଲେ; ମୁଁ ମଧ୍ୟ ଜଣେ ପ୍ରାଚ୍ୟଦେଶୀୟ ସନ୍ନ୍ୟାସୀ । ମୋର ମନେହୁଏ, ପାଶ୍ଚାତ୍ୟ ଜଗତ ଏ ପର୍ଯ୍ୟନ୍ତ ତାଙ୍କୁ ଚିହ୍ନିପାରି ନାହିଁ, ତାଙ୍କ ପ୍ରଚାରିତ ଧର୍ମକୁ ସମ୍ୟକ୍‌ରୂପେ ବୁଝିପାରି ନାହିଁ । ସେ କ'ଣ କହିନାହାନ୍ତି — 'ଯାଅ, ତୁମର ସର୍ବସ୍ୱ ତ୍ୟାଗ କରି ଆସ, ତେବେ ଯାଇ ମୋର ଅନୁସରଣ କର !' ତୁମମାନଙ୍କ ଦେଶର କେତେଜଣ ବିଳାସୀ ଧନୀ-ଉଷ୍ଟ୍ର ସ୍ୱର୍ଗପ୍ରବେଶଦ୍ୱାରକୁ ସୂଚୀଛିଦ୍ର ମନେକରି ସର୍ବତ୍ୟାଗୀ ହୋଇଛନ୍ତି ?'' ପ୍ରଶ୍ନକର୍ତ୍ତାମାନେ ନୀରବରେ ସ୍ୱାମୀଜୀଙ୍କ କଠୋର ସତ୍ୟର ମର୍ମ ଚିନ୍ତା କରି କରି ଘରକୁ ଫେରୁଥିଲେ ।

ଏହିପରି କ୍ଷୁଦ୍ର ବୃହତ୍ ଶତ ଶତ ଘଟଣାର ଉଲ୍ଲେଖ କରାଯାଇପାରେ, ଯାହା ଆଲୋଚନା କଲେ ସ୍ୱତଃ ମନେହୁଏ, କେନ୍ଦ୍ରୀଭୂତ ଗୁରୁଭକ୍ତିସ୍ୱରୂପ ଏହି ମହାପୁରୁଷ ପାଶ୍ଚାତ୍ୟ ଦେଶରେ ତାଙ୍କ ବାର୍ତ୍ତା ନିର୍ଭୀକ ଦୃଢ଼ତାର ସହିତ ପ୍ରଚାର କରିବାକୁ ତିଳେମାତ୍ର ଇତସ୍ତତଃ ହେଉ ନ ଥିଲେ ।

## ଆମେରିକା ପ୍ରତ୍ୟାବର୍ତ୍ତନ — ଗୁରୁଭକ୍ତ ଗୁଡ୍‌ଉଇନ

ସ୍ୱାମୀଜୀଙ୍କ ଅନୁପସ୍ଥିତି ସମୟରେ ସ୍ୱାମୀ କୃପାନନ୍ଦ, ଅଭୟାନନ୍ଦ ଓ ହରିଦାସୀ (କୁମାରୀ ୱାଲଡୋ) ଉତ୍ସାହର ସହିତ ପ୍ରଚାରକାର୍ଯ୍ୟ ଚଳାଇଥିଲେ; ସେମାନେ ଯେଉଁ ନଗରକୁ ଯାଉଥିଲେ ସେଠାରେ ଶତ ଶତ ଉତ୍ସୁକ ଶ୍ରୋତା ଶ୍ରଦ୍ଧା ସହକାରେ ହିନ୍ଦୁଧର୍ମର ବ୍ୟାଖ୍ୟା ଶୁଣିବା ଲାଗି ସମବେତ ହେଉଥିଲେ । ନିଉୟର୍କ ଛଡ଼ା ସ୍ୱାମୀଜୀଙ୍କ ଶିଷ୍ୟଗଣ ବାଫାଲୋ ଓ ଡେଟ୍ରଏଟ ନଗରରେ ଦୁଇଟି ପ୍ରଚାରକେନ୍ଦ୍ର ସ୍ଥାପନ କରିଥିଲେ । ଡିସେମ୍ବର ଛଅ ତାରିଖ ଦିନ ସ୍ୱାମୀଜୀ ନିଉୟର୍କରେ ପଦାର୍ପଣ କରି ପୁନରାୟ ପ୍ରଚାର କାର୍ଯ୍ୟ ଆରମ୍ଭ କଲେ । ବୋଷ୍ଟନ୍‌ବାସିନୀ ପୂର୍ବୋକ୍ତ ମହିଳାଙ୍କ ସାହାଯ୍ୟରେ ଅଣତ୍ରିଶ ନମ୍ବର ରାସ୍ତାରେ ଦୁଇଟି ପ୍ରଶସ୍ତ କକ୍ଷ ଭଡ଼ା ନିଆଗଲା । ଶିଷ୍ୟ ସ୍ୱାମୀ କୃପାନନ୍ଦଙ୍କ ସହିତ ଆଚାର୍ଯ୍ୟଦେବ ସେଠାରେ ବାସ କଲେ । କକ୍ଷ ଦୁଇଟିରେ ଦେଢ଼ଶହରୁ ଅଧିକ ଛାତ୍ରଙ୍କ ପାଇଁ ସ୍ଥାନ ଥିଲା । ଏହି ସ୍ଥାନରେ ସ୍ୱାମୀଜୀ କର୍ମଯୋଗ ସମ୍ବନ୍ଧରେ ଧାରାବାହିକ ରୂପେ ବକ୍ତୃତା ଦେବାରେ ଲାଗିଲେ । ଏହି ବକ୍ତୃତାଗୁଡ଼ିକ ଏକତ୍ର ହୋଇ ପରେ ସ୍ୱାମୀଜୀଙ୍କ 'କର୍ମଯୋଗ' ପୁସ୍ତକ ସଂକଳିତ ହୋଇଛି । 'କର୍ମଯୋଗ' ବ୍ୟତୀତ ସ୍ୱାମୀଜୀ ଆଉ କେତେଗୁଡ଼ିଏ

ବକ୍ତୃତା ଦେଇଥିଲେ । 'ସାର୍ବଭୌମିକ ଧର୍ମର ଆଦର୍ଶ' ନାମକ ପ୍ରସିଦ୍ଧ ବକ୍ତୃତାଟି ଏହି ସମୟରେ ଦିଆଯାଇଥିଲା ।

ସ୍ୱାମୀଜୀଙ୍କ ଶିଷ୍ୟଗଣ ତାଙ୍କ ବକ୍ତୃତାଗୁଡ଼ିକୁ ଲିପିବଦ୍ଧ କରିବା ନିମିତ୍ତ ବହୁଦିନରୁ ବ୍ୟଗ୍ର ହେଉଥିଲେ; କିନ୍ତୁ ଉପଯୁକ୍ତ ଲୋକଙ୍କ ଅଭାବରୁ ଏତେଦିନ ସୁବିଧା କରିପାରି ନ ଥିଲେ । ଏହା ପୂର୍ବରୁ କେତେଜଣ ସାଙ୍କେତିକ ଲେଖକ ନିଯୁକ୍ତ ହୋଇଥିଲେ ସତ୍ୟ, କିନ୍ତୁ ସେମାନେ ଅନେକ ସ୍ଥାନରେ ସ୍ୱାମୀଜୀଙ୍କୁ ଅନୁସରଣ କରିପାରୁ ନ ଥିଲେ । ଭଗବାନଙ୍କ ଦୟାରୁ ଏହି ସମୟରେ ଇଂଲଣ୍ଡରୁ ଶ୍ରୀଯୁକ୍ତ ଜେ. ଜେ. ଗୁଡ୍‌ଉଇନ୍ ନାମକ ଜଣେ ଅଭିଜ୍ଞ ସାଙ୍କେତିକ ଲେଖକ ନିଉୟର୍କ ଆସିଲେ । ସ୍ୱାମୀଜୀଙ୍କ ଶିଷ୍ୟଗଣ ତାଙ୍କୁ କାର୍ଯ୍ୟରେ ନିଯୁକ୍ତ କରି ଆଶାତୀତ ସୁଫଳ ପାଇଲେ । ଶ୍ରୀଯୁକ୍ତ ଗୁଡ୍‌ଉଇନ୍‌ଙ୍କୁ ଅଧିକାଂଶ ସମୟ ସ୍ୱାମୀଜୀଙ୍କ ସହିତ କଟାଇବାକୁ ହେଉଥିଲା; ପୁଣି ଏହାର ଫଳସ୍ୱରୂପ କିଛିଦିନ ମଧ୍ୟରେ ତାଙ୍କ ଭାବ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା । ସେ ସ୍ୱାମୀଜୀଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ସାଧୁ-ହୃଦୟ ଗୁଡ୍‌ଉଇନ୍‌ଙ୍କ ଅକ୍ଲାନ୍ତ ଗୁରୁସେବା ଦେଖିଲେ ଚମତ୍କୃତ ହେବାକୁ ପଡୁଥିଲା । ସ୍ୱାମୀଜୀ ଏହାଙ୍କୁ 'ବିଶ୍ୱସ୍ତ ଗୁଡ୍‌ଉଇନ୍' ବୋଲି ସମ୍ବୋଧନ କରୁଥିଲେ । ସ୍ୱାମୀଜୀଙ୍କର ଯେଉଁ ଅମୂଲ୍ୟ ବକ୍ତୃତାଗୁଡ଼ିକ ପୁସ୍ତକାକାରରେ ମୁଦ୍ରିତ ହୋଇଛି, ସେଗୁଡ଼ିକ ସବୁ ଶ୍ରୀଯୁକ୍ତ ଗୁଡ୍‌ଉଇନ୍‌ଙ୍କ ଅକ୍ଲାନ୍ତ ଚେଷ୍ଟାର ଫଳ । କେବଳ ମାତ୍ର 'ରାଜଯୋଗ' ପୁସ୍ତକଖଣ୍ଡିକ ସ୍ୱାମୀଜୀ ବିଶେଷ ଚିନ୍ତା କରି ଜଣେ ଶିଷ୍ୟଙ୍କଦ୍ୱାରା ଲେଖାଇଥିଲେ ଏବଂ କେତେଗୋଟି କ୍ଷୁଦ୍ର ପ୍ରବନ୍ଧ ଛଡ଼ା ବାକି ସବୁ ତାଙ୍କ ବକ୍ତୃତା । ଶ୍ରୀଯୁକ୍ତ ଗୁଡ୍‌ଉଇନ୍‌ଙ୍କ ପରି ବିଶ୍ୱସ୍ତ ଓ ଦକ୍ଷ ଲେଖକ କାର୍ଯ୍ୟଭାର ଗ୍ରହଣ କରିଥିଲେ ବୋଲି ସ୍ୱାମୀଜୀଙ୍କର ଅଧିକାଂଶ ବକ୍ତୃତା ଲିପିବଦ୍ଧ ହୋଇପାରିଛି ।

## ବିବେକାନନ୍ଦ-ଜନନୀଙ୍କ ନିକଟକୁ ଆମେରିକା ମହିଳାମାନଙ୍କ ପତ୍ର

ଖ୍ରୀଷ୍ଟମାସ୍ ପର୍ବ ଉପଲକ୍ଷେ ଶ୍ରୀମତୀ ଓଲିବୁଲ୍‌ଙ୍କଦ୍ୱାରା ନିମନ୍ତ୍ରିତ ହୋଇ ସ୍ୱାମୀଜୀ ବୋଷ୍ଟନ ଗଲେ । କେମ୍ବ୍ରିଜର ମହିଳାମାନଙ୍କଦ୍ୱାରା ଆହୂତ ହୋଇ ସ୍ୱାମୀଜୀ 'ଭାରତୀୟ ନାରୀଜାତିର ଆଦର୍ଶ' ସମ୍ବନ୍ଧରେ ଗୋଟିଏ ବିବିଧ ତଥ୍ୟପୂର୍ଣ୍ଣ ବକ୍ତୃତା ଦେଲେ । ଏହା ଶ୍ରବଣ କରି ସେଠାରେ ଉପସ୍ଥିତ ଥିବା ବିଦୁଷୀ ନାରୀସମାଜ ଏପରି ମୁଗ୍ଧ ହେଲେ ଯେ, ସ୍ୱାମୀଜୀଙ୍କ ଅଜ୍ଞାତସାରରେ ତାଙ୍କ ମାତାଙ୍କୁ ଧନ୍ୟବାଦ ଜଣାଇ ଖଣ୍ଡିଏ ପତ୍ର ଲେଖିବାକୁ ସ୍ଥିର କଲେ । କୁମାରୀ ମେରୀଙ୍କ କ୍ରୋଡ଼ରେ ବାଳକ ଯୀଶୁଙ୍କର ଖଣ୍ଡିଏ ମନୋରମ ଚିତ୍ରସହ ସେମାନେ ଲେଖିଥିଲେ—

''ଜଗତର କଲ୍ୟାଣ ନିମିତ୍ତ ଜନନୀ ମେରୀଙ୍କ ଅବଦାନସ୍ୱରୂପ ଖ୍ରୀଷ୍ଟଦେବଙ୍କ ଆବିର୍ଭାବ ଦିବସରେ ଆମେ ଆନନ୍ଦୋତ୍ସବ କରୁଛୁ । ସଙ୍ଗେ ସଙ୍ଗେ ସ୍ମୃତି ଜାଗି ଉଠୁଛି । ଆମମାନଙ୍କ ଭିତରେ ଆପଣଙ୍କ ପୁତ୍ରକୁ ପାଇ ଆଜି ଆପଣଙ୍କୁ ଶ୍ରଦ୍ଧାଭିବାଦନ ଜଣାଉଛୁ । ଆପଣଙ୍କ ଶ୍ରୀଚରଣ ଆଶୀର୍ବାଦରୁ ସେଦିନ 'ଭାରତରେ

ମାତୃତ୍ୱର ଆଦର୍ଶ' ସମ୍ବନ୍ଧରେ ବକ୍ତୃତା ଦେଇ ସେ ଆମ ଦେଶର ନରନାରୀ ଓ ଶିଶୁମାନଙ୍କର ମହତ୍ ଉପକାର ସାଧନ କରିଛନ୍ତି । ତାଙ୍କ ମାତୃପୂଜା ଶ୍ରୋତୃବୃନ୍ଦଙ୍କ ହୃଦୟରେ ଶକ୍ତିସମୁନ୍ନତିର ଉଚ୍ଚାକାଙ୍‌କ୍ଷା ଜଗାଇ ଦେବ ।''

''ଆପଣଙ୍କର ଏହି ସନ୍ତାନଠାରେ ଆପଣଙ୍କ ଜୀବନ ଓ କାର୍ଯ୍ୟର ଯେଉଁ ପ୍ରଭାବ ପ୍ରକାଶ ପାଇଛି, ତାହା ଆମେ ସମ୍ୟକ୍ ଉପଲବ୍ଧି କରି ଆପଣଙ୍କ ନିକଟରେ ଆମ୍ଭମାନଙ୍କ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛୁ । ଭ୍ରାତୃତ୍ୱ ଓ ଐକ୍ୟର ଯେ ନିୟନ୍ତା, ସେହି ଦେବତାଙ୍କ ପ୍ରକୃତ ଆଶୀର୍ବାଦ ସମଗ୍ର ପୃଥିବୀରେ ବିସ୍ତୃତ ହୋଇପଡୁ । ହୃଦୟରେ ଏହି ବାସ୍ତବ ସ୍ମୃତି ନେଇ ଆପଣଙ୍କ ଜୀବନ୍ତ ଆଦର୍ଶ ଯେପରି ତାଙ୍କୁ କାର୍ଯ୍ୟକ୍ଷେତ୍ରରେ ଅନୁପ୍ରାଣିତ କରେ, ଏହି କଥା ସ୍ମରଣ କରି ଆମ୍ଭମାନଙ୍କର ଏହି ସାମାନ୍ୟ ନିଦର୍ଶନ ସ୍ୱରୂପ କୃତଜ୍ଞତା ଅର୍ପଣ ଯେପରି ଗ୍ରହଣ କରନ୍ତି ।''

## ବୈଦାନ୍ତିକ ଧର୍ମପ୍ରଚାର

ବୋଷ୍ଟନରୁ ଫେରିଆସି ସ୍ୱାମୀଜୀ ନିଉୟର୍କର 'ହାର୍ଡ଼ିମାନ ହୋମ୍'ରେ ପ୍ରତି ରବିବାର ଦିନ ବିନାମୂଲ୍ୟରେ ବକ୍ତୃତା ପ୍ରଦାନ କରିବାରେ ଲାଗିଲେ । ବ୍ରୁକଲୀନ୍ ମେଟାଫିଜିକାଲ ସୋସାଇଟି ଓ ନିଉୟର୍କ ପିପୁଲ୍ସ ଚର୍ଚ୍ଚରେ ପ୍ରଦତ୍ତ ବକ୍ତୃତାଗୁଡ଼ିକ ଶ୍ରବଣ କରିବା ନିମିତ୍ତ ପ୍ରତ୍ୟହ ଦଳ ଦଳ ନରନାରୀ ସମବେତ ହେଉଥିଲେ । ବକ୍ତୃତା ପ୍ରଦାନ ଛଡ଼ା ସେ ପ୍ରତିଦିନ ଦୁଇଥର ପ୍ରଶ୍ନୋତ୍ତର କ୍ଲାସରେ ଉପସ୍ଥିତ ରହି ଜିଜ୍ଞାସୁମାନଙ୍କ ଧର୍ମସମସ୍ୟାଗୁଡ଼ିକ ଆଗ୍ରହର ସହିତ ସମାଧାନ କରୁଥିଲେ ଏବଂ ରାଜଯୋଗ ବା ବିଶେଷ ସାଧନପ୍ରଣାଳୀଗୁଡ଼ିକ ବ୍ୟକ୍ତିବିଶେଷଙ୍କୁ ଯତ୍ନର ସହିତ ଶିକ୍ଷା ଦେଉଥିଲେ ।

ଫେବୃୟାରୀ ମାସରେ ସେ ମ୍ୟାଡିସନ ସ୍କୋୟାର ଗାର୍ଡ଼େନ ନାମକ ପ୍ରକାଣ୍ଡ ହଲ୍‌ରେ 'ଭକ୍ତିଯୋଗ' ସମ୍ବନ୍ଧରେ ବକ୍ତୃତା ଦେବାକୁ ଆରମ୍ଭ କଲେ । ଉକ୍ତ ବକ୍ତୃତାଗୁଡ଼ିକ ଏତେ ସୁଲଳିତ ଓ ହୃଦୟଗ୍ରାହୀ ହେଉଥିଲା ଯେ, ପ୍ରତ୍ୟହ ପ୍ରାୟ ଦୁଇହଜାର ଶ୍ରୋତା ଦୁଇଘଣ୍ଟା କାଳ ଅଶେଷ କଷ୍ଟ ସ୍ୱୀକାର କରି ଦଣ୍ଡାୟମାନ ହୋଇ ମଧ୍ୟ ମନ୍ତ୍ରମୁଗ୍ଧବତ୍ ଶ୍ରବଣ କରୁଥିଲେ । ଏହି ମାସରେ ସେ ହାର୍ଟଫୋର୍ଡ ମେଟାଫିଜିକାଲ ସୋସାଇଟିଦ୍ୱାରା ନିମନ୍ତ୍ରିତ ହୋଇ 'ଆତ୍ମା ଓ ଈଶ୍ୱର' ସମ୍ବନ୍ଧରେ ଗୋଟିଏ ବକ୍ତୃତା ଦେଇଥିଲେ । ବ୍ରୁକଲୀନ୍ ନୈତିକ ସଭାରେ ସେ କେତୋଗୋଟି ଉଚ୍ଚାଙ୍ଗ ଦାର୍ଶନିକ ବକ୍ତୃତା ପ୍ରଦାନ କରିଥିଲେ । ଏହି ସମ୍ବନ୍ଧରେ ହେଲେନ ହଣ୍ଟିଙ୍ଗଟନ୍ ନାମକ ବ୍ରୁକଲୀନ୍‌ର ଜନୈକ ସମ୍ଭ୍ରାନ୍ତ ଓ ପଣ୍ଡିତ ବ୍ୟକ୍ତି 'ବ୍ରହ୍ମବାଦିନ୍' ପତ୍ରିକାରେ ଲେଖିଥିଲେ —

''ଈଶ୍ୱର ଅନୁଗ୍ରହ-ପୂର୍ବକ ଆମ୍ଭମାନଙ୍କ ନିକଟକୁ ଏପରି ଜଣେ ଧର୍ମଗୁରୁ ବା ଶିକ୍ଷକ ପଠାଇଛନ୍ତି, ଯାହାଙ୍କ ଉନ୍ନତତର ଦାର୍ଶନିକ ମତବାଦ ଧୀରଭାବରେ

ଅଥଚ ନିଶ୍ଚିତରୂପେ ଏହି ଦେଶର ନୈତିକ ଜୀବନକୁ ପ୍ରଭାବିତ କରିଛି । ଏହି ଅସାଧାରଣ ଶକ୍ତିଶାଳୀ ଏବଂ ପବିତ୍ର-ଚରିତ୍ର ପୁରୁଷ, ଏକ ସମୁନ୍ନତ ଆଧ୍ୟାତ୍ମିକ ଜୀବନଯାପନ ପ୍ରଣାଳୀ, ଏକ ସାର୍ବଭୌମିକ ଧର୍ମ, ଅଯାଚିତ ଦୟା, ଆତ୍ମତ୍ୟାଗ ଏବଂ ମାନବବୁଦ୍ଧିଗମ୍ୟ ପବିତ୍ରତମ ଭାବନିଚୟ ବ୍ୟାଖ୍ୟା କରିଛନ୍ତି । ସ୍ୱାମୀ ବିବେକାନନ୍ଦ ଆମମାନଙ୍କ ମଧ୍ୟରେ ଏପରି ଗୋଟିଏ ଧର୍ମପ୍ରଚାର କରିଛନ୍ତି, ଯାହା ସମ୍ପ୍ରଦାୟ ଓ ମତବାଦର ବନ୍ଧନରୁ ସମ୍ପୂର୍ଣ୍ଣରୂପେ ମୁକ୍ତ, ଉନ୍ନତି ଓ ପବିତ୍ରତାର ବିଧାୟକ, ଦିବ୍ୟାନନ୍ଦପ୍ରଦ ଏବଂ ସର୍ବତୋଭାବେ ନିଷ୍କଳଙ୍କ—ଯାହା ଈଶ୍ୱର ଓ ମାନବ ପ୍ରତି ପ୍ରେମ ଓ ଅନନ୍ତ ଦୟା ଉପରେ ପ୍ରତିଷ୍ଠିତ ।'' x x x

''ସ୍ୱାମୀ ବିବେକାନନ୍ଦ ତାଙ୍କ ଶିଷ୍ୟ ଓ ଅନୁଚରଗଣଙ୍କ ବ୍ୟତୀତ ବହୁ ବନ୍ଧୁ ଲାଭ କରିଛନ୍ତି । ବନ୍ଧୁ ଓ ଭ୍ରାତୃଭାବର ସାମ୍ୟ ସାହାଯ୍ୟରେ ସେ ସମାଜର ସବୁ ସ୍ତରରେ ପରିଭ୍ରମଣ କରିଛନ୍ତି । ତାଙ୍କ କଥୋପକଥନ ଓ ବକ୍ତୃତା ଶ୍ରବଣ କରିବା ନିମିତ୍ତ ଆମ ନଗରସ୍ଥ ଶ୍ରେଷ୍ଠ ପ୍ରତିଭାଶାଳୀ ଓ ଚିନ୍ତାଶୀଳ ବ୍ୟକ୍ତିଗଣ ସମବେତ ହୋଇଥାଆନ୍ତି । ଇତିମଧ୍ୟରେ ତାଙ୍କ ପ୍ରଭାବ ଗଭୀରଭାବରେ ବିସ୍ତୃତ ହୋଇଛି ଏବଂ ଗୋଟିଏ ଆଧ୍ୟାତ୍ମିକ ଜାଗରଣର ପ୍ରବଳ ସ୍ରୋତ ଅପ୍ରତ୍ୟକ୍ଷ ଭାବରେ ପ୍ରବାହିତ ହେଉଛି; କୌଣସି ପ୍ରଶଂସା ବା ନିନ୍ଦା ତାଙ୍କୁ ଅନୁମୋଦନ ବା ପ୍ରତିବାଦ ଲାଗି ଉତ୍ତେଜିତ କରିପାରେ ନାହିଁ; ଅର୍ଥ ଓ ପ୍ରତିପତ୍ତି ତାଙ୍କ ଉପରେ ପ୍ରଭାବ ବିସ୍ତାର ବା କୌଣସି ବିଷୟରେ ପକ୍ଷପାତୀ କରିପାରେ ନାହିଁ; ଅନ୍ୟାୟ ଅନୁଗ୍ରହ ପ୍ରତ୍ୟାଶାର ନିଃସନ୍ଦେହ ପ୍ରମାଣ ପାଇଲେ, ସେ ଏ' ପ୍ରକାର ଅଜ୍ଞତାପ୍ରସୂତ ଅଗ୍ରସର ବ୍ୟକ୍ତିମାନଙ୍କୁ ସ୍ୱୀୟ ଅପ୍ରତିହତ ବ୍ୟକ୍ତିତ୍ୱ ପ୍ରଭାବରେ ନିବାରଣ କରି ସର୍ବଦା ଧର୍ମପ୍ରଚାରକୋଚିତ ଅନାସକ୍ତି-ଭାବ ଅକ୍ଷୁଣ୍ଣ ରଖିଥାନ୍ତି । କୁକର୍ମୀ ଓ ଅସତ୍ ଚିନ୍ତାକାରୀ ବ୍ୟତୀତ ସେ କାହାରି ଦୋଷ ଦେଖାଉ ନ ଥିଲେ; ବରଂ ଅପର ପକ୍ଷରେ ପବିତ୍ରତା ଓ ଉନ୍ନତ ଜୀବନଯାପନ ପ୍ରଣାଳୀ ଅବଲମ୍ବନ କରିବାକୁ ଉତ୍ସାହ ଦେଉଥିଲେ । ମୋଟ ଉପରେ ସେ ଏଭଳି ଜଣେ ବ୍ୟକ୍ତି, ଯାହାଙ୍କୁ ସମ୍ମାନ ଦେଖାଇ ପାରିଲେ ରାଜାମାନେ ବି କୃତାର୍ଥ ହେଉଥିଲେ ।''

ସ୍ୱାମୀଜୀଙ୍କ ଧର୍ମବ୍ୟାଖ୍ୟାରେ ଆକୃଷ୍ଟ ହୋଇ ବହୁ ନରନାରୀ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରିବାକୁ ଲାଗିଲେ । ଡାକ୍ତର ଷ୍ଟ୍ରୀଟ୍ ନାମକ ଜଣେ ଭକ୍ତିମାନ ଶିଷ୍ୟ ସଂସାର ତ୍ୟାଗ କରିବା ସଂକଳ୍ପ କରିବାରୁ ସ୍ୱାମୀଜୀ ତାଙ୍କୁ ସନ୍ନ୍ୟାସ ପ୍ରଦାନ କରି ସ୍ୱାମୀ ଯୋଗାନନ୍ଦ ନାମ ଦେଲେ । ଏହିରୂପେ ବର୍ଷକ ମଧ୍ୟରେ ତିନିଜଣ ସମ୍ଭ୍ରାନ୍ତବଂଶୀୟ ଓ ସୁପଣ୍ଡିତ ଶିଷ୍ୟଙ୍କୁ ସନ୍ନ୍ୟାସ-ବ୍ରତରେ ଦୀକ୍ଷିତ କରି ସ୍ୱାମୀଜୀ ସେମାନଙ୍କ ସାହାଯ୍ୟରେ ବେଦାନ୍ତ ଓ ଯୋଗ କ୍ଲାସଗୁଡ଼ିକ ଚଳାଇଲେ । ଦଳ ଦଳ ନରନାରୀ ସ୍ୱାମୀଜୀଙ୍କ ଶିଷ୍ୟତ୍ୱ ଗ୍ରହଣ କରି ନିଜକୁ 'ବୈଦାନ୍ତିକ' ବୋଲି ପ୍ରଚାର କଲେ । ସ୍ୱାମୀଜୀଙ୍କ ଅନ୍ୟତମ ଶିଷ୍ୟା ଆମେରିକାର ସମସାମୟିକ ଶ୍ରେଷ୍ଠ କବି ଓ ଲେଖିକା ଶ୍ରୀମତୀ ଏଲ୍ଲା ହୁଇଲର ଉଇଲକକ୍ସ ମହୋଦୟା ୧୯୦୭ ଖ୍ରୀଷ୍ଟାବ୍ଦର

ମେ ଛବିଶ ତାରିଖ ଦିନ 'ନିଉୟର୍କ ଆମେରିକାନ୍' ନାମକ ସୁପ୍ରସିଦ୍ଧ ପତ୍ରିକାରେ ସ୍ୱାମୀଜୀଙ୍କ ବିଷୟ ଆଲୋଚନା କରି ଯେଉଁ ସୁଦୀର୍ଘ ପ୍ରବନ୍ଧ ଲେଖିଥିଲେ, ତାହା ପାଠକଲେ ନିଃସନ୍ଦେହରେ ବୁଝାଯାଏ ଯେ, ଯେ କୌଣସି ଚିନ୍ତାଶୀଳ ବ୍ୟକ୍ତି ତାଙ୍କ ବକ୍ତୃତା କ୍ଲାସଗୁଡ଼ିକୁ ଆସିଛନ୍ତି, ସେ ମୁଗ୍ଧ ହୋଇ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରିଛନ୍ତି—ଅଥବା ଉନ୍ନତତର, ଶାନ୍ତିପ୍ରଦ ଜୀବନ ଗଠନ କରିବା ଲାଗି ପ୍ରଚୁର ଉପାଦାନ ପାଇଛନ୍ତି । ଶ୍ରୀମତୀ ଉଇଲକକ୍ସ ଲେଖିଥିଲେ—

''ବାରବର୍ଷ ତଳେ ଘଟଣାକ୍ରମେ ଦିନେ ସନ୍ଧ୍ୟାବେଳେ ଶୁଣିଲି, ଭାରତବର୍ଷରୁ ବିବେକାନନ୍ଦ ନାମକ ଜଣେ ଦର୍ଶନଶାସ୍ତ୍ର ଅଧ୍ୟାପକ ନୁଉୟର୍କ ଆସିଛନ୍ତି ଏବଂ ମୋ ଘରଠାରୁ କେତୋଟି ଘର ଛାଡ଼ି ଗୋଟିଏ ସ୍ଥାନରେ ନିୟମିତ ବକ୍ତୃତା କରୁଛନ୍ତି । ଆମେ (ମୁଁ ଓ ମୋର ସ୍ୱାମୀ) କୌତୂହଳବଶତଃ ତାଙ୍କ ବକ୍ତୃତା ଶୁଣିବାକୁ ଗଲୁ ଏବଂ ଦଶ ମିନିଟ ନ ଯାଉଣୁ ଅନୁଭବ କଲୁ, ଆମେ ସୂକ୍ଷ୍ମ, ଜୀବନପ୍ରଦ, ରହସ୍ୟମୟ ଭାବରାଜ୍ୟକୁ ନୀତ ହୋଇଛୁ । ଆମେ ମନ୍ତ୍ରମୁଗ୍ଧବତ୍ ରୁଦ୍ଧଶ୍ୱାସରେ ବକ୍ତୃତା ଶେଷପର୍ଯ୍ୟନ୍ତ ଶ୍ରବଣ କଲୁ ।''

''ବକ୍ତୃତା ପରେ ଆମେ ନୂତନ ସାହସ, ନୂତନ ଆଶା, ନବୀନ ଶକ୍ତି ଓ ଅଭିନବ ବିଶ୍ୱାସ ସହ ଜୀବନର ଦୈନନ୍ଦିନ ବୈଚିତ୍ର୍ୟ ମଧ୍ୟରେ ଆସି ପଡ଼ିଲୁ । ମୋ ସ୍ୱାମୀ କହିଲେ, 'ଏହା ହିଁ ଦର୍ଶନଶାସ୍ତ୍ର, ଏହା ହିଁ ଈଶ୍ୱରଧାରଣା, ମୁଁ ବହୁଦିନ ଧରି ଯାହା ଅନ୍ୱେଷଣ କରୁଛି, ଏ' ସେହି ଧର୍ମ ।' ଏହାପରେ କେତେମାସ ପର୍ଯ୍ୟନ୍ତ ସେ ମୋତେ ସାଙ୍ଗରେ ନେଇ ସ୍ୱାମୀ ବିବେକାନନ୍ଦଙ୍କ ପ୍ରାଚୀନ ଧର୍ମବ୍ୟାଖ୍ୟା ଶ୍ରବଣ କରିବାକୁ ଏବଂ ତାଙ୍କ ଅସାଧାରଣ ମନର ସତ୍ୟ-ରତ୍ନସମୂହ, ଶକ୍ତି ଓ ସାହାଯ୍ୟ ସମ୍ବନ୍ଧୀୟ ଚିନ୍ତାଗୁଡ଼ିକ ସଂଗ୍ରହ କରିବାକୁ ଯାଉଥିଲେ । କେତେବେଳେ ଅବା କେତେ ରାତି ବିରକ୍ତି ଓ ଉତ୍କଣ୍ଠା ହେତୁ ଅନିଦ୍ରାରେ ଯାପନ କରି ସେ ସ୍ୱାମୀଜୀଙ୍କ ବକ୍ତୃତା ଶୁଣିବାକୁ ଯାଉଥିଲେ ଏବଂ ବକ୍ତୃତା ପରେ ବାହାରକୁ ଆସି ହିମମଳିନ ରାଜପଥରେ ଭ୍ରମଣ କରୁ କରୁ ହସି ହସି କହୁଥିଲେ, 'ମୁଁ ବର୍ତ୍ତମାନ ସୁସ୍ଥ, ଆଉ ବିରକ୍ତି ନାହିଁ । ମାନବାତ୍ମା ସମ୍ବନ୍ଧରେ ଉଦାର ଓ ବିସ୍ତୃତ ଧାରଣା ନେଇ ମୋ କର୍ତ୍ତବ୍ୟ କର୍ମରେ ଆନନ୍ଦ ସହକାରେ ଯୋଗଦାନ କରିବି' ।

## ଡେଟ୍ରଏଟରେ ଅଦ୍ଭୁତ ସାଫଲ୍ୟ

ଡିସେମ୍ବର ମାସ ପ୍ରଥମ ଭାଗରେ ସେ ପୁନରାୟ ନିଉୟର୍କ ଫେରିଆସିଲେ; ସେଠାରୁ ଯୁକ୍ତରାଷ୍ଟ୍ରର ନାନା ସ୍ଥାନରେ ଭ୍ରମଣ କରି ଡେଟ୍ରଏଟରେ ପହଞ୍ଚିଲେ । ଡେଟ୍ରଏଟଠାରେ ତାଙ୍କ ପ୍ରଚାରକାର୍ଯ୍ୟ ବର୍ଣ୍ଣନା କରି ତାଙ୍କର ଅନ୍ୟତମା ଶିଷ୍ୟା କୁମାରୀ ଏମ୍. ସି. ଫାଙ୍କି ଲେଖିଛନ୍ତି—''୧୮୯୬ ଖ୍ରୀଷ୍ଟାବ୍ଦ ପ୍ରଥମ ଭାଗରେ ଦୁଇ ସପ୍ତାହ କାଳ ସେ ଡେଟ୍ରଏଟ୍ ଆସିଥିଲେ । ସାଙ୍ଗରେ ଥିଲେ ସାଙ୍କେତିକ ଲେଖକ (Stenographer) ବିଶ୍ୱସ୍ତ ଗୁଡ୍‌ଉଇନ୍ । ସେମାନେ ରିଶ୍‌ଲୁଠାରେ

କେତେଖଣ୍ଡ ଘର ଭଡ଼ାରେ ନେଇଥିଲେ । ରିଶଲୁ ଗୋଟିଏ ଛୋଟ 'ଫ୍ୟାମିଲି ହୋଟେଲ'—ସେଠାରେ ଏକାଧିକ ଲୋକ ସପରିବାର ବାସ କରୁଥିଲେ । ସେ ହୋଟେଲର ବଡ଼ ବୈଠକଖାନାଟିକୁ କ୍ଲାସ ଓ ବକ୍ତୃତା ଲାଗି ବ୍ୟବହାର କରୁଥିଲେ; କିନ୍ତୁ ଏହା ଏତେ ବଡ଼ ନ ଥିଲା, ଯେଉଁଥିରେ କି ସେ ବିପୁଳ ଜନତା ସମ୍ଭାଳି ହେବ । ଦୁଃଖର ବିଷୟ, ଅନେକଙ୍କୁ ବିଫଳ-ମନୋରଥ ହୋଇ ଫେରିଯିବାକୁ ପଡୁଥିଲା । ବୈଠକଖାନା, ଅଗଣା, ସିଡ଼ି ଓ ପୁସ୍ତକଗାରରେ ତିଳ ପକାଇବାକୁ ସ୍ଥାନ ନ ଥିଲା । ସେହି ସମୟରେ ସେ ଏକାବେଳେ ଭକ୍ତିପୂର୍ଣ୍ଣ ଥିଲେ । ଭଗବତ୍-ପ୍ରେମ ତାଙ୍କର କ୍ଷୁଧା-ତୃଷା ପରି ଥିଲା । ସେ ଯେପରି କି ଏକପ୍ରକାର ଐଶ୍ୱରିକ ଉନ୍ମାଦଗ୍ରସ୍ତ ହୋଇଥିଲେ; ପ୍ରେମମୟୀ ଜଗଜ୍ଜନନୀଙ୍କ ପ୍ରତି ତୀବ୍ର ଆକାଙ୍କ୍ଷା ହେତୁ ତାଙ୍କ ହୃଦୟ ଯେପରି କି ବିଦୀର୍ଣ୍ଣ ହେବାକୁ ଆରମ୍ଭ କରିଥିଲା । ଡେଟ୍ରଏଟ୍ର ଜନସାଧାରଣଙ୍କ ସମ୍ମୁଖରେ ଶେଷଥର ପାଇଁ ସେ ଅବତୀର୍ଣ୍ଣ ହେଲେ ବେଥେଲ୍ ମନ୍ଦିରରେ । ଜନୈକ ଅନୁରାଗୀ ଭକ୍ତ ରାବି ଲୁଇସ୍ ଗ୍ରୋସ୍‌ମ୍ୟାନ ସେଠାରେ ଧର୍ମଯାଜକ ଥିଲେ । ସେଦିନ ରବିବାର, ସନ୍ଧ୍ୟା ହୋଇଥାଏ; ଜନତା ଏତେ ଅଧିକ ହେଲା ଯେ, ଆମର ଭୟ ହେଉଥିଲା, ଲୋକେ କାଳେ ବିହ୍ୱଳ ହୋଇ କ'ଣ କରି ପକାଇବେ ! ରାସ୍ତା ଉପରେ ଅନେକ ଦୂର ପର୍ଯ୍ୟନ୍ତ ଲୋକ ଉବୁଜି ପଡ଼ିଥିଲେ; ଶତ ଶତ ଲୋକ ଫେରି ଯାଇଥିଲେ । ସ୍ୱାମୀଜୀ ସେହି ବୃହତ୍ ଶ୍ରୋତୃସଂଘକୁ ମନ୍ତ୍ରମୁଗ୍ଧ କରି ଦେଇଥିଲେ । ତାଙ୍କ ବକ୍ତୃତାର ବିଷୟ ଥିଲା—'ପାଶ୍ଚାତ୍ୟ ଜଗତକୁ ଭାରତର ବାଣୀ ଓ ସାର୍ବଜନୀନ ଧର୍ମର ଆଦର୍ଶ ।' ତାଙ୍କ ବକ୍ତୃତା ଅତି ଉତ୍କୃଷ୍ଟ ଓ ପାଣ୍ଡିତ୍ୟପୂର୍ଣ୍ଣ ହୋଇଥିଲା । ସେଦିନ ସନ୍ଧ୍ୟାରେ ମୁଁ ଆଚାର୍ଯ୍ୟଦେବଙ୍କୁ ଯେପରି ଦେଖିଛି, ଆଉ କେବେ ସେପରି ଦେଖିନାହିଁ । ତାଙ୍କ ସୌନ୍ଦର୍ଯ୍ୟରେ ଏପରି କିଛି ଥିଲା, ଯାହା ଏ ପୃଥିବୀର ନୁହେଁ । ମନେ ହେଉଥିଲା, ଯେପରି କି ଆତ୍ମାପକ୍ଷୀ ଦେହ ପଞ୍ଜର ଭାଙ୍ଗିବାକୁ ଉପକ୍ରମ କରୁଛି ଏବଂ ସେହି ସମୟରେ ମୁଁ ପ୍ରଥମେ ତାଙ୍କ ଆସନ୍ନ ଦେହତ୍ୟାଗର ପୂର୍ବାଭାସ ପାଇଥିଲି । ବହୁବର୍ଷବ୍ୟାପୀ ଅତିରିକ୍ତ ପରିଶ୍ରମ ଫଳରେ ସେ ଅତିଶୟ ଶ୍ରାନ୍ତ ହୋଇ ଯାଇଥିଲେ ଏବଂ ସେ ଯେ ଅଧିକ ଦିନ ଏହି ପୃଥିବୀରେ ରହିବେ ନାହିଁ, ତାହା ସେତେବେଳେ ବୁଝା ପଡୁଥିଲା । ମୁଁ 'ନା ଏ କିଛି ନୁହେଁ' ବୋଲି ମନକୁ ବୁଝାଇବାକୁ ଚେଷ୍ଟା କଲି ସତ; କିନ୍ତୁ ପ୍ରାଣେ ପ୍ରାଣେ ଏହାର ସତ୍ୟତା ଉପଲବ୍ଧି କଲି । ତାଙ୍କର ବିଶ୍ରାମ ଦରକାର ହେଉଥିଲା; କିନ୍ତୁ ସେ ଭିତରୁ ବୁଝିଥିଲେ ତାଙ୍କୁ କାର୍ଯ୍ୟ କରିଯିବାକୁ ହେବ ।"

ଧର୍ମାନ୍ଧ ଖ୍ରିସ୍ତାନ୍ ମିଶନାରୀଗଣ ସ୍ୱାମୀଜୀଙ୍କୁ ଆକ୍ରମଣ କରି ନାନାପ୍ରକାର ନିନ୍ଦା ରଚନା କଲେ । ସାଧାରଣଙ୍କୁ ତାଙ୍କ ବକ୍ତୃତା ଶୁଣିବା ଲାଗି ନିଷେଧ କଲେ । ଧର୍ମଯାଜକ ରାବ ଲୁଇସ୍ ଗ୍ରୋସ୍‌ମ୍ୟାନ୍ ସ୍ୱାମୀଜୀଙ୍କ ସମ୍ବନ୍ଧରେ ଭ୍ରାନ୍ତ ଧାରଣାଗୁଡ଼ିକ ବିରୋଧରେ ପ୍ରତିବାଦ କରି ସଂକୀର୍ଣ୍ଣ ହୃଦୟ ମିଶନାରୀମାନଙ୍କ କାର୍ଯ୍ୟପ୍ରଣାଳୀକୁ ନିନ୍ଦା କରିବାକୁ ଲାଗିଲେ । ଯାହାହେଉ, ଯଥେଷ୍ଟ ବାଧା ସତ୍ତ୍ୱେ ପ୍ରତ୍ୟହ ସ୍ୱାମୀଜୀଙ୍କ

ବକ୍ତୃତା ଆରମ୍ଭ ହେବା ପୂର୍ବରୁ ନିର୍ଦ୍ଦିଷ୍ଟ ସ୍ଥାନଟି ଜନାକୀର୍ଣ୍ଣ ହୋଇ ଯାଉଥିଲା ଓ ଶତ ଶତ ବ୍ୟକ୍ତି ସ୍ଥାନାଭାବରୁ ହତାଶ ହୋଇ ଫେରିଯାଉଥିଲେ । କେତେଜଣ ହିନ୍ଦୁଧର୍ମ ଗ୍ରହଣାଭିଳାଷୀ ବ୍ୟକ୍ତିଙ୍କୁ ଦୀକ୍ଷା ପ୍ରଦାନ କରି ସ୍ୱାମୀଜୀ ଡେଟ୍ରଏଟ୍‌ରୁ ବୋଷ୍ଟନ ଗଲେ । ସ୍ୱାମୀ କୃପାନନ୍ଦ ଡେଟ୍ରଏଟ୍‌ରେ ପ୍ରଚାର କାର୍ଯ୍ୟ ଚଳାଇଲେ ।

ହାର୍ଭାର୍ଡ ବିଶ୍ୱବିଦ୍ୟାଳୟ ପକ୍ଷରୁ ଶ୍ରୀଯୁକ୍ତ ଫକ୍ସ, ଦର୍ଶନଶାସ୍ତ୍ରର ସ୍ନାତକୋତ୍ତର ଛାତ୍ରମାନଙ୍କୁ ବେଦାନ୍ତ ସମ୍ବନ୍ଧରେ ବକ୍ତୃତା ଦେବା ନିମିତ୍ତ ସ୍ୱାମୀଜୀଙ୍କୁ ନିମନ୍ତ୍ରଣ କଲେ । ସ୍ୱାମୀଜୀ ଆନନ୍ଦରେ ସମ୍ମତି ଦେଲେ । ବିବିଧ ଦର୍ଶନଶାସ୍ତ୍ରରେ ସୁପଣ୍ଡିତ ଅଧ୍ୟାପକ ଓ ଶତ ଶତ ସ୍ନାତକୋତ୍ତର ଛାତ୍ରଙ୍କ ସମ୍ମୁଖରେ ସ୍ୱାମୀଜୀ ମାର୍ଚ୍ଚ ପଚିଶ ତାରିଖ ଦିନ ବେଦାନ୍ତ ଦର୍ଶନ ସମ୍ବନ୍ଧରେ ଗୋଟିଏ ଗଭୀର ତତ୍ତ୍ୱ-ସମନ୍ୱିତ ବକ୍ତୃତା ଦେଲେ । ଏହି ବକ୍ତୃତାଟି ଛାତ୍ରବୃନ୍ଦଙ୍କ ଆଗ୍ରହାତିଶଯ୍ୟ ହେତୁ ପୁସ୍ତକାଗାରରେ ମୁଦ୍ରିତ ହେଲା । ଅଧ୍ୟାପକ ରେଭରେଣ୍ଡ ସି. ସି. ଏଭରେଟ (Rev. C.C. Everett, L.D, LL.D.) ଆନନ୍ଦର ସହିତ ଏହାର ଗୋଟିଏ ଦୀର୍ଘ ଭୂମିକା ଲେଖିଥିଲେ । ସେଥିରେ ସେ ଲେଖିଥିଲେ —

"ସ୍ୱାମୀ ବିବେକାନନ୍ଦ ତାଙ୍କ ନିଜ ସମ୍ବନ୍ଧରେ ଏବଂ ତାଙ୍କ କର୍ମ ସମ୍ବନ୍ଧରେ ସମଧିକ କୌତୁହଳ ଉଦ୍ଦୀପିତ କରିଛନ୍ତି । ହିନ୍ଦୁ ଚିନ୍ତାପ୍ରଣାଳୀ ଅପେକ୍ଷା ଅଧିକତର ହୃଦୟଗ୍ରାହୀ ବିଷୟ ଆଉ ନାହିଁ । ହେଗେଲ କହିଛନ୍ତି, ସ୍ପିନୋଜାଙ୍କ ମତ ସବୁ ଦାର୍ଶନିକ ତତ୍ତ୍ୱର ମୂଳ । ବେଦାନ୍ତ ଦର୍ଶନ ସମ୍ବନ୍ଧରେ ଏହି ଅଭିମତ ପ୍ରକାଶ କରାଯାଇପାରେ । ବିବେକାନନ୍ଦ ଯେ ଆମ୍ଭମାନଙ୍କୁ ଏହି ଶିକ୍ଷା ଏତେ ସଫଳତା ସହିତ ଦେଇପାରିଛନ୍ତି, ସେଥିପାଇଁ ତାଙ୍କ ନିକଟରେ ଆମେ କୃତଜ୍ଞ ।"

## ନ୍ୟୁୟର୍କରେ 'ବେଦାନ୍ତ-ସମିତି' ସ୍ଥାପନ

ନ୍ୟୁୟର୍କକୁ ପ୍ରତ୍ୟାବର୍ତ୍ତନ କରି ସ୍ୱାମୀଜୀ ବେଦାନ୍ତ ଆଲୋଚନା ଓ ଯୋଗଶିକ୍ଷା ନିମିତ୍ତ ଗୋଟିଏ ସ୍ଥାୟୀ କେନ୍ଦ୍ର ସ୍ଥାପନ କରିବାକୁ ସ୍ଥିର କଲେ । ଏ ଦିଗରେ ଇଂଲଣ୍ଡରୁ ପୁନଃ ପୁନଃ ନିମନ୍ତ୍ରଣ ଆସିଲା । ସ୍ୱାମୀଜୀ ଇଂଲଣ୍ଡ ବାଟେ ଭାରତକୁ ଫେରିଯିବେ ବୋଲି ଆଗରୁ ସ୍ଥିର ହୋଇଥିଲା । ତଦନୁସାରେ ଶିଷ୍ୟ ଓ ଭକ୍ତବର୍ଗଙ୍କ ସହିତ ପରାମର୍ଶ କରି ସ୍ୱାମୀଜୀ ସ୍ଥାୟୀ ଭାବରେ ନ୍ୟୁୟର୍କରେ ଗୋଟିଏ 'ବେଦାନ୍ତ-ସମିତି' ସ୍ଥାପନ କଲେ । ପ୍ରସିଦ୍ଧ ଧନୀ ଶ୍ରୀଯୁକ୍ତ ଫ୍ରାନ୍‌ସିସ୍ ଏଚ୍. ଲିଗେଟ୍ ଗୁରୁଦେବଙ୍କ ସମ୍ମତି ଓ ଇଚ୍ଛାକ୍ରମେ ଉକ୍ତ ସମିତିର ସଭାପତି ହେଲେ । ଭଗିନୀ ହରିଦାସୀଙ୍କୁ ସ୍ୱାମୀଜୀ ଶକ୍ତିସଞ୍ଚାର ଓ ଆଶୀର୍ବାଦ କରି ଯୋଗ-ଶିକ୍ଷୟିତ୍ରୀ ରୂପେ ନିଯୁକ୍ତ କଲେ । ସ୍ୱାମୀ କୃପାନନ୍ଦ, ଅଭୟାନନ୍ଦ, ଯୋଗାନନ୍ଦ ଓ କେତେଜଣ ବ୍ରହ୍ମଚାରୀ ବେଦାନ୍ତ-ପ୍ରଚାରକ ନିଯୁକ୍ତ ହେଲେ । ଅସାଧାରଣ ଦାନଶୀଳା କୁମାରୀ ମେରି ଫିଲିପ, ଶ୍ରୀମତୀ ଆର୍ଥର ସ୍ମିଥ, ଶ୍ରୀଯୁକ୍ତ ଓ ଶ୍ରୀମତୀ ୱାଲଟର ଗୁଡ୍‌ଇଆର ଏବଂ ପ୍ରସିଦ୍ଧା ଗାୟିକା କୁମାରୀ ଏମା ଥାର୍ସ୍‌ବି ପ୍ରଭୃତି ନିଉୟର୍କସ୍ଥ ପ୍ରତିଷ୍ଠାବାନ୍

ଶିଷ୍ୟ ଓ ଶିଷ୍ୟାଗଣ ଉତ୍ସାହର ସହିତ ସମିତିର କାର୍ଯ୍ୟ ଚଳାଇବାକୁ ଲାଗିଲେ । ଶିଷ୍ୟବର୍ଗଙ୍କ ସମ୍ମତି ଓ ଅନୁରୋଧରେ ସ୍ୱାମୀଜୀ ତାଙ୍କ ଗୁରୁଭାଇ ସ୍ୱାମୀ ସାରଦାନନ୍ଦଜୀଙ୍କୁ ସତ୍ୱର ଇଂଲଣ୍ଡ ଆସିବାକୁ ପତ୍ର ଲେଖିଲେ । ଇଂଲଣ୍ଡରୁ ଉକ୍ତ ସ୍ୱାମୀଜୀଙ୍କୁ ନିଉୟର୍କ ପଠାଇବା ଲାଗି ପ୍ରତିଶ୍ରୁତି ଦେଇ ଆଚାର୍ଯ୍ୟଦେବ ୧୮୯୬ ଖ୍ରୀଷ୍ଟାବ୍ଦ ଏପ୍ରିଲ ପନ୍ଦର ତାରିଖ ଦିନ ପୁନରାୟ ଲଣ୍ଡନ ଅଭିମୁଖେ ଯାତ୍ରା କଲେ ।

ପ୍ରାୟ ତିନିବର୍ଷ କାଳ ତାଙ୍କ ଆମେରିକା ପ୍ରଚାରକାର୍ଯ୍ୟର ଗୌରମବୟ ଇତିହାସ ଆଲୋଚନା କଲେ ଭକ୍ତି, ବିସ୍ମୟ ଓ ସମ୍ଭ୍ରମରେ ଅତି ଅବିଶ୍ୱାସୀର ମସ୍ତକ ମଧ୍ୟ ଅବନତ ହୋଇଯାଏ । ସ୍ୱଜାତି, ସ୍ୱଦେଶ ଓ ସ୍ୱଧର୍ମର ମହିମାକୁ ଅକ୍ଷୁଣ୍ଣ ରଖି ସେ ଯେଉଁ ଭାବରେ ଭାରତୀୟ ଧର୍ମମତ ପ୍ରଚାର କରିଥିଲେ, ତାହା ଚିରଦିନ ପୃଥିବୀ ଇତିହାସରେ ଶ୍ରଦ୍ଧାର ସହିତ ଆଲୋଚନା କରିବା ଭଳି ଗୋଟିଏ ଅଧ୍ୟାୟ ରୂପେ ରହିବ । ଚିକାଗୋ ବିଦୁଷୀସମାଜର ଅନ୍ୟତମା ନେତ୍ରୀ ଶ୍ରୀମତୀ ଲିଗେଟ୍ ଯଥାର୍ଥ କହିଛନ୍ତି—"He (Vivekananda) was a Grand Seignior. There were but two celebrated personages whom I have met, that could make one feel perfecty at ease without themselves for an instant losing their own dignity,—One was the German Emperor, the other, the Swami Vivekananda." ଅର୍ଥାତ୍, "ବିବେକାନନ୍ଦ ସତରେ ମହାନୁଭବ ଥିଲେ । ମୁଁ ଜୀବନରେ ଦୁଇଜଣ ସୁବିଖ୍ୟାତ ବ୍ୟକ୍ତିଙ୍କୁ ଦେଖିଛି, ଯେଉଁମାନେ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟକୁ କୌଣସି ଅବସ୍ଥାରେ ହିଁ କ୍ଷୁଣ୍ଣ ନ କରି ଅନାଡ଼ମ୍ବର ଭାବରେ ପ୍ରତ୍ୟେକଙ୍କୁ ତାହା ଅନୁଭବ କରାଇ ପାରନ୍ତି—ଜଣେ ଜର୍ମାନ୍ ସମ୍ରାଟ୍, ଅନ୍ୟ ଜଣକ ସ୍ୱାମୀ ବିବେକାନନ୍ଦ ।"

## ପୁନରାୟ ଇଂଲଣ୍ଡ ଆଗମନ ଓ ସ୍ୱାମୀ ସାରଦାନନ୍ଦ

ଆମେରିକାରୁ ଆଚାର୍ଯ୍ୟଦେବଙ୍କ ଚିଠି ପାଇ ସ୍ୱାମୀ ସାରଦାନନ୍ଦ କାଳବିଳମ୍ବ ନ କରି ଇଂଲଣ୍ଡ ଆସିଲେ । ସେ ଏପ୍ରିଲ ମାସ ପହିଲାରୁ ଷ୍ଟର୍ଡି ସାହେବଙ୍କ ଅତିଥି ରୂପେ ବାସ କରି ପୂର୍ବପ୍ରତିଷ୍ଠିତ ଆଲୋଚନା ସମିତିରେ ଧର୍ମୋପଦେଶ ଦେଇଥିଲେ । ଆଚାର୍ଯ୍ୟଦେବ ଅପ୍ରତ୍ୟାଶିତ ଭାବରେ ତାଙ୍କୁ ଷ୍ଟର୍ଡି ସାହେବଙ୍କ ଘରେ ଦେଖି ଆନନ୍ଦରେ ଆତ୍ମହରା ହେଲେ । ସାରଦାନନ୍ଦଜୀ ଯେ ବହୁଦିନୁ ନିରୁଦ୍ଦିଷ୍ଟ 'ନେତା ଶ୍ରୀନରେନ୍ଦ୍ରନାଥଙ୍କୁ' ଦେଖି ସମଧିକ ଉଲ୍ଲସିତ ହେଲେ, ଏହା କହିବା ବାହୁଲ୍ୟ ! ଆଚାର୍ଯ୍ୟଦେବ ଆଗ୍ରହ ସହକାରେ ତାଙ୍କଠାରୁ ଆଲମବଜାର ମଠ ଓ ରାମକୃଷ୍ଣଭକ୍ତଗଣଙ୍କ କୁଶଳ ସମ୍ବାଦ ଅବଗତ ହୋଇ ନିଶ୍ଚିନ୍ତ ହେଲେ ।

ସାରଦାନନ୍ଦଜୀ ଓ ସ୍ୱାମୀଜୀ ଲଣ୍ଡନର ସେଣ୍ଟ ଜର୍ଜଲେନ୍‌ଠାରେ କୁମାରୀ ମୁଲର୍ ଓ ଶ୍ରୀଯୁକ୍ତ ଷ୍ଟର୍ଡିଙ୍କ ଅତିଥିରୂପେ ବାସ କରି ପୂର୍ଣ୍ଣ ଉଦ୍ୟମରେ ଓ ଉତ୍ସାହ ସହିତ ପ୍ରଚାରକାର୍ଯ୍ୟ ଆରମ୍ଭ କଲେ । ସ୍ୱାମୀ ବିବେକାନନ୍ଦ ପୁନରାୟ ଫେରି

ଆସିଛନ୍ତି, ଏ ସମ୍ବାଦ ପ୍ରଚାରିତ ହେବା ମାତ୍ରେ ଦଳ ଦଳ ଶିକ୍ଷିତ ନରନାରୀ ତାଙ୍କ ଦର୍ଶନ କାମନାରେ, କେହି ଅବା ଉପଦେଶ ଲାଭ ନିମିତ୍ତ ଆସିବାକୁ ଲାଗିଲେ । ସମ୍ବାଦପତ୍ରରେ ତାଙ୍କ କାର୍ଯ୍ୟପ୍ରଣାଳୀର ବିସ୍ତୃତ ସମାଲୋଚନା ପ୍ରକାଶିତ ହେଲା । ମେ ମାସ ପ୍ରଥମରୁ ସ୍ୱାମୀଜୀ ନିୟମିତ ରୂପେ ଶିକ୍ଷାଦାନ ଓ ପ୍ରଶ୍ନୋତ୍ତର କ୍ଲାସ ଚଲାଇଲେ ଏବଂ 'ଜ୍ଞାନଯୋଗ' ସମ୍ବନ୍ଧରେ ବକ୍ତୃତା ଦେବାକୁ ଲାଗିଲେ । ମେ ମାସ ଶେଷରେ ସେ ଭକ୍ତି, କର୍ମ ଓ ଯୋଗ ସମ୍ବନ୍ଧରେ କେତେଗୁଡ଼ିଏ ଉତ୍କୃଷ୍ଟ ବକ୍ତୃତା ଦେଇଥିଲେ । କ୍ଲାସ, ସଭା, ସମିତି, ବୈଠକଖାନା ଇତ୍ୟାଦିରେ ବକ୍ତୃତା ଦେବା ନିମିତ୍ତ ସେ ପ୍ରତ୍ୟହ ନିମନ୍ତ୍ରିତ ହେଉଥିଲେ । ଶ୍ରୀମତୀ ଆନିବେଶାନ୍ତଙ୍କଦ୍ୱାରା ନିମନ୍ତ୍ରିତ ହୋଇ ତାଙ୍କ ଆଭେନିଉ ରୋଡ଼ସ୍ଥ ବାସଭବନରେ ଦିନେ ସ୍ୱାମୀଜୀ ଭକ୍ତି ସମ୍ବନ୍ଧରେ ଗୋଟିଏ ବକ୍ତୃତା ଦେଲେ । କର୍ଣ୍ଣେଲ ଓଲକଟ୍ ମଧ୍ୟ ସେଦିନ ସେଠାରେ ଉପସ୍ଥିତ ଥିଲେ ।

ଜୁନ୍ ଛଅ ତାରିଖର 'ବ୍ରହ୍ମବାଦିନ୍' ପତ୍ରିକାରେ ସ୍ୱାମୀ ସାରଦାନନ୍ଦ ଲେଖିଥିଲେ, "ସ୍ୱାମୀ ବିବେକାନନ୍ଦଙ୍କ ପ୍ରଚାରକାର୍ଯ୍ୟ ଏଠାରେ ସୁନ୍ଦର ଭାବରେ ଆରମ୍ଭ ହୋଇଛି । ପ୍ରତ୍ୟହ ଦଳ ଦଳ ନରନାରୀ ତାଙ୍କ ବକ୍ତୃତା କ୍ଲାସରେ ନିୟମିତ ଭାବରେ ଉପସ୍ଥିତ ହେଉଛନ୍ତି । ତାଙ୍କ ବକ୍ତୃତାଗୁଡ଼ିକ ବାସ୍ତବିକ୍ କୌତୁହଳୋଦ୍ଦୀପକ । ସେଦିନ ଆଙ୍ଗ୍ଲିକାନ୍ ଚର୍ଚ୍ଚର ଅନ୍ୟତମ ନେତା ଶ୍ରୀଯୁକ୍ତ କାନନ୍ ହାଉଇସ୍ ତାଙ୍କ ବକ୍ତୃତା ଶୁଣି ମୁଗ୍ଧ ହୋଇଥିଲେ । ସେ ଚିକାଗୋ ମହାମେଳାରେ ସ୍ୱାମୀଜୀଙ୍କ ସହିତ ପରିଚିତ ହୋଇଥିଲେ ଏବଂ ସେହି ସମୟରୁ ତାଙ୍କୁ ସ୍ନେହ କରୁଥିଲେ । ମଙ୍ଗଳବାର ଦିନ ସ୍ୱାମୀଜୀ 'ସୀସେମ୍ କ୍ଲବ' ରେ ଶିକ୍ଷା ସମ୍ବନ୍ଧରେ ଗୋଟିଏ ବକ୍ତୃତା ଦେଇଥିଲେ । ସ୍ତ୍ରୀ ଶିକ୍ଷାର ବିସ୍ତାର ନିମିତ୍ତ ମହିଳାମାନେ ଏହି ଅତିପ୍ରୟୋଜନୀୟ ସମିତିଟି ସ୍ଥାପନ କରିଥିଲେ । ଏହି ବକ୍ତୃତାରେ ସେ ଭାରତୀୟ ପ୍ରାଚୀନ ଶିକ୍ଷାପଦ୍ଧତି ସହିତ ଆଧୁନିକ ପ୍ରଥାର ତୁଳନା କରି ଦେଖାଇ ଦେଲେ ଯେ ମଣିଷ-ଗଠନ ହେଉଛି ଶିକ୍ଷାର ଉଦ୍ଦେଶ୍ୟ—ବିବିଧ ପ୍ରକାର ତଥ୍ୟ ଦେଇ ମସ୍ତିଷ୍କକୁ ପୂର୍ଣ୍ଣ କରିବା ନୁହେଁ । ସେ ଯୁକ୍ତିଦେଇ ବୁଝାଇ ଦେଲେ ଯେ ମଣିଷ ମନ ହିଁ ଅନନ୍ତ ଜ୍ଞାନର ଆକର; ଭୂତ, ଭବିଷ୍ୟତ ଓ ବର୍ତ୍ତମାନର ସମସ୍ତ ଜ୍ଞାନ ଏଥିରେ ବ୍ୟକ୍ତ ବା ଅବ୍ୟକ୍ତ ଭାବରେ ରହିଛି । ମାନବର ଏହି ଅନ୍ତର୍ନିହିତ ଜ୍ଞାନର ବହିର୍ବିକାଶରେ ସାହାଯ୍ୟ କରିବା ପ୍ରତ୍ୟେକ ପ୍ରକାର ଶିକ୍ଷାପ୍ରଣାଳୀର ଉଦ୍ଦେଶ୍ୟ ହେବା ଉଚିତ୍ । ସେ ଉପମା ଦେଇ କହିଲେ—ଯେପରି 'ମାଧ୍ୟାକର୍ଷଣ ଶକ୍ତି' ବିଷୟକ ଜ୍ଞାନ ପୂର୍ବରୁ ମଣିଷ ଅନ୍ତରରେ ବିଦ୍ୟମାନ ଥିଲା, ଆତ ପଡ଼ିବା ନିଉଟନ୍‌ଙ୍କ ପକ୍ଷରେ ଉକ୍ତ ଜ୍ଞାନ-ବିକାଶରେ ସହାୟକ ହେଲା ମାତ୍ର ।"

ଶ୍ରୀମତୀ ମାର୍ଟିନ ନାମ୍ନୀ ଜନୈକା ବିଦୁଷୀ ଓ ଧନାଢ଼୍ୟା ରମଣୀ ଦିନେ ତାଙ୍କ ଆଳୟକୁ ସ୍ୱାମୀଜୀଙ୍କୁ ବକ୍ତୃତା ଦେବା ନିମିତ୍ତ ନିମନ୍ତ୍ରଣ କଲେ । ସେ 'ଆତ୍ମା ସମ୍ବନ୍ଧରେ ହିନ୍ଦୁଙ୍କ ଧାରଣା' ବିଷୟରେ ଗୋଟିଏ ବକ୍ତୃତା ଦେଲେ । ଜୁନ୍ ତେର

ତାରିଖର 'ଦି ଲଣ୍ଡନ ଆମେରିକାନ୍' ନାମକ ପତ୍ରିକା ଏହି ବକ୍ତୃତା ସମ୍ବନ୍ଧରେ ବିସ୍ତୃତ ବର୍ଣ୍ଣନା କରି ଯେଉଁ ସୁଦୀର୍ଘ ପ୍ରବନ୍ଧ ଲେଖିଥିଲେ, ତାହାର କିୟଦଂଶ ତଳେ ଉଦ୍ଧୃତ ହେଲା —

''ସ୍ୱାମୀଜୀ ହିନ୍ଦୁଧର୍ମକୁ କେବଳ ଯେ ଜଡ଼ ଓ ଅନ୍ଧ ପୌତ୍ତଳିକତା ଅପବାଦରୁ ମୁକ୍ତ କରିଛନ୍ତି, ସେତିକି ନୁହେଁ, ବରଂ ଏହାକୁ ଏପରି ଏକ ସମୁନ୍ନତ ଓ ସମୁଜ୍ଜ୍ୱଳ ଭାବ ଉପରେ ପ୍ରତିଷ୍ଠା କରିଛନ୍ତି ଯେ, ଏଥିପ୍ରତି ମାନବଜାତି ଶ୍ରଦ୍ଧାଳୁ ନ ହୋଇ ରହିପାରିବ ନାହିଁ । x x x ବୁଧବାର ଦିନ ଅତୀବ ଦୁର୍ଯୋଗ ସତ୍ତ୍ୱେ ବହୁସଂଖ୍ୟକ ଭଦ୍ରଲୋକ ଓ ମହିଳା ଶ୍ରୀମତୀ ମାର୍ଟିନ୍‌ଙ୍କ ଆତିଥ୍ୟ ଗ୍ରହଣ କରିବା ଲାଗି ଉପସ୍ଥିତ ଥିଲେ, ଏପରି କି ରାଜ ପରିବାରର କେତେଜଣ ଗୋପନଭାବରେ ଏହି ସଭାକୁ ଆସିଥିଲେ ।''

## ଆଚାର୍ଯ୍ୟ ମ୍ୟାକ୍ସମୁଲରଙ୍କ ସହିତ ସାକ୍ଷାତ ଓ ଶ୍ରୀରାମକୃଷ୍ଣ ପ୍ରସଙ୍ଗ

ବିଶେଷ ଭାବେ ନିମନ୍ତ୍ରିତ ହୋଇ ସ୍ୱାମୀଜୀ ଅକ୍ସଫୋର୍ଡ ଗଲେ ଏବଂ ସେଠାରେ ମେ ଅଠେଇଶ ତାରିଖ ଦିନ ଜଗତ୍‌ବିଖ୍ୟାତ ଆଚାର୍ଯ୍ୟ ମ୍ୟାକ୍ସମୁଲରଙ୍କ ସହିତ ସାକ୍ଷାତ କଲେ । ମ୍ୟାକ୍ସମୁଲର ଇତିପୂର୍ବରୁ 'ନାଇନ୍‌ଟୀନଥ୍ ସେଞ୍ଚୁରୀ' ପତ୍ରିକାରେ 'ପ୍ରକୃତ ମହାତ୍ମା' ଶୀର୍ଷକ ଶ୍ରୀରାମକୃଷ୍ଣଙ୍କ ସମ୍ବନ୍ଧରେ ଯେଉଁ ପ୍ରବନ୍ଧ ଲେଖିଥିଲେ, ତାହା ପାଠ କରି ବିବେକାନନ୍ଦ ପୂର୍ବରୁ ଅଧ୍ୟାପକଙ୍କ ସହିତ ସାକ୍ଷାତ୍ କରିବେ ବୋଲି ସ୍ଥିର କରିଥିଲେ । କଥାପ୍ରସଙ୍ଗରେ ଆଚାର୍ଯ୍ୟ କହିଲେ, ଶ୍ରୀରାମକୃଷ୍ଣଙ୍କ ସଂସର୍ଗରେ ଆସି କେଶବଙ୍କ ଧର୍ମମତର ସହସା ପରିବର୍ତ୍ତନ ସର୍ବପ୍ରଥମେ ତାଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ସେତେବେଳରୁ ଏହି ମାହାତ୍ମାଙ୍କ ଜୀବନୀ ଓ ଉପଦେଶ ସମ୍ବନ୍ଧରେ ଯେଉଁଠାରେ ସେ ଯେତିକି ପାଆନ୍ତି, ତାହାକୁ ଆଗ୍ରହ ଓ ଶ୍ରଦ୍ଧା ସହକାରେ ପାଠକରି ଆସିଛନ୍ତି । ସ୍ୱାମୀଜୀଙ୍କଠାରୁ ଶ୍ରୀରାମକୃଷ୍ଣଙ୍କ ପବିତ୍ର ଚରିତ୍ର ଓ ଉପଦେଶାବଳୀ ଶ୍ରବଣ କରି ଅଧ୍ୟାପକ କହିଲେ ଯେ, ସେ ଯଦି ତାଙ୍କୁ ଆବଶ୍ୟକ ମତେ ଉପାଦାନ ସଂଗ୍ରହ କରି ଦେଇପାରନ୍ତି, ତାହାହେଲେ ସେ ଶ୍ରୀରାମକୃଷ୍ଣଙ୍କର ଗୋଟିଏ ପୂର୍ଣ୍ଣାଙ୍ଗ ଜୀବନୀ ଲେଖିବାକୁ ପ୍ରସ୍ତୁତ ଅଛନ୍ତି । କହିବା ବାହୁଲ୍ୟ, ସ୍ୱାମୀଜୀ ଆନନ୍ଦରେ ସମ୍ମତି ଦେଲେ । କେତେଦିନ ପରେ ଅଧ୍ୟାପକଙ୍କ ପ୍ରଣୀତ 'ରାମକୃଷ୍ଣଙ୍କ ଜୀବନୀ ଓ ଉପଦେଶ' ନାମକ ବିଖ୍ୟାତ ପୁସ୍ତକ ଖଣ୍ଡିକ ପ୍ରକାଶିତ ହେଲା । ଏହା ବିବେକାନନ୍ଦଙ୍କ ପାଶ୍ଚାତ୍ୟ ଦେଶରେ ପ୍ରଚାର କାର୍ଯ୍ୟରେ ଯଥେଷ୍ଟ ସାହାଯ୍ୟ କରିଥିଲା ।

ଶ୍ରୀରାମକୃଷ୍ଣ ସମ୍ବନ୍ଧରେ ସ୍ୱାମୀଜୀ ଯେତେବେଳେ କହିଲେ, ''ଶ୍ରୀରାମକୃଷ୍ଣ ଆଜିକାଲି ହଜାର ହଜାର ଲୋକଙ୍କଦ୍ୱାରା ଉପାସିତ ହେଉଛନ୍ତି'', ଅଧ୍ୟାପକ ଉତ୍‌କ୍ଷଣାତ୍ ଉତ୍ତରରେ କହିଲେ, ''ଯଦି ଏଭଳି ମହାପୁରୁଷ ଉପାସିତ ନ ହୁଅନ୍ତି, ତେବେ କାହାର ଉପାସନା ହେବ ?'' ସ୍ୱାମୀଜୀଙ୍କ ମୁହଁରୁ ଶ୍ରୀରାମକୃଷ୍ଣଙ୍କ

କଥା ଶ୍ରବଣ କରି ଅଧ୍ୟାପକ ଉତ୍ସାହର ସହିତ କହିଲେ, ''ତାଙ୍କୁ ଜଗତରେ ପରିଚିତ କରାଇବା ଲାଗି ଆପଣମାନେ କ'ଣ କରୁଛନ୍ତି ?'' କଥାବାର୍ତ୍ତା ବେଳେ ସ୍ୱାମୀଜୀଙ୍କ ପ୍ରଚାର-କାର୍ଯ୍ୟ କଥା ଉଠିଲା । ସ୍ୱାମୀଜୀଙ୍କ ବେଦାନ୍ତପ୍ରଚାର କାର୍ଯ୍ୟରେ ଅଧ୍ୟାପକ ସମ୍ପୂର୍ଣ୍ଣ ସହାନୁଭୂତି ଜ୍ଞାପନ କଲେ । ଭୋଜନ ପରେ ଅଧ୍ୟାପକ, ସ୍ୱାମୀଜୀ ଓ ତାଙ୍କ ଶିଷ୍ୟ ଷ୍ଟର୍ଡି ସାହେବଙ୍କୁ ନେଇ ନଗର ଭ୍ରମଣରେ ବାହାରିଗଲେ । ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ ଓ ବୋଡ୍‌ଲିଆନ୍ ଲାଇବ୍ରେରୀ ଦେଖାଇଲେ । ସ୍ୱାମୀଜୀ ଅଧ୍ୟାପକଙ୍କର ଭାରତବର୍ଷ ସମ୍ବନ୍ଧରେ ଅସୀମ ଜ୍ଞାନ ଦେଖି ବିସ୍ମିତ ହେଲେ । ଭାରତବର୍ଷ ପ୍ରତି ଅଧ୍ୟାପକଙ୍କର ଅସୀମ ସ୍ନେହ ସ୍ୱଦେଶପ୍ରେମିକ ସନ୍ନ୍ୟାସୀଙ୍କୁ ମୁଗ୍ଧ କଲା । ବିବେକାନନ୍ଦ ଉଲ୍ଲସିତ ହୋଇ ପ୍ରଶ୍ନ କଲେ, ''ଆପଣ କେବେ ଭାରତ ଯିବେ ? ଯେ ଆମ୍ଭମାନଙ୍କ ପୂର୍ବପୁରୁଷମାନଙ୍କ ଚିନ୍ତାସମୂହ ଶ୍ରଦ୍ଧା ସହକାରେ ଆଲୋଚନା କରିଛନ୍ତି, ତାହାଙ୍କୁ ଅଭ୍ୟର୍ଥନା କରିବା ନିମିତ୍ତ ସମସ୍ତେ ଆନନ୍ଦର ସହିତ ଆଗଭର ହେବେ, ଏଥିରେ ସନ୍ଦେହ ନାହିଁ ।'' ଅଧ୍ୟାପକଙ୍କ ପ୍ରଶାନ୍ତ ବଦନମଣ୍ଡଳ ସମଧିକ ଉଜ୍ଜ୍ୱଳ ହୋଇ ଉଠିଲା, ଅଶ୍ରୁଭାରାକ୍ରାନ୍ତ ନେତ୍ରରେ ସେ ଅଜ୍ଞାତସାରରେ କହି ପକାଇଲେ, ''ତାହାହେଲେ ହୁଏତ ମୁଁ ଆଉ ଫେରିବି ନାହିଁ; ଆପଣମାନଙ୍କୁ ସେହିଠାରେ ମୋ ଦେହକୁ ସତ୍କାର କରିବାକୁ ପଡ଼ିବ । x x x ରାତ୍ରିରେ ଯେତେବେଳେ ସ୍ୱାମୀଜୀ ଷ୍ଟେସନରେ ଟ୍ରେନ୍ ପାଇଁ ଅପେକ୍ଷା କରିଥିଲେ, ସେହି ସମୟରେ ବୃଦ୍ଧ ଅଧ୍ୟାପକ ଝଡ଼ବୃଷ୍ଟି ସତ୍ତ୍ୱେ ସ୍ୱାମୀଜୀଙ୍କୁ ବିଦାୟ ଅଭିନନ୍ଦନ ଜଣାଇବା ନିମିତ୍ତ ଷ୍ଟେସନରେ ପହଞ୍ଚିଲେ । ସ୍ୱାମୀଜୀ ଲଜ୍ଜିତ ହୋଇ ସସମ୍ଭ୍ରମେ କହିଲେ, ''ମୋତେ ବିଦାୟ ଦେବା ଲାଗି ଆପଣ ଏତେ କଷ୍ଟ କରି ଆସି ନ ଥିଲେ ଚଳିଥାନ୍ତା ।'' ଅଧ୍ୟାପକ ପ୍ରୀତି ଛଳ ଛଳ ନେତ୍ରରେ କହିଲେ, ''ଶ୍ରୀରାମକୃଷ୍ଣଙ୍କର ଜଣେ ଯୋଗ୍ୟତମ ଶିଷ୍ୟଙ୍କ ଦର୍ଶନଲାଭର ସୌଭାଗ୍ୟ ପ୍ରତ୍ୟହ ଆସେ ନାହିଁ ।'' ଏହି ଦର୍ଶନରେ ଅଧ୍ୟାପକଙ୍କ ସହିତ ସ୍ୱାମୀଜୀଙ୍କର ପ୍ରଗାଢ଼ ବନ୍ଧୁତାର ସୂତ୍ରପାତ ହେଲା । ସ୍ୱାମୀଜୀ ଆଜୀବନ ଅଧ୍ୟାପକଙ୍କ ପ୍ରତି ଶ୍ରଦ୍ଧା ପ୍ରଦର୍ଶନ କରୁଥିଲେ । ଯଦିବା ଆଉ ଉଭୟଙ୍କ ମଧ୍ୟରେ ଦେଖାସାକ୍ଷାତର ସୁବିଧା ହୋଇ ନାହିଁ; ତଥାପି ସେମାନେ ନିୟମିତ ଭାବରେ ପତ୍ରଦ୍ୱାରା ପରସ୍ପର କୁଶଳସମ୍ବାଦ ଅବଗତ ହେଉଥିଲେ ।

## ସେଭିୟର ଦମ୍ପତିଙ୍କର ଶିଷ୍ୟତ୍ୱ ଗ୍ରହଣ

ଯେଉଁ ଇଂରେଜ ଶିଷ୍ୟ ଓ ଶିଷ୍ୟା ସ୍ୱାମୀଜୀଙ୍କ କାର୍ଯ୍ୟରେ ଜୀବନ ଉତ୍ସର୍ଗ କରିଛନ୍ତି, ସେମାନଙ୍କ ମଧ୍ୟରେ କୁମାରୀ ମୁଲର, କୁମାରୀ ନୋବ୍‌ଲ (ନିବେଦିତା), ଶ୍ରୀଯୁକ୍ତ ଗୁଡ୍‌ଉଇନ୍, ଶ୍ରୀଯୁକ୍ତ ଷ୍ଟର୍ଡି ପ୍ରଭୃତିଙ୍କ ବିଷୟ ବର୍ଣ୍ଣିତ ହୋଇ ସାରିଛି । ଦ୍ୱିତୀୟବାର ଇଂଲଣ୍ଡକୁ ଆସି ସ୍ୱାମୀଜୀ କ୍ୟାପ୍‌ଟେନ ଓ ଶ୍ରୀମତୀ ସେଭିୟରଙ୍କୁ ଶିଷ୍ୟାରୂପେ ପାଇଲେ । ଏହି ଧର୍ମପ୍ରାଣ ସେଭିୟର ଦମ୍ପତି ତାଙ୍କ ଭାରତୀୟ

କାର୍ଯ୍ୟ ନିମିତ୍ତ ଆତ୍ମୋତ୍ସର୍ଗ କରିବାକୁ ପ୍ରସ୍ତୁତ ହେଲେ । ଶ୍ରୀମତୀ ସେଭିୟର ଶିଷ୍ୟା ହୋଇ ମଧ୍ୟ ସ୍ୱାମୀଜୀଙ୍କ ମାତୃସ୍ଥାନୀୟା ଥିଲେ; ସ୍ୱାମୀଜୀ ତାଙ୍କୁ ମାତୃ ସମ୍ବୋଧନ କରୁଥିଲେ ।

ଇତିମଧ୍ୟରେ ସେଭିୟର-ଦମ୍ପତି ଓ କୁମାରୀ ମୁଲର୍ ସ୍ୱାମୀଜୀଙ୍କୁ ନେଇ ସୁଇଜରଲାଣ୍ଡ୍ ପରିଭ୍ରମଣ କରିବାକୁ ଯିବେ ବୋଲି ସଙ୍କଳ୍ପ କଲେ; ସେ ଆନନ୍ଦର ସହିତ ସେମାନଙ୍କ ପ୍ରସ୍ତାବରେ ସମ୍ମତ ହେଲେ । କେତେମାସ କଠୋର ପରିଶ୍ରମ ପରେ ତାଙ୍କର ବିଶ୍ରାମ କରିବା ଲାଗି ଏହା ଏକାନ୍ତ ପ୍ରୟୋଜନୀୟ ଥିଲା ।

## ଇଉରୋପରେ ଭ୍ରମଣ — ଜେନେଭାରେ

ଜୁଲାଇ ମାସ ଶେଷଭାଗରେ ଶିଷ୍ୟ ଓ ବନ୍ଧୁମାନଙ୍କ ଗହଣରେ ସ୍ୱାମୀଜୀ ଲଣ୍ଡନରୁ ଯାତ୍ରା କରି ଜେନେଭା ନଗରୀରେ ଉପନୀତ ହେଲେ । ସେତେବେଳେ ଜେନେଭାରେ ଗୋଟିଏ ଶିଳ୍ପ-ପ୍ରଦର୍ଶନୀ ଅନୁଷ୍ଠିତ ହେଉଥିଲା । ସ୍ୱାମୀଜୀ ସୁଇଜରଲାଣ୍ଡର ଶିଳ୍ପଜାତ ଦ୍ରବ୍ୟଗୁଡ଼ିକୁ ଦର୍ଶନ କରି ପ୍ରୀତ ହୋଇଥିଲେ । ଦିନସାରା ଉତ୍ସାହଭରେ ପ୍ରଦର୍ଶିତ ଦ୍ରବ୍ୟଗୁଡ଼ିକୁ ପର୍ଯ୍ୟବେକ୍ଷଣ କରି କରି ବୁଲିଲେ । ଶେଷରେ ଗୋଟିଏ ବେଲୁନ ଦେଖି ସେ ବେଲୁନରେ ଉପରକୁ ଉଠିବା ଲାଗି ବିଶେଷ ଆଗ୍ରହ ପ୍ରକାଶ କଲେ । ସୂର୍ଯ୍ୟାସ୍ତ ପୂର୍ବରୁ ବେଲୁନ ଉଡ଼ିବ ନାହିଁ ଶୁଣି ସ୍ୱାମୀଜୀ ବାଳସୁଲଭ ଅଧୀରତା ସହକାରେ ସଙ୍ଗୀମାନଙ୍କୁ ପଚାରିଲେ, ''ବର୍ତ୍ତମାନ କ'ଣ ସମୟ ହୋଇନାହିଁ ?''ଶ୍ରୀମତୀ ସେଭିୟର ଆକାଶ ଭ୍ରମଣ ନିରାପଦ ନୁହେଁ ବୋଲି ମନେକରି ଆପତ୍ତି କଲେ । ସ୍ୱାମୀଜୀ ତାଙ୍କର କୌଣସି ଆପତ୍ତି କର୍ଣ୍ଣପାତ କଲେ ନାହିଁ, ବରଂ ତାଙ୍କୁ ବେଲୁନରେ ଉଠିବାକୁ ବାଧ୍ୟ କଲେ । ସେ ଦିନ ଆକାଶ ବେଶ୍ ପରିଷ୍କାର ଥିଲା । ଊର୍ଦ୍ଧ୍ୱରୁ ସୂର୍ଯ୍ୟାସ୍ତର ମନୋରମ ଶୋଭା ସନ୍ଦର୍ଶନ କରି ସ୍ୱାମୀଜୀ ଅତୀବ ଆନନ୍ଦିତ ହେଲେ । ବେଲୁନ୍‌ରୁ ଅବତରଣ କରି ସେମାନେ ସମସ୍ତେ ଫଟୋ ଉଠାଇ ପ୍ରଫୁଲ୍ଲଚିତ୍ତରେ ହୋଟେଲକୁ ଫେରିଗଲେ ।

ଜେନେଭାରୁ ସ୍ୱାମୀଜୀ ସଦଳବଳେ 'Castle of Chillo' ଦର୍ଶନ କରିବାକୁ ଗଲେ । ସେଠାରେ ତିନିଦିନ ରହି 'Mount blank' ଅଭିମୁଖେ ଯାତ୍ରା କଲେ । ସୁଇଜର୍‌ଲାଣ୍ଡର ହ୍ରଦମାଳା-ପରିଶୋଭିତ ମନୋରମ ପାର୍ବତ୍ୟ ପ୍ରଦେଶରେ ଭ୍ରମଣ କରି ସ୍ୱାମୀଜୀଙ୍କ ପରିବ୍ରାଜକ ଜୀବନର ମଧୁର ସ୍ମୃତିସମୂହ ମାନସପଟରେ ଜାଗିଉଠିଲା । ହିମାଳୟର ଶାନ୍ତ-ଶୀତଳ କ୍ରୋଡ଼ରେ ଆଶ୍ରମ ରଚନା କରି ଅବଶିଷ୍ଟ ଜୀବନଯାପନ କରିବାର ଗୋଟିଏ ପ୍ରବଳ ଆଗ୍ରହ ତାଙ୍କର ବହୁଦିନୁ ଥିଲା । ସଙ୍ଗୀମାନଙ୍କ ନିକଟରେ ହିମାଳୟର ସୌନ୍ଦର୍ଯ୍ୟ ବର୍ଣ୍ଣନା କରୁ କରୁ ସ୍ୱାମୀଜୀ କହିଲେ, ''ମୋର ଇଚ୍ଛା ହେଉଛି, ହିମାଳୟରେ ଗୋଟିଏ ମଠ ସ୍ଥାପନ କରି ଅବଶିଷ୍ଟ ଜୀବନ ଧ୍ୟାନ ଓ ତପସ୍ୟାରେ କଟାଇଦେବି । ଏହି ମଠରେ ମୋର ଭାରତୀୟ ଓ ପାଶ୍ଚାତ୍ୟ ଶିଷ୍ୟମାନେ ଅବସ୍ଥାନ କରିବେ; ମୁଁ ସେମାନଙ୍କୁ

କର୍ମୀରୂପେ ତିଆରି କରିଦେବି । ଭାରତୀୟ ଶିଷ୍ୟମାନେ ପାଶ୍ଚାତ୍ୟ ଦେଶରେ ବେଦାନ୍ତ ପ୍ରଚାରକାର୍ଯ୍ୟରେ ବ୍ରତୀ ହେବେ; ପାଶ୍ଚାତ୍ୟ ଶିଷ୍ୟବୃନ୍ଦ ଭାରତର ଉନ୍ନତି ଲାଗି ଆତ୍ମୋତ୍ସର୍ଗ କରିବେ ।'' ସ୍ୱାମୀଜୀଙ୍କ ଶିଷ୍ୟଗଣ ତାଙ୍କ ସଙ୍କଳ୍ପ ବାଣୀ ଶୁଣି ଉତ୍ସାହର ସହିତ କହିଲେ, ''ନିଶ୍ଚୟ ସ୍ୱାମୀଜୀ ! ଭବିଷ୍ୟତ କାର୍ଯ୍ୟ ନିମିତ୍ତ ଏହିପରି ଗୋଟିଏ ମଠ ଆମର ଏକାନ୍ତ ଆବଶ୍ୟକ ।'' ଆଲ୍‌ପସ୍ ପର୍ବତ ଶିଖରରେ ବସି ସ୍ୱାମୀଜୀ ଶିଷ୍ୟବୃନ୍ଦଙ୍କ ସହିତ ଯେଉଁ ଆଲୋଚନା କରିଥିଲେ, ଈଶ୍ୱରଙ୍କ କୃପାରୁ ତାହା ପରେ କାର୍ଯ୍ୟରେ ପରିଣତ ହୋଇଥିଲା ।

ଏହାପରେ କେତେଗୋଟି ସ୍ଥାନ ପରିଦର୍ଶନ କରି ସେମାନେ ଦୁଇସପ୍ତାହ ପାଇଁ ଗୋଟିଏ ପାର୍ବତ୍ୟ ଗ୍ରାମରେ ବାସ କଲେ । ଚାରିଦିଗରେ ତୁଷାରମଣ୍ଡିତ ଆଲ୍‌ପସ୍ ପର୍ବତର ଶୃଙ୍ଗମାନଙ୍କଦ୍ୱାରା ପରିବେଷ୍ଟିତ ଏହି ସ୍ତବ୍ଧ ଗ୍ରାମଖଣ୍ଡିକରେ ସ୍ୱାମୀଜୀ ଯେପରି କି କର୍ମକୋଳାହଳ, ସ୍ୱୀୟ ପ୍ରଚାରକାର୍ଯ୍ୟ, ଦାର୍ଶନିକ ବିଚାର ଇତ୍ୟାଦି ସମ୍ପୂର୍ଣ୍ଣ ବିସ୍ମୃତ ହେଲେ । ତାଙ୍କର ସମସ୍ତ ଚିତ୍ତବୃତ୍ତି ଅନ୍ତର୍ମୁଖୀ ହୋଇଗଲା । ସ୍ୱାମୀଜୀଙ୍କ ଅଭିପ୍ରାୟ ବୁଝି କେହି ତାଙ୍କୁ ବିରକ୍ତ କରୁ ନ ଥିଲେ; ସେ ଅଧିକାଂଶ ସମୟ ନୀରବରେ ଧ୍ୟାନମଗ୍ନ ରହୁଥିଲେ । ଦୁଇ ସପ୍ତାହ ପର୍ଯ୍ୟନ୍ତ ପରିପୂର୍ଣ୍ଣ ବିଶ୍ରାମ ହେତୁ ସ୍ୱାମୀଜୀଙ୍କର ଦୀର୍ଘ ତିନିବର୍ଷବ୍ୟାପୀ ଶ୍ରମକ୍ଳାନ୍ତି ଅପନୋଦିତ ହେଲାପରି ବୋଧ ହୋଇଥିଲା ।

## ଜର୍ମାନୀରେ ଅଧ୍ୟାପକ ପଲ୍ ଡୟସନ୍‌ଙ୍କ ସହିତ ସାକ୍ଷାତ

ଇତିମଧ୍ୟରେ ଜର୍ମାନୀର କୀଲ୍ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ବିଖ୍ୟାତ ସଂସ୍କୃତଜ୍ଞ ପଣ୍ଡିତ ପଲ୍ ଡୟସନ୍ ସ୍ୱାମୀଜୀଙ୍କୁ ନିମନ୍ତ୍ରଣ କରି ଖଣ୍ଡିଏ ପତ୍ର ଲେଖିଥିଲେ; ଏହା ଲଣ୍ଡନ ବାଟେ ସ୍ୱାମୀଜୀଙ୍କ ନିକଟରେ ଆସି ପହଞ୍ଚିଲା । ସ୍ୱାମୀଜୀ ପତ୍ର ପାଇବା ମାତ୍ରକେ ଜର୍ମାନୀ ଯିବା ଲାଗି ପ୍ରସ୍ତୁତ ହେଲେ । ପଥ ମଧ୍ୟରେ ଜର୍ମାନୀର କେତେଗୋଟି ଇତିହାସ ପ୍ରସିଦ୍ଧ ନଗର ଓ ରାଜଧାନୀ ଦର୍ଶନ କରି କୀଲ୍ ନଗରୀରେ ଉପସ୍ଥିତ ହେଲେ । ସ୍ୱାମୀଜୀ ଆସିଛନ୍ତି ଶୁଣି ଅଧ୍ୟାପକ ତତ୍‌କ୍ଷଣାତ୍ ତାଙ୍କୁ ପ୍ରାତଃଭୋଜନ ଲାଗି ନିମନ୍ତ୍ରଣ ପଠାଇଲେ । ସଙ୍ଗେ ସଙ୍ଗେ ସେଭିୟର ଦମ୍ପତିଙ୍କୁ ମଧ୍ୟ ନିମନ୍ତ୍ରଣ କରିବାକୁ ଅଧ୍ୟାପକ ଭୁଲି ନ ଥିଲେ । ପରଦିନ ସକାଳ ଦଶଟାରେ ସେମାନେ ଉପସ୍ଥିତ ହେବା ମାତ୍ରକେ ଅଧ୍ୟାପକ ଓ ତାଙ୍କ ପତ୍ନୀ ସେମାନଙ୍କୁ ସାଦର ଅଭ୍ୟର୍ଥନା କଲେ । ସ୍ୱାମୀଜୀଙ୍କ ପ୍ରଚାରକାର୍ଯ୍ୟ ଓ ଉଦ୍ଦେଶ୍ୟ ସମ୍ବନ୍ଧରେ କେତେଗୋଟି ପ୍ରଶ୍ନ କରିବା ପରେ ଅଧ୍ୟାପକ ବେଦ ଓ ଉପନିଷଦ୍ ବିଷୟରେ ସ୍ୱରଚିତ ଗୋଟିଏ ଗ୍ରନ୍ଥରୁ ସ୍ୱାମୀଜୀଙ୍କୁ ପଢ଼ି ଶୁଣାଇଲେ । ଅଧ୍ୟାପକ କହିଲେ ଯେ, ବେଦ ଓ ବେଦାନ୍ତର ଅଦ୍ଭୁତ ମୋହିନୀଶକ୍ତି କ୍ଷଣକାଳ ପାଇଁ ବାହ୍ୟଜଗତକୁ ଭୁଲାଇ ଦିଏ; ଏହା ପଢ଼ିବାକୁ ଆରମ୍ଭ କଲେ ମନ ଗୋଟିଏ ଉନ୍ନତ ଆଧ୍ୟାତ୍ମିକ ଭାବ-ରାଜ୍ୟକୁ ଚାଲିଯାଏ । ଅଧ୍ୟାପକଙ୍କ ମତରେ ମାନବ-

ମସ୍ତିଷ୍କ ସତ୍ୟାନୁସନ୍ଧାନୀ ରହି ଯେଉଁସବୁ ବିଷୟ ଆବିଷ୍କାର କରିଛି, ଉପନିଷଦ୍, ବେଦାନ୍ତ-ଦର୍ଶନ ଓ ଶଙ୍କର-ଭାଷ୍ୟ ତାର ଶ୍ରେଷ୍ଠତମ ଅଭିବ୍ୟକ୍ତି । ବେଦାନ୍ତ-ଚର୍ଚ୍ଚା ହିଁ ଅଧ୍ୟାପକଙ୍କ ଜୀବନର ଏକମାତ୍ର ବ୍ରତ ଥିଲା । ଏହାଙ୍କ ସହିତ ବେଦାନ୍ତ ଓ ଉପନିଷଦ୍ ଆଲୋଚନା କରି ସ୍ୱାମୀଜୀ ପ୍ରୀତ ହେଲେ । ଅଧ୍ୟାପକ ଡୟସନ୍ ବେଦାନ୍ତ ବା ଉପନିଷଦ୍‌କୁ କେବଳ ମାତ୍ର ସୂକ୍ଷ୍ମ ଦର୍ଶନଶାସ୍ତ୍ର ନ କହି ଉଚ୍ଚତମ ଓ ପବିତ୍ରତମ ନୈତିକ ଜୀବନ ଯାପନ କରିବାର ଏକମାତ୍ର ଅବଲମ୍ବନୀୟ ବୋଲି ମତ ଜ୍ଞାପନ କରିଥିଲେ । 'ରୟାଲ ଏସିଆଟିକ୍ ସୋସାଇଟି' ର ବୋମ୍ବାଇ ଶାଖାରେ ୧୮୯୩ ଖ୍ରୀଷ୍ଟାବ୍ଦରେ ସେ ବେଦାନ୍ତ ସମ୍ବନ୍ଧରେ ଯାହା କହିଥିଲେ, ତାହାର ଉପସଂହାରଟିକୁ ସ୍ୱାମୀଜୀଙ୍କ ସମ୍ମୁଖରେ ଆବୃତ୍ତି କରି କହିଲେ, "And so the Vedanta in its unfalsified form, is the strongest support of pure morality, is the greatest consolation in the sufferings of life and death. Indians keep to it." — "ଅର୍ଥାତ୍ ଆବିଷ୍କୃତ ବେଦାନ୍ତ ଦର୍ଶନ ପବିତ୍ର ନୀତି-ସମୂହର ସୁଦୃଢ଼ ଭିତ୍ତି, ଜୀବନ ଓ ମୃତ୍ୟୁର ଦୁଃଖସମୂହର ପରମ ସାନ୍ତ୍ୱନାର ସ୍ଥଳ । ହେ ଭାରତବାସୀ ! ଏହାକୁ ଦୃଢ଼ରୂପେ ଧରି ରଖ !" ସ୍ୱାମୀଜୀ ତାଙ୍କୁ ସ୍ୱୀୟ ଉପଲବ୍ଧିରୁ ଉପନିଷଦ୍‌ର କେତେଗୋଟି ଜଟିଳ ଓ ଦୁର୍ବୋଧ ଶ୍ଳୋକ ବ୍ୟାଖ୍ୟା କରି ଶୁଣାଇ ଦେଲେ । ପ୍ରାତଃଭୋଜନ ପରେ ଅଧ୍ୟାପକ ତାଙ୍କୁ ଛାଡ଼ିଲେ ନାହିଁ, ଏପରି କି ମଧ୍ୟାହ୍ନଭୋଜନ ପାଇଁ ମଧ୍ୟ ଅନୁରୋଧ କଲେ । ସେଦିନ ଅଧ୍ୟାପକଙ୍କର ଗୋଟିଏ କନ୍ୟାର ଜନ୍ମତିଥି ଥିଲା । ତେଣୁ ସେମାନେ ଶ୍ରଦ୍ଧେୟ ଅତିଥିଙ୍କୁ ବିଦାୟ ଦେଇପାରିଲେ ନାହିଁ । ଅଧ୍ୟାପକ-ଦମ୍ପତି ସେମାନଙ୍କ ଭାରତ-ଭ୍ରମଣ କାହାଣୀ ଶୁଣାଇବାରେ ଲାଗିଲେ । କେତେ ଘଣ୍ଟା ମଧ୍ୟରେ ସ୍ୱାମୀଜୀ ମଧୁର ବ୍ୟବହାରଦ୍ୱାରା ଅଧ୍ୟାପକଙ୍କ ହୃଦୟ ଜୟ କରି ନେଲେ ।

## ସ୍ୱାମୀଜୀଙ୍କ ଅଦ୍ଭୁତ ସ୍ମୃତିଶକ୍ତି — ବ୍ରହ୍ମଚର୍ଯ୍ୟର ଫଳ

ନାନାପ୍ରକାର ଆଲୋଚନା ଚାଲିଛି, ଏହି ସମୟରେ ଅଧ୍ୟାପକ କାର୍ଯ୍ୟାନ୍ତରରେ ଉଠିଗଲେ; ଅଳ୍ପ ସମୟ ପରେ ଫେରିଆସି ଦେଖିଲେ, ସ୍ୱାମୀଜୀ ଖଣ୍ଡିଏ କବିତା ପୁସ୍ତକର ପୃଷ୍ଠା ଓଲଟାଉଛନ୍ତି । ଏହି କାର୍ଯ୍ୟରେ ସେ ଏତେ ଅଭିନିବେଶ ସହକାରେ ବ୍ୟାପୃତ ଥିଲେ ଯେ, ଅଧ୍ୟାପକଙ୍କ ଡାକ ଶୁଣିପାରିଲେ ନାହିଁ । ପୁସ୍ତକଟି ପଢ଼ିସାରି ସ୍ୱାମୀଜୀ ଅଧ୍ୟାପକଙ୍କୁ ଚାହିଁ ବୁଝିପାରିଲେ ଯେ, ସେ ଅନେକ ସମୟ ହେଲା ତାଙ୍କୁ ଅପେକ୍ଷା କରିଛନ୍ତି । ସେ କ୍ଷମା ପ୍ରାର୍ଥନା କରି କହିଲେ, "ବହିଖଣ୍ଡିକ ପଢୁଥିଲି । ଆପଣ ହୁଏତ ଅନେକ ସମୟ ହେଲା ଆସିଲେଣି, କ୍ଷମା କରିବେ ।" ଉତ୍ତର ଶୁଣି ଅଧ୍ୟାପକ ସେ ପଢୁଥିବା କଥାଟିକୁ ବିଶ୍ୱାସ କଲେ ନାହିଁ, ଏହା ତାଙ୍କ ଭାବଭଙ୍ଗୀରୁ ସ୍ପଷ୍ଟ ହୋଇଗଲା । ସ୍ୱାମୀଜୀ ଏକଥା ବୁଝିପାରି କଥୋପକଥନ ମଧ୍ୟରେ ଉକ୍ତ ପୁସ୍ତକରୁ ପଠିତ କଥାଗୁଡ଼ିକ

ଅନର୍ଗଳ ଆବୃତ୍ତି କରିବାରେ ଲାଗିଲେ । ବିସ୍ମୟର ସହିତ ଅଧ୍ୟାପକ କହିଲେ, ''ଏ ବହିଟି ଆପଣ ନିଶ୍ଚୟ ଆଗରୁ ପଢ଼ିଥିଲେ, ନଚେତ୍ କେବଳ ଥରେ ମାତ୍ର ଆଖି ବୁଲାଇ ଚାରିଶହ ପୃଷ୍ଠାର ବହି ଖଣ୍ଡିକୁ ଅଧଘଣ୍ଟାକ ମଧ୍ୟରେ ଆୟତ୍ତ କରିବା କେବଳ ଦୁଃସାଧ୍ୟ ନୁହେଁ—ଅସାଧ୍ୟ ।''

ସ୍ୱାମୀଜୀ ହସି ହସି ଉତ୍ତର ଦେଲେ, ''ସଂଯତମନା ଯୋଗୀ ପକ୍ଷରେ ଏହା ଅସମ୍ଭବ ନୁହେଁ । ମୋ ମତରେ ଏହି କ୍ଷମତା ସମସ୍ତେ ଲାଭ କରିପାରିବେ । ଆପଣ ଜାଣନ୍ତି, ମୁଁ କାମ-କାଞ୍ଚନ-ତ୍ୟାଗୀ ସନ୍ନ୍ୟାସୀ । ଆଜୀବନ ଅଖଣ୍ଡ ବ୍ରହ୍ମଚର୍ଯ୍ୟର ଫଳସ୍ୱରୂପ ଏହି କ୍ଷମତା ସ୍ୱତଃ ମୋଠାକୁ ଆସିଛି । ପାଶ୍ଚାତ୍ୟ ଦେଶରେ ଅନେକେ ଏହାକୁ ବିଶ୍ୱାସ ନ କରିପାରନ୍ତି; କିନ୍ତୁ ଭାରତରେ ବ୍ରହ୍ମଚର୍ଯ୍ୟ ବଳରେ ଏ ପ୍ରକାର ସ୍ମୃତିଶକ୍ତିର ଅଧିକାରୀ ବିରଳ ହେଲେ ହେଁ ଏକଦମ୍ ଶୂନ୍ୟ ହୋଇ ନାହିଁ ।''

ଅଧ୍ୟାପକ ସ୍ୱାମୀଜୀଙ୍କ ପ୍ରଦର୍ଶିତ ଯୁକ୍ତି ଶ୍ରବଣ କରି ସନ୍ତୁଷ୍ଟ ହେଲେ । ଶ୍ରୀଶଙ୍କର ଓ ଶ୍ରୀଚୈତନ୍ୟଙ୍କ ଅଦ୍ଭୁତ ସ୍ମୃତିଶକ୍ତି କଥା ସମସ୍ତେ ଜାଣନ୍ତି । ବାଲ୍ୟକାଳରେ ସ୍ୱାମୀଜୀଙ୍କ ପ୍ରଖର ପ୍ରତିଭା ଓ ଅପରିମିତ ସ୍ମୃତିଶକ୍ତିର ପରିଚୟ ମିଳିଥିଲା ସତ୍ୟ, କିନ୍ତୁ ତାହା ଏପରି ଅଲୌକିକ ବା ଅଦ୍ଭୁତ ସ୍ମୃତିଶକ୍ତି ନୁହେଁ । ଖେତଡ଼ିରେ ବ୍ୟାକରଣ ପଢ଼ିବା ବେଳେ ସେ ଯେଉଁ ପ୍ରତିଭା ଓ ସ୍ମୃତିଶକ୍ତିର ପରିଚୟ ଦେଇଥିଲେ, ତାହା ଦୈବୀଶକ୍ତି ନୁହେଁ—ବହୁବର୍ଷବ୍ୟାପୀ ଅଟୁଟ ସଂଯମ ଓ କଠୋର ସାଧନା ବଳରେ ତାଙ୍କ ବ୍ରହ୍ମଚର୍ଯ୍ୟ ସୁପ୍ରତିଷ୍ଠିତ ହୋଇଥିଲା । ବ୍ରହ୍ମଚର୍ଯ୍ୟର ପ୍ରତ୍ୟେକ ବ୍ରତ ସେ ଶ୍ରଦ୍ଧା ସହିତ ଦେଖୁଥିଲେ । ବିବାହ ବା ତତ୍ସଂଶ୍ଲିଷ୍ଟ କୌଣସି ବ୍ୟାପାରର ସ୍ମୃତି ପର୍ଯ୍ୟନ୍ତ ଯେଉଁଥିରେ ମନକୁ ନ ଆସେ, ଏହା ହିଁ ତାଙ୍କର ଆଦର୍ଶ ଥିଲା । ଶିଷ୍ୟବର୍ଗଙ୍କୁ, ଏପରି କି ନିଜକୁ ମଧ୍ୟ ଏ ସମ୍ବନ୍ଧୀୟ ଆଶଙ୍କାରୁ ଦୂରରେ ରଖିବାକୁ ସେ ଚେଷ୍ଟା କରିଥିଲେ । ବ୍ରହ୍ମଚର୍ଯ୍ୟରୂପକ ମହତ୍ ବ୍ରତର ବର୍ତ୍ତମାନ ଶୋଚନୀୟ ଦୁରବସ୍ଥା ଦର୍ଶନ କରି ସେ ଉକ୍ତ ଆଦର୍ଶକୁ ପୁନଃପ୍ରତିଷ୍ଠିତ କରିବା ନିମିତ୍ତ ପ୍ରାଣପଣେ ଚେଷ୍ଟା କରି ଯାଇଛନ୍ତି । ସେ ବୁଝିଥିଲେ ଓ କହୁଥିଲେ ଯେ, ଶରୀର ଓ ମନର ଉଚ୍ଚତମ ଶକ୍ତିଗୁଡ଼ିକର ବିକାଶ ନିମିତ୍ତ ବ୍ରହ୍ମଚର୍ଯ୍ୟ ଜ୍ୱଳନ୍ତ ଅଗ୍ନିପରି ପ୍ରତି ଶିରାରେ ପ୍ରବାହିତ ହେବା ଆବଶ୍ୟକ । ନିର୍ଜନ ବାସ, ସଂଯମ ଓ ଚିତ୍ତୈକାଗ୍ରତା—ଏହି ତିନିଗୋଟି ଉପାଦାନର ସମବାୟରେ ଗଠିତ ଛାତ୍ରଜୀବନ ହିଁ ବ୍ରହ୍ମଚର୍ଯ୍ୟର ଆଦର୍ଶ । ସ୍ୱାମୀଜୀ ବାଳକ ଓ ଯୁବକମାନଙ୍କୁ ବ୍ରହ୍ମଚର୍ଯ୍ୟ ପାଳନ କରିବା ଲାଗି ଉତ୍ସାହିତ କରିବାକୁ ଯାଇ ଭାବାବେଗରେ ଦୃଢ଼ତାର ସହିତ କହୁଥିଲେ, ''ଯଦି ତୁମ୍ଭେମାନେ କାମକ୍ରୋଧାଦିର ଶତ ପ୍ରଲୋଭନରେ ମଧ୍ୟ ଅବିଚଳିତ ରହି ଚଉଦବର୍ଷ ପର୍ଯ୍ୟନ୍ତ ସତ୍ୟର ସେବା କରିପାର, ତେବେ ଏପରି ଏକ ଦିବ୍ୟ ତେଜରେ ତୁମ ହୃଦୟ ପୂର୍ଣ୍ଣ ହୋଇଯିବ ଯେ, ତୁମେ ଯାହାକୁ ଅସତ୍ୟ ବୋଲି ଜାଣ, ତାହା, ସାଧାରଣ ଲୋକେ ତୁମ ଆଗରେ ପ୍ରକାଶ କରିବାକୁ ସାହାସ କରିବେ ନାହିଁ । ଏହିରୂପେ ତୁମେ ସ୍ୱଦେଶ ଓ ସମାଜର ଉପକାର ସଙ୍ଗେ ସଙ୍ଗେ ନିଜର ମଧ୍ୟ ଉନ୍ନତି କରିବାକୁ ସମର୍ଥ ହେବ ।'' ଏପରି କି

କେବଳ ମାତ୍ର ଅବିବାହିତ ଜୀବନଯାପନ ତାଙ୍କଦ୍ୱାରା ଗୋଟିଏ ଆଧ୍ୟାତ୍ମିକ ସମ୍ପଦ ରୂପେ ପରିଗଣିତ ହେଉଥିଲା ।

ଧର୍ମ ପାଇଁ କିମ୍ବା ଅନ୍ୟ କୌଣସି ମହତ୍ ଆଦର୍ଶରେ ଅନୁପ୍ରାଣିତ ହୋଇ ଅବିବାହିତ ଜୀବନ ଯାପନ କରିବାକୁ ଅନେକ ଲୋକ ବିଜ୍ଞ ବ୍ୟକ୍ତିଙ୍କ ପରି ପ୍ରାକୃତିକ ନିୟମର ବ୍ୟଭିଚାର ବୋଲି ବର୍ଣ୍ଣନା କରନ୍ତି ଏବଂ ବିବାହ ଓ ସନ୍ତାନ-ଉତ୍ପାଦନ ହିଁ ଭଗବାନଙ୍କର ଏକମାତ୍ର ଅଭିପ୍ରେତ କାର୍ଯ୍ୟ—ଏହା ସାଧାରଣ ଜ୍ଞାନ ସାହାଯ୍ୟରେ ତର୍କ ଓ ଯୁକ୍ତିଦ୍ୱାରା ପ୍ରମାଣ କରିବାକୁ ଅଗ୍ରସର ହୁଅନ୍ତି । ବିବାହିତ ଜୀବନର ଉଚ୍ଚ ଆଦର୍ଶକୁ ଅବଶ୍ୟ ସ୍ୱାମୀଜୀ କେବେହେଲେ ଅଶ୍ରଦ୍ଧା କରୁ ନ ଥିଲେ । ସେ ଗାର୍ହସ୍ଥ୍ୟ ଓ ସନ୍ନ୍ୟାସ ଉଭୟ ଆଶ୍ରମକୁ ସମାନ ଦୃଷ୍ଟିରେ ଦେଖୁଥିଲେ । ଭଗବାନ ଶ୍ରୀରାମକୃଷ୍ଣ ବିବାହିତ ଜୀବନର ଗୋଟିଏ ମହାନ୍ ଆଦର୍ଶ ଦେଖାଇ ଯାଇଛନ୍ତି ସତ୍ୟ; କିନ୍ତୁ ତଥାପି ସେ ଜଣେ ସନ୍ନ୍ୟାସୀ ଥିଲେ । ସେ ଆଜନ୍ମ ସନ୍ନ୍ୟାସୀ ହୋଇ ମଧ୍ୟ ବିବାହ କରି ଗାର୍ହସ୍ଥ୍ୟ ଓ ସନ୍ନ୍ୟାସ ମଧ୍ୟରେ ଅପୂର୍ବ ସମନ୍ୱୟ ସାଧନ କରିଥିଲେ । ଆଦର୍ଶ ଗୃହୀ ଓ ଆଦର୍ଶ ସନ୍ନ୍ୟାସୀ—ମାନବ-ସମାଜରେ ଦୁହିଁଙ୍କର ପ୍ରୟୋଜନ ଅଛି । ଭଗବାନ ଶ୍ରୀରାମକୃଷ୍ଣଙ୍କ ଜୀବନରେ ଏହି ଉଭୟ ଆଦର୍ଶ ହିଁ ପୂର୍ଣ୍ଣମାତ୍ରାରେ ପ୍ରକଟିତ ହୋଇଥିଲା । ସ୍ଥୂଳଦୃଷ୍ଟି ମାନବ ପକ୍ଷରେ ତାଙ୍କୁ ଏକାଧାରରେ ଗୃହୀ ଓ ସନ୍ନ୍ୟାସୀରୂପେ ଦେଖିବା ଅସମ୍ଭବ ଓ ଦୁଃସାଧ୍ୟ ହେବ ବୋଲି ତାଙ୍କର ସର୍ବଶ୍ରେଷ୍ଠ ସୃଷ୍ଟି ସ୍ୱାମୀ ବିବେକାନନ୍ଦ ଓ ନାଗ ମହାଶୟ । ଜଣେ ଆଦର୍ଶ ସନ୍ନ୍ୟାସୀ—ଅପର ଜଣଙ୍କ ଆଦର୍ଶ ଗୃହୀ !

ବିବାହ କରି କ'ଣ ଧର୍ମସାଧନ ବା ଅନ୍ୟ କୌଣସି ମହତ୍ କାର୍ଯ୍ୟ କରାଯାଏ ନାହିଁ ? କରାଯିବ ନାହିଁ କାହିଁକି ? ମୋକ୍ଷ କେବଳମାତ୍ର ସନ୍ନ୍ୟାସୀର ଏକଚାଟିଆ ନୁହେଁ । ଜନକ ଋଷି ଗୃହୀ ହୋଇ ମଧ୍ୟ ବ୍ରହ୍ମଜ୍ଞାନ ଲାଭ କରିଥିଲେ, ଏହି ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦେଇ ଯେଉଁମାନେ ଜନକ ଋଷି ହେବାକୁ ଚେଷ୍ଟା କରନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ହିଁ କେତେଜଣ ହତଭାଗା ସନ୍ତାନଙ୍କ ଜନକ ମାତ୍ର—ଜନକ ଋଷି ନୁହଁନ୍ତି । ଗୃହରେ ରହି ଧର୍ମସାଧନ କରିବା, ଯୋଗ ଓ ଭୋଗ ଉଭୟକୁ ବଜାୟ ରଖି ମୋକ୍ଷଲାଭ କରିବା କ'ଣ ଖୁବ୍ ବାହାଦୁରୀ ନୁହେଁ; କିନ୍ତୁ ସଙ୍ଗେ ସଙ୍ଗେ ଅନେକେ ଭୁଲିଯାଆନ୍ତି ଯେ, ବାହାଦୁରୀ ନେବାଟା ଜୀବନର ଉଦ୍ଦେଶ୍ୟ ନୁହେଁ । ଆଉ ଏହା ମଧ୍ୟ ଠିକ୍, ସମସ୍ତେ ଯଦି ବାହାଦୁରୀ ଦେଖାଇବାରେ ବ୍ୟସ୍ତ ରହନ୍ତି, ତାହାହେଲେ ମାନବ-ଜୀବନର ଉଚ୍ଚତମ ବ୍ରତଗୁଡ଼ିକ ଲୁପ୍ତ ହୋଇଯିବ, ଏଥିରେ ସନ୍ଦେହ ନାହିଁ ।

"ଦେବ ଭୁତ୍ୱା ଦେବଂ ଯଜେତ୍"—ଏହି ବେଦବାକ୍ୟ ନିତ୍ୟ ସତ୍ୟ; ତେବେ ମଣିଷକୁ ଦେବତା ହେବା ନିମିତ୍ତ ଚେଷ୍ଟା କରିବାକୁ ହେବ । ଆଉ ଚେଷ୍ଟା ହିଁ ବ୍ରହ୍ମଚର୍ଯ୍ୟ ବା ଶ୍ରେଷ୍ଠତମ ତପସ୍ୟା—

''ନ ତପସ୍ତପଃ ଇତ୍ୟାହୁର୍ବ୍ରହ୍ମଚର୍ଯ୍ୟଂ ତପୋତ୍ତମମ୍ ।
ଊର୍ଦ୍ଧ୍ୱରେତା ଭବେଦ୍‌ୟସ୍ତୁ ସଃ ଦେବ ନ ତୁ ମାନୁଷଃ ॥''
ବ୍ରହ୍ମଚର୍ଯ୍ୟଠାରୁ ତପ ନାହିଁ ଅନ୍ୟ ଶ୍ରେଷ୍ଠତର ।
ଊର୍ଦ୍ଧ୍ୱରେତା ଯେହୁ ଜନ, ଦେବତା ସେ — ନୁହେଁ ନର ॥''

ଗାର୍ହସ୍ଥ୍ୟ ଓ ସନ୍ନ୍ୟାସ ଉଭୟ ଆଶ୍ରମର ଭିତ୍ତି ହେଉଛି, ବ୍ରହ୍ମଚର୍ଯ୍ୟାଶ୍ରମ; କିନ୍ତୁ ଆଜିକାଲି ଯେଉଁମାନେ ଆଦର୍ଶ ଗୃହୀ ହୁଅନ୍ତି ବା ହେବାପାଇଁ ଉପଦେଶ ଦିଅନ୍ତି, ସେମାନଙ୍କୁ ବ୍ରହ୍ମଚର୍ଯ୍ୟର ଉପଦେଶ ଦେବାର ବେଶୀ ଦେଖାଯାଏ ନାହିଁ । ଏକ ଦିଗରେ ଗୋଟିଏ ଅପ୍ରକାଶ୍ୟ ପାପର ପଙ୍କିଳ ସ୍ରୋତ ଫଲ୍‌ଗୁ-ପ୍ରବାହ ପରି ଗୋପନ ଭାବରେ ଦେଶ ଉପରେ ବୋହିଯାଉଛି, କେହି ଦେଖି ଦେଖୁ ନାହାନ୍ତି, ବୁଝି ବୁଝୁ ନାହାନ୍ତି । ଅନେକ ଆଦର୍ଶ-ନୀତିବାଦୀ ନାସିକା କୁଞ୍ଚିତ କରି କ୍ଷାନ୍ତ ହୁଅନ୍ତି । ଅନେକ ବିଦ୍ୟାଳୟର ସାମୟିକ ସଭାସମିତିରେ ବ୍ରହ୍ମଚର୍ଯ୍ୟ ବିଷୟରେ ବକ୍ତୃତା ଦେଇ କର୍ତ୍ତବ୍ୟ ଶେଷ କରନ୍ତି । ଆଜିକାଲି ବଜାରରେ ଏ ସମ୍ବନ୍ଧୀୟ ପୁସ୍ତକାଦିର ଅଭାବ ନାହିଁ; କିନ୍ତୁ ଏଥିରେ କୌଣସି ସ୍ଥାୟୀ ଫଳ ଫଳୁଛି ବୋଲି ବିଶ୍ୱାସ ହୁଏ ନାହିଁ । ଦରକାର ଆଦର୍ଶ ଜୀବନ ! ଜାତି ଓ ସମାଜକୁ ରକ୍ଷା କରିବା ଓ ଦେଶର ଭବିଷ୍ୟତ ବଂଶଧରମାନଙ୍କୁ ଅକାଳ ମୃତ୍ୟୁରୁ ରକ୍ଷା କରିବା ନିମିତ୍ତ କେତେଗୁଡ଼ିଏ ନିଃସ୍ୱାର୍ଥପର ଅବିବାହିତ ଜୀବନର ପ୍ରୟୋଜନ, ଯେଉଁମାନେ କି ବିଳାସିତା ଓ ନୀଚତାର ଉଦଣ୍ଡ କପଟତାଗୁଡ଼ିକୁ ପଦଦଳିତ କରି ପୌରୁଷ-କଠିନ ଜୀବନ ଯାପନ କରିବେ, ଦ୍ୱିପଦ ମନୁଷ୍ୟ-ଶାବକ ଚେଷ୍ଟା କରି ଚତୁଷ୍ପଦ ହେଉଥିବା ଦେଖିଲେ ବାଧା ଦେବେ, ଯେଉଁମାନେ ଆତ୍ମଜୀବନ ଗଢ଼ିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ମଧ୍ୟ ଚରିତ୍ରଗଠନ କରିବା ଲାଗି ଉତ୍ସାହ ପ୍ରଦାନ ଓ ସାହାଯ୍ୟ କରିବେ । ଆମେମାନେ ଭାରତ ବକ୍ଷରେ ମନୁଷ୍ୟ-ଗଠନକାରୀ ଏହି ନବଯୁଗର କର୍ମୀଗଣଙ୍କର ସୁମହତ୍ ପ୍ରୟାସ ପ୍ରତ୍ୟକ୍ଷ କରିବା ନିମନ୍ତେ ସାଗ୍ରହରେ ପ୍ରତୀକ୍ଷା କରୁଛୁ, ଏପର୍ଯ୍ୟନ୍ତ କ'ଣ ସମୟ ହୋଇନାହିଁ ?

ଅବିବାହିତ ଜୀବନ ଯାପନ କରିବାର ଆଶୁ ପ୍ରୟୋଜନୀୟତା ଉପଲବ୍‌ଧି କରି ସ୍ୱାମୀଜୀ ମର୍ମାନ୍ତକ ଦୁଃଖ ଓ ଅଭିମାନର ସହିତ ଲଣ୍ଡନରୁ ଲେଖିଥିଲେ, x x x ଲଣ୍ଡନରେ ଦିନକୁ ଦିନ କାର୍ଯ୍ୟ ବଢ଼ିବାରେ ଲାଗିଛି; ଯେତେ ଦିନ ଗଡ଼ିଯାଉଛି, କ୍ଲାସ୍‌ରେ ସେତେ ଅଧିକ ଲୋକମାନଙ୍କର ସମାଗମ ହେଉଛି । ଶ୍ରୋତୃସଂଖ୍ୟା ଯେ କ୍ରମଶଃ ବଢ଼ିବ ସେଥିରେ ମୋର କୌଣସି ସନ୍ଦେହ ନାହିଁ । ପୁଣି ଇଂରେଜ ଜାତି ବଡ଼ ଦୃଢ଼ପ୍ରକୃତି ଓ ନିଷ୍ଠାବାନ । ଅବଶ୍ୟ ମୁଁ ଚାଲିଗଲେ ଯେଉଁ କେତେକ ମୂଳଦୁଆ ପଡ଼ିଛି, ସେଥିରୁ ଅନେକାଂଶ ଭୁଷୁଡ଼ି ପଡ଼ିବ; କିନ୍ତୁ ତା'ପରେ ହୁଏତ କୌଣସି ଅସମ୍ଭବ ଘଟଣା ଘଟିବ, ହୁଏତ କୌଣସି ଦୃଢ଼ଚେତା ବ୍ୟକ୍ତି ଆସି ଏହି କାର୍ଯ୍ୟର ଭାର ଗ୍ରହଣ କରିବେ; ପ୍ରଭୁ ଜାଣନ୍ତି, କେଉଁଟା ଭଲ ହେବ । ଆମେରିକାରେ ବେଦାନ୍ତ ଓ ଯୋଗ ଶିକ୍ଷା ଦେବା ଲାଗି କୋଡ଼ିଏ ଜଣ ପ୍ରଚାରକ

ଦରକାର ହୋଇପାରନ୍ତି, କିନ୍ତୁ କେଉଁଠାରୁ ଅବା ପ୍ରଚାରକ ମିଳିବେ, ପୁଣି ସେମାନଙ୍କୁ ସେଠାକୁ ନେବା ଲାଗି ଟଙ୍କା ବା କେଉଁଠୁ ଆସିବ ? ଯଦି କେତେଜଣ ଦୃଢ଼ଚେତା ଖାଣ୍ଟି ଲୋକ ମିଳନ୍ତି, ତେବେ ଦଶବର୍ଷ ମଧ୍ୟରେ ଯୁକ୍ତରାଷ୍ଟ୍ରର ଅର୍ଦ୍ଧେକ ଜୟ କରାଯାଇପାରେ; କିନ୍ତୁ ଏପରି ଲୋକ କାହାଁନ୍ତି ?

"ଆମେ ସମସ୍ତେ ଯେ ହାମ୍‌ବଡ଼ା ଦଳ—ସ୍ୱାର୍ଥପର, କାପୁରୁଷ ! ମୁହଁରେ କେତେଗୁଡ଼ିଏ ସ୍ୱଦେଶ-ହିତୈଷିତାର ବାଜେ କଥା ଉଚ୍ଚାରଣ କରୁଛୁ, ଆଉ ଆମେ ମହାଧାର୍ମିକ, ଏହି ଅଭିମାନରେ ଫୁଲିଯାଉଛୁ । ମାନ୍ଦ୍ରାଜୀମାନେ ଅପେକ୍ଷାକୃତ ଦ୍ରୁତ ଓ ଦୃଢ଼ତା ସହକାରେ ଗୋଟିଏ ବିଷୟରେ ଲାଗି ପାରନ୍ତି; କିନ୍ତୁ ହତଭାଗାଗୁଡ଼ିକ ସମସ୍ତେ ବିବାହିତ ! ବିବାହ ! ବିବାହ !! ବିବାହ !!! ପାଷଣ୍ଡମାନେ ସତେ ଯେପରି ଏହି ଗୋଟିଏ ମାତ୍ର କର୍ମେନ୍ଦ୍ରିୟ ନେଇ ଜନ୍ମିଛନ୍ତି ! ଯୋନି କୀଟ—ଏ ଦିଗରେ ପୁଣି ନିଜକୁ ଧାର୍ମିକ ଓ ସନାତନପନ୍ଥାବଲମ୍ବୀ ବୋଲି ପରିଚୟ ଦେଉଛନ୍ତି । ଅନାସକ୍ତ ଗୃହସ୍ଥ ହେବା ଅତି ଭଲ କଥା; କିନ୍ତୁ ଏବେ ଏହାର ସେତେ ପ୍ରୟୋଜନ ନାହିଁ; ବର୍ତ୍ତମାନ ଅବିବାହିତ ଜୀବନ ଆବଶ୍ୟକ । ବିପଦ ଯାଉ ! ବେଶ୍ୟାଳୟକୁ ଗଲେ ଲୋକମନରେ ଇନ୍ଦ୍ରିୟାସକ୍ତିର ଯେତେ ବନ୍ଧନ ଜାତ ହୁଏ, ଆଜିକାଲିର ବିବାହ-ପ୍ରଥାରେ ପିଲାମାନଙ୍କର ଏହି ବିଷୟରେ ପ୍ରାୟ ସେତିକି ବନ୍ଧନ ଜାତ ହେଉଅଛି । ମୁଁ ବଡ଼ କଡ଼ା କଥା କହିଦେଲି—କିନ୍ତୁ ବସ, ମୁଁ ଚାହେଁ ଏପରି ଲୋକ, ଯାହାଙ୍କ ପେଶୀଗୁଡ଼ିକ ଲୁହାପରି ଟାଣ ଓ ସ୍ନାୟୁ ଇସ୍ପାତରେ ତିଆରି; ଆଉ ସେମାନଙ୍କ ଶରୀର ଭିତରେ ଏପରି ଗୋଟିଏ ମନ ଥିବ, ଯାହା ବଜ୍ରର ଉପାଦାନରେ ଗଠିତ । ବୀର୍ଯ୍ୟ, ମନୁଷ୍ୟତ୍ୱ—କ୍ଷାତ୍ରବୀର୍ଯ୍ୟ, ବ୍ରହ୍ମତେଜ ! ଆମମାନଙ୍କର ସୁନ୍ଦର ସୁନ୍ଦର ପିଲାଗୁଡ଼ିକ—ଯାହାଙ୍କ ଉପରେ ଆଶା କରାଯାଆନ୍ତା, ସେମାନଙ୍କର ସବୁପ୍ରକାର ଶକ୍ତି, ସବୁପ୍ରକାର ଗୁଣ ଅଛି—କେବଳ ଯଦି ଏହିପରି ଲକ୍ଷ ଲକ୍ଷ ପିଲାଙ୍କୁ ବିବାହ ନାମରେ କଥିତ ପଶୁତ୍ୱର ବେଦୀ ଉପରେ ହତ୍ୟା କରା ନ ଯାଆନ୍ତା ! ହେ ପ୍ରଭୋ, ମୋ କାତର କ୍ରନ୍ଦନ ପ୍ରତି କର୍ଣ୍ଣପାତ କର ! ମାନ୍ଦ୍ରାଜ ସେତେବେଳେ ଜାଗ୍ରତ ହେବ, ଯେତେବେଳେ ତା ହୃଦୟର ଶୋଣିତସ୍ୱରୂପ ଅନ୍ତତଃ ଶହେଜଣ ଯୁବକ ସଂସାରରୁ ଅଲଗା ହୋଇ ଅଣ୍ଟା ଭିଡ଼ିବେ ଏବଂ ଦେଶେ ଦେଶେ ସତ୍ୟ ପାଇଁ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେବେ । ଭାରତ ବାହାରେ ଗୋଟିଏ ଆଘାତ ଦେଇ ପାରିଲେ, ଭିତରେ ଅୟୁତ ଆଘାତ ଦେବାପରି ହେବ । ଯାହା ହେଉ, ପ୍ରଭୁ ଇଚ୍ଛା କଲେ ସବୁ ହୋଇପାରିବ ।"

## ଲଣ୍ଡନ-ଯାତ୍ରା—ସ୍ୱାମୀ ଅଭେଦାନନ୍ଦଙ୍କ ଆଗମନ ଓ ପ୍ରଚାରକାର୍ଯ୍ୟ

ସ୍ୱାମୀଜୀ ସତ୍ୱର ଲଣ୍ଡନ ଫେରିଯିବେ ଶୁଣି ଅଧ୍ୟାପକ ଆଉ କିଛିଦିନ ତାଙ୍କୁ ସେଠାରେ ରହିଯିବାକୁ ଅନୁରୋଧ କଲେ । ସ୍ୱାମୀଜୀ କହିଲେ ଯେ, ସେ ଶୀଘ୍ର ଭାରତକୁ ପ୍ରତ୍ୟାବର୍ତ୍ତନ କରିବେ; ସେହିହେତୁ ଯାତ୍ରା ଆଗରୁ ଇଂଲଣ୍ଡରେ

ପ୍ରଚାରକାର୍ଯ୍ୟ ନିମିତ୍ତ ତାଙ୍କୁ ଗୋଟିଏ ସୁବନ୍ଦୋବସ୍ତ କରିଯିବାକୁ ପଡ଼ିବ । ସ୍ୱାମୀଜୀଙ୍କ ଉଦ୍ଦେଶ୍ୟ ବୁଝିପାରି ଅଧ୍ୟାପକ ତାଙ୍କ ସଙ୍ଗରେ ଇଂଲଣ୍ଡ ଯିବାକୁ ପ୍ରସ୍ତୁତ ହେଲେ । ସେ ସ୍ୱାମୀଜୀଙ୍କ ସଙ୍ଗେ ବେଦାନ୍ତ ଆଲୋଚନା କରି ଏତେଦୂର ମୁଗ୍ଧ ହୋଇଥିଲେ ଯେ, କେବଳ ସ୍ୱାମୀଜୀଙ୍କ ସଙ୍ଗେ ଆଉ ଅଧିକ କିଛିଦିନ କଟାଇ ପାରିବେ ବୋଲି ସେ ତାଙ୍କ ସହିତ ଲଣ୍ଡନ ଗଲେ ।

ଜୁନ୍ ମାସର ଶେଷ ଭାଗରେ ସ୍ୱାମୀଜୀ ସାରଦାନନ୍ଦଜୀଙ୍କୁ ଆମେରିକା ପଠାଇଲେ। ଏଣେ ଭାରତରୁ ଅଭେଦାନନ୍ଦଜୀ ଆସି ଲଣ୍ଡନର କାର୍ଯ୍ୟରେ ସ୍ୱାମୀଜୀଙ୍କୁ ସାହାଯ୍ୟ କଲେ । ସ୍ୱାମୀଜୀ ଅନୁପସ୍ଥିତ ଥିବା ସମୟରେ ଅଭେଦାନନ୍ଦଜୀଙ୍କୁ ହିଁ ପ୍ରଚାର କାର୍ଯ୍ୟର ସମସ୍ତ ଦାୟିତ୍ୱ ଗ୍ରହଣ କରିବାକୁ ପଡ଼ିବ ବୋଲି ସ୍ୱାମୀଜୀ ତାଙ୍କୁ ଆବଶ୍ୟକମତେ ଶିକ୍ଷା ଓ ଉପଦେଶ ଦେଲେ ।

ଅକ୍ଟୋବର ଓ ନଭେମ୍ବର ମାସରେ ସ୍ୱାମୀଜୀ ଅଦ୍ୱୈତବାଦର ଶ୍ରେଷ୍ଠତମ ସିଦ୍ଧାନ୍ତଗୁଡ଼ିକୁ ବିଶ୍ଳେଷଣ କରି କେତେଗୋଟି ବକ୍ତୃତା ଦେଲେ । ଏହି ସୁକଠିନ କାର୍ଯ୍ୟରେ ସେ ଯେ ଆଶାତୀତ ରୂପେ କୃତକାର୍ଯ୍ୟ ହୋଇଥିଲେ, ତାହା 'ଜ୍ଞାନଯୋଗ' ପୁସ୍ତକଟି ମନ ଦେଇ ପଢ଼ିଲେ ବୁଝାଯାଏ । ତାଙ୍କ 'ଜ୍ଞାନଯୋଗ' ବକ୍ତୃତାଗୁଡ଼ିକ ପଢ଼ିଲେ ସ୍ୱତଃ ପ୍ରଶ୍ନ ହୁଏ, ଏହା କ'ଣ କେବଳ ପାଣ୍ଡିତ୍ୟ ନା ଆଉ କିଛି ? 'କର୍ମ-ଜୀବନରେ ବେଦାନ୍ତର ପ୍ରୟୋଗ' ଶୀର୍ଷକ ବକ୍ତୃତାଗୁଡ଼ିକରେ ସେ ଭବିଷ୍ୟତ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦେଶକୁ ଗୋଟିଏ ମହାନ୍ ଆଦର୍ଶର ଅନୁଗାମୀ ହେବାକୁ ଇଙ୍ଗିତ ଦେଇଛନ୍ତି । ରାଜନୈତିକ ଓ ସାମାଜିକ ଅବସ୍ଥାରେ ନାନା ପରିବର୍ତ୍ତନ ମଧ୍ୟ ଦେଇ ଇଉରୋପ ଯେଉଁ ଆଦର୍ଶରେ ପହଞ୍ଚିବାକୁ ଚେଷ୍ଟା କରୁଛି, ତାହାକୁ କାର୍ଯ୍ୟରେ ପରିଣତ କରିବାକୁ ହେଲେ ହିନ୍ଦୁମାନଙ୍କ ଅଦ୍ୱୈତବାଦ ଓ ବେଦାନ୍ତକୁ ଗ୍ରହଣ କରିବାକୁ ହେବ । ଅନ୍ଧଙ୍କ ପରି ଜଡ଼-ବିଜ୍ଞାନକୁ ଅନୁସରଣ କରି ବର୍ତ୍ତମାନ ଇଉରୋପ ଯେପରି ବିକ୍ଷୁବ୍ଧ ହୋଇ ଉଠିଛି, ତାହାର ସେହି ଜ୍ୱାଳାମୟ ବିଶ୍ୱଶୋଷୀ ତୃଷ୍ଣାକୁ ନିବାରଣ କରିପାରିବ ଏକମାତ୍ର ପ୍ରାଚ୍ୟର ପ୍ରାଚୀନତମ ସଭ୍ୟତା, ଧର୍ମ ଓ ଅପୂର୍ବ ଅଖଣ୍ଡ ଅଦ୍ୱୈତତତ୍ତ୍ୱ । ସେହିହେତୁ ସ୍ୱାମୀଜୀ ଇଉରୋପ ସମ୍ମୁଖରେ ଦଣ୍ଡାୟମାନ ହୋଇ ଉଚ୍ଚକଣ୍ଠରେ ଘୋଷଣା କରିଥିଲେ, ସେମାନେ ଆକାଙ୍‌କ୍ଷା ଓ ଅତୃପ୍ତିର ଜ୍ୱାଳାମୟ ଆଗ୍ନେୟଗିରି ଉପରେ ଯେଉଁ ଚକଚକିଆ, ବାହ୍ୟସମ୍ପଦଶାଳୀ ସଭ୍ୟତାର ସ୍ୱର୍ଣ୍ଣପୁରୀ ନିର୍ମାଣ କରିଛନ୍ତି, ତାହା ଯେ କୌଣସି ମୁହୂର୍ତ୍ତରେ ଲେଲିହାନ ଉଦ୍‌ଗୀରଣ ଉପରକୁ ନିକ୍ଷିପ୍ତ ହୋଇ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଇପାରେ । ପୁଣି ଭବିଷ୍ୟତ୍-ବାଣୀ କରିଥିଲେ, ଯଦି ତୁମ୍ଭେମାନେ ଏହି ଅଭିନବ ବାର୍ତ୍ତାକୁ ଅସ୍ୱୀକାର କର, ତାହା ହେଲେ ଆସନ୍ତା ପଚାଶବର୍ଷ ମଧ୍ୟରେ ତୁମ୍ଭମାନଙ୍କର ଧ୍ୱଂସ ଅବଶ୍ୟମ୍ଭାବୀ !

## ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ ସଂକଳ୍ପ ଓ ବିଦାୟ ଅଭିନନ୍ଦନ

ଅକ୍ଟୋବର ମାସ ମଧ୍ୟଭାଗରୁ ସ୍ୱାମୀଜୀ ଭାରତକୁ ଫେରିଯିବା ଅଭିପ୍ରାୟ ପ୍ରକାଶ କରିବାରେ ରହିଲେ । ଆମେରିକାରେ ସ୍ୱାମୀ ସାରଦାନନ୍ଦ ଓ ଇଂଲଣ୍ଡରେ ସ୍ୱାମୀ ଅଭେଦାନନ୍ଦ ବେଦାନ୍ତ କ୍ଳାସର ଛାତ୍ରମାନଙ୍କଦ୍ୱାରା ସାଦର ଗୃହୀତ ହୋଇଥିବା ଦେଖି ସ୍ୱାମୀଜୀ ପ୍ରଚାର-କାର୍ଯ୍ୟ ସମ୍ବନ୍ଧରେ ନିଶ୍ଚିନ୍ତ ରହିଲେ । ଶ୍ରୀମତୀ ଓଲିବୁଲ୍ ସ୍ୱାମୀଜୀଙ୍କ ଭାରତ ପ୍ରତ୍ୟାବର୍ତ୍ତନ ସମ୍ବାଦ ପାଇ ତାଙ୍କୁ ଜଣାଇଲେ ଯେ, ସେ ଭାରତରେ କାର୍ଯ୍ୟ ପାଇଁ ପ୍ରୟୋଜନୀୟ ଅର୍ଥ ଯୋଗାଇବାକୁ ରାଜି ଅଛନ୍ତି । ବିଶେଷତଃ ସ୍ୱାମୀଜୀ ରାମକୃଷ୍ଣ-ସନ୍ନ୍ୟାସୀ-ସଂଘ ପାଇଁ ଯେଉଁ ସ୍ଥାୟୀ ମଠ ସ୍ଥାପନ କରିବା ଲାଗି ସଙ୍କଳ୍ପ କରିଥିଲେ, ତାହା ସହିତ ତାଙ୍କର ସମ୍ପୂର୍ଣ୍ଣ ସହାନୁଭୂତି ଅଛି — ସ୍ୱାମୀଜୀ ଇଚ୍ଛା କଲେ ପ୍ରୟୋଜନୀୟ ଅର୍ଥ ତାଙ୍କ ନିକଟରୁ ଗ୍ରହଣ କରିପାରନ୍ତି । ସ୍ୱାମୀଜୀ ଶ୍ରୀମତୀ ବୁଲ୍‌ଙ୍କ ପତ୍ର ପାଇ ପରମାନନ୍ଦିତ ହେଲେ । ଆଡ଼ମ୍ବର ସହକାରେ କୌଣସି କାର୍ଯ୍ୟ ଆରମ୍ଭ କରିବା ତାଙ୍କ ଅଭିପ୍ରାୟ ନ ଥିଲା । ମାନ୍ଦ୍ରାଜ, କଲିକତା ଓ ହିମାଳୟରେ ତିନିଗୋଟି  କେନ୍ଦ୍ର ସ୍ଥାପନ କରି ଧୀର ଭାବରେ କାର୍ଯ୍ୟ ଆରମ୍ଭ କରିବାକୁ ସେ ଭଲ ମନେ କରୁଥିଲେ । ଶ୍ରୀମତୀ ବୁଲ୍‌ଙ୍କ ପତ୍ରର ଉତ୍ତର ଦେଇ ସେ ନିଜ ମତ ଜଣାଇ ଲେଖିଲେ ଯେ, ଭାରତକୁ ଯାଇ ସେ ତାଙ୍କୁ ବିଶେଷ ବିବରଣୀ ଜଣାଇବେ । ଆପାତତଃ କୌଣସି ପ୍ରକାର ଅର୍ଥ ସାହାଯ୍ୟ ଗ୍ରହଣ କରିବାକୁ ସେ ଇଚ୍ଛା କରୁ ନ ଥିଲେ ।

ଆଚାର୍ଯ୍ୟଦେବ ଡିସେମ୍ବର ମାସର ମଧ୍ୟଭାଗରେ ଭାରତକୁ ଫେରିଯିବେ ବୋଲି ଜାଣିପାରି ଇଂଲଣ୍ଡର ବନ୍ଧୁ ଓ ଶିଷ୍ୟମଣ୍ଡଳୀ ତାଙ୍କୁ ବିଦାୟ ଅଭିନନ୍ଦନ ଜଣାଇବା ଲାଗି ଡିସେମ୍ବର ତେର ତାରିଖ ରବିବାର ଦିନ 'Royal Society of Printers' ପିକାଡେଲୀସ୍ଥିତ ପ୍ରକାଣ୍ଡ ହଲ୍‌ରେ ଗୋଟିଏ ସଭା ଆହ୍ୱାନ କଲେ । ବିରାଟ ଜନତା ନୀରବ ଓ ବିଷାଦ-ଗମ୍ଭୀର ଭାବରେ ଆଚାର୍ଯ୍ୟଦେବଙ୍କୁ ବିଦାୟ ଅଭିନନ୍ଦନ ପ୍ରଦାନ କଲେ । ଅନେକେ ଭାବର ଆତିଶଯ୍ୟ ହେତୁ କଥା କହିପାରିଲେ ନାହିଁ;  ଶତ ଶତ ନୟନ ଅଶ୍ରୁପୂର୍ଣ୍ଣ ହୋଇଗଲା । ଏ' ଦୃଶ୍ୟ ଦେଖି ଆଚାର୍ଯ୍ୟଦେବଙ୍କ କୋମଳ ହୃଦୟ ବିଚଳିତ ହୋଇ ଉଠିଲା । ଆତ୍ମ-ବିସ୍ମୃତ ଋଷି, କରୁଣାକାତର ସନ୍ନ୍ୟାସୀ ସହସା କହି ପକାଇଲେ —

"ହୁଏତ ମୁଁ ଶ୍ରେୟଃ ମନେକରି ଏହି ଦେହ-ବନ୍ଧନ ଛିନ୍ନ କରିପାରେ, ଏହାକୁ ଜୀର୍ଣ୍ଣ ବସ୍ତ୍ର ସଦୃଶ ପରିତ୍ୟାଗ କରିପାରେ; କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ଜଗତର ପ୍ରତ୍ୟେକେ ଉଚ୍ଚତମ ସତ୍ୟ ଉପଲବ୍ଧି କରିପାରି ନାହାନ୍ତି, ସେତେଦିନ ମୁଁ ମାନବ-ଜାତିର କଲ୍ୟାଣ କାମନା କରି ଧର୍ମପ୍ରଚାରରୁ ବିରତ ହେବି ନାହିଁ ।"

ଏହାର କିଛିଦିନ ପରେ ଜଣେ ଲୋକ ତାଙ୍କୁ ପଚାରିଲା, ଅବତାର ଓ ମୁକ୍ତ ପୁରୁଷ ମଧ୍ୟରେ ପାର୍ଥକ୍ୟ କ'ଣ ? ସ୍ୱାମୀଜୀ ଏହାର କୌଣସି ପ୍ରତ୍ୟକ୍ଷ ଉତ୍ତର ନ

ଦେଇ କହିଲେ, ''ମୋର ମନେହୁଏ, 'ବିଦେହ ମୁକ୍ତି' ହିଁ ସର୍ବୋଚ୍ଚ ଅବସ୍ଥା । ମୋ ସାଧନାବସ୍ଥାରେ ମୁଁ ଭାରତ ଭ୍ରମଣ କରିଥିଲି; ସେତେବେଳେ ମୁଁ ଦିନ ପରେ ଦିନ ନିର୍ଜନ ଗିରିଗୁହାରେ ଧ୍ୟାନ କରି କଟାଇଛି, ବେଳେ ବେଳେ ମୁକ୍ତିଲାଭ ସମ୍ବନ୍ଧରେ ହତାଶ ହୋଇ ଅନାହାରରେ ତନୁତ୍ୟାଗ କରିବା ସଙ୍କଳ୍ପ କରିଛି; କିନ୍ତୁ ବର୍ତ୍ତମାନ ମୁକ୍ତିଲାଭ କରିବା ଲାଗି ମୋର ଲେଶମାତ୍ର କାମନା ନାହିଁ । ଯେତେଦିନ ଜଣେ ମାତ୍ର ବ୍ୟକ୍ତି ମାୟାରେ ଆବଦ୍ଧ ଥିବ, ସେ ପର୍ଯ୍ୟନ୍ତ ମୁଁ ମୁକ୍ତିପ୍ରାର୍ଥନା କରୁନାହିଁ ।''

## ସ୍ୱାମୀଜୀଙ୍କର ପ୍ରଚାର ସମ୍ବନ୍ଧରେ ଶ୍ରୀଯୁକ୍ତ ବିପିନଚନ୍ଦ୍ର ପାଲ୍‌ଙ୍କ ମତ

ପ୍ରସିଦ୍ଧ ବକ୍ତା ଓ ବଙ୍ଗଳାର ଅନ୍ୟତମ ନେତା ଶ୍ରୀଯୁକ୍ତ ବିପିନଚନ୍ଦ୍ର ପାଲ୍ ୧୮୯୬ ଖ୍ରୀଷ୍ଟାବ୍ଦ ଫେବୃଆରୀ ପନ୍ଦର ତାରିଖରେ ଲଣ୍ଡନରୁ ଲେଖିଥିଲେ —

''ଭାରତରେ କେତେ ଲୋକଙ୍କର ଧାରଣା ଯେ, ଇଂଲଣ୍ଡରେ ବିବେକାନନ୍ଦଙ୍କ ବକ୍ତୃତା ବିଶେଷ ଫଳଦାୟକ ହୋଇନାହିଁ, ତାଙ୍କ ବନ୍ଧୁ ଓ ସମର୍ଥକମାନେ ସାମାନ୍ୟ କାର୍ଯ୍ୟକୁ ଅତିରଞ୍ଜିତ କରି ପ୍ରକାଶ କରିଛନ୍ତି; କିନ୍ତୁ ମୁଁ ଏଠାକୁ ଆସି ତାଙ୍କ ଅସାଧାରଣ ପ୍ରଭାବ ସର୍ବତ୍ର ଦେଖୁଛି । ଇଂଲଣ୍ଡରେ ନାନାସ୍ଥାନରେ ମୁଁ ବହୁ ବ୍ୟକ୍ତିଙ୍କ ସହିତ ଆଳାପ କରିଛି, ଯେଉଁମାନେ ପ୍ରକୃତପକ୍ଷରେ ବିବେକାନନ୍ଦଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ଭକ୍ତି ପୋଷଣ କରନ୍ତି । ଯଦିଓ ମୁଁ ତାଙ୍କ ସମାଜଭୁକ୍ତ ନୁହେଁ ଏବଂ ଏହା ମଧ୍ୟ ସତ୍ୟ ଯେ, ତାଙ୍କ ସହିତ ମୋର ମତଭେଦ ଅଛି, ତଥାପି ମୁଁ କହିବାକୁ ବାଧ୍ୟ ଯେ, ସେ ସତରେ ବହୁଲୋକଙ୍କ ଆଖି ଖୋଲିଦେଇ ପାରିଛନ୍ତି ଏବଂ ସେମାନଙ୍କ ହୃଦୟକୁ ଉଦାର ଓ ପ୍ରଶସ୍ତ କରିଦେଇଛନ୍ତି । ତାଙ୍କ ପ୍ରଚାର ଫଳରେ ଆଜିକାଲି ଅଧିକାଂଶ ବ୍ୟକ୍ତି ବିଶ୍ୱାସ କରୁଛନ୍ତି ଯେ ପ୍ରାଚୀନ ହିନ୍ଦୁଶାସ୍ତ୍ରଗୁଡ଼ିକରେ ବହୁ ଆଧ୍ୟାତ୍ମିକ ସତ୍ୟ ଲୁକ୍କାୟିତ ଅଛି । ସେ ସ୍ଥାନୀୟ ଜନସାଧାରଣଙ୍କ ମନରେ କେବଳ ମାତ୍ର ଏହିସବୁ ଭାବ ଦେଇ ନାହାନ୍ତି, ପରନ୍ତୁ ସେ ଭାରତ ଓ ଇଂଲଣ୍ଡକୁ ଗୋଟିଏ ସୁବର୍ଣ୍ଣମୟ ଯୋଗସୂତ୍ରରେ ଦୃଢ଼ରୂପେ ବନ୍ଧନ କରିବାରେ କୃତକାର୍ଯ୍ୟ ହୋଇଛନ୍ତି । ଇତିପୂର୍ବେ ମୁଁ ଶ୍ରୀଯୁକ୍ତ ହାଉଇସ୍‌ଙ୍କ ଲିଖିତ ''The Dead Pulpit' (ମୃତ-ପ୍ରଚାରବେଦୀ) ନାମକ ପ୍ରବନ୍ଧରୁ 'ବିବେକାନନ୍ଦବାଦ' ସମ୍ବନ୍ଧରେ ଯେଉଁ ଅଂଶଟି ଉଦ୍ଧାର କରିଛି, ସେଥିରୁ ଆପଣ ଅବଗତ ହୋଇଛନ୍ତି ଯେ, ବିବେକାନନ୍ଦ-ପ୍ରଚାରିତ ମତବାଦର ପ୍ରସାରତା ହେତୁ ବହୁଶତ ବ୍ୟକ୍ତି ପ୍ରକାଶ୍ୟ ଭାବରେ ଖ୍ରିଷ୍ଟାନ୍ ଧର୍ମର ବନ୍ଧନ ଛିନ୍ନ କରିଛନ୍ତି । x x x ଏତଦ୍‌ବ୍ୟତୀତ ମୁଁ ଅନେକ ଶିକ୍ଷିତ ଇଂରେଜ ଭଦ୍ରଲୋକଙ୍କୁ ଦେଖିଛି, ଯେଉଁମାନେ ଭାରତକୁ ଶ୍ରଦ୍ଧା କରି ଶିଖିଛନ୍ତି ଏବଂ ଭାରତର ଧର୍ମମତ ଓ ଆଧ୍ୟାତ୍ମିକ ତତ୍ତ୍ୱସମୂହ ଶ୍ରବଣ କରିବା ନିମିତ୍ତ ସର୍ବଦା ଆଗ୍ରହ ପ୍ରକାଶ କରିଛନ୍ତି ।''

## ପ୍ରଚାରରେ ସଫଳତାର କାରଣ

ଆଚାର୍ଯ୍ୟଦେବଙ୍କ ସର୍ବବାଦୀସମ୍ମତ ପ୍ରଚାରକାର୍ଯ୍ୟର ସଫଳତାର କାରଣ ଅନୁସନ୍ଧାନ କଲେ ଦେଖାଯାଏ, ସେ କେବଳ ମାତ୍ର ଚିତ୍ତୋନ୍ମାଦିନୀ ବକ୍ତୃତାଶକ୍ତି

ବା ସର୍ବୋତମୁଖୀ ପ୍ରତିଭା ବଳରେ ହଜାର ହଜାର ନରନାରୀଙ୍କ ହୃଦୟ ଜୟ କରିବାକୁ ସମର୍ଥ ହୋଇ ନ ଥିଲେ । ଭଗିନୀ ନିବେଦିତା ଲେଖିଛନ୍ତି, ''ଜଗଦାରାଧ୍ୟ ଆଚାର୍ଯ୍ୟଦେବ ତାଙ୍କ ଅନ୍ତରଙ୍ଗ ଭକ୍ତଗଣଙ୍କ ହୃଦୟରେ ଯେଉଁ ଅମୂଲ୍ୟ ସ୍ମୃତିସମ୍ଭାର ରଖି ଯାଇଛନ୍ତି, ତନ୍ମଧ୍ୟରେ ତାଙ୍କର ମନୁଷ୍ୟଜାତି ପ୍ରତି ପ୍ରେମ ହିଁ ଯେ ଉଜ୍ଜ୍ୱଳତମ ରତ୍ନ, ତାହା ଆମ୍ଭେମାନେ ନିଃସଙ୍କୋଚରେ କହିପାରୁ ।'' କି ଗଭୀର ଅନୁକମ୍ପା ଉଚ୍ଛଳ ପ୍ରେମପୂର୍ଣ୍ଣ ସେ ହୃଦୟ—ଯାହା ସର୍ବଦା ସକଳ ଅବସ୍ଥାରେ ପ୍ରତ୍ୟେକ ବ୍ୟକ୍ତିକୁ ଆଶାର ବାଣୀ ଶୁଣାଇବା ନିମିତ୍ତ ଉଦାର ଆଗ୍ରହରେ ଉନ୍ମୁଖ ହୋଇ ରହିଥାଏ, ତତ୍‌ପୀଡ଼ିତ ଓ ଅପମାନିତ ହେଲେ ମଧ୍ୟ ତାଙ୍କ ଜିହ୍ୱା ଆଶୀର୍ବାଦ ବ୍ୟତୀତ ଅଭିଶାପ ଉଚ୍ଚାରଣ କରେ ନାହିଁ । ସେ କେତେବେଳେ ହେଲେ ଆପାମର ସାଧାରଣ ଲୋକଙ୍କ ପକ୍ଷ ସମର୍ଥନ କାର୍ଯ୍ୟରୁ ବିରତ ହୁଅନ୍ତି ନାହିଁ । ଦୁର୍ବଳ ପତିତ ଜାତିସମୂହର ଗୁଣ ସେ ଶତମୁଖରେ ବର୍ଣ୍ଣନା କରୁଥିଲେ, ଦୋଷ ଉଦ୍‌ଘାଟନ କରି ସେମାନଙ୍କୁ ଆହୁରି ବେଶୀ ଦୁର୍ବଳ କରୁ ନ ଥିଲେ । ଯାହାଙ୍କ ପକ୍ଷ ସମର୍ଥନ କରିବା ଲାଗି କେହି ନାହାନ୍ତି, ସ୍ୱାମୀଜୀ ଆଗଭର ହୋଇ ସେମାନଙ୍କ ସପକ୍ଷରେ ଯେତିକି କହିବାର ଥାଏ, ତାହା କହି ଦେଉଥିଲେ । ନାଟ୍ୟସମ୍ରାଟ୍ ଗିରୀଶଚନ୍ଦ୍ର ଘୋଷ ସତ୍ୟ ଲେଖିଛନ୍ତି, ''ତୁମର ସ୍ୱାମୀଜୀଙ୍କୁ ଅଦ୍ଭୁତ ପ୍ରତିଭାଶାଳୀ ବେଦାନ୍ତ-ପଣ୍ଡିତ ବୋଲି ଭଲପାଏ ନାହିଁ; କରୁଣାରେ ସତତ ଦ୍ରବୀଭୂତ ହୃଦୟ ପାଇଁ ତାଙ୍କୁ ମୁଁ ସ୍ନେହ କରେ ।''

## ପତିତା ନାରୀମାନଙ୍କ ପ୍ରତି କରୁଣା

୧୮୯୬ ଖ୍ରୀଷ୍ଟାବ୍ଦ ଜୁଲାଇ ଛଅ ତାରିଖ ଦିନ ଲଣ୍ଡନଠାରୁ ସ୍ୱାମୀଜୀ ଜଣେ ଶିଷ୍ୟଙ୍କ ନିକଟକୁ ଲେଖିଥିଲେ, ''ତୁମେ ସୁଖୀ ହେବ ଯେ, ସହାନୁଭୂତି ଓ ଧୈର୍ଯ୍ୟ ସହକାରେ ମୁଁ ପ୍ରତ୍ୟହ ନୂଆ ନୂଆ ଶିକ୍ଷା ଲାଭ କରୁଛି । ମୋର ମନେହୁଏ, ଉଦ୍ଧତପ୍ରକୃତି 'ଆଙ୍ଗ୍ଲୋ-ଇଣ୍ଡିଆନ' ମାନଙ୍କ ମଧ୍ୟରେ ବି ମୁଁ ଦେବତ୍ୱର ସନ୍ଧାନ ପାଇବାକୁ ଆରମ୍ଭ କରିଛି । ବୋଧ ହେଉଛି ଯେ, ମୁଁ କ୍ରମଶଃ ଏପରି ଗୋଟିଏ ଅବସ୍ଥାରେ ପହଞ୍ଚିବାକୁ ଯାଉଛି, ଯେଉଁଠାରେ 'ସଇତାନ' ବୋଲି ଯଦି କିଏ ଥାଏ, ତାକୁ ମଧ୍ୟ ଭଲପାଇ ପାରିବି ।''

''କୋଡ଼ିଏ ବର୍ଷ ବୟସରେ ମୁଁ ଏତେ ଏକଜିଦିଆ ଓ ମତାନ୍ଧ ଥିଲି ଯେ, କାହା ସହିତ ସହାନୁଭୂତି ପ୍ରକାଶ କରିପାରୁ ନ ଥିଲି । କଲିକତାର ଯେଉଁ ରାସ୍ତାଗୁଡ଼ିକରେ ଥିଏଟର ଥିଲା, ଉକ୍ତ ଥିଏଟରଗୁଡ଼ିକ ସମ୍ମୁଖରେ ଥିବା ପାଦଚଲା ରାସ୍ତା ଉପରେ ଚାଲୁ ନ ଥିଲି; ଏବେ ତେତିଶ ବର୍ଷ ବୟସରେ ମୁଁ ବେଶ୍ୟାମାନଙ୍କ ସହିତ ଗୋଟିଏ ଘରେ ରହିପାରେ, ତଥାପି ଗୋଟିଏ ମୁହୂର୍ତ୍ତ ପାଇଁ ମଧ୍ୟ ସେମାନଙ୍କୁ ଭର୍ତ୍ସନା କରିବା କଥା ମନରେ ଉଦୟ ହେବ ନାହିଁ । ମୁଁ କ'ଣ ଦିନକୁ ଦିନ ଖରାପ ହୋଇ ଯାଉଛି ? ଅଥବା ମୁଁ କ୍ରମେ କ୍ରମେ ବିଶ୍ୱପ୍ରେମ ଆଡ଼କୁ ଅଗ୍ରସର ହେଉଛି—ଯାହା

ନିଜେ ପ୍ରଭୁ ? ମୁଁ ଶୁଣିଥିଲି, ଯିଏ ନିଜର ଚାରିଆଡ଼େ ମନ୍ଦ ଦେଖିବାକୁ ପାଏ ନାହିଁ, ସେ କେବେହେଲେ ଭଲ କାମ କରିପାରିବ ନାହିଁ ! କାହିଁ, ମୁଁ ତ ତାହା ବୁଝୁ ନାହିଁ, ବରଂ ମୁଁ ଦେଖୁଛି, ମୋର କାର୍ଯ୍ୟ କରିବା ଶକ୍ତି ଦିନକୁ ଦିନ ବଢ଼ିଯାଉଛି । ଦିନେ ଦିନେ ମୋର ଭାବସମାଧି ଉପସ୍ଥିତ ହୁଏ । ସେତେବେଳେ ମୋର ମନେହୁଏ, ସବୁ ଜିନିଷକୁ ଆଶୀର୍ବାଦ କରିବି, ଭଲ ପାଇବି, ଆଲିଙ୍ଗନ କରିବି । ମୁଁ ପ୍ରକୃତରେ ଦେଖୁଛି, ଆମେ ଯାହାକୁ ମନ୍ଦ ବୋଲି ଭାବିଛୁ ତାହା ଭ୍ରାନ୍ତି ମାତ୍ର ।''

ଅଜ୍ଞ, ଉତ୍‌ପୀଡ଼ିତ, ଦରିଦ୍ର ଓ ପତିତଙ୍କ କଥା ଛାଡ଼ି—ସମାଜରେ ଚିରଘୃଣିତା ବେଶ୍ୟାଙ୍କୁ ପର୍ଯ୍ୟନ୍ତ ସେ କରୁଣାର ସହିତ ଆହ୍ୱାନ କରୁଥିଲେ । ଦିନେ ଆମେରିକାରେ ଗୋଟିଏ ପ୍ରଶ୍ନୋତ୍ତର ସଭାରେ ଜଣେ ସହସା ପ୍ରଶ୍ନ କରିଥିଲେ, ''ସ୍ୱାମୀଜୀ ! ଅପବିତ୍ରତାର ଘନୀଭୂତ-ପ୍ରତିମାସ୍ୱରୂପ ବେଶ୍ୟାମାନଙ୍କଦ୍ୱାରା ସମାଜର ଅମଙ୍ଗଳ ବ୍ୟତୀତ ଆଉ କିଛି ସାଧିତ ହୁଏ କି ?'' ସ୍ୱାମୀଜୀ ତତ୍‌କ୍ଷଣାତ୍ ତାଙ୍କୁ ଚାହିଁ କରୁଣାର୍ଦ୍ର କଣ୍ଠରେ କହିଲେ, ''ରାସ୍ତା ଉପରେ ସେମାନଙ୍କୁ ଦେଖି ଘୃଣାରେ ନାସିକା କୁଞ୍ଚିତ କର ନାହିଁ । ସେମାନେ ବର୍ମପରି ରହି ଶତଶତ ସତୀଙ୍କୁ ଲମ୍ପଟର ଅନ୍ୟାୟ ଅତ୍ୟାଚାରରୁ ରକ୍ଷା କରୁଛନ୍ତି ବୋଲି ଧନ୍ୟବାଦ ଦିଅ । ସେମାନଙ୍କୁ ଘୃଣା କର ନାହିଁ ।'' ଏ ପ୍ରସଙ୍ଗରେ ଆଉ ଗୋଟିଏ କଥା ମନେପଡ଼େ । ଯେତେବେଳେ ଆଚାର୍ଯ୍ୟ ମ୍ୟାକ୍‌ସମୁଲର୍ ରାମକୃଷ୍ଣ-ଜୀବନୀ ପ୍ରକାଶ କଲେ, ସେତେବେଳେ ରେଭ୍‌ରେଣ୍ଡ ମଜୁମଦାର ବିବିଧ ଆପତ୍ତି ପ୍ରକାଶ କରି ଯେଉଁ ପତ୍ର ଲେଖିଥିଲେ, ସେଥିରେ ଏହା ମଧ୍ୟ ଲେଖାଥିଲା, ''ଶ୍ରୀରାମକୃଷ୍ଣଙ୍କ ନୈତିକ ଚରିତ୍ର ସେପରି ଉନ୍ନତ ନ ଥିଲା; କାରଣ ସେ ବେଶ୍ୟାମାନଙ୍କୁ ଘୃଣା କରୁ ନ ଥିଲେ ।'' ବିଧାନାଚାର୍ଯ୍ୟଙ୍କର ଏହି ଉତ୍କଟ ନୀତିତତ୍ତ୍ୱର ମର୍ମ ଅବଶ୍ୟ ମ୍ୟାକ୍‌ସମୁଲର୍ ଉପଲବ୍‌ଧି କରି ନ ପାରି ନରମ ଗରମ ଦୁଇପଦ ଉତ୍ତରରେ ଲେଖି ଦେଇଥିଲେ ।

ଏହିପରି କେତେଜଣ ଆଦର୍ଶ ନୀତିବାଦୀଙ୍କ ପକ୍ଷରୁ ଜଣେ ଭଦ୍ରଲୋକ ସ୍ୱାମୀଜୀଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖିଥିଲେ । ତାହାର ଉତ୍ତରରେ ସ୍ୱାମୀଜୀ ଜନୈକ ଗୁରୁଭ୍ରାତାଙ୍କୁ ଲେଖିଥିଲେ, ''ଅଦ୍ୟ ରା-ବାବୁଙ୍କର ଖଣ୍ଡିଏ ପତ୍ର ପାଇଲି । ସେଥିରେ ସେ ଲେଖିଛନ୍ତି ଯେ, ଦକ୍ଷିଣେଶ୍ୱର ମହୋତ୍ସବକୁ ଅନେକ ବେଶ୍ୟା ଯାଉଛନ୍ତି, ତେଣୁ ଅନେକ ଭଦ୍ରଲୋକଙ୍କର ସେଠାକୁ ଯିବା ଆସିବା କମିଯାଉଛି । x x x ସେ ବିଷୟରେ ମୋର ବିଚାର ହେଉଛି—

''୧ । ବେଶ୍ୟାମାନେ ଯଦି ଦକ୍ଷିଣେଶ୍ୱରର ମହାତୀର୍ଥକୁ ନ ଯାଇ ପାରିବେ, ତେବେ ଯିବେ କୁଆଡ଼େ ? ପାପୀମାନଙ୍କ ଯୋଗୁଁ ପ୍ରଭୁଙ୍କର ଯେତେ ବେଶୀ ପ୍ରକାଶ ପୁଣ୍ୟବାନ୍ ଲୋକଙ୍କ ପାଇଁ ସେତେ ନୁହେଁ !''

x x x

''୪ । ଯେଉଁମାନେ ମନ୍ଦିରକୁ ଯାଇ ମଧ୍ୟ ଏ ବେଶ୍ୟା, ଏ ନୀଚଜାତି, ଏ ଗରିବ, ଛୋଟଲୋକ ବୋଲି ଭାବନ୍ତି, ସେମାନଙ୍କର (ଯାହାଙ୍କୁ ତୁମେ ଭଦ୍ରଲୋକ

କହ) ସଂଖ୍ୟା ଯେତେ କମ୍ ହୁଏ, ସେତେ ମଙ୍ଗଳ । ଯେଉଁମାନେ ଭକ୍ତର ଜାତି ବା ଯୋନି ବା ବ୍ୟବସାୟ ଦେଖନ୍ତି, ସେମାନେ ଆମ ଠାକୁରଙ୍କୁ କ'ଣ ବୁଝିବେ ? ପ୍ରଭୁଙ୍କ ପାଖରେ ପ୍ରାର୍ଥନା କରୁଛି, ଶତଶତ ବେଶ୍ୟା ଆସନ୍ତୁ, ତାଙ୍କ ପଦତଳେ ମଥା ନୁଆନ୍ତୁ, ଜଣେ ଭଦ୍ରଲୋକ ନ ଆସିଲେ ନ ଆସନ୍ତୁ । ବେଶ୍ୟା ଆସୁ, ମାତାଲ ଆସୁ, ଚୋର ଡକାୟତ ଆସୁ—ସେମାନଙ୍କ ପାଇଁ ଦ୍ୱାର ଅବାରିତ !''

## ସ୍ୱଦେଶଯାତ୍ରା

ଡିସେମ୍ବର ଷୋଳ ତାରିଖ ଦିନ ସ୍ୱାମୀଜୀ ଶିଷ୍ୟ ଓ ଶିଷ୍ୟାମାନଙ୍କଠାରୁ ବିଦାୟ ଗ୍ରହଣ କରି ସେଭିୟର ଦମ୍ପତି ସହ ଲଣ୍ଡନ ପରିତ୍ୟାଗ କଲେ । ଶ୍ରୀଯୁକ୍ତ ଗୁଡ୍‌ଉଇନ୍, ନେପ୍‌ଲ୍‌ସଠାରେ ସ୍ୱାମୀଜୀଙ୍କ ସଙ୍ଗେ ମିଳିତ ହେବେ ବୋଲି ସାଉଦାମ୍ପଟନ୍‌ଠାରୁ ଇଟାଲୀ ଅଭିମୁଖେ ଯାତ୍ରା କଲେ । ବିଶ୍ୱବିଜୟୀ ଆଚାର୍ଯ୍ୟଦେବଙ୍କ କର୍ମମୟ ଜୀବନର ଆଉ ଗୋଟିଏ ଗୌରବମୟ ଅଙ୍କର ଅଭିନୟ ସମାପ୍ତ ହେଲା । ସେ ଭାରତକୁ ଫେରିବା ନିମିତ୍ତ ବାଳକ ପରି ଅଧୀର ହୋଇ ପଡ଼ିଲେ । ଲଣ୍ଡନ ପରିତ୍ୟାଗ କରିବାର ଅବ୍ୟବହିତ ପୂର୍ବରୁ ଜଣେ ଇଂରେଜ ବନ୍ଧୁ ତାଙ୍କୁ ପଚାରିଥିଲେ, ''ସ୍ୱାମୀଜୀ ! ଚାରିବର୍ଷ କାଳ ବିଳାସର ଲୀଳାଭୂମି, ଗୌରବ-ମୁକୁଟଧାରୀ ମହାଶକ୍ତିଶାଳୀ ପାଶ୍ଚାତ୍ୟ ଭୂମିରେ ଭ୍ରମଣ ପରେ ଆପଣଙ୍କ ମାତୃଭୂମି କିପରି ଲାଗିବ ?'' ସ୍ୱଦେଶପ୍ରେମିକ ସନ୍ନ୍ୟାସୀ ତତ୍‌କ୍ଷଣାତ୍ ଉତ୍ତର ଦେଇଥିଲେ, ''ପାଶ୍ଚାତ୍ୟ ଭୂମିକୁ ଆସିବା ଆଗରୁ ମୁଁ ଭାରତକୁ ଭଲ ପାଉଥିଲି; ଏବେ ଭାରତର ଧୂଳିକଣା ପର୍ଯ୍ୟନ୍ତ ମୋ ପାଖରେ ପବିତ୍ର, ଭାରତର ବାୟୁ ମୋ ନିକଟରେ ପବିତ୍ରତାପୂର୍ଣ୍ଣ—ଭାରତ ବର୍ତ୍ତମାନ ମୋ ନିକଟରେ ତୀର୍ଥସ୍ୱରୂପ ।''

## ଷଷ୍ଠ ଅଧ୍ୟାୟ

# ଯୁଗପ୍ରବର୍ତ୍ତକ ବିବେକାନନ୍ଦ

## (୧୮୯୭-୧୮୯୯)

### 'ଏବେ କେନ୍ଦ୍ର ଭାରତବର୍ଷ' —ବିବେକାନନ୍ଦ ପ୍ରତ୍ୟାବର୍ତ୍ତନ ପଥରେ

ଫ୍ରାନ୍‌ସ ମଧ୍ୟଦେଇ ଆଲ୍‌ପସ୍ ପର୍ବତମାଳା ଅତିକ୍ରମ କରି ପଥମଧ୍ୟରେ ମିଲାନ ଓ ପିଶା ନଗରୀ ପରିଦର୍ଶନ କରିବା ପରେ ସ୍ୱାମୀଜୀ ଓ ସେଭିୟର-ଦମ୍ପତି ଫ୍ଲରେନ୍‌ସ ନଗରୀରେ ଉପସ୍ଥିତ ହେଲେ, ଏହା ଇଟାଲୀୟ ଚାରୁକଳା ବିଦ୍ୟାର କେନ୍ଦ୍ରସ୍ଥାନ । ଫ୍ଲରେନ୍‌ସ ନଗରୀର ଚିତ୍ରଶାଳା ଓ ଐତିହାସିକ ଦ୍ରଷ୍ଟବ୍ୟ ସ୍ଥାନଗୁଡ଼ିକ ପରିଦର୍ଶନ କରି ସ୍ୱାମୀଜୀ ପାର୍କରେ ଭ୍ରମଣ କରୁଛନ୍ତି, ଏହି ସମୟରେ ଦୈବକ୍ରମେ ଚିକାଗୋର ଶ୍ରୀଯୁକ୍ତ ଓ ଶ୍ରୀମତୀ ହେଲ୍‌ଙ୍କ ସହିତ ତାଙ୍କର ସାକ୍ଷାତ୍ ହେଲା । ସେମାନେ ଅପ୍ରତ୍ୟାଶିତ ଭାବରେ ସ୍ୱାମୀଜୀଙ୍କର ଦର୍ଶନ ପାଇ ବିଶେଷ ଆହ୍ଲାଦିତ ହେଲେ । ସ୍ମରଣ ଥାଇପାରେ, ଚିକାଗୋ ମହାମେଳାର ଅବ୍ୟବହିତ ପୂର୍ବେ ଶ୍ରୀମତୀ ହେଲ୍ ହିଁ ତାଙ୍କୁ ଆଶ୍ରୟ ପ୍ରଦାନ ଓ ନାନାପ୍ରକାର ସାହାଯ୍ୟ କରିଥିଲେ । ଏମାନେ ସ୍ୱାମୀଜୀଙ୍କୁ ପୁତ୍ରବତ୍ ସ୍ନେହ କରୁଥିଲେ । ସ୍ୱାମୀଜୀ ପ୍ରଚାରକାର୍ଯ୍ୟ ଉପଲକ୍ଷରେ ଯେତେଥର ଚିକାଗୋ ଯାଇଛନ୍ତି, ଏମାନେ କୌଣସି ଥର ତାଙ୍କୁ ହୋଟେଲରେ ଅବସ୍ଥାନ କରିବାକୁ ଦେଇ ନାହାନ୍ତି ।

ଫ୍ଲରେନ୍‌ସରୁ ସେମାନେ ଇତିହାସ-ବିଶ୍ରୁତ ପ୍ରାଚୀନ ରୋମକ ଜାତିର କୀର୍ତ୍ତିକଳାପର ଗୌରବମୟ ଶ୍ମଶାନଭୂମି ମହାନଗରୀ ରୋମ୍‌ରେ ପ୍ରବେଶ କଲେ । ଶ୍ରୀମତୀ ସେଭିୟର ଆଗରୁ ସ୍ୱାମୀଜୀଙ୍କ ଆମେରିକାନ୍ ଶିଷ୍ୟା କୁମାରୀ ମ୍ୟାକ୍‌ଲାଉଡଙ୍କ ନିକଟରୁ ରୋମ୍‌ନଗରୀର ଇଂରେଜ ସମାଜରେ ସୁପରିଚିତା କୁମାରୀ ଏଡ୍‌ୱାର୍ଡ଼ସଙ୍କ ଠିକଣା ସଂଗ୍ରହ କରିଥିଲେ; କୁମାରୀ ମ୍ୟାକ୍‌ଲାଉଡଙ୍କ ଝିଆରୀ ଏଲବାର୍ଟା ଷ୍ଟରଗିସ୍ ମଧ୍ୟ ତାଙ୍କ ସହିତ ରୋମ୍‌ରେ ବାସ କରୁଥିଲେ । ଏହି ରମଣୀଦ୍ୱୟ ସ୍ୱଳ୍ପକାଳ ମଧ୍ୟରେ ସ୍ୱାମୀଜୀଙ୍କ ଭକ୍ତ ହୋଇଗଲେ ଏବଂ ଯେଉଁ ଗୋଟିଏ ସପ୍ତାହ ସେ ରୋମ୍‌ରେ ଥିଲେ, ଏମାନେ ପ୍ରତ୍ୟହ ତାଙ୍କୁ ସାଙ୍ଗରେ ନେଇ ଇତିହାସ ପ୍ରସିଦ୍ଧ ସ୍ଥାନଗୁଡ଼ିକୁ ଦର୍ଶନ କରିବାକୁ ଯାଉଥିଲେ । ରୋମ୍‌ରୁ ସ୍ୱାମୀଜୀ ନେପ୍‌ଲ୍‌ସ ଆସିଲେ । ଜାହାଜ ବନ୍ଦରକୁ ଆସିବାରେ ବିଳମ୍ବ ଥିବା ଦେଖି ସେମାନେ ଇତ୍ୟବସରରେ ଭିସୁବିୟସ୍ ଆଗ୍ନେୟଗିରି ଓ ପମ୍ପାଇ ନଗରୀ ଦର୍ଶନ କରିନେଲେ । ଇତିମଧ୍ୟରେ ସାଉଦାମ୍ପଟନରୁ ଭାରତଗାମୀ ଜାହାଜ ଆସି ପହଞ୍ଚିଲା । ସେଥିରେ ଶ୍ରୀଯୁକ୍ତ ଗୁଡ୍‌ଉଇନ୍‌ଙ୍କୁ ଦେଖି ସ୍ୱାମୀଜୀ ଆନନ୍ଦିତ ହେଲେ । ଅବଶେଷରେ ଡିସେମ୍ବର ତିରିଶ ତାରିଖ ଦିନ ସେ ସଦଳବଳେ ଭାରତ ଅଭିମୁଖେ ଯାତ୍ରା କଲେ ।

## ସିଂହଳରେ ଅଭ୍ୟର୍ଥନା

ଜାନୁଆରୀ ପନ୍ଦର ତାରିଖ ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ ସିଂହଳର ଶ୍ୟାମଳ ତଟଭୂମି ଦୃଷ୍ଟିପଥରେ ପଡ଼ିଲା । ହରିଦ୍ରାଭ ବାଲୁକାପୂର୍ଣ୍ଣ ବେଳାଭୂମିର ସ୍ୱର୍ଣ୍ଣୋଜ୍ଜ୍ୱଳ ବିଭା—ଅନିଳାନ୍ଦୋଳିତ ନାରିକେଳବୃକ୍ଷ ଶୀର୍ଷଗୁଡ଼ିକର ଗାଢ଼ ହରିତ୍‌ବର୍ଣ୍ଣ-ସମ୍ପଦ ଦର୍ଶନ କରି ସ୍ୱାମୀ ବିବେକାନନ୍ଦ ପୁଲକ-ବହୁଳ ଉତ୍ତେଜନାରେ ଅଧୀର ହୋଇ ଉଠିଲେ । ଜାହାଜ ଧୀରେ ଧୀରେ କଲମ୍ବୋ ବନ୍ଦରରେ ପ୍ରବେଶ କରି ଲଙ୍ଗର ପକାଇଲା । ତରଙ୍ଗମାଳାର ଦୃପ୍ତ ସଂଘାତଜନିତ ଭୈରବ କଲ୍ଲୋଳ ସହିତ ବାଷ୍ପୀୟପୋତର ଗୁରୁଗମ୍ଭୀର ବଂଶୀଧ୍ୱନି ମିଳିତ ହୋଇ ବିବେକାନନ୍ଦଙ୍କ ଆଗମନ-ବାର୍ତ୍ତା ଘୋଷଣା କଲା ।

ସ୍ୱାମୀଜୀ ସ୍ୱଦେଶକୁ ଫେରି ଆସୁଛନ୍ତି, ଏ ସମ୍ବାଦ ପ୍ରଚାରିତ ହେବା ମାତ୍ରକେ ସମଗ୍ର ଭାରତବର୍ଷ ତାଙ୍କୁ ସାଦର ଅଭ୍ୟର୍ଥନା କରିବା ଲାଗି ପ୍ରସ୍ତୁତ ହେଲା । ସିଂହଳ ଓ ମାନ୍ଦ୍ରାଜର ପ୍ରଧାନ ନଗରମାନଙ୍କରେ ଅଭ୍ୟର୍ଥନା ସମିତି ଗଠିତ ହେଲା । ସ୍ୱାମୀଜୀ କଲମ୍ବୋ ବନ୍ଦରରେ ଅବତରଣ କରିବେ ବୋଲି ଶୁଣି ତାଙ୍କର ଦୁଇଜଣ ଗୁରୁଭାଇ ଓ କେତେଜଣ ମାନ୍ଦ୍ରାଜୀ ଶିଷ୍ୟ ପୂର୍ବାହ୍ନରେ ସେଠାରେ ପହଞ୍ଚିଲେ । କଲମ୍ବୋର ହିନ୍ଦୁମାନେ ସ୍ୱାମୀଜୀଙ୍କୁ ପ୍ରଥମେ ଅଭ୍ୟର୍ଥନା କରିବା ଲାଗି ଗୌରବମୟ ଅଧିକାର ପାଇଥିବା ହେତୁ ଉତ୍ସାହ-ସହକାରେ ଆୟୋଜନ କରିବାରେ ଲାଗିଗଲେ; କିନ୍ତୁ ଯାହାଙ୍କ ପାଇଁ ଦେଶବ୍ୟାପୀ ତୁମୁଳ ଚାଞ୍ଚଲ୍ୟ ସୃଷ୍ଟି ହୋଇଥିଲା, ସେ ଏହାର ବିନ୍ଦୁବିସର୍ଗ ମଧ୍ୟ ଜାଣି ନ ଥିଲେ । ଯେତେବେଳେ ତାଙ୍କ ସ୍ୱଦେଶ ଅଭିନବ ଉତ୍ସାହୋଲ୍ଲାସରେ ମୁଖରିତ ହୋଇଉଠୁଥିଲା, ସେ ସେତେବେଳେ ନୀରବରେ ପୋତାଭ୍ୟନ୍ତରସ୍ଥ କ୍ଷୁଦ୍ର କକ୍ଷରେ ବସି ଭାରତର ବର୍ତ୍ତମାନ ଓ ଭବିଷ୍ୟତ ସମସ୍ୟାର ସମାଧାନରେ ନିଯୁକ୍ତ ଥିଲେ । ନବୀନ-ଭାରତର ପୁନରୁତ୍‌ଥାନ କଳ୍ପେ ସେ ଯେଉଁ ବାର୍ତ୍ତା ପ୍ରଚାର କରିବା ନିମିତ୍ତ ବଦ୍ଧ-ପରିକର ହୋଇଥିଲେ, ଯେଉଁ ଶିକ୍ଷା ଦୀକ୍ଷା ମାଧ୍ୟମରେ ଜାତୀୟ ଜୀବନ ପୁନରାୟ ସରସ, ଜାଗ୍ରତ ଓ ମହିମାମୟ କରିବା ଲାଗି ସଂକଳ୍ପ କରିଥିଲେ, ତାହା ଜନସାଧାରଣ ଗ୍ରହଣ କରିବେ ନା ନାହିଁ ? ଯଦି ନ କରନ୍ତି, ତାହାହେଲେ କି ଉପାୟ ଅବଲମ୍ବନ କରିବାକୁ ହେବ ? ଏହିସବୁ କଥା ଚିନ୍ତା କରି କରି ସେ ସଂଶୟାତୁର ଚିତ୍ତରେ କଲମ୍ବୋ ବନ୍ଦରରେ ଅବତରଣ କଲେ ।

ତାଙ୍କ ଗୈରିକ-ଉଷ୍ଣୀଷ-ମଣ୍ଡିତ ଶିର ଦୃଷ୍ଟିପଥରେ ପଡ଼ିବା ମାତ୍ରେ ସମୁଦ୍ରତୀରରେ ସମବେତ ବିପୁଳ ଜନତା ହର୍ଷୋଚ୍ଛଳ କଣ୍ଠରେ ଜୟଧ୍ୱନି କଲେ । ସେତେବେଳେ ସନ୍ଧ୍ୟା ହୋଇ ନ ଥାଏ, ଅସ୍ତଗାମୀ ସୂର୍ଯ୍ୟଙ୍କ ପୀତାଭ-ଲୋହିତ-ରଶ୍ମିମାଳା-ସ୍ନାତ-ସନ୍ନ୍ୟାସୀ ବିସ୍ମୟ-ବିମୂଢ଼ବତ୍ ଦଣ୍ଡାୟମାନ ଥିଲେ । ଯେତେବେଳେ କଲମ୍ବୋ ହିନ୍ଦୁସମାଜର ମୁଖପାତ୍ରସ୍ୱରୂପ ମାନନୀୟ କୁମାରସ୍ୱାମୀ

ମହୋଦୟ କେତେଜଣ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ଗହଣରେ ଯାଇ ତାଙ୍କୁ ମନୋହର ଯୁଥିକା ପୁଷ୍ପମାଲ୍ୟରେ ଭୂଷିତ କଲେ — ସେତେବେଳେ ସେ ବୁଝିଲେ ଯେ, ଏହି ବିପୁଳ ଅଭ୍ୟର୍ଥନାର ଆୟୋଜନ କେବଳ ତାଙ୍କରି ପାଇଁ । ଯୁଗଳାଶ୍ୱ-ଯୋଜିତ ଶକଟରେ ଆରୋହଣ କରି ସ୍ୱାମୀଜୀ ନଗର ମଧ୍ୟରେ ପ୍ରବେଶ କଲେ । ପତ୍ର-ପୁଷ୍ପ-ପଲ୍ଲବ-ରଚିତ ତୋରଣ-ଦ୍ୱାର ଅତିକ୍ରମ କରି କ୍ରମେ ଶୋଭାଯାତ୍ରା, ପତାକା ଓ ପୁଷ୍ପମାଲ୍ୟ ଶୋଭିତ ରାଜପଥ ମଧ୍ୟଦେଇ 'ଦାରୁଚିନି ଉଦ୍ୟାନ' ସମ୍ମୁଖସ୍ଥ ବିରାଟ ମଣ୍ଡପରେ ଉପସ୍ଥିତ ହେଲା । ସ୍ୱାମୀଜୀ ଶକଟରୁ ଅବତରଣ କରିବା ମାତ୍ରକେ ଶତଶତ ବ୍ୟକ୍ତି ତାଙ୍କ ପଦଧୂଳି ନେବାରେ ଲାଗିଲେ । ମାନନୀୟ କୁମାରସ୍ୱାମୀ ତାଙ୍କ ସମ୍ମୁଖରେ ପ୍ରଣତ ହୋଇ ଅଭିନନ୍ଦନ-ପତ୍ର ପ୍ରଦାନ କଲେ ।

ସମବେତ ଜନତାର ଉତ୍ସାହଦୀପ୍ତ ଆନନ୍ଦ କୋଳାହଳ ମଧ୍ୟରେ ସ୍ୱାମୀଜୀ ଅଭିନନ୍ଦନ-ପତ୍ରର ଉତ୍ତର ପ୍ରଦାନ କରିବା ଲାଗି ଦଣ୍ଡାୟମାନ ହେଲେ । ପ୍ରସଙ୍ଗକ୍ରମେ ସେ କହିଲେ, ''ମୁଁ କୌଣସି ମହାରାଜା ବା ଧନକୁବେର ବା ପ୍ରସିଦ୍ଧ ରାଜନୀତିଜ୍ଞ ନୁହେଁ — କପର୍ଦ୍ଦକହୀନ ଭିକ୍ଷୁକ ସନ୍ନ୍ୟାସୀ ମାତ୍ର ! ଆପଣମାନେ ମୋତେ ଯେଉଁ ସାଦର ଅଭ୍ୟର୍ଥନା କଲେ, ସେଥିରୁ ମୁଁ ବୁଝିଲି, ହିନ୍ଦୁଜାତି ଏବେ ମଧ୍ୟ ତା'ର ଆଧ୍ୟାତ୍ମିକ ସମ୍ପଦ ହରାଇ ନାହିଁ । ନଚେତ୍ ବା ଜଣେ ସନ୍ନ୍ୟାସୀ ପ୍ରତି ଏତେ ଭକ୍ତି ଶ୍ରଦ୍ଧା ପ୍ରଦର୍ଶନ କରିବେ କାହିଁକି ? ଅତଏବ, ହେ ହିନ୍ଦୁଗଣ, ତୁମ୍ଭେମାନେ ଜାତୀୟ ଜୀବନର ଏହି ବିଶେଷତ୍ୱ ହରାଅ ନାହିଁ । ନାନାପ୍ରକାର ପ୍ରତିକୂଳ ଅବସ୍ଥା ମଧ୍ୟରେ ଧର୍ମାଦର୍ଶକୁ ଦୃଢ଼ବଳରେ ଧରି ରଖ ।''

ଏହାପରେ ସ୍ୱାମୀଜୀଙ୍କୁ ବିଶ୍ରାମାଗାରକୁ ନିଆଗଲା । କିଛି ସମୟ ପରେ ସେ ଦେଖିଲେ, ଯେଉଁମାନେ ସ୍ଥାନାଭାବ ହେତୁ ମଣ୍ଡପରେ ତାଙ୍କ ଦର୍ଶନଲାଭ କରିବାକୁ ବିଫଳ ହୋଇଥିଲେ, ସେମାନେ ଗୃହଦ୍ୱାରରେ ସମବେତ ହୋଇଛନ୍ତି । ସ୍ୱାମୀଜୀ ବାରଣ୍ଡାକୁ ଆସି ସେମାନଙ୍କ ସମ୍ମୁଖରେ ଠିଆ ହୋଇ ମୃଦୁହାସ୍ୟରଞ୍ଜିତ ବଦନରେ ନମସ୍କାର କଲେ । ସମସ୍ତେ ଆଗ୍ରହ ଓ ଭକ୍ତି ସହିତ ତାଙ୍କ ପାଦଧୂଳି ଗ୍ରହଣ କରିବାକୁ ଲାଗିଲେ, ସ୍ୱାମୀଜୀ 'ନାରାୟଣ' କହି ସମସ୍ତଙ୍କୁ ଆଶୀର୍ବାଦ କଲେ ।

ଜାନୁଆରୀ ଷୋହଳ ତାରିଖ ଅପରାହ୍ଣରେ ସେ 'ଫ୍ଲୋରାଲ ହଲ୍'ରେ ଗୋଟିଏ ବକ୍ତୃତା ଦେଲେ । ପାଶ୍ଚାତ୍ୟ ଦେଶରୁ ପ୍ରତ୍ୟାଗମନ ପରେ ଏହା ତାଙ୍କର ସର୍ବପ୍ରଥମ ବକ୍ତୃତା । ବକ୍ତୃତାର ବିଷୟ ଥିଲା — 'ପୁଣ୍ୟଭୂମି ଭାରତବର୍ଷ ।'

ସ୍ୱାମୀଜୀଙ୍କର ପ୍ରିୟତମ ଶିଷ୍ୟ ସାଙ୍କେତିକ ଲିପିବିଦ୍ ଶ୍ରୀଯୁକ୍ତ ଗୁଡ୍‌ଉଇନ୍, ଯାହାଙ୍କ ଅକ୍ଳାନ୍ତ ପରିଶ୍ରମ ଯୋଗୁଁ ଆଚାର୍ଯ୍ୟଦେବଙ୍କ ବକ୍ତୃତାଗୁଡ଼ିକ ପୁସ୍ତକାକାରରେ ରହିପାରିଛି ଓ ଯେ ସର୍ବଦା ଛାୟାପରି ଶ୍ରୀଗୁରୁଙ୍କ ପାର୍ଶ୍ୱଲଗ୍ନ ହୋଇଥାଆନ୍ତି, ସ୍ୱାମୀଜୀଙ୍କ ବକ୍ତୃତାଗୁଡ଼ିକ ପଢ଼ିବା ମାତ୍ରେ ତାଙ୍କର ପୁଣ୍ୟ ସ୍ମୃତି ଉଦ୍ଦେଶ୍ୟରେ କୃତଜ୍ଞତାରେ ହୃଦୟ ସ୍ୱତଃ ପୂର୍ଣ୍ଣ ହୋଇଯାଏ । ଶ୍ରୀରାମକୃଷ୍ଣ ମିଶନଦ୍ୱାରା ପ୍ରକାଶିତ

'ଭାରତରେ ବିବେକାନନ୍ଦ' ନାମକ ପୁସ୍ତକରେ ସ୍ୱାମୀଜୀଙ୍କର ଏହି ଦେଶରେ ପ୍ରଦତ୍ତ ବକ୍ତୃତାଗୁଡ଼ିକ ଅନେକେ ପାଠ କରିଥିବେ; ତେଣୁ ସ୍ଥଳବିଶେଷରେ ପ୍ରୟୋଜନ ବଶତଃ ସେଗୁଡ଼ିକର ସାମାନ୍ୟ ଉଦ୍ଧାର ମାତ୍ର କରାଯିବ ।

ପର ଦିବସରେ ଅଧିକାଂଶ ସମୟ ଆଚାର୍ଯ୍ୟଦେବ ଦର୍ଶକବୃନ୍ଦଙ୍କ ସହିତ ଧର୍ମାଲୋଚନା କରି କଟାଇ ଦେଲେ । ଅପରାହ୍ଣରେ ସ୍ଥାନୀୟ ଶିବମନ୍ଦିର ଦର୍ଶନ କରିବାକୁ ଗଲେ । ପଥ ମଧ୍ୟରେ ଦଳ ଦଳ ଲୋକ ତାଙ୍କୁ ପୁଷ୍ପ, ଫଳ, ମାଲ୍ୟ ଇତ୍ୟାଦି ଉପହାର ଦେଉଥିଲେ । ନଗରର ସୌଧ-ବାତାୟନଗୁଡ଼ିକରୁ ପୁରନାରୀମାନେ ପୁଷ୍ପ ଓ ଗୋଲାପଜଳ ବର୍ଷଣ କରୁଥିଲେ । ମନ୍ଦିର-ଦ୍ୱାରରେ ପହଞ୍ଚିବା ମାତ୍ରକେ 'ଜୟ ମହାଦେବ' ଧ୍ୱନି ସହିତ ସମବେତ ଜନତା ତାଙ୍କୁ ଅଭ୍ୟର୍ଥନା କଲେ । ଶ୍ରୀମନ୍ଦିର ଦର୍ଶନ ଓ ପ୍ରଦକ୍ଷିଣ ଶେଷରେ ପୁରୋହିତମାନଙ୍କ ସହିତ କିଛି ସମୟ ଆଲୋଚନା କରିବା ପରେ ଘରକୁ ଫେରି ଆସିଲେ । କେତେଜଣ ଶାସ୍ତ୍ରଜ୍ଞ ବ୍ରାହ୍ମଣ ପଣ୍ଡିତ ତାଙ୍କୁ ଅପେକ୍ଷା କରିଥିଲେ । ପ୍ରାୟ ରାତି ସାଢ଼େ ଦୁଇଟା ପର୍ଯ୍ୟନ୍ତ ସ୍ୱାମୀଜୀ ସେମାନଙ୍କ ସହିତ ଶାସ୍ତ୍ରାଲୋଚନା କଲେ । ପରଦିନ ସକାଳେ କଲମ୍ବୋର 'ପବ୍ଲିକ୍ ହଲ୍'ରେ ସ୍ୱାମୀଜୀ 'ବେଦାନ୍ତ ଦର୍ଶନ' ସମ୍ବନ୍ଧରେ ଗୋଟିଏ ସୁଦୀର୍ଘ ବକ୍ତୃତା ଦେଇଥିଲେ । ଏହି ସଭାରେ କେତେଜଣ ଭାରତବାସୀ ଇଉରୋପୀୟ ପରିଚ୍ଛଦ ପରିଧାନ କରି ଉପସ୍ଥିତ ଥିଲେ । ସେମାନେ ଚାଲିଚଳନ, ଭାବଭଙ୍ଗୀରେ ଶ୍ୱେତାଙ୍ଗମାନଙ୍କୁ ଅନୁକରଣ କରୁଛନ୍ତି ଦେଖି ସ୍ୱାମୀଜୀ ଦୁଃଖିତ ହୋଇ ମୂଢ଼ଙ୍କ ପରି ପରାନୁକରଣ ପ୍ରବୃତ୍ତି ପରିତ୍ୟାଗ କରି, ଜାତୀୟ ସ୍ୱଭାବ ବଜାୟ ରଖିବା ଲାଗି ସେମାନଙ୍କୁ ଉପଦେଶ ଦେଲେ ।

ଜାନୁଆରୀ, ଉଣେଇଶ ତାରିଖ ଦିନ ସେ କଲୋମ୍ବୋରୁ ସ୍ୱତନ୍ତ୍ର ରେଳଗାଡ଼ିରେ କାଣ୍ଡି ଅଭିମୁଖେ ଯାତ୍ରା କଲେ । ଇତିପୂର୍ବରୁ କଲମ୍ବୋରୁ ଜାହାଜରେ ମାନ୍ଦ୍ରାଜ ଯିବା ଲାଗି ସ୍ୱାମୀଜୀ ସ୍ଥିର କରିଥିଲେ; କିନ୍ତୁ ସିଂହଳ ଓ ଦାକ୍ଷିଣାତ୍ୟରେ ବିଭିନ୍ନ ସ୍ଥାନରୁ କ୍ରମାଗତ ସାଗ୍ରହ ଆହ୍ୱାନସୂଚକ ଏତେ ତାର-ବାର୍ତ୍ତା ଆସିଲା ଯେ ସେ ଶେଷରେ ନିଜ ସଂକଳ୍ପ ତ୍ୟାଗ କରିବାକୁ ବାଧ୍ୟ ହେଲେ । ସ୍ଥଳପଥରେ ମାନ୍ଦ୍ରାଜ ଯିବା ବିଷୟ ସ୍ଥିର ହେଲା ।

କାଣ୍ଡିରେ ହିନ୍ଦୁ ସମାଜ ତରଫରୁ ପ୍ରଦତ୍ତ ଅଭିନନ୍ଦନ ଗ୍ରହଣ କରି ସ୍ୱାମୀଜୀ ଜାଫ୍‌ନା ଗଲେ । ବୌଦ୍ଧଯୁଗର ପ୍ରାଚୀନ କୀର୍ତ୍ତି ଯୋଗୁଁ ବିଖ୍ୟାତ ଅନୁରାଧାପୁର ନଗରରେ ସ୍ୱାମୀଜୀ ସ୍ଥାନୀୟ ଅଧିବାସୀମାନଙ୍କ ଅନୁରୋଧରେ 'ଉପାସନା' ସମ୍ବନ୍ଧରେ ଗୋଟିଏ ବକ୍ତୃତା ଦେଲେ । ବୋଧଗୟାର ବୋଧିଦ୍ରୁମ ଶାଖାରୁ ଉତ୍ପନ୍ନ ସୁପ୍ରାଚୀନ ବଟବୃକ୍ଷ ତଳେ ସଭାର ଆୟୋଜନ ହୋଇଥିଲା । ଅନୁରାଧାପୁରରୁ ଜାଫ୍‌ନା ଶହେ କୋଡ଼ିଏ ମାଇଲ ଦୂର । ସ୍ୱାମୀଜୀ ସଙ୍ଗୀମାନଙ୍କ ସହିତ ବଳଦଗାଡ଼ିରେ ଧୀରେ ଧୀରେ ଅଗ୍ରସର ହେଲେ । ପ୍ରତ୍ୟହ ପଥ ମଧ୍ୟରେ ଗ୍ରାମମାନଙ୍କରୁ ଶତ ଶତ ହିନ୍ଦୁ ଓ ବୌଦ୍ଧ ତାଙ୍କର ଦର୍ଶନ ପାଇବାକୁ ଠିଆ ହେଉଥିଲେ । ସ୍ୱାମୀଜୀ ବିସ୍ମିତ

ହେଲେ ଯେ, ତାଙ୍କ ଚିକାଗୋ ବକ୍ତୃତାର ସଫଳତା ସମ୍ବାଦ ସିଂହଳରେ ଗ୍ରାମବାସୀ ଚାଷୀମାନେ ମଧ୍ୟ ପାଇଛନ୍ତି ।

ସନ୍ଧ୍ୟାବେଳେ ସ୍ୱାମୀଜୀ ଜାଫ୍‌ନାରେ ପହଞ୍ଚିଲେ । ସୁସଜ୍ଜିତ ରାଜପଥରେ ଧୀରେ ଧୀରେ ଶୋଭାଯାତ୍ରା ଚାଲିଲା । ସ୍ଥାନୀୟ ହିନ୍ଦୁ କଲେଜ ପ୍ରାଙ୍ଗଣରେ ଗୋଟିଏ ମନୋରମ ମଣ୍ଡପ ତିଆରି ହୋଇଥିଲା । ସ୍ୱାମୀଜୀଙ୍କୁ ସେଠାକୁ ନିଆଗଲା । ପ୍ରାୟ ପନ୍ଦର ହଜାର ଲୋକ ଶୋଭାଯାତ୍ରାରେ ଯୋଗ ଦେଇଥିଲେ । ନାଗରିକମାନଙ୍କ ଆନନ୍ଦ ଓ ଉତ୍ସାହୋଚ୍ଛ୍ୱାସ ବର୍ଣ୍ଣନାତୀତ । ଜାଫ୍‌ନାରେ ଦିଆହୋଇଥିବା ଅଭିନନ୍ଦନପତ୍ରର ସଂକ୍ଷିପ୍ତ ଉତ୍ତର ଦେଇ ପରଦିନ ଆଚାର୍ଯ୍ୟଦେବ 'ବେଦାନ୍ତ' ସମ୍ବନ୍ଧରେ ବକ୍ତୃତା ଦେଇଥିଲେ । ସିଂହଳ-ଭ୍ରମଣ ସମାପ୍ତ ହେଲା ।

ଜାଫ୍‌ନାରୁ ଖଣ୍ଡିଏ ଷ୍ଟୀମର୍ ଭଡ଼ା କରି ସ୍ୱାମୀଜୀ ତାଙ୍କ ଶିଷ୍ୟବର୍ଗ ଓ ଗୁରୁଭାଇ ସ୍ୱାମୀ ନିରଞ୍ଜନାନନ୍ଦଙ୍କ ସହିତ ଭାରତ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ଆଗରୁ ସମ୍ବାଦ ପାଇ ରାମନାଦର ରାଜା ଭାସ୍କର ବର୍ମା ସଦଳବଳେ ପାମ୍ବାନଠାରେ ଉପସ୍ଥିତ ହୋଇଥିଲେ । ବିପୁଳ ଜନତା ସମୁଦ୍ର କୂଳରେ ଉଦ୍‌ଗ୍ରୀବ ହୋଇ ସ୍ୱାମୀଜୀଙ୍କୁ ଅପେକ୍ଷା କରିଥିଲେ । ଷ୍ଟୀମର୍‌ରୁ ଅବତରଣ କରି ସ୍ୱାମୀଜୀ ସୁସଜ୍ଜିତ ରାଜକୀୟ ନୌକାରେ ଆରୋହଣ କଲେ ।

## ଭାରତରେ ପଦାର୍ପଣ

'ପ୍ରଚାରଶୀଳ ହିନ୍ଦୁଧର୍ମ'ର ସର୍ବପ୍ରଥମ ପ୍ରତିନିଧି ସ୍ୱାମୀ ବିବେକାନନ୍ଦ ଭାରତ ମାଟିରେ ପଦାର୍ପଣ କରିବା ମାତ୍ରକେ ସମବେତ ଜନତା ଜୟଧ୍ୱନି କଲେ । ରାମନାଦର ରାଜା ତଳେ ଲୋଟି ସ୍ୱାମୀଜୀଙ୍କୁ ପ୍ରଣାମ ଜଣାଇଲେ । ସଙ୍ଗେ ସଙ୍ଗେ ହଜାର ହଜାର ଲୋକ ଗୋଡ଼ତଳେ ପଡ଼ିଗଲେ । ସନ୍ଧ୍ୟାକାଳୀନ ରକ୍ତାକ୍ତ-ଧୂସର ଆକାଶତଳେ ହଜାର ହଜାର ସ୍ୱତଃସ୍ଫୂର୍ତ୍ତ ଭକ୍ତି-ବିଗଳିତ ହୃଦୟର ଏହି ମହିମାମୟ ଦୃଶ୍ୟ ଭାରତ ଇତିହାସରେ ଗୋଟିଏ ଅପୂର୍ବ ଘଟଣା । ଆଚାର୍ଯ୍ୟଦେବ ରାଜା ଓ ପାର୍ଶ୍ୱବର୍ତ୍ତୀ ଅନ୍ୟ ସମସ୍ତଙ୍କୁ ତଳୁ ଉଠାଇ ଆଶୀର୍ବାଦ କଲେ । ସମୁଦ୍ର କୂଳରେ ବିଚିତ୍ର ଚନ୍ଦ୍ରାତପ ତଳେ ନାଗଲିଙ୍ଗମ ପିଲାଇ ପାମ୍ବାନ୍‌ର ଅଧିବାସୀଙ୍କ ତରଫରୁ ଅଭିନନ୍ଦନ-ପତ୍ର ପ୍ରଦାନ କଲେ । ରାମନାଦ ରାଜା ଓ ଏମ୍. କେ. ନାୟାର୍ ଭାବୋଚ୍ଛ୍ୱାସ ସହିତ ବକ୍ତୃତା ଦେବାପରେ ସ୍ୱାମୀଜୀ ପାମ୍ବାନ୍‌ବାସୀଙ୍କୁ ଧନ୍ୟବାଦ ଦେଇ ମର୍ମସ୍ପର୍ଶୀ ଭାଷାରେ ଗୋଟିଏ କ୍ଷୁଦ୍ର ବକ୍ତୃତା ଦେଲେ । ଉପସଂହାରରେ ସେ କହିଲେ, ''ରାମନାଦ ରାଜା ମୋତେ ଯେଉଁ ଶ୍ରଦ୍ଧା ଦେଖାଇଛନ୍ତି, ସେଥିପାଇଁ କୃତଜ୍ଞତା ଜଣାଇବା ଲାଗି ମୁଁ ଭାଷା ପାଉନାହିଁ । ଯଦି ମୋଦ୍ୱାରା କିଛି ସତ୍‌କାର୍ଯ୍ୟ ହୋଇଥାଏ, ତେବେ ସେଥିମଧ୍ୟରୁ ପ୍ରତ୍ୟେକଟି ପାଇଁ ଭାରତ ଏହି ମହାପୁରୁଷଙ୍କ ପାଖରେ ଋଣୀ; କାରଣ ମୋତେ ଚିକାଗୋ ପଠାଇବା କଳ୍ପନା ସର୍ବପ୍ରଥମେ ତାଙ୍କ ମନରେ ଉଦିତ ହୋଇଥିଲା । ସେ ମୋ ମୁଣ୍ଡରେ ଏହି ଧାରଣାଟିକୁ ପ୍ରବେଶ

କରାଇ ଦେଲେ ଏବଂ ଏହାକୁ କାର୍ଯ୍ୟରେ ପରିଣତ କରିବା ନିମିତ୍ତ ମୋତେ ବାରମ୍ବାର ଉତ୍ତେଜିତ କଲେ । ବର୍ତ୍ତମାନ ସେ ମୋ ପାଖରେ ଠିଆ ହୋଇ ତାଙ୍କ ସ୍ୱଭାବସିଦ୍ଧ ଉତ୍ସାହରେ ଆହୁରି ବେଶୀ କାମ ଆଶା କରୁଛନ୍ତି । ଯଦି ଏହାଙ୍କ ପରି ଆଉ କେତେଜଣ ରାଜା ଆମ ପ୍ରିୟ ମାତୃଭୂମିର କଲ୍ୟାଣ ଲାଗି ଆଗ୍ରହାନ୍ୱିତ ହୋଇ ଆଧ୍ୟାତ୍ମିକ ଉନ୍ନତି ପାଇଁ ଚେଷ୍ଟା କରନ୍ତେ, ତେବେ ଭାରି ଭଲ ହୁଅନ୍ତା ।''

ସଭା ଶେଷ ହେବା ପରେ ତାଙ୍କ ରହିବା ନିମିତ୍ତ ନିର୍ଦ୍ଦିଷ୍ଟ ବଙ୍ଗଳାକୁ ସ୍ୱାମୀଜୀ ଗଲେ । ରାଜାଙ୍କ ଆଦେଶାନୁସାରେ ଗାଡ଼ିରୁ ଘୋଡ଼ା ଖୋଲା ହେଲା । ଉପସ୍ଥିତ ବ୍ୟକ୍ତିଗଣ, ଏପରି କି ସ୍ୱୟଂ ରାଜା ବାହାଦୂର ଏହି ଗାଡ଼ିକୁ ଟାଣି ଟାଣି ନେଇଗଲେ । ପରଦିନ ସ୍ୱାମୀଜୀ ପ୍ରସିଦ୍ଧ ରାମେଶ୍ୱର ମନ୍ଦିର ଦର୍ଶନ କରିବାକୁ ଗଲେ । ପ୍ରାୟ ପାଞ୍ଚବର୍ଷ ତଳେ ଏହି ସ୍ଥାନରେ ସ୍ୱାମୀଜୀ ତାଙ୍କ ପରିବ୍ରାଜକ ବ୍ରତ ଉଦ୍‌ଯାପନ କରିଥିଲେ । ସେତେବେଳେ ସେ ଥିଲେ ଅପରିଚିତ ସନ୍ନ୍ୟାସୀ ମାତ୍ର । ରାଜକୀୟ ଶକଟ ମନ୍ଦିର ସମୀପବର୍ତ୍ତୀ ହେବା ମାତ୍ରେ ହାତୀ, ଓଟ, ଘୋଡ଼ା, ମନ୍ଦିରର ଚିତ୍ରିତ ପତାକାସମୂହ ଓ ସଙ୍ଗୀତ ଗାୟକମାନେ ବିରାଟ ଶୋଭାଯାତ୍ରାରେ ଯାଇ ସ୍ୱାମୀଜୀଙ୍କୁ ଅଭ୍ୟର୍ଥନା କଲେ । ସେ ମନ୍ଦିରରେ ପଶି ସହସ୍ର ସ୍ତମ୍ଭ ଉପରେ ବିରାଜିତ ଚାନ୍ଦିନୀ ଓ ବିରାଟ ମନ୍ଦିରର ଅପୂର୍ବ କାରୁକାର୍ଯ୍ୟ ଦର୍ଶନ କଲେ । ଦେବ-ଦର୍ଶନ ସମାପ୍ତ ହେବା ପରେ ସ୍ୱାମୀଜୀ ମନ୍ଦିରସ୍ଥ ବହୁମୂଲ୍ୟ ମଣି, ମୁକ୍ତା, ହୀରା ପ୍ରଭୃତି ଦେଖିଲେ । ଅବଶେଷରେ ବକ୍ତୃତା ଦେବା ଲାଗି ତାଙ୍କୁ ଅନୁରୋଧ କରାଗଲା । ସ୍ୱାମୀଜୀଙ୍କ ଇଂରାଜୀ ବକ୍ତୃତାକୁ ଶ୍ରୀଯୁକ୍ତ ନାଗଲିଙ୍ଗମ୍ ତାମିଲ୍ ଭାଷାରେ ଅନୁବାଦ କରି ସାଧାରଣଙ୍କୁ ବୁଝାଇ ଦେଲେ । ସ୍ୱାମୀଜୀ ଭାରତର ଅନ୍ୟତମ ପବିତ୍ରଧାମ ମନ୍ଦିର-ପ୍ରାଙ୍ଗଣରେ ଠିଆ ହୋଇ ଘୋଷଣା କଲେ — ଯତ୍ର ଜୀବ ତତ୍ର ଶିବ ! ଏହି ମହାମନ୍ତ୍ରରେ ଅନୁପ୍ରାଣିତ ହୋଇ ପ୍ରତ୍ୟେକ ନରନାରୀଙ୍କ ସେବାରେ ଅଗ୍ରସର ହେବା ହେଉଛି ପ୍ରକୃତ ଶିବଭକ୍ତି । କେବଳ ବସି ବସି ତାଙ୍କ ଅଙ୍ଗ, ପ୍ରତ୍ୟଙ୍ଗ, ଚକ୍ଷୁ, କର୍ଣ୍ଣ, ନାସିକାର ଅପରୂପ ସୌନ୍ଦର୍ଯ୍ୟର ପ୍ରଶଂସାସୂଚକ ସ୍ତୋତ୍ର ପାଠ କରି ଯେଉଁ ବ୍ୟକ୍ତି ପ୍ରତିମାପୂଜାରେ ନିଯୁକ୍ତ ରହନ୍ତି, ସେ ପ୍ରବର୍ତ୍ତକ ମାତ୍ର । ତାଙ୍କର ଭକ୍ତି ପରିପକ୍ୱ ହୋଇ ନାହିଁ ।

ଏହି ଦିନ ସ୍ୱାମୀଜୀଙ୍କ ଶୁଭାଗମନ ଉପଲକ୍ଷେ ସହସ୍ର ସହସ୍ର ଦରିଦ୍ରନାରାୟଣଙ୍କୁ ପରିତୋଷ ସହକାରେ ଭୋଜନ ଦିଆଗଲା । ବସ୍ତ୍ର ଓ ଅର୍ଥ ମଧ୍ୟ ବିତରିତ ହେଲା । ଭାରତମାଟିରେ ଯେଉଁଠାରେ ସ୍ୱାମୀଜୀ ପ୍ରଥମେ ପାଦ ଥୋଇଥିଲେ, ଭକ୍ତିମାନ୍ ରାମନାଦ ରାଜା ସେହି ପୁଣ୍ୟଭୂମି ଉପରେ ଚାଳିଶ ଫୁଟ ଉଚ୍ଚ ଗୋଟିଏ ସ୍ମୃତିସ୍ତମ୍ଭ ନିର୍ମାଣ କରିଦେଇଛନ୍ତି । ସେହି ସ୍ମୃତିସ୍ତମ୍ଭ ଉପରେ ଲେଖା ହୋଇଛି — "Satyameva Jayate – This monument, erected by Vaskara Sethupathi, Raja of Ramnad, marks the sacred spot, where His Most Holiness Swami Vivekananda's blessed

feet first trod on Indian soil together with the swami's English disciples on His Holiness's return from the Western Hemisphere where glorious and unprecedented success attended His Holiness's philanthropic labours to spread the religion of Vedanta, on the 26th January, 1897.''

''ସତ୍ୟମେବ ଜୟତେ—ଯେଉଁ ସ୍ଥାନରେ ମହାତ୍ମା ସ୍ୱାମୀ ବିବେକାନନ୍ଦ ପାଶ୍ଚାତ୍ୟ ଜଗତରେ ବୈଦାନ୍ତିକ ଧର୍ମର ବିଜୟ ବୈଜୟନ୍ତୀ ଉଡ଼ାଇ ଅଦ୍ୱିତୀୟ ଦିଗ୍‌ବିଜୟ ପରେ ତାଙ୍କ ଇଂରେଜ ଶିଷ୍ୟମାନଙ୍କ ଗହଣରେ ଭାରତ-ମାଟିରେ ପ୍ରଥମ ପବିତ୍ର ପଦପଙ୍କଜ ସ୍ଥାପନ କରିଥିଲେ, ସେହି ପୁଣ୍ୟସ୍ଥାନ ଚିହ୍ନିତ କରିବା ଉଦ୍ଦେଶ୍ୟରେ ଏହି ସ୍ମୃତିସ୍ତମ୍ଭ ରାମନାଦ ରାଜା ଭାସ୍କର ସେତୁପତିଙ୍କଦ୍ୱାରା ୧୮୯୭ ଖ୍ରୀଷ୍ଟାବ୍ଦ ଜାନୁଆରୀ ଛବିଶ ତାରିଖ ଦିନ ନିର୍ମିତ ହେଲା ।''

## ମାନ୍ଦ୍ରାଜ ପ୍ରଦେଶରେ

ସେଠାରୁ ସ୍ୱାମୀଜୀ ରାମନାଦ ଅଭିମୁଖେ ଗଲେ । ରାଜା ବାହାଦୂରଙ୍କ ବ୍ୟବସ୍ଥାନୁସାରେ ରାମନାଦବାସୀଗଣ ପୂର୍ବରୁ ଯଥାଯୋଗ୍ୟ ଅଭ୍ୟର୍ଥନାର ଆୟୋଜନ କରିଥିଲେ । ସ୍ୱାମୀଜୀ ନୌକାରୁ ହ୍ରଦତୀରରେ ଅବତରଣ କରିବା ମାତ୍ରେ ତାଙ୍କ ସମ୍ମାନାର୍ଥେ ରାଜପ୍ରାସାଦରେ ତୋପଧ୍ୱନି ହୋଇଥିଲା । ନଗରୀର ସୁସଜ୍ଜିତ ରାଜପଥରେ ଶକଟରେ ଆରୋହଣ କରି ସ୍ୱାମୀଜୀ ଧୀରେ ଧୀରେ ଅଗ୍ରସର ହେଲେ । ରାଜା ବାହାଦୂର, ରାଜାଙ୍କ ଭାଇ ଓ ଅନ୍ୟାନ୍ୟ ବିଶିଷ୍ଟ ରାଜକର୍ମଚାରୀଗଣ ପଦବ୍ରଜରେ ତାଙ୍କର ଅନୁଗମନ କଲେ । ଇଂରେଜୀ ଓ ଦେଶୀୟ ବାଦ୍ୟକାରଗଣ ବ୍ୟାଣ୍ଡ ବଜାଇବାରେ ଲାଗିଲେ । ଇତିପୂର୍ବରୁ ଅଭ୍ୟର୍ଥନା-ମଣ୍ଡପ ଜନତାରେ ଭରପୂର ହୋଇ ଯାଇଥିଲା; ସ୍ୱାମୀଜୀ ସଦଳବଳେ ପହଞ୍ଚିବାକ୍ଷଣି ସମବେତ ଜନତା ଜୟଧ୍ୱନି କରି ତାଙ୍କୁ ଅଭ୍ୟର୍ଥନା କଲେ । ସମୟୋଚିତ ବକ୍ତୃତା ଦେଇ ରାଜା ବାହାଦୂର ତାଙ୍କୁ ସମ୍ମାନ ଜଣାଇଲେ । ଏହାପରେ ରାଜଭ୍ରାତା ରାଜା ଦିନକର ବର୍ମା ସେତୁପତି ରାଜାଙ୍କ ଅଭିପ୍ରାୟ ଅନୁସାରେ ଅଭିନନ୍ଦନ-ପତ୍ର ପାଠ କଲେ । ଅଭିନନ୍ଦନ-ପତ୍ରର ଉତ୍ତର ଦେଇ ସ୍ୱାମୀଜୀ ଗୋଟିଏ ସୁଦୀର୍ଘ ବକ୍ତୃତା ପ୍ରଦାନ କଲେ । ରାଜା ବାହାଦୂର ପ୍ରସ୍ତାବ କଲେ ଯେ, ସ୍ୱାମୀଜୀଙ୍କ ଶୁଭାଗମନ ଉପଲକ୍ଷେ ମାନ୍ଦ୍ରାଜ ଦୁର୍ଭିକ୍ଷ ଭଣ୍ଡାର ପାଇଁ ସାଧାରଣ ଲୋକଙ୍କଠାରୁ ଚାନ୍ଦା ଉଠାଇ ପଠାଇ ଦିଆଯାଉ । ଏହି ପ୍ରସ୍ତାବ ସାଗ୍ରହେ ସମର୍ଥିତ ହେବାପରେ ସଭାଭଙ୍ଗ ହେଲା ।

ପରମକୁଡ଼ି, ମନମଦୁରା, ମଦୁରା, ତ୍ରିଚିନାପଲ୍ଲୀ ଓ ତାଞ୍ଜୋର ପ୍ରଭୃତି ସହରରେ ନାନାପ୍ରକାରରେ ଅଭିନନ୍ଦିତ ହୋଇ ସ୍ୱାମୀଜୀ କୁମ୍ଭକୋଣମ୍‌ଠାରେ ପଦାର୍ପଣ କଲେ । କୁମ୍ଭକୋଣମ୍‌ବାସୀ ହିନ୍ଦୁମାନେ ମଧ୍ୟ ସ୍ୱାମୀଜୀଙ୍କୁ ଦୁଇଖଣ୍ଡି ଅଭିନନ୍ଦନ ପତ୍ର ଦେଇଥିଲେ । ଅଭିନନ୍ଦନର ଉତ୍ତରରେ ସ୍ୱାମୀଜୀ 'ବେଦାନ୍ତ'

ସମ୍ବନ୍ଧରେ ଗୋଟିଏ ସୁଦୀର୍ଘ ବକ୍ତୃତା ଦେଇଥିଲେ । ମାନ୍ଦ୍ରାଜ ଯାଇ ତାଙ୍କୁ ଅତ୍ୟଧିକ ପରିଶ୍ରମ କରିବାକୁ ହେବ ବୋଲି ବିବେଚନା କରି ସେ ତିନିଦିନ କୁମ୍ଭକୋଣମ୍‌ଠାରେ ବିଶ୍ରାମ କରିବା ପରେ ମାନ୍ଦ୍ରାଜ ଅଭିମୁଖେ ଯାତ୍ରା କଲେ ।

ବିବେକାନନ୍ଦମାନ୍ଦ୍ରାଜଆସୁଛନ୍ତି, ଏସମ୍ବାଦପାଇପୂର୍ବରୁମାନ୍ଦ୍ରାଜବାସୀମାନେ ତାଙ୍କୁ ସାଦର ଅଭ୍ୟର୍ଥନା କରିବା ନିମିତ୍ତ ପ୍ରସ୍ତୁତ ହେଲେ । ମାନ୍ୟବର ଜଷ୍ଟିସ୍ ସୁବ୍ରମନ୍ୟମ୍ ଆୟାରଙ୍କ ନେତୃତ୍ୱରେ ଅଭ୍ୟର୍ଥନା ସମିତି ଗଠିତ ହେଲା । ପ୍ରତି ସୌଧଚୂଡ଼ାରେ ବିରଞ୍ଜିତ ପତାକାବଳୀ, ସୁବୃହତ୍ ତୋରଣମାଳାରେ ପରିଶୋଭିତ ରାଜପଥସମୂହ—ସମଗ୍ର ମାନ୍ଦ୍ରାଜ ନଗରୀ ଅପୂର୍ବ ଶୋଭାରେ ସଜ୍ଜିତ ହୋଇ ସ୍ୱାମୀଜୀଙ୍କୁ ସାଦର ଅଭ୍ୟର୍ଥନା କରିବା ନିମିତ୍ତ ଉନ୍ମୁଖ ଆଗ୍ରହରେ ବ୍ୟାକୁଳ ହୋଇ ଉଠିଲା । ଫେବୃଆରୀ ଛଅ ତାରିଖ ଦିନ ସକାଳ ହେବା ସଙ୍ଗେ ସଙ୍ଗେ ନଗରବାସୀଗଣ ଦଳ ଦଳ ହୋଇ ରେଳ ଷ୍ଟେସନକୁ ଦଉଡ଼ିଲେ । ପ୍ଲାଟଫର୍ମରେ ଟ୍ରେନ୍ ଠିଆ ହେବା ମାତ୍ରେ ହଜାର ହଜାର କଣ୍ଠରୁ ଜୟଧ୍ୱନି ଉଠି ଗଗନ ବିଦୀର୍ଣ୍ଣ କଲା । ନୟନାଭିରାମ ବିବେକାନନ୍ଦ ଗାଡ଼ିରୁ ଅବତରଣ କରିବା ମାତ୍ରେ ଅଭ୍ୟର୍ଥନା ସମିତିର ସଦସ୍ୟଗଣ ଆଗେଇଯାଇ ତାଙ୍କୁ ପୁଷ୍ପମାଲ୍ୟରେ ଭୂଷିତ କଲେ । ସ୍ୱାମୀଜୀ କେତେ ମିନିଟ ପର୍ଯ୍ୟନ୍ତ ଉପସ୍ଥିତ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ସହିତ ଆଳାପ କରିବା ପରେ ଶକଟ ଆରୋହଣ କଲେ । ଜଷ୍ଟିସ୍ ସୁବ୍ରମଣ୍ୟମ୍ ଆୟାର, ସ୍ୱାମୀ ନିରଞ୍ଜନାନନ୍ଦ ଓ ସ୍ୱାମୀ ଶିବାନନ୍ଦ ଉକ୍ତ ଶକଟରେ ସ୍ୱାମୀଜୀଙ୍କ ପାଖରେ ଆସନ ଗ୍ରହଣ କରିବା ପରେ ଶକଟ ଧୀରେ ଧୀରେ ଆଟର୍ଣ୍ଣୀ ବିଲିଗ୍ରାମୀ ଆୟାଙ୍ଗାରଙ୍କ 'କ୍ୟାସଲ କର୍ଣ୍ଣାନ୍' ନାମକ ପ୍ରାସାଦୋପମ ଅଟ୍ଟାଳିକା ଅଭିମୁଖେ ଗମନ କଲା । କିୟଦ୍ଦୁର ବାଟ ନ ଯାଉଣୁ ଉତ୍ସାହୀ ଯୁବକବୃନ୍ଦ ଗାଡ଼ିରୁ ଘୋଡ଼ା ଫିଟାଇ ଦେଲେ ଏବଂ ନିଜେ ଗାଡ଼ିକୁ ଟାଣି ଟାଣି ନେଲେ । ରାସ୍ତା ମଧ୍ୟରେ ସ୍ୱାମୀଜୀଙ୍କ ମୁଣ୍ଡ ଉପରେ ଅନବରତ ପୁଷ୍ପବୃଷ୍ଟି ହେଉଥାଏ । ଦଳ ଦଳ ନରନାରୀ ନଡ଼ିଆ ଆଦି ବିବିଧ ଫଳ ତାଙ୍କୁ ଶ୍ରଦ୍ଧାରେ ଉପହାର ଦେଉଥାନ୍ତି । କୌଣସି କୌଣସି ପୁରନାରୀ ପ୍ରକାଶ୍ୟ ରାଜପଥରେ ଠିଆ ହୋଇ ତାଙ୍କୁ ପଞ୍ଚପ୍ରଦୀପରେ ଆରତି କରିବାରେ ଲାଗିଲେ ଏବଂ ଦେବବିଗ୍ରହ ପରି ଶ୍ରଦ୍ଧା ଓ ଭକ୍ତି ସହକାରେ ପୁଷ୍ପ-ଚନ୍ଦନରେ ପୂଜା କଲେ । ଏହି ଅପୂର୍ବ ଅଭ୍ୟର୍ଥନା ମଧ୍ୟରେ ସର୍ବାପେକ୍ଷା ମଧୁର ଦୃଶ୍ୟ—ଜନୈକା ସମ୍ଭ୍ରାନ୍ତବଂଶୀୟା ବୃଦ୍ଧା ମହିଳା, କମ୍ପିତ ପଦରେ ଜନତାକୁ ଭେଦ କରି ଗାଡ଼ି ସାମନାରେ ଉପସ୍ଥିତ ହେଲେ । ସ୍ୱାମୀଜୀଙ୍କୁ ଦର୍ଶନ କରିବା ମାତ୍ରେ ସେ ଭାବରେ ଗଦଗଦ ହୋଇ ପଡ଼ିଲେ; ତାଙ୍କର ଦୁଇ ନୟନରୁ ଆନନ୍ଦାଶ୍ରୁ ନିର୍ଗତ ହେଲା; କାରଣ ତାଙ୍କର ସ୍ଥିର ବିଶ୍ୱାସ ଯେ ସ୍ୱାମୀଜୀ ସାକ୍ଷାତ୍ ଶିବ-ଅବତାର; ତେଣୁ ତାଙ୍କୁ ଦର୍ଶନ କଲେ ତାଙ୍କର ସମସ୍ତ ପାପ ଓ ସମସ୍ତ ମଳିନତା ଅନ୍ତର୍ହିତ ହୋଇଯିବ ଓ ଶେଷରେ ସେ ଶିବଲୋକ ପ୍ରାପ୍ତ ହେବେ, ଏଥିରେ ସନ୍ଦେହ ନାହିଁ । ଏହି ପବିତ୍ର ଦୃଶ୍ୟ ଦର୍ଶନ କରି ଉପସ୍ଥିତ ବ୍ୟକ୍ତିଗଣ ଭାବାନନ୍ଦରେ ବିଭୋର ହୋଇଗଲେ ।

ସ୍ୱାମୀଜୀଙ୍କର ମାନ୍ଦ୍ରାଜରେ ଶୁଭ ପଦାର୍ପଣ ଉପଲକ୍ଷେ ଯେଉଁ ଉତ୍ସାହୋଚ୍ଛ୍ୱାସ ପରିଲକ୍ଷିତ ହୋଇଥିଲା, ସେ ସମ୍ବନ୍ଧରେ ସୁବିଖ୍ୟାତ 'ହିନ୍ଦୁ' ପତ୍ରିକା ନିମ୍ନଲିଖିତ ମନ୍ତବ୍ୟ ପ୍ରକାଶ କରିଥିଲେ —

''ଅଦ୍ୟ ସ୍ୱାମୀ ବିବେକାନନ୍ଦଙ୍କୁ ରେଲଷ୍ଟେସନରେ ଅଭ୍ୟର୍ଥନା କରିବା ନିମିତ୍ତ ସମ୍ମିଳିତ ବିରାଟ ଜନତାର ଉତ୍ସାହୋଚ୍ଛ୍ୱାସ ଓ ଧର୍ମାନୁରାଗ ଅତିରଞ୍ଜିତ କରି ବର୍ଣ୍ଣନା କରିବା ଅସମ୍ଭବ । ମାନ୍ଦ୍ରାଜର ଶ୍ରେଷ୍ଠତମ ବ୍ୟକ୍ତିଗଣ ଉପସ୍ଥିତ ରହି ବିଶ୍ୱବିଖ୍ୟାତ ସନ୍ନ୍ୟାସୀଙ୍କୁ ଯେଉଁ ଗୌରବମୟ ଅଭ୍ୟର୍ଥନା ପ୍ରଦାନ କରିଛନ୍ତି, ସେଥିରେ ଏହି ମହାଦେଶର ଅନ୍ତର୍ନିହିତ ଧର୍ମଶକ୍ତି ସୁସ୍ପଷ୍ଟରୂପେ ଫୁଟି ଉଠିଛି । ଧର୍ମସଂସ୍କାରକଗଣ ଭାରତରେ ଚିରଦିନ ଏହିପରି ଅଭ୍ୟର୍ଥନା ପାଇ ଆସିଛନ୍ତି । ରକ୍ଷଣଶୀଳତା ହିନ୍ଦୁ ଜାତିଚରିତ୍ରର ବୈଶିଷ୍ଟ୍ୟ ନୁହେଁ; ବର୍ତ୍ତମାନ ଆଚାର-ବ୍ୟବହାରଗୁଡ଼ିକ ପରିବର୍ତ୍ତନ ଯେ ଅବାଞ୍ଛନୀୟ, ତାହା ନୁହେଁ; ଯଦି କୌଣସି ସୁପ୍ରତିଷ୍ଠିତ ପ୍ରଥା ଦୂର କରି ନୂତନ କୌଣସି ନିୟମ ପ୍ରବର୍ତ୍ତନ କରିବାକୁ ହୁଏ, ତାହା ହେଲେ ସ୍ୱାମୀ ବିବେକାନନ୍ଦଙ୍କ ପରି ବ୍ୟକ୍ତି କର୍ତ୍ତା ସ୍ଥାନରେ ରହି ଏହାର ସମାଧାନ କରିବା ଉଚିତ୍ । ଯେତେବେଳେ କୌଣସି ଧୀର-ହୃଦୟ, ପବିତ୍ର-ମାନସ, ପ୍ରକୃତ ସଂସ୍କାରକ ନିଷ୍କାମ ଓ ବ୍ୟକ୍ତିଗତ ଉଦ୍ଦେଶ୍ୟ ସାଧନ-ସ୍ପୃହା-ବିମୁକ୍ତ କଲ୍ୟାଣ କାମନା କରି ଦୃଢ଼ ପଦରେ ଦଣ୍ଡାୟମାନ ହୁଅନ୍ତି, ସେତେବେଳେ ଆଚାର-ନିୟମ ଶୂନ୍ୟରେ ମିଳାଇ ଯାଏ, ଚିରପୋଷିତ ଧାରଣା ଓ ଆଦର୍ଶ ଦୂରକୁ ନିକ୍ଷିପ୍ତ ହୁଏ ଏବଂ ପ୍ରତିଷ୍ଠିତ ରୀତିନୀତି ଓ ମତଗୁଡ଼ିକ ବିଲୀନ ହୋଇଯାଏ । ସ୍ୱାମୀଜୀଙ୍କ ପ୍ରଚାର କାର୍ଯ୍ୟରେ ସଫଳତାର ଏହା ହିଁ ଏକମାତ୍ର ରହସ୍ୟ । ସମୁଦ୍ର ପାର ହୋଇ ସେ ସୁଦୂର ବିଦେଶକୁ ବେଦାନ୍ତର ପତାକା ବହନ କରି ଯାଇଥିଲେ — ସେଥିପାଇଁ ଆମେ ଚିରାଚରିତ ପ୍ରଥାନୁସାରେ ତାଙ୍କୁ ସାଦର ଅଭ୍ୟର୍ଥନା କରୁଛୁ । ତାଙ୍କୁ ଆମ୍ଭମାନଙ୍କର ସହୃଦୟ ସାଦର ସମ୍ଭାଷଣ ସହିତ ଆମେ ବିଶ୍ୱାସ କରୁଛୁ ଯେ, ପାଶ୍ଚାତ୍ୟ ଦେଶରେ ତାଙ୍କର ଅବସ୍ଥାନ ଯେଭଳି ସେଠାକାର ଭ୍ରାତୃଗଣଙ୍କର କଲ୍ୟାଣ ସାଧନ କରିଛି, ସେହିପରି ଏ ଦେଶରେ ତାଙ୍କର ଅବସ୍ଥିତି ମଧ୍ୟ ଜନସାଧାରଣଙ୍କର ପ୍ରଭୂତ କଲ୍ୟାଣ ସାଧନ କରିବ ।''

ପରଦିନ ରବିବାରରେ ସ୍ୱାମୀଜୀଙ୍କୁ ପ୍ରଥାନୁସାରେ ଅଭ୍ୟର୍ଥନା ସମିତି ପକ୍ଷରୁ ଅଭିନନ୍ଦନ-ପତ୍ର ଦିଆହେଲା । ଖେତଡ଼ିର ମହାରାଜାଙ୍କଦ୍ୱାରା ପ୍ରେରିତ ଅଭିନନ୍ଦନ ପତ୍ରଖଣ୍ଡିକ ପ୍ରଦତ୍ତ ହେବା ପରେ କ୍ରମେ ବିଭିନ୍ନ ସମ୍ପ୍ରଦାୟ, ସଭା ଓ ସମିତି ପକ୍ଷରୁ ସଂସ୍କୃତ, ଇଂରେଜୀ, ତାମିଲ୍, ତେଲଗୁ ପ୍ରଭୃତି ଭାଷାରେ ପ୍ରାୟ କୋଡ଼ିଏ ଖଣ୍ଡ ଅଭିନନ୍ଦନ-ପତ୍ର ପଠିତ ହେଲା । ସଭାସ୍ଥଳରେ ଦଶ ସହସ୍ରାଧିକ ବ୍ୟକ୍ତି ସମବେତ ହୋଇଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ହଲ ମଧ୍ୟରେ ସ୍ଥାନ ନ ପାଇ ବାହାରେ ଅପେକ୍ଷା କରିଥିଲେ, ତେଣୁ ସାଧାରଣ ଲୋକଙ୍କ ଅନୁରୋଧ କ୍ରମେ ସ୍ୱାମୀଜୀ ବାହାରକୁ ଯାଇ ଗୋଟିଏ ଗାଡ଼ି ଉପରେ ବସିଲେ । ଈଶ୍ୱରଙ୍କ ଇଚ୍ଛାରୁ ସ୍ୱାମୀଜୀ ଯଦିବା ଗୀତା ସମ୍ବନ୍ଧରେ ବକ୍ତୃତା କରିବାର ସୁବିଧା ପାଇ

ଆନନ୍ଦିତ ହୋଇଥିଲେ, ଶ୍ରୋତୃମଣ୍ଡଳୀର ଉତ୍ସାହୋଚ୍ଛ୍ୱାସ ଓ ହର୍ଷକୋଳାହଳ ଯୋଗୁଁ ରୀତିମତ ବକ୍ତୃତା କରିବା ଅସମ୍ଭବ ହୋଇଗଲା । ଅଗତ୍ୟା ସ୍ୱାମୀଜୀ ବକ୍ତୃତା ଦେବା ବନ୍ଦ କଲେ । କେବଳ ଉପସଂହାର କରି କହିଲେ, ଜନତାର ଏହି ଅକୃତ୍ରିମ ଉତ୍ସାହ ଦେଖି ସେ ଆନନ୍ଦିତ ହୋଇଛନ୍ତି ସତ; ତେବେ ଏହି ଉତ୍ସାହକୁ ସ୍ଥାୟୀ କରିବା ଉଚିତ୍ । ଭବିଷ୍ୟତରେ ସ୍ୱଦେଶ ପାଇଁ ଅନେକ ବଡ଼ ବଡ଼ କାର୍ଯ୍ୟରେ ଏହି ପ୍ରକାର ପ୍ରଜ୍ୱଳିତ ଉତ୍ସାହ-ଅଗ୍ନି ପ୍ରୟୋଜନ ହେବ ।

ପରଦିନ ମାନ୍ଦ୍ରାଜ ଭିକ୍ଟୋରିଆ ହଲରେ ପାଞ୍ଚହଜାର ଶ୍ରୋତାଙ୍କ ସମ୍ମୁଖରେ ସ୍ୱାମୀଜୀ 'ଆମ ସମରନୀତି' ନାମକ ସୁପ୍ରସିଦ୍ଧ ବକ୍ତୃତା ପ୍ରଦାନ କଲେ । ଏହା ପରେ କ୍ରମେ କ୍ରମେ 'ଭାରତୀୟ ଜୀବନରେ ବେଦାନ୍ତ ପ୍ରୟୋଗ' , 'ଭାରତୀୟ ମହାପୁରୁଷଗଣ,' 'ଆମ୍ଭମାନଙ୍କ ଉପସ୍ଥିତ କର୍ତ୍ତବ୍ୟ' ଓ 'ଭାରତର ଭବିଷ୍ୟତ' ଶୀର୍ଷକ ଚାରିଗୋଟି ବକ୍ତୃତା ପ୍ରଦାନ କରିଥିଲେ । ସ୍ୱାମୀଜୀ ମାନ୍ଦ୍ରାଜରେ ଶିଷ୍ୟ ଓ ଭକ୍ତମଣ୍ଡଳୀଙ୍କ ସହିତ ନଅ ଦିନ କଟାଇଥିଲେ । ଏହି ସମୟରେ ଦିନେ ଜଣେ ମହାପଣ୍ଡିତ ସ୍ୱାମୀଜୀଙ୍କ ସହିତ ବେଦାନ୍ତ ଆଲୋଚନା କରିବାକୁ ଆସିଲେ । ସେ ସ୍ୱାମୀଜୀଙ୍କ ବକ୍ତବ୍ୟ ଶ୍ରବଣ କରି କହିଲେ, ''ସ୍ୱାମୀଜୀ ! ବେଦାନ୍ତର ଅଦ୍ୱୈତବାଦ, ବିଶିଷ୍ଟ ଅଦ୍ୱୈତବାଦ, ଦ୍ୱୈତବାଦ ଇତ୍ୟାଦି ଇତ୍ୟାଦି ସମସ୍ତପ୍ରକାର ମତବାଦ ହିଁ ସତ୍ୟ ଏବଂ ଚରମ ଉପଲବ୍ଧି-ପଥରେ ଭିନ୍ନ ଭିନ୍ନ ସୋପାନ ମାତ୍ର—ଏ କଥା ତ ପୂର୍ବାଚାର୍ଯ୍ୟଗଣଙ୍କ ମଧ୍ୟରୁ କେହି କହି ନାହାନ୍ତି ।'' ଆଚାର୍ଯ୍ୟଦେବ ଅଳ୍ପ ହସି କହିଲେ, ''ଏହା ମୋ ପାଇଁ ବାକି ଥିଲା । ସେହି ହେତୁ ମୁଁ ଜନ୍ମଗ୍ରହଣ କରିଛି ।''

ଆଚାର୍ଯ୍ୟଦେବ ଯେତେବେଳେ ପାଶ୍ଚାତ୍ୟ ଦେଶରେ ଧର୍ମପ୍ରଚାର କାର୍ଯ୍ୟରେ ନିଯୁକ୍ତ ଥିଲେ, ସେତେବେଳେ ବୀରହୃଦୟ ମାନ୍ଦ୍ରାଜୀ ଯୁବକବୃନ୍ଦ ନାନାପ୍ରକାର ନିନ୍ଦା, ଶ୍ଳେଷ ଓ ବ୍ୟଙ୍ଗୋକ୍ତିରେ ଅବିଚଳିତ ରହି ଶ୍ରୀଗୁରୁଙ୍କ ପ୍ରଦର୍ଶିତ ପଥ ଅବଲମ୍ବନ କରି ବେଦାନ୍ତ-ପ୍ରଚାର କାର୍ଯ୍ୟରେ ଆତ୍ମୋତ୍ସର୍ଗ କରିଥିଲେ । ଧନ୍ୟ ଏହି ସାହସୀ, ଅକପଟ ଓ ପବିତ୍ରହୃଦୟ ଯୁବକବୃନ୍ଦ, ଯେଉଁମାନେ ଭସ୍ମାଚ୍ଛାଦିତ ବହ୍ନିସ୍ୱରୂପ ସ୍ୱାମୀଜୀଙ୍କୁ ସର୍ବପ୍ରଥମ ଜଗଦ୍‌ଗୁରୁ ରୂପେ ଚିହ୍ନି ପାରିଥିଲେ ! ଚାରିବର୍ଷ ପରେ ସେମାନଙ୍କ ଜଗଦାରାଧ୍ୟ ଗୁରୁଦେବଙ୍କ ସ୍ୱଦେଶ ପ୍ରତ୍ୟାଗମନ ଉପଲକ୍ଷେ ମାନ୍ଦ୍ରାଜ ନଗରୀ ଯେ ନଅଦିନବ୍ୟାପୀ ବିରାଟ ମହୋତ୍ସବ ଆୟୋଜନ କରିଥିଲା, ଏହା ଦେଖି ସେମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେମାନେ ସ୍ଥାୟୀ ରୂପେ ମାନ୍ଦ୍ରାଜରେ ଗୋଟିଏ ପ୍ରଚାର-କେନ୍ଦ୍ର ସ୍ଥାପନ ନିମିତ୍ତ ବ୍ୟଗ୍ର ହୋଇ ଉଠିଲେ । ମାନ୍ଦ୍ରାଜର ଗଣ୍ୟମାନ୍ୟ ବ୍ୟକ୍ତିବର୍ଗ ଓ ଜନସାଧାରଣ ଆଗ୍ରହର ସହିତ ଏ ପ୍ରସ୍ତାବ ଅନୁମୋଦନ କରିବାରୁ ସେମାନେ ସ୍ୱାମୀଜୀଙ୍କ ନିକଟରେ ଉକ୍ତ ପ୍ରାର୍ଥନା ଜଣାଇଲେ ଏବଂ ଏହି ପ୍ରଚାର-କେନ୍ଦ୍ର ଗଠନ ଲାଗି ତାଙ୍କୁ ମାନ୍ଦ୍ରାଜରେ କେତେଦିନ ଅବସ୍ଥାନ କରିବା ନିମିତ୍ତ ଅନୁରୋଧ କଲେ । ସ୍ୱାମୀଜୀ ପ୍ରଚାର-କେନ୍ଦ୍ର ପ୍ରତିଷ୍ଠା ସଂକଳ୍ପ ଆନନ୍ଦରେ ଅନୁମୋଦନ କଲେ ଏବଂ ସତ୍ୱର ସେ ଜଣେ ସୁଯୋଗ୍ୟ ଗୁରୁଭାଇଙ୍କୁ

ମାନ୍ଦ୍ରାଜ ପଠାଇବେ ବୋଲି ପ୍ରତିଶ୍ରୁତି ଦେଲେ । ତଦନୁସାରେ କେତେଦିନ ପରେ ସ୍ୱାମୀ ରାମକୃଷ୍ଣାନନ୍ଦ ଆସି ମାନ୍ଦ୍ରାଜରେ କାର୍ଯ୍ୟଭାର ଗ୍ରହଣ କଲେ ।

ଏ ଦିଗରେ କଲିକତାରୁ ସାଗ୍ରହ ଆହ୍ୱାନ ଆସିବାକୁ ଲାଗିଲା । ବିଶେଷରେ ଶ୍ରୀଶ୍ରୀରାମକୃଷ୍ଣଦେବଙ୍କ ଜନ୍ମୋତ୍ସବ ନିକଟବର୍ତ୍ତୀ ଥିଲା ବୋଲି ଗୁରୁଗତପ୍ରାଣ ଶିଷ୍ୟମଣ୍ଡଳୀ ଓ ସ୍ୱାମୀଜୀଙ୍କ ବନ୍ଧୁଗଣ ଦୁଃଖର ସହିତ ତାଙ୍କୁ ବିଦାୟ ଦେବାକୁ ବାଧ୍ୟ ହେଲେ ।

## ସ୍ୱାମୀଜୀ ଓ ସମାଜ–ସଂସ୍କାର

ଏଥିପୂର୍ବରୁ ସୁଦୀର୍ଘ ସାତବର୍ଷ କାଳ ପଦବ୍ରଜରେ ସମଗ୍ର ଭାରତବର୍ଷ ଭ୍ରମଣ କରି ସେ ପୁଙ୍ଖାନୁପୁଙ୍ଖରୂପେ ଦେଶର ପ୍ରକୃତ ଅବସ୍ଥା ପର୍ଯ୍ୟବେକ୍ଷଣ କରିଥିଲେ । ସେ ଦେଖିଥିଲେ, ଦୁର୍ବଳତା ଓ ଜଡ଼ତ୍ୱ, ତାଙ୍କ ସଙ୍ଗୀସ୍ୱରୂପ ସ୍ୱାର୍ଥପରତା, ନିରାଶା ଓ ସଂକୀର୍ଣ୍ଣତା ସହ ଭାରତର ଚାରିଆଡ଼େ ବ୍ୟାପି ଯାଇଛି । ଆତ୍ମବିସ୍ମୃତ କୋଟି କୋଟି ଦେବ ଓ ଋଷିଙ୍କ ବଂଶଧରମାନେ ଦୃଢ଼ତା ଓ ଆତ୍ମନିର୍ଭରତା ହରାଇ ବସିଛନ୍ତି । ଶିଶୁଙ୍କ ପରି ବିଚାର–ବୁଦ୍ଧିରହିତ ହୋଇ ଅନ୍ୟମାନେ ଭଲ ବୋଲି କହିଥିବା ଦ୍ରବ୍ୟମାତ୍ରକେ ଆଗ୍ରହ ସହକାରେ ଗିଳି ପକାଉଛନ୍ତି । ପାଶ୍ଚାତ୍ୟର ଜଡ଼ବିଜ୍ଞାନ ଓ ସଂଶୟବାଦୀ ଦର୍ଶନଶାସ୍ତ୍ରସମୂହର ଆପାତ–ମନୋରମ ଚାକଚକ୍ୟ ନିକଟରେ ଧର୍ମ କ୍ଷୀଣପ୍ରଭ, ଦିବ୍ୟଜ୍ଞାନପ୍ରଦ ଆଧ୍ୟାତ୍ମିକ ଓ ତତ୍ତ୍ୱସମନ୍ୱିତ ପ୍ରାଚୀନ ଶାସ୍ତ୍ରସମୂହ ଇଂରେଜୀଶିକ୍ଷିତ ଅଧିକାଂଶ ଲୋକଙ୍କ ନିକଟରେ ଆବର୍ଜନାରାଶି ରୂପେ ଉପେକ୍ଷିତ; ଅନ୍ୟ ଦିଗରେ ସଂକୀର୍ଣ୍ଣ କୁସଂସ୍କାର, ପଲ୍ଲବଗ୍ରାହୀତା, ଈର୍ଷା ହେୟଭାବ ତର୍କବିତର୍କ — ଏହା ହିଁ ଅଧିକାଂଶ ସମ୍ଭ୍ରକଧର୍ମୀ ବ୍ରାହ୍ମଣ ପଣ୍ଡିତମଣ୍ଡଳୀ ଅସ୍ଥିମଜ୍ଜାଗତ ହୋଇଯାଇଛି । ସନାତନ ଧର୍ମ ପରସ୍ପର ବିବାଦରତ ବିଭିନ୍ନ ସମ୍ପ୍ରଦାୟରେ ବିଭକ୍ତ । ନିମ୍ନଜାତି ନିର୍ଯାତିତ, ପତିତ, ଉପେକ୍ଷିତ, ଦରିଦ୍ର ଓ ପଦାନତ । ଅଦୂରଦର୍ଶୀ ଅଶିକ୍ଷିତ ବା କୁଶିକ୍ଷିତ ବେଦ–ବିଦ୍ୟାହୀନ ସ୍ୱଧର୍ମବିଦ୍ୱେଷୀ ସଂସ୍କାରକଦଳମାନଙ୍କ ଅଗ୍ନିମୟ ଅଭିଶାପ ବର୍ଷଣରେ ସଂତ୍ରସ୍ତା ଓ ଭୀତା ଭାରତମାତାଙ୍କ ବକ୍ଷରେ ଅସଂଖ୍ୟ ଦୀର୍ଘଦେହ ଶିଶୁ । ଦେଶ 'ସତ୍ତ୍ୱଗୁଣର ଦୁଆଧରି ତମ–ସମୁଦ୍ରରେ ଧୀରେ ଧୀରେ ବୁଡ଼ିଯାଉଛି ।' ଦେଶାଚାର ଓ ଲୋକାଚାର ସୁଦୃଢ଼ ପ୍ରାଚୀର ପରି ସତ୍ୟ, ଜ୍ଞାନ ଓ ଧର୍ମର ପୂତ ପ୍ରବାହିନୀର ପଥ ରୋଧ କରି ଦଣ୍ଡାୟମାନ । ଚକ୍ଷୁଷ୍ମାନ୍ ଅନ୍ଧ ସଂସ୍କାରକଗଣ ନାନାସ୍ଥାନରୁ ସଂଗୃହୀତ ଜୋଡ଼ାତାଳି ଦେଇ ଗୋଟିଏ ଆଦର୍ଶ ଠିଆ କରି ଅତୀତକୁ ଭାଙ୍ଗି ନବୀନ ଭାରତ ଗଠନ କରିବାକୁ ଯତ୍ନବାନ୍ ।

ବିଗତ ଶତାବ୍ଦୀର ଏହି ସଂସ୍କାରକଗଣ ଓ ସେମାନଙ୍କ ପରବର୍ତ୍ତୀ ସଂସ୍କାରକମାନଙ୍କ କାର୍ଯ୍ୟ ଫଳରେ କ୍ରମ–ଅବନତି ଭିନ୍ନ ଆଚାର୍ଯ୍ୟଦେବ କୌଣସି ପ୍ରକାର ଉନ୍ନତି ଦେଖିପାରିଲେ ନାହିଁ । ଏମାନେ ଯେ କେତେଗୁଡ଼ିଏ ସାମାଜିକ ପ୍ରଥାକୁ ତୀବ୍ରଭାବରେ ଆକ୍ରମଣ କରିଛନ୍ତି ଓ କରୁଛନ୍ତି, ତାହାର କାରଣ ଏହିସବୁ

ପ୍ରଥାଗୁଡ଼ିକ ଇଉରୋପୀୟ ସମାଜର ମତବିରୁଦ୍ଧ । କେବଳ ମାତ୍ର ପରାନୁକରଣ ସାହାଯ୍ୟରେ ଯେଉଁମାନେ ପ୍ରାଚୀନ ସଂସ୍କାରଦ୍ୱାରା ନିୟନ୍ତ୍ରିତ ତିରିଶି କୋଟି ଲୋକଙ୍କୁ ସ୍ୱକପୋଳକଳ୍ପିତ ମତବାଦ ଗ୍ରହଣ କରିବା ନିମିତ୍ତ ଚିତ୍କାର ଓ ଅଭିଶାପ ବର୍ଷଣ କରିଛନ୍ତି, ଗଭୀର କ୍ଷୋଭର ସହିତ ଅଥଚ ଦୃଢ଼ ଭାବରେ ତାହାର ପ୍ରତିବାଦ କରିବାରେ ଆଚାର୍ଯ୍ୟଦେବ କେବେ ହେଲେ ପଶ୍ଚାତ୍‌ପଦ ହୋଇନାହାନ୍ତି । ପାଶ୍ଚାତ୍ୟ ସଭ୍ୟତା ସହିତ ସଂଘର୍ଷ ଯୋଗୁଁ ଊନବିଂଶ ଶତାବ୍ଦୀ ଆରମ୍ଭରୁ ଏହି ଦେଶରେ ଯେଉଁ ଚାଞ୍ଚଲ୍ୟ ପରିଲକ୍ଷିତ ହୋଇଥିଲା, ତାହାର ଫଳସ୍ୱରୂପ ବିଗତ ଶତାବ୍ଦୀରେ ଦୁଇଚାରିଜଣ ପ୍ରତିଭାଶାଳୀ ଓ ଉଦାରହୃଦୟ ସଂସ୍କାରକ ପ୍ରାଚୀନ ସମାଜ ପ୍ରତି ବିଦ୍ରୋହ ଘୋଷଣା କରିଥିଲେ; କିନ୍ତୁ ଦୁଃଖର ବିଷୟ, ସେମାନଙ୍କର ପ୍ରତ୍ୟେକ ଚେଷ୍ଟା ଓ ସଂସ୍କାର ପାଶ୍ଚାତ୍ୟ କାର୍ଯ୍ୟପ୍ରଣାଳୀର ବିଚାରଶୂନ୍ୟ ଅନୁକରଣ ମାତ୍ର । ସେହି ହେତୁ ସ୍ୱାମୀ ବିବେକାନନ୍ଦଙ୍କ ମତରେ ଏହି ସଂସ୍କାରଯୁଗର—

(୧) ଐତିହାସିକ ବୋଧ ନ ଥିଲା । କେତେ ବଡ଼ ପ୍ରାଚୀନ ସଭ୍ୟତାର ବଂଶଧର ଏହି ଜାତି କେତେ କେତେ ସଂସ୍କାର ମଧ୍ୟ ଦେଇ ଯୁଗେ ଯୁଗେ କେତେ କେତେ ମହାପୁରୁଷଙ୍କୁ ବକ୍ଷରେ ଧାରଣ କରି ଆଜି ଏଠାରେ ଉପସ୍ଥିତ ହୋଇଛି । ଏ ଜାତିର ବର୍ତ୍ତମାନ ଓ ଭବିଷ୍ୟତ ଯେ ଏହାର ଅତୀତ ଇତିହାସଦ୍ୱାରା ପ୍ରଭୂତରୂପେ ନିୟନ୍ତ୍ରିତ ହେବ, ଏହା ସଂସ୍କାରଯୁଗ ଆଦୌ ବୁଝିପାରି ନାହିଁ ।

(୨) ଜାତୀୟ ବିଶେଷତ୍ୱବୋଧର ଅଭାବ । ସଂସ୍କାରଯୁଗ ଏକଥା ଚିନ୍ତା କରି ନାହିଁ ଯେ, ପ୍ରତ୍ୟେକ ଜାତିର ଗୋଟିଏ ବିଶେଷତ୍ୱ ଅଛି, ସ୍ୱାତନ୍ତ୍ର୍ୟ ଅଛି; ଏଇଥି ନିମିତ୍ତ ସେ ବଞ୍ଚି ରହିବାକୁ ଦାବି କରିପାରେ ଓ ଏହାର ଅଭାବରେ ତାହାର ବିଲୋପ ବା ମୃତ୍ୟୁ ଅନିବାର୍ଯ୍ୟ । ହିନ୍ଦୁଜାତିର ବିଶେଷତ୍ୱ କ'ଣ, ତାହା ସେମାନେ ବୁଝି ନାହାନ୍ତି ବା ସେ ବିଷୟରେ ଆତ୍ମରକ୍ଷା କରିବା ଲାଗି ଚେଷ୍ଟା କରି ନାହାନ୍ତି । କାରଣ ନିଜ ଦେଶ ବା ନିଜ ଜାତି ବୋଲି ସାର୍ଥକ ଅଭିମାନ ମଧ୍ୟ ସଂସ୍କାରଯୁଗର ନ ଥିଲା ବୋଲି—

(୩) ସଂସ୍କାରକ ସମ୍ପ୍ରଦାୟର ଅନ୍ୟତମ ନେତା ପ୍ରକାଶ୍ୟ ସଭାରେ "ମୁଁ ହିନ୍ଦୁ ନୁହେଁ, ଏ କଥା ସ୍ୱୀକାର କରିବାକୁ ପ୍ରସ୍ତୁତ ଅଛି" ବୋଲି କହିବାକୁ ତିଳେ ହେଲେ ଲଜ୍ଜିତ ହୋଇ ନାହାନ୍ତି । ଏହି ସଂସ୍କାର-ଯୁଗରେ ଯେପରି କି ଏକମାତ୍ର ଉଦ୍ଦେଶ୍ୟ ଥିଲା ଯେ, ଯାହା କିଛି ହିନ୍ଦୁତ୍ୱ, ତାହା ଘୃଣ୍ୟ ଓ ପରିତ୍ୟଜ୍ୟ ।

ଏହି ସଂସ୍କାର-ଯୁଗର ଶୋଚନୀୟ ଇତିହାସ ପର୍ଯ୍ୟାଲୋଚନା କରି ଆଚାର୍ଯ୍ୟଦେବ ପ୍ରତିକ୍ରିୟାମୂଳକ ସମନ୍ୱୟ-ଯୁଗର ସୂଚନା ଦେଇ ଯାଇଛନ୍ତି । ସେ ବୁଝିଥିଲେ, ସମାଲୋଚନା ଯଥେଷ୍ଟ ହୋଇଛି, ଦୋଷଦର୍ଶନ ଓ ଅଭିଶାପବର୍ଷଣ ମଧ୍ୟ ଯଥେଷ୍ଟ ହୋଇଛି । ଏହିକ୍ଷଣି ନବଗଠନର ସମୟ ଆସିଛି । ନବଯୁଗର ପ୍ରାରମ୍ଭରେ ଆମମାନଙ୍କର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ହେଉଛି, ଜାତିର ବିକ୍ଷିପ୍ତ ଶକ୍ତିକୁ ଗୋଟିଏ କେନ୍ଦ୍ରରେ ପୁଞ୍ଜୀଭୂତ କରି ସେହି ସମଷ୍ଟିଗତ ଶକ୍ତି ସହାୟତାରେ

ଶତ ଶତ ଶତାବ୍ଦୀ ଧରି ଅବରୁଦ୍ଧ ହୋଇ ରହିଥିବା ଜାତୀୟ ଗତିକୁ ସମ୍ମୁଖକୁ ଅଗ୍ରସର କରାଇ ନେବା । ସେଥିପାଇଁ ସେ କୌଣସି ପ୍ରକାର ସାମୟିକ ସଂସ୍କାର ଉପରେ ଆସ୍ଥା ସ୍ଥାପନ କରି ନାହାନ୍ତି ଅଥବା କେତେଗୁଡ଼ିଏ ସାମାଜିକ ଆଚାର ବ୍ୟବହାରକୁ ଜୋର୍ କରି ଉଠାଇ ଦେଲେ ଜାତୀୟ ଉନ୍ନତି ହେବ ବୋଲି ସେ ବିଶ୍ୱାସ କରି ନାହାନ୍ତି; ଏପରି କି ନାସ୍ତିକ ଭାବପୂର୍ଣ୍ଣ ଯେ କୌଣସି ସଂସ୍କାର ଚେଷ୍ଟା ହିଁ ତାଙ୍କ ନିକଟରେ ଅନଧିକାର ଚର୍ଚ୍ଚା ବୋଲି ବିବେଚିତ ହେଉଥିଲା । ସେ ଧ୍ୱଂସମୂଳକ ସଂସ୍କାରନୀତି ଅପେକ୍ଷା ସଙ୍ଗଠନମୂଳକ ସ୍ୱାଭାବିକ ଉନ୍ନତିରେ ଅଧିକତର ବିଶ୍ୱାସୀ ଥିଲେ ।

ସମାଜକୁ ଆଚାର୍ଯ୍ୟଦେବ ଅଖଣ୍ଡ ଭାବରେ ଗ୍ରହଣ କରୁଥିଲେ, ସମଷ୍ଟି ବୋଲି ବିଚାର କରୁଥିଲେ । ଖଣ୍ଡ ଖଣ୍ଡ କରି କୌଣସି ବିଶେଷ ପ୍ରଥାକୁ ଉଠାଇ ଦେବା ଲାଗି ବିଗତ ଶତାବ୍ଦୀର ବ୍ୟର୍ଥ ଚେଷ୍ଟାର ନିଷ୍ଫଳ ପୁନରାଭିନୟରେ ଶକ୍ତିକ୍ଷୟ ନ କରି ସେ ଚାହିଁଥିଲେ, ଜାତିର ସମସ୍ତ ଅଙ୍ଗରେ ସ୍ୱାଭାବିକ ସ୍ୱାସ୍ଥ୍ୟ ଫେରାଇ ଆଣିବା ଲାଗି । ଜୀବଦେହରେ ଯୌବନ ଆସିଲେ ଯେପରି ତାହାର ସକଳ ଅଙ୍ଗ ପୁଷ୍ଟ ଓ ବିକଶିତ ହୋଇଯାଏ, ସେହିପରି ଜାତି ଯଦି ସୁସ୍ଥ ସବଳ ଓ କ୍ରିୟାଶୀଳ ହୁଏ, ତାହାହେଲେ ଯେଉଁଠାରେ ଯେଉଁ ସଂସ୍କାର ଆବଶ୍ୟକ, ତାହା ନିଜେ ନିଜେ ସୁସମ୍ପନ୍ନ ହୋଇଯିବ । ଏହି କାରଣରୁ ସେ କହିଛନ୍ତି, ''ମୁଁ ସଂସ୍କାରରେ ବିଶ୍ୱାସୀ ନୁହେଁ, ସ୍ୱାଭାବିକ ଉନ୍ନତିରେ ବିଶ୍ୱାସୀ ।''

ସାମାଜିକ ବ୍ୟାଧିଗୁଡ଼ିକ ପ୍ରତି ସେ ଉଦାସୀନ ନ ଥିଲେ; ବରଂ ଆଶୁ ପ୍ରତିକାର ଏକାନ୍ତ ଆବଶ୍ୟକ ବୋଲି ସଂସ୍କାରକଗଣଙ୍କୁ ପଚାରୁଥିଲେ— ସଂସ୍କାରପ୍ରାର୍ଥୀ ଲୋକେ କାହାନ୍ତି ? ଆଗେ ସେମାନଙ୍କୁ ଗଠନ କର ! ବିଗତ ଶତାବ୍ଦୀର ସଂସ୍କାର ଆନ୍ଦୋଳନ ଉଚ୍ଚଶ୍ରେଣୀର କେତେଜଣ ଇଂରାଜୀ ଶିକ୍ଷିତ ବ୍ୟକ୍ତିଙ୍କ ବ୍ୟତୀତ କୋଟି କୋଟି ଲୋକଙ୍କ ହୃଦୟକୁ ସ୍ପର୍ଶ କରିପାରି ନ ଥିଲା; ତେଣୁ ଲୋକଶିକ୍ଷା ହିଁ ସଂସ୍କାରକମାନଙ୍କ ପ୍ରଥମ କର୍ତ୍ତବ୍ୟ ବୋଲି ସେ ଉଲ୍ଲେଖ କରିଥିଲେ । ହିନ୍ଦୁ ବିଶ୍ୱବିଦ୍ୟାଳୟ ବା ଜାତୀୟ ଶିକ୍ଷା ପରିଷଦ ଇତ୍ୟାଦିର କଳ୍ପନା ମଧ୍ୟ ଯେତେବେଳେ କେହି କରିପାରି ନ ଥିଲେ, ସେତେବେଳେ ସ୍ୱାମୀ ବିବେକାନନ୍ଦ ଭାରତବାସୀଙ୍କୁ ପୁନଃ ପୁନଃ କହିଛନ୍ତି, ବର୍ତ୍ତମାନ ନାସ୍ତିକ ଭାବପୂର୍ଣ୍ଣ ଶିକ୍ଷାରେ ଆମ ଜାତୀୟ-ଜୀବନର ମେରୁଦଣ୍ଡ ଭାଙ୍ଗିଯାଇଛି; ସୁତରାଂ ଆମର ଆଦର୍ଶ ହେବା ଉଚିତ୍ ଯେ, ଆଧ୍ୟାତ୍ମିକ ଓ ଲୌକିକ ସର୍ବପ୍ରକାର ଶିକ୍ଷାର ଭାର ସ୍ୱହସ୍ତରେ ନେଇ ଯେତେଦୂର ସମ୍ଭବ, ଜାତୀୟ ଭାବରେ ଏହି ଶିକ୍ଷାଦାନ ଆମମାନଙ୍କୁ କରିବାକୁ ହେବ । ସେହିହେତୁ ତାଙ୍କ ସଂକଳ୍ପ ଥିଲା ଯେ—

(୧) ଆମମାନଙ୍କ ଜାତୀୟ ଅବନତିର ଦୁଇ-ତୃତୀୟାଂଶ କାରଣ ହେଉଛି, ଶାରୀରିକ ଦୁର୍ବଳତା । ଦୁର୍ବଳ ଶରୀରର ନିସ୍ତେଜ ମସ୍ତିଷ୍କ ଉପନିଷଦ ଓ ଗୀତାର

ବୀର୍ଯ୍ୟପ୍ରଦ ପ୍ରାଣପ୍ରଦ ଉପଦେଶ ଓ ଶିକ୍ଷା ଧାରଣ ଲାଗି ଏକାନ୍ତ ଅନୁପଯୁକ୍ତ; ଅତଏବ ପ୍ରଥମେ ଜାତିକୁ ସୁସ୍ଥ ଓ ସବଳ କରି ଗଠନ କରିବାକୁ ହେବ ।

(୨) ପ୍ରାଚୀନ କାଳରେ ବ୍ରାହ୍ମଣମାନେ ସଂସ୍କାରର ବିଧି ନିର୍ଦ୍ଦେଶ କରି ଦେଉଥିଲେ, କ୍ଷତ୍ରିୟମାନେ ରାଜଶକ୍ତି ପ୍ରଭାବଦ୍ୱାରା ତାହା ଜନସମାଜରେ ପ୍ରଚଳିତ କରୁଥିଲେ । ବର୍ତ୍ତମାନ ଏହି ଉଭୟ ଶକ୍ତି ଲୁପ୍ତ ପ୍ରାୟ; ସୁତରାଂ ଏବେ କୌଣସି ସ୍ଥାୟୀ ସଂସ୍କାର ଜନସମାଜରେ ପ୍ରଚଳନ କରିବା ଆଗରୁ ଏପରି ଗୋଟିଏ ଶକ୍ତିର ଉଦ୍‌ବୋଧନ କରିବାକୁ ହେବ, ଯାହା ସେହି ସଂସ୍କାରକୁ ଧାରଣ କରି ଚାଳନ କରି ପାରିବ । ସେହି ଉଦ୍ଦେଶ୍ୟରେ—

(୩) ସମଗ୍ର ଭାରତରେ କେତେଗୋଟି ଶିକ୍ଷାନୁଷ୍ଠାନ ସ୍ଥାପନ କରିବାକୁ ହେବ । କେତେଗୁଡ଼ିଏ ବୀର୍ଯ୍ୟବାନ, ସମ୍ପୂର୍ଣ୍ଣ ଅକପଟ, ତେଜସ୍ୱୀ ଓ ବିଶ୍ୱାସୀ ଯୁବକଙ୍କୁ ଆଚାର୍ଯ୍ୟ, ପ୍ରଚାରକ ଓ ଲୌକିକ ବିଦ୍ୟା ଶିକ୍ଷାଦାତାରୂପେ ତିଆରି କରିବାକୁ ପଡ଼ିବ । ସେମାନଙ୍କ ଶିକ୍ଷା ସମ୍ପୂର୍ଣ୍ଣ ହେଲେ, ସେମାନେ ପ୍ରତି ଗ୍ରାମ ଓ ନଗରକୁ ଯାଇ ଜାତିକୁ ଶିକ୍ଷା ପ୍ରଦାନ କରିବେ । ଏମାନେ ବର୍ଣ୍ଣାଶ୍ରମ ଧର୍ମର ଗୂଢ଼ ଅଭିପ୍ରାୟ ପ୍ରତି ବିଶେଷ ଲକ୍ଷ୍ୟ ରଖିବେ । ଗୋଟିଏ ଦିଗରେ ବ୍ରାହ୍ମଣ, ଅନ୍ୟ ଦିଗରେ ଚଣ୍ଡାଳ ଆଉ ଏହି ଚଣ୍ଡାଳଙ୍କୁ କ୍ରମଶଃ ବ୍ରାହ୍ମଣତ୍ୱରେ ଉନ୍ନୟନ ହିଁ ସେମାନଙ୍କ କାର୍ଯ୍ୟ ପ୍ରଣାଳୀ । ଏହି କାର୍ଯ୍ୟରେ ବର୍ତ୍ତମାନ ଜାତିଭେଦ ପ୍ରଥାର ଦୋଷଗୁଡ଼ିକୁ ପ୍ରତ୍ୟକ୍ଷ ଭାବେ ଆକ୍ରମଣ ନ କରି ଯେଉଁ ଶିକ୍ଷା ଯୋଗୁଁ ଉଚ୍ଚବର୍ଣ୍ଣର ଲୋକଙ୍କ ତେଜ ଓ ଗୌରବ, ସେହି ଶିକ୍ଷାକୁ ଯେପରି ନିମ୍ନଜାତିର ଲୋକେ ଅବାଧରେ ଲାଭ କରିପାରିବେ, ତାହାର ସୁବନ୍ଦୋବସ୍ତ କରିବାକୁ ହେବ ।

(୪) ଏଥିପାଇଁ ସର୍ବପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ହେଉଛି, ଭାରତର ଜାତୀୟ-ଜୀବନର ମେରୁଦଣ୍ଡ-ସ୍ୱରୂପ ଧର୍ମ, ଯାହା କି ବିଭିନ୍ନ ପ୍ରକାର ମତବୈଚିତ୍ର୍ୟର ପ୍ରସାରତା ହେତୁ ଛୋଟ ବଡ଼ ନାନା ସମ୍ପ୍ରଦାୟରେ ବିଭକ୍ତ ହୋଇ ଯାଇଛି, ତାହାର ସମନ୍ୱୟ ସାଧନ ।

(୪-କ) ଏହି ସମନ୍ୱୟ ସାଧନ ନିମିତ୍ତ ଭଗବାନ ଶ୍ରୀରାମକୃଷ୍ଣଙ୍କ ଚରିତ୍ରକୁ ଆଦର୍ଶରୂପେ ଗ୍ରହଣ କରିବାକୁ ହେବ । ବିଭିନ୍ନ ପ୍ରକାର ମତ-ବୈଚିତ୍ର୍ୟକୁ ଅସ୍ୱୀକାର କରି ନୁହେଁ— ପରନ୍ତୁ ପୂର୍ଣ୍ଣଭାବରେ ଗ୍ରହଣ କରି ସାର୍ବଭୌମିକ ଧର୍ମ କ୍ରୋଡ଼ରେ ସ୍ଥାନ ଦେବାକୁ ହେବ । ଯେଉଁ ସାର୍ବଜନୀନ ଭିତ୍ତି ଉପରେ ଦଣ୍ଡାୟମାନ ହୋଇ ସର୍ବଜାତୀୟ ଓ ସର୍ବଧର୍ମାବଲମ୍ବୀ ବ୍ୟକ୍ତିବୃନ୍ଦ ବିଶ୍ୱମାନବ ସହିତ ପ୍ରୀତିବନ୍ଧନରେ ଆବଦ୍ଧ ହୋଇ ପାରିବେ—ତାହା ହେଉଛି ତ୍ୟାଗ ଓ ସେବା ।

(୫) ଯେଉଁମାନେ ଭବିଷ୍ୟତ ଭାରତର ଉଦ୍‌ବୋଧନ ନିମିତ୍ତ ପ୍ରକୃତରେ ସ୍ୱାର୍ଥତ୍ୟାଗ କରିବାକୁ ପ୍ରସ୍ତୁତ ଅଛନ୍ତି, ସେମାନଙ୍କୁ ଏହି ନବଯୁଗର ଧର୍ମ ସେବା-ବ୍ରତ ଗ୍ରହଣ କରିବାକୁ ହେବ । ଭାରତର ବିଶାଳ ଜନତା, ଯେଉଁମାନେ କ୍ରମାଗତ ବହୁ ଶତାବ୍ଦୀ ହେଲା ନିଷ୍ପେଷିତ ଓ ପଦଦଳିତ ହୋଇ ରହିଛନ୍ତି, ସେମାନଙ୍କ

ସ୍ପନ୍ଦହୀନ ଲୁପ୍ତପ୍ରାୟ ମନୁଷ୍ୟତ୍ୱକୁ ଖାଦ୍ୟ, ବିଦ୍ୟା ଓ ଆତ୍ମଜ୍ଞାନ ଦେଇ ଉଦ୍‌ବୁଦ୍ଧ କରିବାକୁ ହେବ । ତ୍ୟାଗ ଓ ସେବାବ୍ରତ ସାହାଯ୍ୟରେ ଏହି ସୁପ୍ରାଚୀନ ଜାତି ଗଭୀରତମ ଅଧଃପତନର ଅନ୍ଧକାରପୂର୍ଣ୍ଣ ଗହ୍ୱରରୁ ଉଠି ପୁନରାୟ ସ୍ୱମହିମା ପ୍ରକାଶ କରିବାକୁ ସମର୍ଥ ହେବ ।

(୬) ବୈଦେଶିକ ଭାବନିଚୟର ଉପପ୍ଲାବନରୁ ସମାଜକୁ ରକ୍ଷା କରିବାକୁ ହେବ, କେବଳ ମାତ୍ର ଘର ସମ୍ଭାଳିବା ଚେଷ୍ଟାରେ ବ୍ୟାପୃତ ରହିଲେ ଚଳିବ ନାହିଁ; ଅଥବା ପାଶ୍ଚାତ୍ୟ ଜାତିର ସୁଖ-ସମୃଦ୍ଧି ଦେଖି ରାଷ୍ଟ୍ରରେ ଓ ସମାଜରେ ସେମାନଙ୍କୁ ଅନୁକରଣ କରିବାକୁ ଯିବା ଅଦୂରଦର୍ଶିତାର ପରିଚାୟକ । କାରଣ ଆମମାନଙ୍କୁ ମନେ ରଖିବାକୁ ହେବ, ଜଡ଼ବାଦ ଓ ଏହାର ଆନୁଷଙ୍ଗିକ ଦୁଃଖଗୁଡ଼ିକ ଜଡ଼ବାଦଦ୍ୱାରା କେବେ ହେଲେ ଜୟ କରାଯାଇ ପାରିବ ନାହିଁ । ପାଶ୍ଚାତ୍ୟ ଜଡ଼ସଭ୍ୟତାଦ୍ୱାରା ଅବିରାମ ଆକ୍ରାନ୍ତ ହୋଇ କେବଳ ମାତ୍ର ଆତ୍ମରକ୍ଷାରେ ନିଯୁକ୍ତ ରହିଲେ, ପ୍ରଚୁର ଶକ୍ତିକ୍ଷୟ ବ୍ୟତୀତ ବିଶେଷ ଫଳ ଲାଭ ହେବ ନାହିଁ । ଭାରତୀୟ ଆଧ୍ୟାତ୍ମିକ ତତ୍ତ୍ୱ ଓ ଅପୂର୍ବ ଦର୍ଶନଶାସ୍ତ୍ର ସାହାଯ୍ୟରେ ପାଶ୍ଚାତ୍ୟ ଦେଶର ଚିନ୍ତାସ୍ରୋତକୁ ପରିବର୍ତ୍ତିତ କରି ଦେବାକୁ ହେବ । ଚରିତ୍ରବାନ ପ୍ରଚାରକଗଣଙ୍କୁ ବେଦାନ୍ତ ପ୍ରଚାର କରିବା ନିମିତ୍ତ ବିଦେଶକୁ ପଠାଇବାକୁ ହେବ । ଏହି କାର୍ଯ୍ୟଫଳରେ ଯେଉଁ ଗୌରବ-ବୁଦ୍ଧି ଓ ସଂସ୍କାର ଜନ୍ମିବ, ତାହା ହିଁ ପ୍ରତ୍ୟେକ ଭାରତବାସୀଙ୍କୁ ଜାତିଗତ ବୈଶିଷ୍ଟ୍ୟ ରକ୍ଷା କରିବା ଲାଗି ଯଥେଷ୍ଟ ପ୍ରେରଣାଶକ୍ତି ଦେବ ।

କଲମ୍ବୋରୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ଆଚାର୍ଯ୍ୟଦେବଙ୍କ ପ୍ରଦତ୍ତ ପ୍ରତ୍ୟେକ ବକ୍ତୃତାରେ ଉପରୋକ୍ତ ବିଷୟଗୁଡ଼ିକ ବହୁବାର ଆଲୋଚିତ ହୋଇଛି । ପ୍ରବୁଦ୍ଧ ଭାରତ ବକ୍ଷରେ ଇଙ୍ଗିତରେ ଜଗତ୍-ପରିଚାଳନକାରୀ ମହାମନୀଷାସମ୍ପନ୍ନ ମହାପୁରୁଷଗଣ ଆବିର୍ଭୂତ ହୋଇ ଗୋଟିଏ ଗୌରବମୟ ଭବିଷ୍ୟତର ସୂଚନା ଦେବେ—ଏହି ପ୍ରବଳ ବିଶ୍ୱାସର ବଶବର୍ତ୍ତୀ ହୋଇ ସେ କହିଛନ୍ତି, 'ଏବେ କେନ୍ଦ୍ର ଭାରତବର୍ଷ ।' ଜ୍ଞାତସାରରେ ବା ଅଜ୍ଞାତସାରରେ ଜଗତ ଅନ୍ତର୍ଦାହ ଯୋଗୁଁ କାତର ହୋଇ ଯେଉଁ ଅମୃତ ପାନ କରିବା ନିମିତ୍ତ ଲାଳାୟିତ ହୋଇଉଠିଛି, 'ଜଗଦ୍ଧିତାୟ' ଭଣ୍ଡାର ଉନ୍ମୁକ୍ତ କରି ଏଥର ଭାରତବର୍ଷକୁ ଦାନ-ପ୍ରସାରିତ ହସ୍ତରେ ତାହା ବିତରଣ କରିବାକୁ ହେବ । ଏହି ଦାୟିତ୍ୱ-ଭାର ଅବିଳମ୍ବେ ଭାରତକୁ ବହନ କରିବାକୁ ହେବ—ନତୁବା ଜଗତ ସହିତ ପ୍ରତିଦ୍ୱନ୍ଦିତାରେ ଆତ୍ମରକ୍ଷା କରିବା ଭାରତ ପକ୍ଷରେ ଅସମ୍ଭବ ହୋଇଯିବ ।

## କଲିକତାରେ

ସ୍ୱାମୀଜୀ ଯେଉଁଦିନ ଭାରତମାଟିରେ ପଦାର୍ପଣ କଲେ, ସେହିଦିନଠାରୁ ସମଗ୍ର ବଙ୍ଗଦେଶ, ବିଶେଷତଃ କଲିକତା ନଗରୀ ଆଗ୍ରହରେ ତାଙ୍କ ଶୁଭାଗମନକୁ ପ୍ରତୀକ୍ଷା କରି ରହିଥିଲା । ସେ ମାନ୍ଦ୍ରାଜରୁ କଲିକତା ଅଭିମୁଖେ ସମୁଦ୍ରପଥରେ

ଯାତ୍ରା କରିଛନ୍ତି ବୋଲି ସମ୍ବାଦ ପାଇ କଲିକତା ନଗରୀ ଉତ୍ସାହ ସହକାରେ ତାଙ୍କୁ ଅଭ୍ୟର୍ଥନା କରିବାକୁ ପ୍ରସ୍ତୁତ ହେଲା । ବଙ୍ଗଳାର ମୁଖୋଜ୍ଜ୍ୱଳକାରୀ ସ୍ୱଦେଶପ୍ରେମିକ ସନ୍ନ୍ୟାସୀଙ୍କୁ ସାଦର ଅଭ୍ୟର୍ଥନା ନିମିତ୍ତ କଲିକତା ନଗରୀ ଉନ୍ମୁଖ ହୋଇ ଉଠିଛି ଦେଖି, କେତେଜଣ ଲଘୁଚେତା ବ୍ୟକ୍ତି ଖଣ୍ଡେ ଦୁଇଖଣ୍ଡ ପତ୍ରିକାରେ ସ୍ୱାମୀଜୀଙ୍କ କୁତ୍ସାରଚନା ଆରମ୍ଭ କରିଦେଲେ । ବିଗତ ଅର୍ଦ୍ଧଶତାବ୍ଦୀ ଧରି ଗାଳିଗୁଲଜ ଓ ନିନ୍ଦାବାଦ ହିଁ ଯାହାଙ୍କ ଧର୍ମପ୍ରଚାରର ଏକମାତ୍ର ବ୍ରହ୍ମାସ୍ତ୍ର ଥିଲା, ସେମାନଙ୍କ ମେରୁଦଣ୍ଡହୀନ ମନସ୍ତାତ୍ତ୍ୱିକ ବଂଶଧରଗଣଙ୍କ ଏ ଘୃଣିତ ପ୍ରୟାସ ଦେଖି, ବଙ୍ଗାଳୀମାନେ ବିସ୍ମିତ ହୋଇ ନାହାନ୍ତି — କ୍ରୁଦ୍ଧ ମଧ୍ୟ ହୋଇ ନାହାନ୍ତି; ଏପରି କି ରକ୍ଷଣଶୀଳ ହିନ୍ଦୁସମାଜର ପକ୍ଷ ଅବଲମ୍ବନ କରି 'ବଙ୍ଗବାସୀ' ପତ୍ରିକା ଜଗଦ୍‌ବରେଣ୍ୟ ବିବେକାନନ୍ଦଙ୍କ ଶିର ଉପରେ ଯେଉଁ ଅଜସ୍ର ଗାଳିବର୍ଷଣ କରୁଥିଲା, ସେ ଅମାର୍ଜନୀୟ ଧୃଷ୍ଟତାକୁ ମଧ୍ୟ ଉପେକ୍ଷା କରି ବଙ୍ଗାଳୀ ଜାତି ଯଥେଷ୍ଟ ଉଦାରତାର ପରିଚୟ ଦେଇଥିଲା ।

ସ୍ୱାମୀଜୀ ଶିଷ୍ୟମାନଙ୍କ ସହିତ ଜାହାଜରୁ ବଜ୍‌ବଜ୍‌ରେ[୧] ଅବତରଣ କରି ଦେଖିଲେ, ତାଙ୍କୁ ଶିଆଲଦା ଷ୍ଟେସନକୁ ନେବା ପାଇଁ ଗୋଟିଏ ସ୍ୱତନ୍ତ୍ର ଟ୍ରେନ୍ ଅପେକ୍ଷା କରିଛି । ଭୋର ସାଢ଼େ ସାତଟାରେ ଟ୍ରେନ୍ ଧୀରେ ଧୀରେ ପ୍ଲାଟଫର୍ମରେ ପ୍ରବେଶ କଲା । ଟ୍ରେନ୍ ବଂଶୀଧ୍ୱନି କରିବା ମାତ୍ରେ ହଜାର ହଜାର ମିଳିତକଣ୍ଠରେ 'ଜୟ ରାମକୃଷ୍ଣ ଦେବ କି ଜୟ', 'ଜୟ ବିବେକାନନ୍ଦ ସ୍ୱାମୀଜୀ କି ଜୟ' ଶବ୍ଦରେ ଷ୍ଟେସନ ମୁଖରିତ ହୋଇ ଉଠିଲା । ସ୍ୱାମୀଜୀ ଟ୍ରେନ୍‌ରୁ ଅବତରଣ କରି ସମବେତ ଜନତାକୁ ହାତଯୋଡ଼ି ନମସ୍କାର କଲେ । ନରେନ୍ଦ୍ରନାଥ ସେନ୍ ପ୍ରମୁଖ ଅଭ୍ୟର୍ଥନା ସମିତିର ସଭ୍ୟବୃନ୍ଦ ବହୁ କଷ୍ଟରେ ଜନତା ଭେଦ କରି ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ତାଙ୍କୁ ସାଦର ଅଭ୍ୟର୍ଥନା କରି ବିବିଧ ପୁଷ୍ପମାଲ୍ୟରେ ଭୂଷିତ କଲେ । ସହସ୍ର ସହସ୍ର ସଂଭ୍ରମପୂର୍ଣ୍ଣ ଦୃଷ୍ଟି-ସ୍ନାତ ହୋଇ କୀର୍ତ୍ତିମାନ୍ ସନ୍ନ୍ୟାସୀ ଶ୍ରୀ ଓ ଶ୍ରୀମତୀ ସେଭିୟରଙ୍କ ସହିତ ଚାରିଟି ଘୋଡ଼ା ଲାଗିଥିବା ଶକଟରେ ଅରୋହଣ କଲେ । ଯୁବକଗଣ ଗାଡ଼ିର ଘୋଡ଼ା ଖୋଲି ଦେଇ ନିଜେ ଗାଡ଼ି ଟାଣି ନେଇଗଲେ । ପତ୍ର-ପୁଷ୍ପ-ପଲ୍ଲବ-ପତାକା-ପରିଶୋଭିତ ତିନିଗୋଟି ତୋରଣଦ୍ୱାର ଅତିକ୍ରମ କରି ଶକଟ ରିପନ୍ କଲେଜରେ ଉପସ୍ଥିତ ହେଲା । ସେଠାରେ କିଛି ସମୟ ସମାଗତ ସୁଧୀବୃନ୍ଦଙ୍କୁ ସମୟୋଚିତ ଶିଷ୍ଟାଳାପରେ ପରିତୃପ୍ତ କରି ସ୍ୱାମୀଜୀ ବିଦାୟ ନେଲେ । ବାଗ୍‌ବଜାରର ରାୟବାହାଦୂର ପଶୁପତିନାଥ ବସୁଙ୍କ ଘରେ ଭିକ୍ଷା ଗ୍ରହଣ କରିବା ନିମିତ୍ତ ସେ ଗୁରୁଭ୍ରାତାମାନଙ୍କ ସହିତ ଆଗରୁ ନିମନ୍ତ୍ରିତ ହୋଇଥିଲେ । ସେଠାରେ ମଧ୍ୟାହ୍ନ ଯାପନ କରି ଅପରାହ୍ନରେ ସେ ସଦଳବଳେ କାଶୀପୁରର ଗୋପାଳଲାଲ୍ ଶୀଲଙ୍କ ଉଦ୍ୟାନ-ଗୃହକୁ ଗଲେ । ତାଙ୍କର ପାଶ୍ଚାତ୍ୟ ଶିଷ୍ୟ ଓ ଶିଷ୍ୟାଗଣଙ୍କ ସହିତ ବାସ କରିବା ନିମିତ୍ତ ଉପରୋକ୍ତ ଭବନଟି ଅସ୍ଥାୟୀ ଭାବରେ ଅଭ୍ୟର୍ଥନା ସମିତିର କର୍ତ୍ତୃପକ୍ଷ ପ୍ରଦାନ କରିଥିଲେ ।

---

୧. ସ୍ୱାମୀ ଗମ୍ଭୀରାନନ୍ଦଙ୍କ ପ୍ରଣୀତ ଯୁଗନାୟକ ବିବେକାନନ୍ଦ ଅନୁସରଣରେ ।

ସ୍ୱାମୀଜୀ ଦିବାଭାଗରେ କାଶୀପୁରର ଉଦ୍ୟାନ-ଗୃହରେ ରହି ସମାଗତ ଦର୍ଶନାର୍ଥୀ ଓ ଜିଜ୍ଞାସୁମାନଙ୍କ ସହିତ ଆଲୋଚନା ଏବଂ ପ୍ରଶ୍ନୋତ୍ତର ଓ ଉପଦେଶ ପ୍ରଦାନ କରୁଥିଲେ ଏବଂ ସନ୍ଧ୍ୟା ପରେ ଆଲମବଜାର ମଠରେ ରାତ୍ରି ଯାପନ କରୁଥିଲେ । ସ୍ୱାମୀଜୀ ବିଶ୍ରାମ କରିବା ଲାଗି ଅବସର ପାଇ ନ ଥିଲେ, ତଥାପି ସେ ସ୍ୱୀୟ ସ୍ୱଦେଶବାସୀଙ୍କର ଧର୍ମ ସମ୍ବନ୍ଧରେ ଆଗ୍ରହ ଦେଖି ଅତୀବ ଆନନ୍ଦିତ ହେଲେ । ଶାରୀରିକ ଅସୁସ୍ଥତା ସତ୍ତ୍ୱେ ତାଙ୍କ ନିକଟକୁ ଆଗତ ବ୍ୟକ୍ତିମାତ୍ରର ଧର୍ମସମ୍ବନ୍ଧୀୟ ସମସ୍ୟା ଭଞ୍ଜନ କରିବାକୁ ଏବଂ ଦାର୍ଶନିକ ଜଟିଳ-ପ୍ରଶ୍ନଗୁଡ଼ିକର ଉତ୍ତର ଦେବାକୁ ସେ କେବେ ହେଲେ ଆଳସ୍ୟ ବୋଧ କରୁ ନ ଥିଲେ ।

ସ୍ୱାମୀଜୀ କଲିକତା ଆସିବାର ପ୍ରାୟ ଏକ ସପ୍ତାହ ପରେ ଫେବୃୟାରୀ ଅଠେଇଶ ତାରିଖ ଦିନ ରାଜା ସାର୍ ରାଧାକାନ୍ତ ଦେବଙ୍କ ଶୋଭାବଜାରସ୍ଥ ପ୍ରାସାଦର ସୁବିସ୍ତୃତ ପ୍ରାଙ୍ଗଣରେ ଅଭିନନ୍ଦନ-ସଭା ଆହୂତ ହେଲା । ସଭାପତି ରାଜା ବିନୟକୃଷ୍ଣ ଦେବ ଅଭିନନ୍ଦନ-ପତ୍ର ପାଠ କଲେ । ସଭାସ୍ଥଳରେ ପ୍ରାୟ ପାଞ୍ଚହଜାର ବ୍ୟକ୍ତି ସମାଗତ ହୋଇଥିଲେ । ଅଭିନନ୍ଦନ-ପତ୍ରର ଉତ୍ତର ଦେବା ନିମିତ୍ତ ଦଣ୍ଡାୟମାନ ହୋଇ ସ୍ୱାମୀଜୀ ପ୍ରଥମରେ କହିଲେ, ''ମଣିଷ ନିଜ ମୁକ୍ତି-ଚେଷ୍ଟାରେ ଜଗତ୍‌ପ୍ରପଞ୍ଚର ସମ୍ବନ୍ଧ ପୂରାପୂରି ତ୍ୟାଗ କରିବାକୁ ଚାହେଁ । ମଣିଷ, ନିଜ ଆତ୍ମୀୟସ୍ୱଜନ, ସ୍ତ୍ରୀ-ପୁତ୍ର ବନ୍ଧୁ-ବାନ୍ଧବଙ୍କ ମାୟା କଟାଇ ସଂସାରରୁ ଦୂରକୁ, ଅତି ଦୂରକୁ ପଳାଇଯାଏ । ଚେଷ୍ଟାକରେ, ସେ ସମସ୍ତ ଦେହଗତ ସମ୍ବନ୍ଧ, ସକଳ ପୁରାତନ ସଂସ୍କାର ତ୍ୟାଗ କରିବାକୁ, ଏପରି କି ନିଜେ ସାଢ଼େତିନି ହାତ ଲମ୍ବା ଦେହଧାରୀ ମାନବ ଏହା ଭୁଲି ଯିବାକୁ ପ୍ରାଣପଣେ ଚେଷ୍ଟା କରେ; କିନ୍ତୁ ତାହାର ଅନ୍ତର ଭିତରେ ସେ ସର୍ବଦା ଗୋଟିଏ ମୃଦୁ ଅସ୍ଫୁଟ ଧ୍ୱନି ଶୁଣିପାରେ; ତାହାର କାନରେ ସର୍ବଦା ଗୋଟିଏ ସ୍ୱର ବାଜୁଥାଏ, ଯାହା କି ଦିବାରାତ୍ର ମୃଦୁସ୍ୱରରେ କହେ, 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' ।''

ଏ ଚେଷ୍ଟା—ମୁକ୍ତି ନିମିତ୍ତ ଏହି ସୁମହାନ୍ ପ୍ରୟାସ ଦିନେ ବିବେକାନନ୍ଦ ମଧ୍ୟ କରିଥିଲେ । କନ୍ୟାକୁମାରୀ ମନ୍ଦିରର ପଥର-ପାହାଚ ଉପରେ ବସିଥିବା ସମାଧିକାମୀ ସାଧକ—ବର୍ତ୍ତମାନ ଯୁଗର ବିଶ୍ୱାମିତ୍ରଙ୍କ ଧ୍ୟାନଭଙ୍ଗ ନିମିତ୍ତ ଯୋଗମାୟା ସ୍ୱର୍ଗୀୟା ଅପ୍ସରାଗଣଙ୍କୁ ପଠାଇ ନାହାନ୍ତି । ମାତୃରୂପରେ ନିଖିଳଭାରତ ତାଙ୍କ ଯୋଗଦୃଷ୍ଟିରେ ଉଦ୍‌ଭାସିତ ହୋଇ ଉଠିଥିଲା । ଜନନୀଙ୍କ ସ୍ନେହକାତର ନେତ୍ରଦ୍ୱୟରେ ମୌନ-ମିନତି, ଅଙ୍ଗରେ ଲାଞ୍ଛନା, ବକ୍ଷରେ ପଦାଘାତ, ଭଣ୍ଡାର ଅନ୍ନହୀନ—ରୋଗ, ଶୋକ, ଦୁଃଖ, ଦୈନ୍ୟ, ଅଜ୍ଞାନତା ଇତ୍ୟାଦିର ପ୍ରବଳ ପୀଡ଼ନରେ କାତରା ଜନନୀଙ୍କ ଆକୁଳ ଆହ୍ୱାନ, ସତରେ ବିବେକାନନ୍ଦଙ୍କ ଧ୍ୟାନଭଙ୍ଗ କରିଥିଲା । ସେ ଅଶ୍ରୁ-ସଜଳନୟନରେ କହି ଉଠିଲେ, ''ମୁଁ ମୁକ୍ତି ଚାହେଁ ନାହିଁ—ତୁମ ସେବା ହିଁ ମୋ ଜୀବନର ଏକମାତ୍ର ଅବଶିଷ୍ଟ କର୍ମ ।''

ଏହି ସାଧନା-ଲବ୍ଧ ସ୍ୱଦେଶପ୍ରେମ ଯଜ୍ଞର ଉଦ୍‌ବୋଧନକଳ୍ପେ ମହାଭାଗ ଋତ୍ୱିକ ଉଦାତ୍ତକଣ୍ଠରେ ବେଦମନ୍ତ୍ର ଉଚ୍ଚାରଣ କରି ତାଙ୍କ ପ୍ରିୟ ଯଜମାନ ଭାରତୀୟ ଯୁବକମାନଙ୍କୁ ଆହ୍ୱାନ କରିଛନ୍ତି । ଯେଉଁ ଅବିନଶ୍ୱର-ବାଣୀର ପବିତ୍ର କମ୍ପନରେ ଭାରତର ଗଗନ-ପବନ ପୂର୍ଣ୍ଣ ହୋଇ ରହିଛି, ସେ କମ୍ପନ ସ୍ୱଦେଶପ୍ରେମ ସାଧକଙ୍କ ହୃଦୟ-ବୀଣାତନ୍ତ୍ରୀରେ ନିତ୍ୟ ବାଜୁଥିବ — ''ମୁଁ ତୁମ ନିକଟରେ ଏହି ଗରୀବ, ଅଜ୍ଞ ଅତ୍ୟାଚାରରେ ପୀଡ଼ିତ ଲୋକଙ୍କ ପାଇଁ ଏହି ସହାନୁଭୂତି, ଏହି ଆପ୍ରାଣ ଚେଷ୍ଟା 'ଦାୟ' ସ୍ୱରୂପ ଅର୍ପଣ କରୁଛି । ଯାଅ, ଏହି ମୁହୂର୍ତ୍ତରେ ସେହି ପାର୍ଥସାରଥୀଙ୍କ ମନ୍ଦିରକୁ, ଯେ ଗୋକୁଳରେ ଦୀନଦରିଦ୍ର ଗୋପଗଣଙ୍କର ସଖା ଥିଲେ, ଯେ ତାଙ୍କ ବୁଦ୍ଧ ଅବତାରବେଳେ ରାଜପୁରୁଷଙ୍କ ଆମନ୍ତ୍ରଣ ଆଗ୍ରାହ୍ୟ କରି ଜଣେ ବେଶ୍ୟାର ନିମନ୍ତ୍ରଣ ଗ୍ରହଣ କରି ତାକୁ ଉଦ୍ଧାର କରିଥିଲେ, ଯାଅ, ତାଙ୍କ ନିକଟକୁ ଯାଇ ସାଷ୍ଟାଙ୍ଗ ପ୍ରଣିପାତ କର ଏବଂ ତାଙ୍କ ନିକଟରେ ଗୋଟିଏ ମହାବଳି ପ୍ରଦାନ କର; ବଳି — ଜୀବନବଳି ସେହିମାନଙ୍କ ପାଇଁ, ଯାହାଙ୍କ ପାଇଁ ସେ ଯୁଗେ ଯୁଗେ ଅବତୀର୍ଣ୍ଣ ହୋଇ ଆଆନ୍ତି, ଯାହାଙ୍କୁ ସେ ସବୁଠାରୁ ବେଶୀ ଭଲ ପାଆନ୍ତି, ସେହି ଦୀନ, ଦରିଦ୍ର, ପତିତ, ଉତ୍‌ପୀଡ଼ିତମାନଙ୍କ ପାଇଁ । ତୁମ୍ଭେମାନେ ସାରାଜୀବନ ଏହି ତିରିଶ କୋଟି ଭାରତବାସୀଙ୍କ ଉଦ୍ଧାର ବ୍ରତ ଗ୍ରହଣ କର — ଯେଉଁମାନେ ଦିନକୁ ଦିନ ବୁଡ଼ି ଯାଉଛନ୍ତି ।''

## ଶ୍ରୀଶ୍ରୀରାମକୃଷ୍ଣ — ଆଦର୍ଶପୁରୁଷ

ନିଉୟର୍କଠାରେ ସ୍ୱାମୀଜୀ 'ମଦୀୟ ଆଚାର୍ଯ୍ୟଦେବ' ଶୀର୍ଷକ ଗୋଟିଏ ବକ୍ତୃତା ଶ୍ରୀରାମକୃଷ୍ଣଙ୍କ ସମ୍ବନ୍ଧରେ ପ୍ରଦାନ କରିଥିଲେ । ମାନ୍ଦ୍ରାଜରେ 'ଭାରତୀୟ ମହାପୁରୁଷଗଣ' ସମ୍ବନ୍ଧୀୟ ବକ୍ତୃତାରେ ଶ୍ରୀଗୁରୁଙ୍କ ସମ୍ବନ୍ଧରେ ସାମାନ୍ୟ କିଛି କହି ବକ୍ତୃତା ଶେଷ କରିଥିଲେ । ଏତଦ୍‌ବ୍ୟତୀତ ଶ୍ରୀରାମକୃଷ୍ଣଙ୍କ ସମ୍ବନ୍ଧରେ ସେ ସ୍ପଷ୍ଟ ଭାବରେ କୌଣସି କଥା କହିନାହାନ୍ତି । ଶ୍ରୀରାମକୃଷ୍ଣଙ୍କ ସମ୍ବନ୍ଧରେ କୌଣସି କଥା କହିବାକୁ ହେଲେ ଏକପ୍ରକାର ଅବ୍ୟକ୍ତ ବେଦନାରେ ତାଙ୍କ ହୃଦୟ ଭାଙ୍ଗିପଡ଼େ — ଚେଷ୍ଟା କରି ମଧ୍ୟ ସେ ବିଶେଷ କିଛି କହି ପାରୁ ନ ଥିଲେ । ଅନେକ ସମୟରେ କଥା ପ୍ରସଙ୍ଗରେ ସେ କହିଛନ୍ତି, ଉକ୍ତ ଅଦ୍ଭୁତ ପୁରୁଷଙ୍କୁ ମୁଁ ସମ୍ୟକ୍ ଭାବରେ ବୁଝିପାରି ନାହିଁ, ତେଣୁ ତାଙ୍କ ସମ୍ବନ୍ଧରେ କୌଣସି କଥା କହିବାକୁ ହେଲେ ଭୟ ହୁଏ, କାଳେ ମୁଁ ତାଙ୍କୁ ଛୋଟ କରି ପକାଇବି; କିନ୍ତୁ କଲିକତାର ଅଭିନନ୍ଦନ-ପତ୍ରରେ ଶ୍ରୀରାମକୃଷ୍ଣଙ୍କ କଥା ଉଲ୍ଲେଖ ଥିବାରୁ ସ୍ୱାମୀଜୀ ଗୁରୁଭକ୍ତିର ପ୍ରବଳ ଉଚ୍ଛ୍ୱାସ ଚାପି ରଖି ପାରିଲେ ନାହିଁ । ତାଙ୍କ ଗୁରୁ, ତାଙ୍କ ଆଚାର୍ଯ୍ୟ, ତାଙ୍କ ଜୀବନର ଆଦର୍ଶ, ତାଙ୍କର ଇଷ୍ଟ, ପ୍ରାଣର ଦେବତା, ଶ୍ରୀରାମକୃଷ୍ଣ ପରମହଂସଙ୍କ କଥା କହିବାକୁ ଯାଇ ଦୃଢ଼ସ୍ୱରରେ କହିଲେ, ''ରାମକୃଷ୍ଣ ପରମହଂସଙ୍କ ଜୀବନରୁ ଆମେ ଗୋଟିଏ ମହାନ୍ ଆଦର୍ଶ ପାଉ । ଯଦି ଏହି ଜାତି ଉଠିବାକୁ ଚାହେଁ, ତେବେ ମୁଁ ନିଶ୍ଚିତ

ଭାବରେ କହୁଛି, ଏହି ନାମରେ ସମସ୍ତଙ୍କୁ ମାତିବାକୁ ହେବ । ଏହି କାରଣରୁ ଆମ ଜାତୀୟ କଲ୍ୟାଣ ପାଇଁ, ଆମ ଧର୍ମର ଉନ୍ନତି ପାଇଁ କର୍ତ୍ତବ୍ୟବୁଦ୍ଧି-ପ୍ରଣୋଦିତ ହୋଇ ଏହି ମହାନ୍ ଆଧ୍ୟାତ୍ମିକ ଆଦର୍ଶ ତୁମ୍ଭମାନଙ୍କ ସମ୍ମୁଖରେ ସ୍ଥାପନ କରୁଛି ।''

କୌଣସି କର୍ତ୍ତବ୍ୟବୁଦ୍ଧି ପ୍ରେରଣାରେ ବିବେକାନନ୍ଦ ଏହି 'କାମ-କାଞ୍ଚନତ୍ୟାଗୀ' ପରମପୁରୁଷଙ୍କୁ ଜାତି ସମ୍ମୁଖରେ ଧରି କହିଥିଲେ, ''ତୁମ-ଆମକୁ ଭଲ ଲାଗୁ ବା ନ ଲାଗୁ, ସେଥିପାଇଁ ପ୍ରଭୁଙ୍କ କାମ ଅଟକି ରହିବ ନାହିଁ । ସେ ସାମାନ୍ୟ ଧୂଳିରୁ ତାଙ୍କ କାର୍ଯ୍ୟ ନିମିତ୍ତ ଶତସହସ୍ର କର୍ମୀ ସୃଷ୍ଟି କରିପାରନ୍ତି । ତାଙ୍କ ଅଧୀନରେ ରହି କାର୍ଯ୍ୟ କରିବା ଆମ୍ଭମାନଙ୍କ ପକ୍ଷରେ ମହାସୌଭାଗ୍ୟ ଓ ଗୌରବର ବିଷୟ ।''

ଯେଉଁମାନେ ସହଜ ଓ ସ୍ୱାଭାବିକ ଜୀବନଯାପନର ଦୁଆ ଧରି ଇନ୍ଦ୍ରିୟଲିପ୍ସାର କ୍ଷଣିକ ବିକାରକୁ ଗୋଟିଏ ଅସ୍ପଷ୍ଟ ଦାର୍ଶନିକ ବ୍ୟାଖ୍ୟା ମାଧ୍ୟମରେ ମନୋହର କରିପକାନ୍ତି ଏବଂ ଏହାକୁ ଜୀବଧର୍ମର ଅନୁସରଣ ବୋଲି କହି ଯୁବକମାନଙ୍କୁ ଆତ୍ମପ୍ରତାରଣା କରିବା ଲାଗି ପରାମର୍ଶ ଦିଅନ୍ତି, ସେମାନଙ୍କଦ୍ୱାରା ପ୍ରଚାରିତ ଉପନିଷଦ୍‌ର ତାତ୍ପର୍ଯ୍ୟ ଶୁଣି ଅପ୍ରକୃତ ପ୍ରଚ୍ଛନ୍ନ ଭୋଗବାଦ ହସ୍ତରୁ ଜାତିକୁ ରକ୍ଷା କରିବା ନିମିତ୍ତ ଦେଶରେ ଏହି ପ୍ରକାର ଆଦର୍ଶର ପ୍ରୟୋଜନ ! ଆମ ଜାତୀୟ ଜୀବନର ପ୍ରଧାନ ଆଦର୍ଶ ଧର୍ମ, ଯାହା ଲାଭ କରିବାର ଏକମାତ୍ର ଉପାୟ ହେଉଛି ତ୍ୟାଗ; ଉଦ୍ଦେଶ୍ୟ ମୁକ୍ତି—ଏହା ସହିତ ଯେଉଁ ସମସ୍ତ ଭାବ ବା ଆଦର୍ଶର ସାମଞ୍ଜସ୍ୟ ନାହିଁ, ଐକ୍ୟ ନାହିଁ, ତାହା ଆମ ଦେଶର ନୁହେଁ—ହିନ୍ଦୁର ମଧ୍ୟ ନୁହେଁ । ଯାହା ସମ୍ପୂର୍ଣ୍ଣ ବୈଦେଶିକ, ତାହା ଯେତେବେଳେ ପରିଚ୍ଛଦ ପରିବର୍ତ୍ତନ କରି ଛଦ୍ମବେଶରେ ଆମ ସମାଜରେ ପ୍ରବେଶ ଅଧିକାର ଲାଭ କରିବା ଲାଗି ନିର୍ଲଜ୍ଜ ଦାବି ନେଇ ପ୍ରଥମେ ଆମ ସମ୍ମୁଖରେ ଉପସ୍ଥିତ ହୋଇଥିଲା—ଜାତୀୟ ଜୀବନର ମୂଳ ଭାବଟିକୁ ଦୂର କରି ଆତ୍ମାଧିକାର ପ୍ରତିଷ୍ଠା କରିବାକୁ ହିଁ ଚାହିଁଥିଲା, ସେତେବେଳେ ଈଶ୍ୱରଙ୍କ ଦୟାରୁ ଜାତିକୁ ଉଚ୍ଛୃଙ୍ଖଳ ଭୋଗ ଲାଳସା ପଥରେ ଧାବିତ ହେବାରୁ ନିବୃତ୍ତ କରିବା ନିମିତ୍ତ ଏହିପରି ତ୍ୟାଗୀ ପୁରୁଷଙ୍କ ଆବିର୍ଭାବ ଠିକ୍ ସମୟରେ ହୋଇଥିଲା, ସନ୍ଦେହ ନାହିଁ । ଆଉ ଏହି ଆଦର୍ଶ ପୁରୁଷଙ୍କୁ ବିବେକାନନ୍ଦ ଉପଯୁକ୍ତ ସମୟରେ ଜାତି ସମ୍ମୁଖରେ ଧରିଥିଲେ !

## କଲିକତାରେ ପ୍ରଚାର—ଷ୍ଟାର ଥିଏଟରରେ ବକ୍ତୃତା

ସ୍ୱାମୀଜୀ କଲିକତା ଆସିବାର କେତେଦିନ ପରେ ଶ୍ରୀଶ୍ରୀରାମକୃଷ୍ଣ ପରମହଂସଙ୍କ ଜନ୍ମତିଥି ଉପଲକ୍ଷେ ମହୋତ୍ସବର ଶୁଭଦିନ ଆସିଲା । ସେତେବେଳେ ଦକ୍ଷିଣେଶ୍ୱର କାଳୀ ମନ୍ଦିରରେ ଏହି ଉତ୍ସବ ଅନୁଷ୍ଠିତ ହେଉଥିଲା । ନିର୍ଦ୍ଦିଷ୍ଟ ଦିନ ସକାଳେ ସ୍ୱାମୀଜୀ ପାଶ୍ଚାତ୍ୟ ଶିଷ୍ୟ ଓ ଶିଷ୍ୟାମାନଙ୍କୁ ସଙ୍ଗରେ ନେଇ ଦକ୍ଷିଣେଶ୍ୱର ଗଲେ । ବିପୁଳ ଜନତା ତାଙ୍କୁ ଦେଖିବା ଲାଗି ଉତ୍ସୁକ ହୋଇ ଉଠିଥିଲେ ।

ସର୍ବସାଧାରଣଙ୍କ ସାଗ୍ରହ ଅନୁରୋଧରେ ସେ କେତେଥର ବକ୍ତୃତା ଦେବାକୁ ଚେଷ୍ଟା କଲେ, କିନ୍ତୁ ଉତ୍ସବର ଆନନ୍ଦ କୋଳାହଳ ମଧ୍ୟରେ ବକ୍ତୃତା ଦେବା ଅସମ୍ଭବ ହୋଇଗଲା । ସ୍ୱାମୀଜୀ ବାଳକଙ୍କ ପରି ହାସ୍ୟୋଜ୍ଜ୍ୱଳ ବଦନରେ ଏଣେ ତେଣେ ବୁଲି ଶ୍ରୀରାମକୃଷ୍ଣ ଭକ୍ତବୃନ୍ଦଙ୍କ ସହିତ ଆଳାପ କରିବାରେ ରହିଲେ । ଉତ୍ସବ ଶେଷ ହେବା ପରେ ସେ ପ୍ରସନ୍ନ ଚିତ୍ତରେ ଆଲମ୍‌ବଜାର ମଠକୁ ଫେରିଆସିଲେ ।

ଉତ୍ସବର ଅବ୍ୟବହିତ ପରେ ସ୍ୱାମୀଜୀ ଷ୍ଟାର ଥିଏଟରଠାରେ ଗୋଟିଏ ବକ୍ତୃତା ଦେଲେ । ବକ୍ତୃତାର ବିଷୟ ଥିଲା—ସର୍ବାବୟବ ବେଦାନ୍ତ । ବେଦାନ୍ତ ଶାସ୍ତ୍ରକୁ ଭିନ୍ନ ଭିନ୍ନ ଆଚାର୍ଯ୍ୟଗଣ ବିଭିନ୍ନ ଭାବରେ ବ୍ୟାଖ୍ୟା କରିବାରୁ ବିଭିନ୍ନ ବିରୋଧୀ ମତବାଦର ସୃଷ୍ଟି ହୋଇଛି ଏବଂ କ୍ରମେ ବେଦାନ୍ତ ଶାସ୍ତ୍ର ଦାର୍ଶନିକ ପଣ୍ଡିତମାନଙ୍କ ଉର୍ବର ମସ୍ତିଷ୍କର ବ୍ୟାୟାମ କ୍ଷେତ୍ର ରୂପେ ପରିଗଣିତ ହୋଇଛି । ପୁରାଣଗୁଡ଼ିକ, କେତେଖଣ୍ଡ ଆଧୁନିକ ସ୍ମୃତିଗ୍ରନ୍ଥ ଓ ବିଶେଷ ଭାବରେ ଦେଶାଚାର ଓ ଲୋକାଚାର ହିଁ ଧର୍ମଜଗତରେ ବେଦାନ୍ତର ସ୍ଥାନ ଅଧିକାର କରିବା ଫଳରେ ବେଦାନ୍ତ କହିଲେ ସାଧାରଣ ଲୋକେ ଏହିକ୍ଷଣି ବୁଝନ୍ତି, ଏହା ଦୁର୍ବୋଧ ଦର୍ଶନଶାସ୍ତ୍ର ମାତ୍ର, ଯାହା ସହିତ ପ୍ରଚଳିତ ଧର୍ମର କୌଣସି ସମ୍ବନ୍ଧ ନାହିଁ । ଏହି ଭ୍ରାନ୍ତ ବିଶ୍ୱାସ ଦୂର କରିବା ନିମିତ୍ତ, ଜାତିକୁ ସନାତନ ମାର୍ଗର ଅଧିକତର ପକ୍ଷପାତୀ କରିବା ନିମିତ୍ତ, ଆଚାର୍ଯ୍ୟଦେବଙ୍କୁ ଅନେକ ସମୟରେ ଉନ୍ନତିର ପରିପନ୍ଥୀ କେତେଗୁଡ଼ିଏ ସମାଜିକ ଆଚାର ବ୍ୟବହାରର କଠୋର ସମାଲୋଚନା କରିବାକୁ ହୋଇଛି । ଏହି ବକ୍ତୃତା ମଧ୍ୟରେ ସେ କହିଥିଲେ—

(୧) ବର୍ଣ୍ଣାଶ୍ରମ ଧର୍ମ ଓ ଖାଦ୍ୟର ବିଚାର ନେଇ ବଙ୍ଗ ପ୍ରଦେଶରେ ପ୍ରବଳ ଆନ୍ଦୋଳନ ଚାଲିଛି ସତ, କିନ୍ତୁ ଧର୍ମକୁ କେବଳ ମାତ୍ର ରୋଷେଇଘରେ ଘୋଡ଼ାଇ ରଖିଲେ କ'ଣ ବର୍ଣ୍ଣାଶ୍ରମ ଆଚାର ରକ୍ଷା ପାଇବ ? ଏ ଦେଶରେ ଚାରିବର୍ଣ୍ଣ କାହାନ୍ତି ? ଗୋଟିଏ ଜାତିର ବିଭିନ୍ନ ଶାଖାଗୁଡ଼ିକୁ ପୁନରାୟ ଏକତ୍ର କରି ବର୍ଣ୍ଣର ଅବାନ୍ତର ବିଭାଗଗୁଡ଼ିକୁ ଉଠାଇ ଦେବାକୁ ହେବ । ଯେଉଁ ଦେଶରେ ବ୍ରାହ୍ମଣ ଓ ଶୂଦ୍ର ବ୍ୟତୀତ ଅନ୍ୟ ଦୁଇ ବର୍ଣ୍ଣର ଅସ୍ତିତ୍ୱ ନାହିଁ, ସେ ଦେଶରେ ବର୍ଣ୍ଣାଶ୍ରମ ଧର୍ମର ଆନ୍ଦୋଳନ ଅଜ୍ଞତାର ପରିଚାୟକ ମାତ୍ର । ଯଦି କ୍ଷତ୍ରିୟ ଓ ବୈଶ୍ୟ ବଙ୍ଗ ପ୍ରଦେଶରେ ଥାଆନ୍ତି, ତେବେ ସେମାନଙ୍କୁ ଯଜ୍ଞୋପବୀତ ପ୍ରଦାନ ଓ ବେଦପାଠର ଅଧିକାର ପ୍ରଦାନ କରିବା ଉଚିତ୍ ।

(୨) ବଙ୍ଗ ପ୍ରଦେଶର କୁଳଗୁରୁ ପ୍ରଥା ଅବୈଦିକ ଓ ଅଶାସ୍ତ୍ରୀୟ । ଶ୍ରୋତ୍ରୀୟ (ବେଦାର୍ଥବିଦ୍) ଅବୃଜିନ (ନିଷ୍ପାପ) ଓ ଅକାମହତ ପୁରୁଷ ହିଁ ଗୁରୁ ହେବା ଲାଗି ଉପଯୁକ୍ତ ।

## ପଣ୍ଡିତମାନଙ୍କ ସହିତ ବିଚାର

ଉକ୍ତ ବକ୍ତୃତା ପରେ ସ୍ୱାମୀଜୀ କଲିକତାରେ ଆଉ ବକ୍ତୃତା କରି ନ ଥିଲେ । କଲମ୍ବୋରୁ କଲିକତା ପର୍ଯ୍ୟନ୍ତ ରାଶି ରାଶି ଅଭିନନ୍ଦନ-ପତ୍ର ଓ ବକ୍ତୃତାରେ ସେ ବିରକ୍ତ ହୋଇ ପଡ଼ିଥିଲେ । ବକ୍ତୃତା ବେଳେ ସାମୟିକ ଉତ୍ତେଜନାର ସୃଷ୍ଟି ହୁଏ ସତ; କିନ୍ତୁ ତାହା ସ୍ଥାୟୀ ହୁଏ ନାହିଁ । ଏହି କଥା ଲକ୍ଷ୍ୟ କରି ସ୍ୱାମୀଜୀ ବ୍ୟକ୍ତି ବିଶେଷଙ୍କୁ ଉପଦେଶ ପ୍ରଦାନ କରିବା ଓ ଚରିତ୍ର ଗଠନ ଦିଗରେ ସାହାଯ୍ୟ ଦେବା ଇତ୍ୟାଦିରେ ଅଧିକତର ଆଗ୍ରହ ପ୍ରକାଶ କରୁଥିଲେ । ଏହି ସମୟରେ ସମସ୍ତେ ଯେ ଧର୍ମୋପଦେଶ ଗ୍ରହଣ କରିବାକୁ ସ୍ୱାମୀଜୀଙ୍କ ନିକଟକୁ ଆସୁଥିଲେ, ତାହା ନୁହେଁ; କେହି ତାଙ୍କୁ କେବଳ ଦେଖିବାକୁ ଓ କେହି ଅବା କୌତୂହଳର ବଶବର୍ତ୍ତୀ ହୋଇ ତାଙ୍କୁ ପରୀକ୍ଷା କରିବାକୁ ଆସୁଥିଲେ ।

ବେଦାନ୍ତ ଓ ଅଦ୍ୱୈତବାଦ ପ୍ରଚାରକ ବଙ୍ଗାଳୀ ସନ୍ନ୍ୟାସୀଙ୍କ ଖ୍ୟାତି ଶ୍ରବଣ କରି ଦିନେ କେତେଜଣ ବେଦ ଓ ଦର୍ଶନଶାସ୍ତ୍ରବିଦ୍ ଗୁଜରାଟୀ ପଣ୍ଡିତ ତାଙ୍କ ସଙ୍ଗେ ଶାସ୍ତ୍ରାଲୋଚନା କରିବାକୁ ଆସିଲେ । "ଆଗନ୍ତୁକ ପଣ୍ଡିତମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ସଂସ୍କୃତ ଭାଷାରେ ଅନର୍ଗଳ କଥା କହି ପାରୁଥିଲେ । ସେମାନେ ଆସି ଲୋକ ଘେରରେ ରହିଥିବା ସ୍ୱାମୀଜୀଙ୍କୁ ସମ୍ଭାଷଣ କରି ସଂସ୍କୃତ ଭାଷାରେ କଥାବାର୍ତ୍ତା ଆରମ୍ଭ କଲେ; ସ୍ୱାମୀଜୀ ମଧ୍ୟ ସଂସ୍କୃତରେ ଉତ୍ତର ଦେବାକୁ ଲାଗିଲେ । x x x ପଣ୍ଡିତମାନେ ପ୍ରାୟ ଏକାବେଳକେ ସଂସ୍କୃତରେ ସ୍ୱାମୀଜୀଙ୍କୁ ଦାର୍ଶନିକ କୂଟ ପ୍ରଶ୍ନଗୁଡ଼ିଏ ପଚାରିଲେ ଏବଂ ସ୍ୱାମୀଜୀ ପ୍ରଶାନ୍ତ ଗମ୍ଭୀର ଭାବରେ ଧୀରେ ଧୀରେ ସେମାନଙ୍କୁ ଏ ବିଷୟର ନିଜ ମୀମାଂସା ଅନୁସାରେ ସିଦ୍ଧାନ୍ତଗୁଡ଼ିକ ଜଣାଇଲେ । ସ୍ୱାମୀଜୀଙ୍କ ସଂସ୍କୃତଭାଷା ପଣ୍ଡିତମାନଙ୍କ ଭାଷାଠାରୁ ଅଧିକ ଶ୍ରୁତିମଧୁର ଓ ସୁଲଳିତ ହେଉଥିଲା । ପରେ ନିଜେ ପଣ୍ଡିତମାନେ ଏ କଥା ସ୍ୱୀକାର କରିଥିଲେ । ଆଲୋଚନାବେଳେ ସ୍ୱାମୀଜୀ ସିଦ୍ଧାନ୍ତ ପକ୍ଷ ଅବଲମ୍ବନ କରିଥିଲେ ଏବଂ ପଣ୍ଡିତମାନେ ପୂର୍ବପକ୍ଷବାଦୀ ହୋଇଥିଲେ । ଶିଷ୍ୟ ମନେ ରଖିଛନ୍ତି, ଗୋଟିଏ ସ୍ଥଳରେ ସ୍ୱାମୀଜୀ 'ସ୍ୱସ୍ତି' ସ୍ଥାନରେ 'ଅସ୍ତି' ବ୍ୟବହାର କରିବାରୁ ପଣ୍ଡିତମାନେ ହସି ଉଠିଲେ; ସେତେବେଳେ ସ୍ୱାମୀଜୀ ତତ୍କ୍ଷଣାତ୍ କହି ଉଠିଲେ, 'ପଣ୍ଡିତାନାଂ ଦାସୋଽହଂ କ୍ଷନ୍ତବ୍ୟମେତତ୍ ସ୍ଖଳନମ୍' — ଅର୍ଥାତ୍ ମୁଁ ପଣ୍ଡିତମାନଙ୍କ ଦାସ, ମୋର ଏହି ସ୍ଖଳନ କ୍ଷମା କରନ୍ତୁ । ପଣ୍ଡିତମାନେ ସ୍ୱାମୀଜୀଙ୍କର ଏ ପ୍ରକାର ବିନୟରେ ମୁଗ୍ଧ ହୋଇଗଲେ । ଅନେକ ସମୟ ବାଦାନୁବାଦ ପରେ ପରିଶେଷରେ ସିଦ୍ଧାନ୍ତ ପକ୍ଷର ମୀମାଂସା ପର୍ଯ୍ୟାପ୍ତ ବୋଲି ପଣ୍ଡିତମାନେ ସ୍ୱୀକାର କଲେ ଏବଂ ପ୍ରୀତି ସମ୍ଭାଷଣ କରି ଯିବାକୁ ଉଦ୍ୟତ ହେଲେ । ଦୁଇଚାରିଜଣ ଆଗନ୍ତୁକ ଭଦ୍ରବ୍ୟକ୍ତି ଏହି ସମୟରେ ସେମାନଙ୍କ ପଛେ ପଛେ ଯାଇ ପଚାରିଲେ, "ମହାଶୟଗଣ, ସ୍ୱାମୀଜୀଙ୍କ ସମ୍ବନ୍ଧରେ କି ଧାରଣା କଲେ ?" ତାହାର ଉତ୍ତରରେ ବୟୋଜ୍ୟେଷ୍ଠ

ପଣ୍ଡିତ କହିଲେ, ବ୍ୟାକରଣରେ ଗଭୀର ବ୍ୟୁତ୍ପତ୍ତି ନ ଥିଲେ ବି ସ୍ୱାମୀଜୀ ଶାସ୍ତ୍ରର ଗୂଢ଼ାର୍ଥ ଦ୍ରଷ୍ଟା, ମୀମାଂସା କରିବାରେ ଅଦ୍ୱିତୀୟ ଏବଂ ସ୍ୱୀୟ ପ୍ରତିଭା ବଳରେ ଯୁକ୍ତି ଖଣ୍ଡନ କରିବାରେ ଅଦ୍ଭୁତ ପାଣ୍ଡିତ୍ୟ ଦେଖାଇଛନ୍ତି ।'' (ସ୍ୱାମୀଜୀ-ଶିଷ୍ୟ ସମ୍ବାଦ)

ଆଲମ୍‌ବଜାର ମଠର ଅନ୍ୟାନ୍ୟ ରାମକୃଷ୍ଣ-ଶିଷ୍ୟ, ସନ୍ନ୍ୟାସୀଗଣ ସେମାନଙ୍କ ପ୍ରିୟତମ 'ନେତା ନରେନ୍ଦ୍ରନାଥ'ଙ୍କୁ ସସମ୍ମାନେ ଗ୍ରହଣ କରିନେଲେ ସତ, କିନ୍ତୁ ତାଙ୍କ ପ୍ରଚାରିତ ସନ୍ନ୍ୟାସ ଓ କର୍ମଯୋଗର ନବରୂପାନ୍ତରିତ ଆଦର୍ଶଙ୍କୁ କେହି କେହି ସହସା ଗ୍ରହଣ କରିପାରି ନ ଥିଲେ । ଧ୍ୟାନ, ତପସ୍ୟା ଇତ୍ୟାଦି ସାଧନ ସାହାଯ୍ୟରେ ମୁକ୍ତିଲାଭର ଚେଷ୍ଟା ହିଁ ସନ୍ନ୍ୟାସ-ଜୀବନର ଆଦର୍ଶ—ଏହି ଚିରାଚରିତ ପ୍ରଥା ସେମାନେ ଅନୁସରଣ କରି ଆସିଥିଲେ । ଜାଗତିକ ସୁଖ-ଦୁଃଖ, ଉନ୍ନତି-ଅବନତି ଇତ୍ୟାଦିରେ ଭ୍ରୂକ୍ଷେପହୀନ ହୋଇ ଭୂତ ପ୍ରକୃତିକୁ ଅତିକ୍ରମ କରିବା ସଙ୍ଗେ ସଙ୍ଗେ ଦେଶକାଳାତୀତ ସତ୍ତାକୁ ଉପଲବ୍ଧି କରିବା ଚେଷ୍ଟାକୁ ସ୍ୱାମୀଜୀ ସ୍ୱାର୍ଥପରତା ଆଖ୍ୟା ଦେଇ ସେମାନଙ୍କୁ ଧର୍ମପ୍ରଚାର, ଶିକ୍ଷା-ବିସ୍ତାର ଇତ୍ୟାଦି କାର୍ଯ୍ୟରେ ନିଯୁକ୍ତ ହେବା ଲାଗି ଅନୁରୋଧ କରୁଥିଲେ । ସେମାନଙ୍କ ମଧ୍ୟରୁ ଅନେକେ ସ୍ୱାମୀଜୀଙ୍କ ଉପଦେଶର ମର୍ମ ବୁଝି ନ ପାରି ଚିରାଭ୍ୟସ୍ତ ରୀତିନୀତି ପରିତ୍ୟାଗ କରିବାକୁ ଇତସ୍ତତଃ ହେଲେ । ଗୋଟିଏ କଥାରେ ସନ୍ନ୍ୟାସୀମାନଙ୍କ ମଧ୍ୟରେ ଗୋଟିଏ ତୁମୂଳ ଆଲୋଡ଼ନ ଦେଖାଗଲା । ସ୍ୱାମୀଜୀ ହଟିଯିବାର ପାତ୍ର ନୁହଁନ୍ତି, ସେ ଦୃଢ଼ତାର ସହିତ ସେମାନଙ୍କୁ ସ୍ୱମତ ଆଡ଼େ ଟାଣି ଆଣିବାକୁ ଚେଷ୍ଟା କଲେ । ଶ୍ରୀଶ୍ରୀରାମକୃଷ୍ଣଙ୍କ ଜୀବନୀ ଓ ଉପଦେଶଗୁଡ଼ିକ ସ୍ୱାମୀଜୀଙ୍କ ପ୍ରତିଭା ଆଲୋକରେ ନବୀନ ଆକାର ଧାରଣ କଲା । ସେ ସେମାନଙ୍କୁ ବୁଝାଇ ଦେଲେ ଯେ, ସେମାନେ ଯଦି ଏହି ଯୁଗଧର୍ମର ପ୍ରଚାର କାର୍ଯ୍ୟରେ ବଦ୍ଧପରିକର ନ ହୁଅନ୍ତି, ତାହାହେଲେ ଶ୍ରୀଶ୍ରୀଠାକୁରଙ୍କ ଆଗମନର ଉଦ୍ଦେଶ୍ୟ ବିଫଳ ହୋଇଯିବ । ମନ୍ଦିର ଓ ପ୍ରତିମାର ଗଣ୍ଡିଭିତରୁ ଭଗବାନଙ୍କୁ ବାହାରକୁ ଆଣି 'ଯତ୍ର ଜୀବ, ତତ୍ର ଶିବ' ମନ୍ତ୍ରରେ 'ବିରାଟ'ର ପୂଜାରେ ଅଗ୍ରସର ହେବାକୁ ହେବ । ପ୍ରାଚୀନକାଳର ସନ୍ନ୍ୟାସୀଗଣଙ୍କ ପରି ଗିରିଗୁହା ବା କୁଟୀର ଭିତରେ ବସି କେବଳ ମାତ୍ର ଆତ୍ମସାକ୍ଷାତ୍କାର ଚେଷ୍ଟାରେ ବ୍ୟାପୃତ ରହିଲେ ଚଳିବ ନାହିଁ । ସଂସାରର କର୍ମକ୍ଷେତ୍ରରେ ଠିଆ ହୋଇ ମାନବକୁ ଉଚ୍ଚ କାର୍ଯ୍ୟ ପାଇଁ ପ୍ରେରଣା ଦେବାକୁ ହେବ—କୋଟି କୋଟି ଭାରତବାସୀଙ୍କ ଅଜ୍ଞତା ଓ ହୃଦୟାନ୍ଧକାର ଦୂର କରିବାକୁ ହେବ । ସ୍ୱାମୀଜୀ ନିଜ ଗୁରୁଭାଇମାନଙ୍କୁ ସ୍ୱୀୟ ଜୀବନ ଉଦ୍ଦେଶ୍ୟ ବୁଝାଇ ଦେଇ କହିଲେ ଯେ, ଭାରତର କଲ୍ୟାଣ-କାମନାରେ ଏଭଳି ଏକ ଅଭିନବ ସନ୍ନ୍ୟାସୀ-ସମ୍ପ୍ରଦାୟ ପ୍ରତିଷ୍ଠା କରିବାକୁ ହେବ, ଯେଉଁମାନେ ମାନବସେବା-ବ୍ରତରେ ନିଜ ନିଜ ମୁକ୍ତିର କାମନା ମଧ୍ୟ ପରିତ୍ୟାଗ କରିବେ, ଅଧିକନ୍ତୁ ପ୍ରୟୋଜନ ହେଲେ ସାନନ୍ଦେ ନରକକୁ ଯିବା ଲାଗି ମଧ୍ୟ ପ୍ରସ୍ତୁତ ହେବେ । 'ବହୁ-ଜନ-ସୁଖାୟ, ବହୁ-ଜନ-ହିତାୟ' ଶ୍ରୀରାମକୃଷ୍ଣ ଅବତୀର୍ଣ୍ଣ ହୋଇଥିଲେ; ତାଙ୍କ ଶିଷ୍ୟମାନେ ଯଦି ପରାର୍ଥରେ ଆତ୍ମୋତ୍ସର୍ଗ କରି

ନ ପାରନ୍ତି, ତତ୍ ପ୍ରଚାରିତ ମହାନ୍ ଯୁଗାଦର୍ଶକୁ ଉପଲବ୍ଧି କରିବାକୁ ଅସମର୍ଥ ହୁଅନ୍ତି, ତାହାହେଲେ ସାଧାରଣ ଲୋକ ଓ ସେମାନଙ୍କ ମଧ୍ୟରେ ପ୍ରଭେଦ କ'ଣ ?

କ୍ରମେ କ୍ରମେ ସନ୍ନ୍ୟାସୀମାନେ ତାଙ୍କ ଯୁକ୍ତିରେ ସାରବତ୍ତା ହୃଦୟଙ୍ଗମ କରିବାକୁ ଲାଗିଲେ । ଏହାର ପ୍ରଥମ ଫଳସ୍ୱରୂପ ପୁଣ୍ୟସ୍ମୃତି ସ୍ୱାମୀ ରାମକୃଷ୍ଣାନନ୍ଦ — ଯେ ବିଗତ ବାରବର୍ଷ କାଳ ଦିନେ ହେଲେ ଶ୍ରୀଶ୍ରୀଠାକୁରଙ୍କ ପୂଜା ଆରତି ଓ ଅର୍ଚ୍ଚନା ପରିତ୍ୟାଗ କରି ଅନ୍ୟତ୍ର ଯାଇ ନ ଥିଲେ, ସ୍ୱାମୀଜୀଙ୍କ ଅନୁରୋଧରେ ବେଦାନ୍ତ ପ୍ରଚାର କାର୍ଯ୍ୟରେ ଦାକ୍ଷିଣାତ୍ୟ ଗଲେ । ସ୍ୱାମୀ ଅଭେଦାନନ୍ଦ ଓ ସାରଦାନନ୍ଦ ପାଶ୍ଚାତ୍ୟ ଦେଶରେ ପ୍ରଚାରକାର୍ଯ୍ୟ ଭାର ଗ୍ରହଣ କରିଥିବା କଥା ଆଗରୁ କୁହାଯାଇଛି । ସ୍ୱାମୀଜୀଙ୍କ ଉତ୍ସାହରେ ଅନୁପ୍ରାଣିତ ହୋଇ କର୍ମୀଶ୍ରେଷ୍ଠ ସ୍ୱାମୀ ଅଖଣ୍ଡାନନ୍ଦ ମୁର୍ଶିଦାବାଦରେ ଦୁର୍ଭିକ୍ଷପୀଡ଼ିତ ନରନାରୀଙ୍କ ସେବାକାର୍ଯ୍ୟ ଲାଗି ପ୍ରସ୍ଥାନ କଲେ । ଗୁରୁଭ୍ରାତାଗଣଙ୍କୁ କାର୍ଯ୍ୟରେ ନିଯୁକ୍ତ ଦେଖି ସ୍ୱାମୀଜୀ ଆଶାତୀତ ଆନନ୍ଦ ଲାଭ କଲେ ।

ବହୁବର୍ଷ ବ୍ୟାପି କଠୋର ପରିଶ୍ରମ ଫଳରେ ସ୍ୱାମୀଜୀଙ୍କ ବଜ୍ରଦୃଢ଼ ଦେହ ଅସୁସ୍ଥ ହୋଇଗଲା । ଶାରୀରିକ ଅସୁସ୍ଥତା ପ୍ରତି ଦୃଷ୍ଟିପାତ ନ କରି ସ୍ୱାମୀଜୀ ମଠର ବ୍ରହ୍ମଚାରୀ ଓ ନବଦୀକ୍ଷିତ ଶିଷ୍ୟମାନଙ୍କୁ ଗୀତା, ଉପନିଷଦ ଇତ୍ୟାଦି ଭାଷ୍ୟ ସହିତ ନିଜେ ପଢ଼ାଇବାରେ ଲାଗିଲେ । ବିଜ୍ଞ ଚିକିତ୍ସକଗଣ ତାଙ୍କୁ କିଛିଦିନ ପାଇଁ ସବୁପ୍ରକାର ମାନସିକ ପରିଶ୍ରମରୁ ବିରତ ହେବା ଲାଗି ଉପଦେଶ ଦେଲେ । ଅବଶେଷରେ ସ୍ୱାମୀଜୀ ସେମାନଙ୍କର ଯୁକ୍ତିର ସାରବତ୍ତା ଅନୁଭବ କରି ଦାର୍ଜିଲିଂ ଯିବା ଲାଗି ପ୍ରସ୍ତୁତ ହେଲେ । ତାଙ୍କ ସହିତ ଶ୍ରୀ ଓ ଶ୍ରୀମତୀ ସେଭିୟର, ସ୍ୱାମୀ ବ୍ରହ୍ମାନନ୍ଦ, ଶ୍ରୀ ଗିରିଶଚନ୍ଦ୍ର ଘୋଷ, ଶ୍ରୀଯୁକ୍ତ ଗୁଡ୍‌ଉଇନ୍, ଡାକ୍ତର ଟର୍ଣ୍ଣବୁଲ୍ ଏବଂ ତାଙ୍କ ତିନିଜଣ ମାନ୍ଦ୍ରାଜୀ ଶିଷ୍ୟ ଆଲାସିଙ୍ଗା ପେରୁମଲ୍, ଜି.ଜି. ନରସିଂହାଚାର୍ଯ୍ୟ ଓ ସିଙ୍ଗରାଭେଲୁ ମୁଦାଲିଆର ଦାର୍ଜିଲିଂ ଗଲେ । ବର୍ଦ୍ଧମାନ ମହାରାଜା ଶ୍ରଦ୍ଧା ସହକାରେ ନିଜ 'ରୋଜ ବ୍ୟାଙ୍କ' ନାମକ ଭବନର ଗୋଟିଏ ଅଂଶ ତାଙ୍କ ରହିବା ଲାଗି ଛାଡ଼ିଦେଲେ । ଦାର୍ଜିଲିଂରେ ଶ୍ରୀ ଏମ୍. ଏନ୍. ବାନାର୍ଜୀ ସ୍ୱତଃପ୍ରବୃତ୍ତ ହୋଇ ଶ୍ରଦ୍ଧା ଓ ଭକ୍ତି ସହକାରେ ସ୍ୱାମୀଜୀ ଓ ତାଙ୍କ ସଙ୍ଗୀମାନଙ୍କୁ ତାଙ୍କ ଆତିଥ୍ୟ ଗ୍ରହଣ କରାଇଲେ । ପ୍ରାୟ ଦୁଇମାସ କାଳ ଦାର୍ଜିଲିଂରେ ରହି ମଧ୍ୟ ତାଙ୍କ ସ୍ୱାସ୍ଥ୍ୟରେ ବିଶେଷ ଉନ୍ନତି ହେଲା ନାହିଁ । ଏଆଡ଼େ ଅଳସୁଆ ହୋଇ କାଳକାଟିବା ତାଙ୍କ ପକ୍ଷରେ ଅସମ୍ଭବ ହୋଇଗଲା । ସେ ପୁନରାୟ କଲିକତା ଫେରି ଆସିଲେ ।

ସ୍ୱାମୀଜୀ ପାଶ୍ଚାତ୍ୟ ଦେଶରେ ଥିବା ସମୟରେ କେତେଜଣ ଯୁବକ ଆଲମବଜାର ମଠରେ ଯୋଗଦାନ କରି ବ୍ରହ୍ମଚାରୀ ଜୀବନଯାପନ କରୁଥିଲେ । ବର୍ତ୍ତମାନ ସେମାନେ ସ୍ୱାମୀଜୀଙ୍କ ନିକଟରୁ ସନ୍ନ୍ୟାସ-ଦୀକ୍ଷା ଗ୍ରହଣ କରିବା ନିମିତ୍ତ ଉତ୍ସୁକ ହୋଇ ଉଠିଲେ । ସ୍ୱାମୀଜୀ ସେମାନଙ୍କ ଉତ୍ସାହ ଦେଖି ଆନନ୍ଦିତ ହେଲେ, କିନ୍ତୁ ଜଣଙ୍କ ସମ୍ବନ୍ଧରେ ତାଙ୍କ ଗୁରୁଭ୍ରାତାମାନେ ପ୍ରବଳ ଆପତ୍ତି କଲେ । ଏହି

ବ୍ୟକ୍ତିଙ୍କର ପୂର୍ବ ଜୀବନ ଭଲ ନ ଥିଲା, ଅତଏବ ତାଙ୍କୁ ସନ୍ନ୍ୟାସ ପ୍ରଦାନ କରି ମଠଭୁକ୍ତ କରିବା ଲାଗି ଅନେକେ ଇଚ୍ଛା କରୁ ନ ଥିଲେ । ସ୍ୱାମୀଜୀ ଗୁରୁଭ୍ରାତାମାନଙ୍କ ଅଭିପ୍ରାୟ ଅବଗତ ହୋଇ ସେମାନଙ୍କୁ ଡାକି କହିଲେ, ''ଆମେ ଯଦି ପାପୀଙ୍କୁ ଆଶ୍ରୟ ଦେବାକୁ ସଙ୍କୁଚିତ ହେବା, ତାହାହେଲେ ଏମାନେ କେଉଁଠାରେ ଆଶ୍ରୟ ପାଇବେ ? ଏ ଯେତେବେଳେ ଉଚ୍ଚତର ପବିତ୍ର ଜୀବନଯାପନ କରିବାର ସଂକଳ୍ପ କରି ସଂସାର ତ୍ୟାଗ କରିଛି, ତାକୁ ସାହାଯ୍ୟ କରିବା ଆମମାନଙ୍କର କର୍ତ୍ତବ୍ୟ । ତୁମେ ଯଦି ଉଚ୍ଛୃଙ୍ଖଳ ଓ ଅସତ୍ ଚରିତ୍ର ବ୍ୟକ୍ତିମାନଙ୍କର ଚରିତ୍ର ସଂଶୋଧନ କରିବାକୁ ଅପାରଗ ହୁଅ, ତାହାହେଲେ ଗୈରିକ ପରିଧାନ କରି ଆଚାର୍ଯ୍ୟତ୍ୱ ଗ୍ରହଣ କରିଛ କାହିଁକି ?'' ପତିତପାବନ ସ୍ୱାମୀଜୀଙ୍କ ଇଚ୍ଛା ପୂର୍ଣ୍ଣ ହେଲା, ତାଙ୍କ ଗୁରୁଭ୍ରାତାମାନେ ଆଉ ଆପତ୍ତି କଲେ ନାହିଁ ।

''ସ୍ୱାମୀଜୀ ବୈଦିକ କ୍ରିୟାକାଣ୍ଡରେ ସମ୍ପୂର୍ଣ୍ଣ ବିଶ୍ୱାସୀ ଥିଲେ; ଶାସ୍ତ୍ରମତେ ଏହିସବୁ କ୍ରିୟାକାଣ୍ଡ ଠିକ୍ ଠିକ୍ ସମ୍ପନ୍ନ ନ ହେଲେ ମହା ବିରକ୍ତ ହେଉଥିଲେ । ଆଜିକାଲି ଯେପରି ଗେରୁଆ ପିନ୍ଧି ବାହାରିଲେ ଅନେକ ସନ୍ନ୍ୟାସ-ଦୀକ୍ଷା ସମ୍ପନ୍ନ ହୋଇଗଲା ବୋଲି ମନେ କରନ୍ତି, ସ୍ୱାମୀଜୀ ସେପରି ମନେ କରୁ ନ ଥିଲେ । ଗୁରୁ-ପରଂପରାଗତ ଆବହମାନ କାଳରୁ ପ୍ରଚଳିତ ବ୍ରହ୍ମବିଦ୍ୟା ସାଧନା ଉପଯୋଗୀ ସନ୍ନ୍ୟାସ ଗ୍ରହଣର ପ୍ରାଗନୁଷ୍ଠେୟ ନୈଷ୍ଠିକ ସଂସ୍କାରଗୁଡ଼ିକୁ ବ୍ରହ୍ମଚାରୀମାନଙ୍କଦ୍ୱାରା ଠିକ୍ ଠିକ୍ ସାଧନ କରାଇ ନେଉଥିଲେ ।''

''କୃତଶ୍ରାଦ୍ଧ, ସନ୍ନ୍ୟାସବ୍ରତ ଗ୍ରହଣେଚ୍ଛୁ ଶିଷ୍ୟମାନେ ଯେତେବେଳେ ଆସି ସ୍ୱାମୀଜୀଙ୍କ ପାଦପଦ୍ମ ବନ୍ଦନା କଲେ, ସେତେବେଳେ ସ୍ୱାମୀଜୀ ସେମାନଙ୍କୁ ଆଶୀର୍ବାଦ କରି କହିଲେ, 'ତୁମେମାନେ ମାନବଜୀବନର ଶ୍ରେଷ୍ଠ ବ୍ରତ ଗ୍ରହଣ କରିବାକୁ ଉତ୍ସାହିତ ହୋଇଛ; ଧନ୍ୟ ତୁମ ଜନ୍ମ—ଧନ୍ୟ ତୁମ ବଂଶ, ଧନ୍ୟ ତୁମ ଗର୍ଭଧାରିଣୀ । କୁଳଂ ପବିତ୍ରଂ ଜନନୀ କୃତାର୍ଥା' ।''

''ଅତଃପର ସନ୍ନ୍ୟାସାଶ୍ରମର ମହାତ୍ମ୍ୟ ବର୍ଣ୍ଣନା କରୁ କରୁ ସ୍ୱାମୀଜୀଙ୍କ ତପୋଦୀପ୍ତ ବଦନମଣ୍ଡଳ ସ୍ୱର୍ଗୀୟ ବିଭାରେ ଉଦ୍‌ଭାସିତ ହୋଇଗଲା । ସେ କହିବାକୁ ଲାଗିଲେ, 'ବହୁଜନହିତାୟ, ବହୁଜନସୁଖାୟ' ସନ୍ନ୍ୟାସୀର ଜନ୍ମ । ସନ୍ନ୍ୟାସ ଗ୍ରହଣ କରି ଯେଉଁମାନେ ଏହି ଉଚ୍ଚାଦର୍ଶ ଭୁଲିଯାଆନ୍ତି, ବୃଥୈବ ତସ୍ୟ ଜୀବନଂ । ପରପାଇଁ ପ୍ରାଣ ଦେବାକୁ, ଜୀବର ଗଗନଭେଦୀ କ୍ରନ୍ଦନ ନିବାରଣ କରିବାକୁ, ବିଧବାର ଅଶ୍ରୁ ପୋଛି ଦେବାକୁ, ପୁତ୍ର-ବିୟୋଗବିଧୁରା ପ୍ରାଣରେ ଶାନ୍ତି ଦେବାକୁ, ଅଜ୍ଞ ଇତର ସାଧାରଣଙ୍କୁ ଜୀବନ ସଂଗ୍ରାମର ଉପଯୋଗୀ କରିବାକୁ ଶାସ୍ତ୍ରୋପଦେଶ ବିସ୍ତାରଦ୍ୱାରା ସମସ୍ତଙ୍କ ଐହିକ ଓ ପାରମାର୍ଥିକ ମଙ୍ଗଳ କରିବାକୁ ଏବଂ ଜ୍ଞାନାଲୋକ ଦେଇ ସମସ୍ତଙ୍କ ଭିତରେ ପ୍ରସୁପ୍ତ ବ୍ରହ୍ମସିଂହକୁ ଜାଗ୍ରତ କରିବାକୁ ଜଗତରେ ସନ୍ନ୍ୟାସୀଙ୍କ ଜନ୍ମ ହୋଇଛି ।' ପରେ ନିଜ ଭାଇମାନଙ୍କୁ ଲକ୍ଷ୍ୟ କରି କହିଲେ, 'ଆତ୍ମନୋ ମୋକ୍ଷାର୍ଥଂ ଜଗଦ୍ଧିତାୟ ଚ—ଆମମାନଙ୍କର ଜନ୍ମ । ବସି

ବସି କ'ଣ କରୁଛ ? ଉଠ, ନିଜେ ଜାଗ । ନିଜେ ଜାଗି ଅନ୍ୟ ସମସ୍ତଙ୍କୁ ଜାଗ୍ରତ କର—ନରଜନ୍ମକୁ ସାର୍ଥକ କରି ଚାଲିଯା'—'ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତ' ।'' (ସ୍ୱାମୀଜୀ-ଶିଷ୍ୟ ସମ୍ବାଦ)

## ରାମକୃଷ୍ଣ ମିଶନ ପ୍ରତିଷ୍ଠା

ସ୍ୱାମୀଜୀ ଆଲମବଜାର ମଠ ଓ ବାଗ୍‌ବଜାରର ବଳରାମ ବସୁ ମହାଶୟଙ୍କ ଭବନରେ ରହି ଉତ୍ସାହର ସହିତ ଯୁଗଧର୍ମ ପ୍ରଚାରରେ ଲାଗିଲେ । ଏହି କାର୍ଯ୍ୟ ପାଇଁ ଶ୍ରୀରାମକୃଷ୍ଣ ଭକ୍ତବୃନ୍ଦଙ୍କୁ ସଂଘବଦ୍ଧ କରିବାର ସଙ୍କଳ୍ପ ବହୁଦିନୁ ତାଙ୍କ ମନରେ ଥିଲା, ବର୍ତ୍ତମାନ ଅବସ୍ଥାର ଆନୁକୂଲ୍ୟରେ ସେ ସଂଘ ପ୍ରତିଷ୍ଠା କରିବାର ଅଭିପ୍ରାୟ ପ୍ରକାଶ କଲେ । ୧୮୯୭ ଖ୍ରୀଷ୍ଟାବ୍ଦ ମଇ ପହିଲା ଦିନ ସ୍ୱାମୀଜୀଙ୍କ ଆହ୍ୱାନରେ ଶ୍ରୀରାମକୃଷ୍ଣଙ୍କ ଗୃହୀ ଓ ସନ୍ନ୍ୟାସୀ ଭକ୍ତବୃନ୍ଦ ଅପରାହ୍ଣରେ ବଳରାମବାବୁଙ୍କ ଭବନରେ ସମବେତ ଭକ୍ତଗଣଙ୍କୁ ଲକ୍ଷ୍ୟ କରି କହିଲେ, ''ନାନା ଦେଶ ବୁଲି ମୋର ଧାରଣା ହୋଇଛି, ସଂଘ ବ୍ୟତୀତ କୌଣସି ବଡ଼ କାମ ହୋଇପାରିବ ନାହିଁ । ତେବେ ଆମ ଦେଶ ଭଳି ସ୍ଥାନରେ ପ୍ରଥମରୁ ସଂଘ ଗଠନ କରିବା ବା ସାଧାରଣଙ୍କ ସମ୍ମତି ନେଇ କାମ କରିବା ସେତେ ସୁବିଧାଜନକ ନୁହେଁ । ଏ ଦେଶରେ ଶିକ୍ଷା ବିସ୍ତାର ଲାଗି ଯେତେବେଳେ ଇତର ଲୋକେ ସମଧିକ ସହୃଦୟ ହେବେ, ସେତେବେଳେ ମତ ଫତର ସଂକୀର୍ଣ୍ଣ ସୀମା ବାହାରେ ଚିନ୍ତା ପ୍ରସାରିତ କରି ଶିଖିବେ, ସେତେବେଳେ ସାଧାରଣ ମତାନୁସାରେ ସଂଘ କାର୍ଯ୍ୟ ଚଳିପାରିବ । ସେଥିପାଇଁ ଏ ସଂଘର ଜଣେ ପ୍ରଧାନ ପରିଚାଳକ ରହିବା ଆବଶ୍ୟକ । ସମସ୍ତଙ୍କୁ ତାଙ୍କ ଆଦର୍ଶ ମାନି ଚଳିବାକୁ ହେବ । ତା' ପରେ ସମସ୍ତଙ୍କ ମତ ନେଇ କାମ ହେବ ।

''ଆମ୍ଭେମାନେ ଯାହାଙ୍କ ନାଁରେ ସନ୍ନ୍ୟାସୀ ହୋଇଛୁ, ଆପଣମାନେ ଯାହାଙ୍କୁ ଜୀବନର ଆଦର୍ଶ କରି ସଂସାରାଶ୍ରମର କାର୍ଯ୍ୟକ୍ଷେତ୍ରରେ ରହିଛନ୍ତି, ଯାହାଙ୍କ ଦେହାବସାନ ପରେ କୋଡ଼ିଏ ବର୍ଷ ମଧ୍ୟରେ ପ୍ରାଚ୍ୟ ପାଶ୍ଚାତ୍ୟ ଜଗତରେ ତାଙ୍କର ପୁଣ୍ୟ ନାମ ଓ ଅଦ୍ଭୁତ ଜୀବନର ଆଶ୍ଚର୍ଯ୍ୟ ପ୍ରସାର ହୋଇଛି, ଏହି ସଂଘ ତାଙ୍କ ନାମାନୁସାରେ ପ୍ରତିଷ୍ଠିତ ହେବ । ଆମ୍ଭେମାନେ ପ୍ରଭୁଙ୍କ ଦାସ, ଆପଣମାନେ ଏ କାର୍ଯ୍ୟରେ ସାହାଯ୍ୟ କରନ୍ତୁ ।''

ଗିରିଶଚନ୍ଦ୍ର ଘୋଷ ପ୍ରମୁଖ ଉପସ୍ଥିତ ଗୃହୀଗଣ ଏହି ପ୍ରସ୍ତାବ ଅନୁମୋଦନ କରିବା ପରେ ରାମକୃଷ୍ଣ ସଂଘର ଭାବୀ କାର୍ଯ୍ୟପ୍ରଣାଳୀ ଆଲୋଚିତ ହେଲା । ସଂଘର ନାମ ରହିଲା, ରାମକୃଷ୍ଣ ପ୍ରଚାର ବା ରାମକୃଷ୍ଣ ମିଶନ୍ । ଏହାର ଉଦ୍ଦେଶ୍ୟ ପ୍ରଭୃତି ସଂଘର ମୁଦ୍ରିତ ବିଜ୍ଞାପନରୁ ନିମ୍ନଲିଖିତ ମତେ ଜଣାପଡ଼େ—

ଉଦ୍ଦେଶ୍ୟ—ମାନବର ହିତାର୍ଥରେ ଶ୍ରୀଶ୍ରୀରାମକୃଷ୍ଣ ଯେଉଁ ସକଳ ତତ୍ତ୍ୱ ବ୍ୟାଖ୍ୟା କରିଛନ୍ତି ଓ କାର୍ଯ୍ୟଦ୍ୱାରା ତାଙ୍କ ଜୀବନରେ ପ୍ରତିପାଦିତ କରିଛନ୍ତି, ତାହାର ପ୍ରଚାର ଏବଂ ମନୁଷ୍ୟର ଦୈହିକ, ମାନସିକ ଓ ପାରମାର୍ଥିକ ଉନ୍ନତିକଳ୍ପେ ଯେପରି

ସେହିସବୁ ତତ୍ତ୍ୱ ପ୍ରଯୁକ୍ତ ହୋଇପାରେ, ସେ ବିଷୟରେ ସାହାଯ୍ୟ କରିବା ଏହି ମିଶନର ଉଦ୍ଦେଶ୍ୟ ।

ବ୍ରତ — ଜଗତର ଯାବତୀୟ ଧର୍ମମତକୁ ଗୋଟିଏ ଅଖଣ୍ଡ ସନାତନଧର୍ମର ରୂପାନ୍ତର ମାତ୍ର ଜ୍ଞାନରେ ସକଳ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଆତ୍ମୀୟତା ସ୍ଥାପନ ନିମିତ୍ତ ଶ୍ରୀଶ୍ରୀରାମକୃଷ୍ଣ ଯେଉଁ କାର୍ଯ୍ୟର ଅବତାରଣା କରିଥିଲେ, ତାହାର ପରିଚାଳନା ଏହି ମିଶନର ବ୍ରତ ।

କାର୍ଯ୍ୟ ପ୍ରଣାଳୀ — ମଣିଷର ସାଂସାରିକ ଓ ଆଧ୍ୟାତ୍ମିକ ଉନ୍ନତି ନିମିତ୍ତ ବିଦ୍ୟାଦାନ ପାଇଁ ଉପଯୁକ୍ତ ଲୋକଙ୍କୁ ଶିକ୍ଷା ପ୍ରଦାନ, ଶିଳ୍ପ ଓ ଶ୍ରମୋପଜୀବିକାର ଉତ୍ସାହବର୍ଦ୍ଧନ ଏବଂ ବେଦାନ୍ତ ଓ ଅନ୍ୟାନ୍ୟ ଧର୍ମଭାବ, ରାମକୃଷ୍ଣ-ଜୀବନରେ ଯେପରି ବ୍ୟାଖ୍ୟାତ ହୋଇଥିଲା, ତାହା ଜନସମାଜରେ ପ୍ରବର୍ତ୍ତନ ।

ଭାରତବର୍ଷୀୟ କାର୍ଯ୍ୟ — ଭାରତବର୍ଷର ପ୍ରତ୍ୟେକ ନଗରରେ ଆଚାର୍ଯ୍ୟବ୍ରତ ଗ୍ରହଣଭିଳାଷୀ ଗୃହସ୍ଥ ବା ସନ୍ନ୍ୟାସୀମାନଙ୍କ ଶିକ୍ଷା ପାଇଁ ଆଶ୍ରମ ସ୍ଥାପନ ଏବଂ ଯଦ୍ଦ୍ୱାରା ସେମାନେ ଦେଶଦେଶାନ୍ତରକୁ ଯାଇ ଜନଗଣଙ୍କୁ ଶିକ୍ଷିତ କରିପାରନ୍ତି, ତାହାର ଉପାୟ ଅବଲମ୍ବନ ।

ବିଦେଶୀୟ କାର୍ଯ୍ୟବିଭାଗ — ଭାରତ ବାହାରେ ଥିବା ଦେଶମାନଙ୍କୁ 'ବ୍ରତଧାରୀ ପ୍ରେରଣ ଏବଂ ସେହି ସେହି ଦେଶରେ ସ୍ଥାପିତ ଆଶ୍ରମଗୁଡ଼ିକ ସହିତ ଭାରତୀୟ ଆଶ୍ରମଗୁଡ଼ିକର ଘନିଷ୍ଠତା ଓ ସହାନୁଭୂତି ବର୍ଦ୍ଧନ ଏବଂ ନୂତନ ଆଶ୍ରମ ସଂସ୍ଥାପନ ।

ସ୍ୱାମୀଜୀ ଉକ୍ତ ସମିତିର ସାଧାରଣ ସଭାପତି ହେଲେ । ସ୍ୱାମୀ ବ୍ରହ୍ମାନନ୍ଦ କଲିକତା କେନ୍ଦ୍ରର ସଭାପତି ଓ ସ୍ୱାମୀ ଯୋଗନନ୍ଦ ଉପସଭାପତି ହେଲେ । ଆଟର୍ଣ୍ଣୀ ବାବୁ ନରେନ୍ଦ୍ରନାଥ ମିତ୍ର ଏହାର ସମ୍ପାଦକ, ଡାକ୍ତର ଶଶୀଭୂଷଣ ଘୋଷ ଓ ଶ୍ରୀ ଶରତ୍‌ଚନ୍ଦ୍ର ସରକାର ସହକାରୀ ସମ୍ପାଦକ ଏବଂ ଶିଷ୍ୟ (ସ୍ୱାମୀଜୀ ଶିଷ୍ୟ ସମ୍ବାଦର ପ୍ରଣେତା) ଶାସ୍ତ୍ର-ପାଠକ ନିର୍ବାଚିତ ହେଲେ । ସଙ୍ଗେ ସଙ୍ଗେ ବିଧିବଦ୍ଧ ନିୟମ ହେଲା ଯେ, ପ୍ରତି ରବିବାର ଅପରାହ୍ନ ଚାରିଟା ପରେ ବଳରାମବାବୁଙ୍କ ଘରେ ସମିତିର ବୈଠକ ବସିବ । ପୂର୍ବୋକ୍ତ ସଭା ପରେ ତିନିବର୍ଷ ପର୍ଯ୍ୟନ୍ତ 'ରାମକୃଷ୍ଣ ମିଶନ' ସମିତିର ଅଧିବେଶନ ପ୍ରତି ରବିବାର ଦିନ ବଳରାମ ବାବୁଙ୍କ ଘରେ ବସୁଥିଲା । କହିବା ବାହୁଲ୍ୟ ଯେ, ସ୍ୱାମୀଜୀ ଯେତେଦିନ ପର୍ଯ୍ୟନ୍ତ ପୁଣି ଥରେ ବିଲାତ ଯାଇ ନ ଥିଲେ, ସେତେଦିନ ସୁବିଧାମତେ ସମିତିର ଅଧିବେଶନରେ ଉପସ୍ଥିତ ରହି କେତେବେଳେ ଉପଦେଶ ଦାନ ଏବଂ ଅନ୍ୟ କେତେବେଳେ କିନ୍ନର କଣ୍ଠରେ ଗାନ କରି ଶ୍ରୋତୃବୃନ୍ଦଙ୍କୁ ମୋହିତ କରୁଥିଲେ । (ସ୍ୱାମୀଜୀ-ଶିଷ୍ୟ ସମ୍ବାଦ)

## ଶ୍ରୀରାମକୃଷ୍ଣ ଓ କର୍ମଯୋଗ

ଶ୍ରୀରାମକୃଷ୍ଣ ମିଶନ ପ୍ରତିଷ୍ଠା ହେବା ପରେ କୌଣସି କୌଣସି ରାମକୃଷ୍ଣଭକ୍ତ, ସ୍ୱାମୀଜୀ ବୈଦେଶିକ ରୀତିରେ କାର୍ଯ୍ୟ କରୁଛନ୍ତି ବୋଲି ସନ୍ଦେହ କରିବାକୁ ଲାଗିଲେ । ଦିନେ ସନ୍ଧ୍ୟା ସମୟରେ ବଳରାମ ବାବୁଙ୍କ ଘରେ ସ୍ୱାମୀଜୀ ଗୁରୁଭାଇମାନଙ୍କ ସହିତ ରହସ୍ୟାଳାପ କରୁଛନ୍ତି, ଏହି ସମୟରେ ତାଙ୍କର ଜଣେ ସନ୍ନ୍ୟାସୀ ଗୁରୁଭାଇ ସହସା ପଚାରିଲେ ଯେ, ସେ କାହିଁକି ଶ୍ରୀରାମକୃଷ୍ଣଙ୍କୁ ପ୍ରଚାର କରୁ ନାହାନ୍ତି ? ଶ୍ରୀରାମକୃଷ୍ଣଙ୍କ ଶିକ୍ଷା ସହିତ ତାଙ୍କଦ୍ୱାରା ପ୍ରଚାରିତ ଆଦର୍ଶଗୁଡ଼ିକର ସାମଞ୍ଜସ୍ୟ କେଉଁଠି ? କାରଣ ଏକାନ୍ତ ଭକ୍ତି ସହିତ ଅନନ୍ୟଚିତ୍ତ ହୋଇ ସାଧନଭଜନ ସାହାଯ୍ୟରେ କେବଳ ମାତ୍ର ଈଶ୍ୱର-ଉପଲବ୍ଧ ପାଇଁ ଚେଷ୍ଟା କରିବା ଠାକୁରଙ୍କର ଆଦର୍ଶ ଥିଲା । ଅନ୍ୟ ଦିଗରେ ସ୍ୱାମୀଜୀ ସବୁ କଥାକୁ କର୍ମ କହୁଥିଲେ — ରୋଗୀ ଓ ଦରିଦ୍ରର ସେବା, ଶିକ୍ଷାବିସ୍ତାର, ଧର୍ମପ୍ରଚାର ଇତ୍ୟାଦି କରିବାକୁ ଉପଦେଶ ଦେଉଥିଲେ । ଏହିସବୁ କର୍ମ ମନକୁ ସ୍ୱତଃ ବହିର୍ମୁଖ କରି ଦେଉଥିଲା ଏବଂ ସାଧନାରେ ବିଘ୍ନକର ହେଉଥିଲା । ସ୍ୱାମୀଜୀ ଯେ ଜନହିତ ଲାଗି ମଠ, ମିଶନ, ବେଦାନ୍ତ ସମିତି, ସେବାଶ୍ରମ ଇତ୍ୟାଦି ପ୍ରତିଷ୍ଠା କରିବା ଲାଗି ସଙ୍କଳ୍ପ କରିଥିଲେ, ସ୍ୱଦେଶପ୍ରେମ ମାଧ୍ୟମରେ ମାନବ-ସେବାବ୍ରତ ପ୍ରଚାର କରୁଥିଲେ — ଏଗୁଡ଼ିକ ପାଶ୍ଚାତ୍ୟ ଆଦର୍ଶ ବୋଲି ମନେହୁଏ, ସର୍ବତ୍ୟାଗ ହିଁ ଶ୍ରୀଶ୍ରୀଠାକୁରଙ୍କର ମୂଳମନ୍ତ୍ର ଥିଲା ।

ବାହାର ଲୋକଙ୍କ ନିକଟରେ ବିଶ୍ୱବିଖ୍ୟାତ ବିବେକାନନ୍ଦ ଯାହା ହୁଅନ୍ତୁ ନା କାହିଁକି, ଗୁରୁଭାଇ ଓ ଅନ୍ତରଙ୍ଗ ଭକ୍ତମଣ୍ଡଳୀ ନିକଟରେ ଚିରଦିନ ସେହି ହାସ୍ୟରସିକ ବ୍ୟଙ୍ଗମୁଖର ନରେନ୍ଦ୍ରନାଥ ହିଁ ଥିଲେ । କୌତୁକପ୍ରିୟ ସ୍ୱାମୀଜୀ ଭକ୍ତ ଗୁରୁଭାଇଙ୍କ ବିଷୟରେ ପରିହାସ ଆରମ୍ଭ କରିଦେଲେ । ସେ ବିଦ୍ରୂପ କରି କହିଲେ, ''ତୁମେ କ'ଣ କହିବାକୁ ଚାହଁ ଯେ, ଲେଖାପଢ଼ା, ସାଧାରଣରେ ଧର୍ମପ୍ରଚାର, ଆର୍ତ୍ତ, ରୋଗୀ, ଅନାଥ ଏମାନଙ୍କର ସେବା କରିବା — ଦୁଃଖ ଦୂର କରିବା ଲାଗି ଚେଷ୍ଟା କଲେ ଏପରି ମାୟାରେ ବାନ୍ଧି ହୋଇଯିବ ? 'ଈଶ୍ୱର ଅନ୍ୱେଷଣ କର, ଜଗତର ଉପକାର କରିବାକୁ ଯିବା ଅନଧିକାର ଚର୍ଚ୍ଚା ମାତ୍ର' — ଏଭଳି କଥା ଠାକୁର ବ୍ୟକ୍ତିବିଶେଷଙ୍କୁ କହୁଥିଲେ ବୋଲି ଯଦି ଏ ସମସ୍ତ କାର୍ଯ୍ୟକୁ ମନ୍ଦ ବୋଲି ଭାବ, ତାହା ହେଲେ ତୁମେ ଠାକୁରଙ୍କ ଉଦ୍ଦେଶ୍ୟକୁ ବିନ୍ଦୁଏ ମାତ୍ର ବୁଝି ନାହଁ ।'' କହୁ କହୁ ତାଙ୍କ ବ୍ୟଙ୍ଗଭାବ ଅନ୍ତର୍ହିତ ହୋଇଗଲା । ବେଦାନ୍ତ-କେଶରୀ ଦୃପ୍ତଗର୍ଜନରେ କହି ଉଠିଲେ, ''ତୁମେ କ'ଣ ମନେକରୁଛ ଯେ, ତୁମେ ମୋଠାରୁ ବେଶୀ ଶ୍ରୀରାମକୃଷ୍ଣଙ୍କୁ ବୁଝିଛ ? ତୁମେ କ'ଣ ମନେକରୁଛ ଯେ, ଜ୍ଞାନ ଶୁଷ୍କ ପାଣ୍ଡିତ୍ୟ ମାତ୍ର — ଯାହା ହୃଦୟରୁ କୋମଳବୃତ୍ତିଗୁଡ଼ିକ ଉଚ୍ଛେଦ ସାଧନ କରିବା ଲାଗି ଗୋଟିଏ ଉଷର ପନ୍ଥା ଅବଲମ୍ବନ କରି ଅର୍ଜ୍ଜନ କରିବାକୁ ହୁଏ ? ତୁମେ ଯେଉଁ ଭକ୍ତିକୁ ଲକ୍ଷ୍ୟ କରୁଛ, ତାହା

ଅହମିକାର ଭାବୁକତା ମାତ୍ର, ଯାହା ମନୁଷ୍ୟକୁ କାପୁରୁଷ ଓ କର୍ମବିମୁଖ କରିପକାଏ। ଶ୍ରୀରାମକୃଷ୍ଣଙ୍କୁ ପ୍ରଚାର କରିବା କଥା କହୁଛ ? ତୁମେ ଆମେ ତାଙ୍କ ଅନ୍ତର ଭାବର କେତେ ଟିକିଏର ଇୟତ୍ତା କରିପାରିଛେ ଯେ, ଜଗତକୁ କହିବାକୁ ଯିବା ? ଧୈର୍ଯ୍ୟ ଧର । କିଏ ତୁମ ଶ୍ରୀରାମକୃଷ୍ଣଙ୍କୁ ଚାହେଁ ? କିଏ ତୁମ ଭକ୍ତି ଓ ମୁକ୍ତି ବିଷୟରେ ମୁଣ୍ଡ ଘୁରାଏ ? ଶାସ୍ତ୍ର କ'ଣ କହୁଛି, କିଏ ଶୁଣେ ? ଯଦି ମୁଁ ତମୋହ୍ରଦରେ ନିମଗ୍ନ ମୋ ସ୍ୱଦେଶବାସୀଙ୍କୁ କର୍ମଯୋଗଦ୍ୱାରା ଅନୁପ୍ରାଣିତ କରି ପ୍ରକୃତ ମଣିଷ ପରି ନିଜ ଗୋଡ଼ ଉପରେ ଠିଆ କରାଇପାରେ ତାହା ହେଲେ ମୁଁ ଆନନ୍ଦରେ ଲକ୍ଷେ ନରକକୁ ଯିବି । ମୁଁ ତୁମ ରାମକୃଷ୍ଣ କି ଅନ୍ୟ କାହାରି ଚେଲା ନୁହେଁ; ଯେଉଁମାନେ ନିଜ ଭକ୍ତି-ମୁକ୍ତି କାମନା ତ୍ୟାଗ କରି ଦରିଦ୍ର-ନାରାୟଣଙ୍କ ସେବାରେ ଜୀବନ ଉତ୍ସର୍ଗ କରିବେ ମୁଁ ସେମାନଙ୍କ ଚେଲା, ଭୃତ୍ୟ, କ୍ରୀତଦାସ'' ସ୍ୱାମୀଜୀଙ୍କ ଆବେଗ ରକ୍ତିମ ମୁଖମଣ୍ଡଳରେ ସ୍ୱର୍ଗୀୟ କରୁଣାର ଛବି ଫୁଟି ଉଠିଲା — ପରାଧୀନତାର ପେଷଣରେ ଅପହୃତ ମନୁଷ୍ୟତ୍ୱ ଭାରତବାସୀଙ୍କର ଅସୀମ ଦୁଃଖର ଦୁଃସହ ସ୍ମୃତି ତାଙ୍କ ହୃତ୍‌ମର୍ମ ମଥିତ କରି ଉଦ୍‌ବେଳିତ ହୋଇ ଉଠିଲା — ସେହି ବିଶାଳ ବୀର-ବକ୍ଷ ଯେପରି କି ବିଦୀର୍ଣ୍ଣ ହୋଇଯିବ; ଏହି ଆଶଙ୍କାରେ ଉଭୟ ହସ୍ତରେ ବକ୍ଷ ଚାପିଧରି ସେ ଦ୍ରୁତ ପଦରେ ସ୍ୱୀୟ ବିଶ୍ରାମ କକ୍ଷରେ ପ୍ରବେଶ କରି ଦ୍ୱାର ବନ୍ଦ କରିଦେଲେ । ଜଣେ ଦୁଇଜଣ ଧୀରେ ଧୀରେ ଯାଇ ସନ୍ତର୍ପଣରେ ଝରକା ନିକଟରେ ଠିଆ ହୋଇ ଦେଖିଲେ, ଆଚାର୍ଯ୍ୟଦେବ ତଳେ ବସି ଭାବ-ସମାଧିସ୍ଥ ! ଭୟ ଓ ବିସ୍ମୟରେ ଗୁରୁଭ୍ରାତାଗଣ ପରସ୍ପର ମୁହଁ ଚାହାଁ ଚାହିଁ ହେଲେ । ପ୍ରାୟ ଘଣ୍ଟାକ ପରେ ଯେତେବେଳେ ସେ ପୁନର୍ବାର ଗୁରୁଭ୍ରତାମାନଙ୍କ ନିକଟକୁ ଫେରି ଆସିଲେ, ସେତେବେଳେ ଝଡ଼ଶେଷରେ ଆନ୍ଦୋଳିତ ସମୁଦ୍ର ପରି ତାଙ୍କ ଗମ୍ଭୀର ମୂର୍ତ୍ତି ଦେଖି କାହାରି ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ । କିଛିକ୍ଷଣ ପରେ ସେ ମୌନଭଙ୍ଗ କରି କହିଲେ, ''ଯାହାର ହୃଦୟ ଭକ୍ତିରେ ପୂର୍ଣ୍ଣ ହୋଇଛି, ତା'ର ସ୍ନାୟୁଗୁଡ଼ିକ ଏତେ କୋମଳ ହୋଇପଡ଼େ ଯେ, ସାମାନ୍ୟ ଫୁଲର ଆଘାତ ପର୍ଯ୍ୟନ୍ତ ସହ୍ୟ କରିପାରେ ନାହିଁ; ତୁମେ ଜାଣ, ମୁଁ ଆଜିକାଲି ପ୍ରେମଭକ୍ତି ସମ୍ବନ୍ଧୀୟ କୌଣସି ପୁସ୍ତକ ପଢ଼ିପାରେ ନାହିଁ । ଶ୍ରୀରାମକୃଷ୍ଣଙ୍କ ସମ୍ବନ୍ଧରେ ବେଶୀ ବେଳ କଥା କହିବାକୁ ହେଲେ ଭାବରେ ଅଭିଭୂତ ହୋଇପଡ଼େ । ଅନ୍ତର୍ନିହିତ ଏହି ଭକ୍ତିପ୍ରବାହର ଗତିରୋଧ କରିବା ଲାଗି ମୁଁ କ୍ରମାଗତ ଚେଷ୍ଟା କରୁଛି, କର୍ମର କଠିନ ଶୃଙ୍ଖଳରେ ନିଜକୁ ବାନ୍ଧି ରଖୁଛି, କାରଣ ଏବେ ବି ଜଗତକୁ ମୋର ଯେଉଁ ବାର୍ତ୍ତା ଦେବାର ଅଛି, ତାହା ଶେଷ ହୋଇ ନାହିଁ । ତେଣୁ ଯଦି ଦେଖେ, ଭକ୍ତିର ଉଦ୍ଦାମ ପ୍ରବାହ ମୋତେ ଭସାଇ ନେଉଛି, ସେତେବେଳେ କଠୋର ଜ୍ଞାନର ରୁଦ୍ରଦଣ୍ଡ ସାହାଯ୍ୟରେ ଆଘାତ କରି ଏହିସବୁ ଭାବକୁ ସଂଯତ କରେ । ହାୟ, ତେବେ ବି ମୋର ମୁକ୍ତି ନାହିଁ ! ଏବେ ମଧ୍ୟ ମୋତେ ଅନେକ କାମ କରିବାକୁ ହେବ । ମୁଁ ଶ୍ରୀରାମକୃଷ୍ଣଙ୍କ କ୍ରୀତଦାସ, ସେ ମୋ କାନ୍ଧ ଉପରେ ଯେଉଁ କାର୍ଯ୍ୟଭାର ନିକ୍ଷେପ କରି ଯାଇଛନ୍ତି, ଯେ ପର୍ଯ୍ୟନ୍ତ ମୁଁ

ତାହାକୁ ସମାପ୍ତ କରିପାରି ନାହିଁ, ସେ ପର୍ଯ୍ୟନ୍ତ ସେ ମୋତେ ବିଶ୍ରାମ କରିବାକୁ ଦେବେ ନାହିଁ !''

ଏହି ବିଷୟରେ ଆଲୋଚନା ପ୍ରସଙ୍ଗରେ ପୂଜନୀୟ ସ୍ୱାମୀ ସାରଦାନନ୍ଦ ଦିନେ ଏହି ମର୍ମରେ କହିଥିଲେ, ''ଦିନେ ଦକ୍ଷିଣେଶ୍ୱରଠାରେ ଆମେ ସମସ୍ତେ ବସିଛୁ, ନରେନ୍ଦ୍ରନାଥ ମଧ୍ୟ ସେଦିନ ଉପସ୍ଥିତ ଥିଲେ । ଦୟା, ପରୋପକାର ଇତ୍ୟାଦି ସମ୍ବନ୍ଧରେ କଥା କହୁ କହୁ ଶ୍ରୀଶ୍ରୀଠାକୁର ଭାବମୁଖର ହୋଇ କହିଲେ, 'ଜୀବେ ଦୟା, ନାମେ ରୁଚି, ବୈଷ୍ଣବସେବନ—ଦୟା ? କିଏ କାହାକୁ ଦୟା କରିବ ? ଦୟା ନୁହେଁ—ଦୟା ନୁହେଁ, ସେବା—ସେବା ।' କିଛି ସମୟ ପରେ ନରେନ୍ଦ୍ରନାଥ ବାହାରକୁ ଆସି ମୋତେ ପଚାରିଲେ, 'ଆଜି ଠାକୁର ଯାହା କହିଲେ, କିଛି ବୁଝିଲ ?' ମୁଁ ବୁଝିପାରି ନାହିଁ ବୋଲି ଶୁଣି ସେ କହିଲେ, 'ବୁଦ୍ଧି ଥିଲେ ସିନା ବୁଝିବ ? ଓଃ ! ଆଜି କି ନୂତନ ଆଲୋକ ପାଇଲି ! ଯଦି ବଞ୍ଚିରହେ, ତେବେ ଏହା କର୍ଯ୍ୟରେ ପରିଣତ କରିବ !' ସେ ସମୟରେ ଠାକୁରଙ୍କର ଏହିପରି କ୍ଷୁଦ୍ର କ୍ଷୁଦ୍ର ଉପଦେଶ ମଧ୍ୟରେ ଯେ କି ଗଭୀର ତତ୍ତ୍ୱ ନିହିତ ଅଛି, ତାହା ଅନେକେ ଭାବି ଦେଖି ନ ଥିଲେ । ଏତେଦିନ ପରେ ସ୍ୱାମୀଜୀଙ୍କ ନିକଟରୁ ଏହିସବୁ ବାକ୍ୟର ପ୍ରକୃତ ତାତ୍ପର୍ଯ୍ୟ ଶ୍ରବଣ କରି ତାଙ୍କ ଗୁରୁଭ୍ରତାମାନେ ବିସ୍ମିତ ହେଲେ । ସେମାନେ ବୁଝିଲେ ଯେ, ଅନନ୍ତ ଭାବମୟ ଠାକୁରଙ୍କୁ' ସର୍ବତୋଭାବେ ବୁଝିବା ଅତୀବ ଦୁଃସାଧ । କ୍ରମେ ସ୍ୱାମୀଜୀଙ୍କ କାର୍ଯ୍ୟପ୍ରଣାଳୀ ବିଶେଷ ଭାବେ ପର୍ଯ୍ୟବେକ୍ଷଣ କରି ଯେଉଁମାନଙ୍କ ମନରେ ପୂର୍ବୋକ୍ତ ପ୍ରକାର ସନ୍ଦେହ ସୃଷ୍ଟି ହୋଇଥିଲା, ସେମାନେ ନିଃସଂଶୟରେ ବୁଝିଲେ ଯେ, ସ୍ୱାମୀଜୀ ଠାକୁରଙ୍କ ଚିନ୍ତାକୁ ହିଁ ପ୍ରଚାର କରୁଥିଲେ । ରହସ୍ୟ ଛଳରେ ସ୍ୱାମୀଜୀ ତାଙ୍କ ଗୁରୁଭାଇଙ୍କୁ ଯଦିବା ପଚାରିଲେ, ''ତୁମେ କ'ଣ ମନେ କରୁଛ ଯେ, ତୁମେ ମୋ'ଠାରୁ ବେଶୀ ଶ୍ରୀରାମକୃଷ୍ଣଙ୍କୁ ବୁଝିଛ ?'' ତଥାପି ମୁଁ ଶ୍ରୀରାମକୃଷ୍ଣଙ୍କୁ ସର୍ବାପେକ୍ଷା ବେଶୀ ବୁଝିଛି, ଏହିଭଳି ଅହଙ୍କାର ତାଙ୍କ ହୃଦୟରେ ସ୍ୱପ୍ନରେ ମଧ୍ୟ ଉଦୟ ହୋଇ ନ ଥିଲା; ବରଂ ପ୍ରତ୍ୟେକ କାର୍ଯ୍ୟରେ ସେ ନିଜ ଗୁରୁଭ୍ରାତାମାନଙ୍କ ଉପଦେଶ ଓ ପରାମର୍ଶ ଗ୍ରହଣ କରୁଥିଲେ । ଭକ୍ତକୁଳ-ଚୂଡ଼ାମଣି ସାଧୁ ନାଗ ମହାଶୟଙ୍କ ସହିତ ପ୍ରଥମ ସାକ୍ଷାତ୍‌ରେ ହିଁ ସ୍ୱାମୀଜୀ ପଚାରିଥିଲେ, ''ଦେଖନ୍ତୁ, ଏହି ସବୁ ମଠ, ସେବାଶ୍ରମ ଇତ୍ୟାଦି କରୁଛି ଏ କ'ଣ ଠାକୁରଙ୍କ ଉପଦେଶମତେ କାର୍ଯ୍ୟ ହେଉଛି ?'' ଏହିସବୁ ଜନହିତକର ଅନୁଷ୍ଠାନ ଯେ ଶ୍ରୀଶ୍ରୀଠାକୁରଙ୍କ ଉପଦେଶ ଅନୁସାରେ ହେଉଛି, ନାଗ ମହାଶୟ ଉତ୍ସାହ ସହକାରେ ସମର୍ଥନ କରିବାରୁ ସ୍ୱାମୀଜୀ ଅତୀବ ଆନନ୍ଦିତ ଓ ଆଶ୍ୱସ୍ତ ହୋଇଥିଲେ । ଯାହା ହେଉ, ଏହାପରେ ଅନ୍ୟ କୌଣସି ଗୁରୁଭାଇ ତାଙ୍କ ପ୍ରବର୍ତ୍ତିତ କାର୍ଯ୍ୟପ୍ରଣାଳୀ ସମ୍ବନ୍ଧରେ ବିରୁଦ୍ଧ ଅଭିମତ ପ୍ରକାଶ କରିନାହାନ୍ତି । ଶାରୀରିକ ଅସୁସ୍ଥତା ସତ୍ତ୍ୱେ ସ୍ୱାମୀଜୀ ତିଳେମାତ୍ର ବିଶ୍ରାମ ପାଉ ନ ଥିଲେ । ସେ ବାଗ୍‌ବଜାରରେ ବଳରାମ ବାବୁଙ୍କ ଘରେ ଅବସ୍ଥାନ କରୁଛନ୍ତି ବୋଲି ଜାଣିପାରି ପ୍ରତ୍ୟହ ଦଳ ଦଳ ଶିକ୍ଷିତ

ଯୁବକ ତାଙ୍କୁ ଦର୍ଶନ କରିବା ଲାଗି ଆସୁଥିଲେ । ବଙ୍ଗାଳୀ ଯୁବକମାନଙ୍କ ଦୈହିକ ଦୁର୍ବଳତା, ଜାତୀୟ ଶିକ୍ଷା ଆଦର୍ଶରେ ଆସ୍ଥାହୀନତା ବିଶେଷ ଭାବରେ ଲକ୍ଷ୍ୟ କରି ସେ ଗଭୀର କ୍ଷୋଭ ସହିତ ଏଗୁଡ଼ିକର ତୀବ୍ର ସମାଲୋଚନା କରି ସେମାନଙ୍କୁ ବୀର୍ଯ୍ୟବାନ୍ ଓ ସବଳ ହେବାକୁ ଉପଦେଶ ଦେଉଥିଲେ ।

## ଗିରିଶଚନ୍ଦ୍ର ଘୋଷ ଓ ସ୍ୱାମୀଜୀ

ଏହି ସମୟରେ ସ୍ୱାମୀଜୀଙ୍କ ଅନ୍ୟତମ ଶିଷ୍ୟ ଶ୍ରୀଯୁକ୍ତ ଶରତ୍‌ଚନ୍ଦ୍ର ଚକ୍ରବର୍ତ୍ତୀ ତାଙ୍କ ନିକଟରେ ଋକ୍‌ବେଦ ଅଧ୍ୟୟନ କରିବାକୁ ଆରମ୍ଭ କଲେ । ଋକ୍‌ବେଦ ଅଧ୍ୟାପନା ଚାଲିଥାଏ–ଆଚାର୍ଯ୍ୟଦେବ ସାୟଣଭାଷ୍ୟ ସହ ବେଦ–ବ୍ୟାଖ୍ୟା କରୁଥିଲେ, ଏହି ସମୟରେ ନାଟ୍ୟସମ୍ରାଟ ଗିରିଶ ବାବୁ ସେଠାରେ ଆସି ପହଞ୍ଚିଲେ । ପରସ୍ପର ଅଭିବାଦନ ପରେ ଗିରିଶବାବୁ ଆସନ ପରିଗ୍ରହ କରିବାପରେ ସ୍ୱାମୀଜୀ କୌତୁକୋଜ୍ଜ୍ୱଳ ହାସ୍ୟ ସହକାରେ ତାଙ୍କ ପ୍ରତି ଦୃଷ୍ଟିପାତ କରି କହିଲେ, 'ଜି. ସି., ତୁମେ ବୋଧହୁଏ ଏସବୁ ଜିନିଷ ପଢ଼ିବାର କୌଣସି ଦରକାର ବୋଧ କରି ନାହଁ; ଚିରକାଳ କୃଷ୍ଣ, ବିଷ୍ଣୁଙ୍କୁ ନେଇ କଟାଇଦେଲ !''

ବିଶ୍ୱାସର ଜ୍ୱଳନ୍ତମୂର୍ତ୍ତି ଗିରିଶ ବାବୁ ବିନୀତ ଭାବରେ ଉତ୍ତର ଦେଲେ, ''ବେଦ ପଢ଼ି ମୋର ଆଉ କ'ଣ ହେବ, ଭାଇ ? ବେଦ ବୁଝିବା ଭଳି ମୋର ବୁଦ୍ଧି ନାହିଁ, ଅବସର ମଧ୍ୟ ନାହିଁ । ଏହିସବୁ ଜିନିଷକୁ ଦୂରରୁ ପ୍ରଣାମ କରି ମୁଁ ଭଗବାନ ଶ୍ରୀରାମକୃଷ୍ଣଙ୍କ କୃପାରୁ ଭବସମୁଦ୍ର ଉତ୍ତୀର୍ଣ୍ଣ ହୋଇ ଚାଲିଯିବି । ସେ ତୁମ ଜରିଆରେ ଲୋକଶିକ୍ଷା ଦେବେ, ଧର୍ମପ୍ରଚାର କରାଇବେ; ସେହି ହେତୁ ଏସବୁ ଜିନିଷ ପଢ଼ାଉଛନ୍ତି ।'' ସେ ପ୍ରକାଣ୍ଡ ଋକ୍‌ବେଦ ଗ୍ରନ୍ଥଖଣ୍ଡିକୁ ପୁନଃ ପୁନଃ ପ୍ରଣାମ କରି କହିଲେ, ''ଜୟ ବେଦରୂପୀ ଶ୍ରୀରାମକୃଷ୍ଣଙ୍କ ଜୟ ।''

ସ୍ୱାମୀଜୀ ଯେତେବେଳେ ସାଧନାରେ କୌଣସି ବିଶେଷ ପନ୍ଥା ସମ୍ବନ୍ଧରେ କହିବାକୁ ଆରମ୍ଭ କରୁଥିଲେ—ତାହା ବ୍ରହ୍ମଜ୍ଞାନ ଅଥବା ଭକ୍ତି, କର୍ମଯୋଗ ଅଥବା ଜାତୀୟ ଆଦର୍ଶ, ଯାହା ହେଉ ନା କାହିଁକି—ତାଙ୍କ ଓଜସ୍ୱିନୀ ବଚନଭଙ୍ଗୀ ଓ ପ୍ରାଣସ୍ପର୍ଶୀ ବର୍ଣ୍ଣନାରୁ ମନେ ହେଉଥିଲା, ଯେପରି କି ଏହା ହିଁ ମାନବ–ଜୀବନର ସର୍ବଶ୍ରେଷ୍ଠ ଆଦର୍ଶ । କୌତୁକ ଛଳରେ ସ୍ୱାମୀଜୀଙ୍କ କଥିତ ବାକ୍ୟ ଶ୍ରବଣ କରି ଉପସ୍ଥିତ ଭକ୍ତ ଓ ଶିଷ୍ୟଗଣଙ୍କ ମନରେ ଭକ୍ତି–ବିଶ୍ୱାସ ସମ୍ବନ୍ଧରେ ବିପରୀତ ଧାରଣା ହେବା ବିଚିତ୍ର ନୁହେଁ ମନେ କରି ଗିରିଶବାବୁ ତାଙ୍କୁ ପଚାରିଲେ, ''ଆଚ୍ଛା ନରେନ୍, ବେଦ–ବେଦାନ୍ତ ତ ଅନେକ ପଢ଼ିଛ ! କ୍ଷୁଧିତର ଅନ୍ନ ପାଇଁ ହାହାକାର, ଦରିଦ୍ରର ଦୁଃଖ, ଲମ୍ପଟ୍ୟାଦି ବୀଭତ୍ସ ପାପ, ଆଉ କେତେ ପ୍ରକାର ଅନ୍ୟାୟ, ଅବିଚାର ଓ ଦୁଃଖ—ଯାହା ଆମେ ସଚରାଚର ଦେଖିବାକୁ ପାଉ—ତାର କୌଣସି ପ୍ରତିବିଧାନ ତୁମ ବେଦ–ବେଦାନ୍ତ ଲେଖିଛି କି ? ଅମୁକ ସଂସାରର ଗୃହିଣୀ, ଯେ ପ୍ରତ୍ୟହ ପଚାଶ ଜଣ ଲୋକଙ୍କୁ ଅନ୍ନ ବିତରଣ କରୁଥିଲେ—ଆଜିକି ତିନିଦିନ ହେଲା

ସେ ଅନ୍ନାଭାବ ହେତୁ ପୁତ୍ରକନ୍ୟା ସହ ଅନାହାରରେ ଅଛନ୍ତି । ଅମୁକ ସଂସାରର ମହିଳାମାନେ ବଦମାସ୍‌ଙ୍କ ହାତରେ ଲାଞ୍ଛିତା ହେଉଛନ୍ତି, କେହି କେହି ଉତ୍‌ପୀଡ଼ିତା ହୋଇ ଅବଶେଷରେ ପ୍ରାଣତ୍ୟାଗ କରୁଛନ୍ତି । ଅମୁକ ପରିବାରର ବାଳବିଧବା କଳଙ୍କରୁ ପରିତ୍ରାଣ ପାଇବା ଲାଗି ଭ୍ରୂଣହତ୍ୟା କରିବାକୁ ଯାଇ ଆତ୍ମହତ୍ୟା କରି ବସିଛି । ନରେନ୍, ବେଦ-ବେଦାନ୍ତରୁ ଏହାର କୌଣସି ପ୍ରତିକାର ପାଇଛ ?'' ଏହପରି ଭାବରେ ଗିରିଶ ବାବୁ ମର୍ମସ୍ପର୍ଶୀ ଭାଷାରେ ସଂସାରର ଯାବତୀୟ ଦୁଃଖ, ଅନ୍ୟାୟ, ଅତ୍ୟାଚାରର କାହାଣୀ ବର୍ଣ୍ଣନା କରିବାରେ ଲାଗିଲେ । ସେ ହୃଦୟ-ଭେଦୀ କରୁଣ କାହାଣୀଗୁଡ଼ିକ ଶ୍ରବଣ କରି ଆଚାର୍ଯ୍ୟଦେବଙ୍କ ନେତ୍ରଦ୍ୱୟ ଅଶ୍ରୁସିକ୍ତ ହେଲା । ଭାବାବେଗ ଦମନ କରି ନ ପାରି ସେ ବିଚଳିତ ହୃଦୟରେ ତତ୍‌କ୍ଷଣାତ୍ ସେ ସ୍ଥାନ ପରିତ୍ୟାଗ କରି ଅନ୍ୟ କକ୍ଷକୁ ଚାଲିଗଲେ ।

ସ୍ୱାମୀଜୀ ପ୍ରସ୍ଥାନ କରିବା ପରେ ଗିରିଶ ବାବୁ ଶିଷ୍ୟମାନଙ୍କୁ ଲକ୍ଷ୍ୟ କରି କହିଲେ, ''ଦେଖିଲ ତୁମ ଗୁରୁଙ୍କ ହୃଦୟ କିପରି ମହାନ୍ ଓ ଅନୁକମ୍ପାପୂର୍ଣ୍ଣ ! ମୁଁ ତାଙ୍କୁ ପଣ୍ଡିତ ବା ପ୍ରତିଭାଶାଳୀ ବୋଲି ସମ୍ମାନ କରେ ନାହିଁ; ଯେଉଁ ହୃଦୟ ମଣିଷର ଦୁଃଖ-କଷ୍ଟ କଥା ଶୁଣିଲେ କରୁଣାରେ ବିଗଳିତ ହୋଇଯାଏ, ସେହି ଅସୀମ ଉଦାର ହୃଦୟକୁ ଶ୍ରଦ୍ଧା କରେ । ଦେଖିଲ ତ, ଏହିସବୁ କଥା ଶୁଣି କିଛି କାଳ ପୂର୍ବେ ବେଦ-ବେଦାନ୍ତର ଯେଉଁ ସବୁ ବ୍ୟାଖ୍ୟା ହେଉଥିଲା, ସେ ପାଣ୍ଡିତ୍ୟ, ବିଚାର ବିଶ୍ଳେଷଣ କୁଆଡ଼େ ଅନ୍ତର୍ହିତ ହୋଇଗଲା ! ତୁମ ସ୍ୱାମୀଜୀ ଏକାଧାରରେ ମହାଜ୍ଞାନୀ ଓ ମହାଭକ୍ତ—ବୁଝିଛ ?'' କିଛି ସମୟ ପରେ ସ୍ୱାମୀଜୀ ଫେରି ଆସିଲେ । ସ୍ୱାମୀ ସଦାନନ୍ଦଙ୍କୁ କକ୍ଷରେ ପ୍ରବେଶ କରିବାର ଦେଖି ତତ୍‌କ୍ଷଣାତ୍ ସ୍ୱାମୀଜୀ ତାଙ୍କୁ ରୁଗ୍‌ଣ, ଆତୁର, ଆର୍ତ୍ତର ସେବା ଲାଗି, ଗୋଟିଏ ସେବାଶ୍ରମ ପ୍ରତିଷ୍ଠା କରିବା ନିମିତ୍ତ ଉପଦେଶ ଦେଲେ । ସଦାନନ୍ଦଜୀ ପ୍ରାଣପଣେ ଚେଷ୍ଟା କରିବେ ବୋଲି ଗୁରୁ-ଆଜ୍ଞା ଶିରୋଧାର୍ଯ୍ୟ କଲେ । ସ୍ୱାମୀଜୀ ଗିରିଶବାବୁଙ୍କୁ ଲକ୍ଷ୍ୟ କରି କହିଲେ, ''ଦେଖ ଜି.ସି. (ଗିରିଶଚନ୍ଦ୍ର), ଜଗତର ଦୁଃଖ-କଷ୍ଟ ଦୂର କରିବା ନିମିତ୍ତ, ଏପରି କି ଜଣକର ବେଦନା ଲାଘବ କରିବା ନିମିତ୍ତ ମୁଁ ସହସ୍ରବାର ଜନ୍ମଗ୍ରହଣ କରିବାକୁ ପ୍ରସ୍ତୁତ ଅଛି । ନିଜ ମୁକ୍ତି ମୁଁ ଚାହେଁ ନାହିଁ ! ମୁଁ ପ୍ରତ୍ୟେକଙ୍କୁ ମୁକ୍ତ ହେବା ଲାଗି ସାହାଯ୍ୟ କରିବାକୁ ଚାହେଁ ।''

## ସ୍ୱାମୀଜୀ ଓ ସ୍ତ୍ରୀ-ଶିକ୍ଷା

ଏହି ସମୟରେ ଦିନେ ସ୍ୱାମୀଜୀ, ମାତାଜୀ ତପସ୍ୱିନୀଙ୍କଦ୍ୱାରା ଆହୂତ ହୋଇ ଶିଷ୍ୟ ଶରତ୍ ବାବୁଙ୍କୁ ସାଙ୍ଗରେ ନେଇ ମହାକାଳୀ ପାଠଶାଳା ଦେଖିବାକୁ ଗଲେ । ବିଦ୍ୟାଳୟର ଶିକ୍ଷାଦାନ-ପ୍ରଣାଳୀ ଦେଖି ସ୍ୱାମୀଜୀ ସନ୍ତୁଷ୍ଟ ହେଲେ । ପରିଦର୍ଶନ କରି ଫେରିବା ସମୟରେ ସେ କଥୋପକଥନ ପ୍ରସଙ୍ଗରେ କହିଲେ ଯେ, ପୁରୁଷମାନଙ୍କ ପାଇଁ ମଠ ସ୍ଥାପନ ସଙ୍ଗେ ସଙ୍ଗେ ତାଙ୍କର ଗୋଟିଏ ନାରୀ-

ମଠ ସ୍ଥାପନ କରିବାର ଇଚ୍ଛା ଅଛି । ସେଠାରେ ବ୍ରହ୍ମଚାରୀଣୀ ଓ ସନ୍ନ୍ୟାସିନୀମାନେ ସୁଶିକ୍ଷିତା ହୋଇ ନାରୀ-ଜାତିର ଉନ୍ନତି ଓ ଶିକ୍ଷା ପାଇଁ ଚେଷ୍ଟା କରିବେ । ବିଜାତୀୟ ଆଦର୍ଶରେ ସଂସ୍କାର ଚେଷ୍ଟା ନ କରି ହିନ୍ଦୁରମଣୀମାନଙ୍କୁ ଜାତୀୟ ଭାବରେ ଶିକ୍ଷା ଦେବା ଆଶୁ କର୍ତ୍ତବ୍ୟ । ସେମାନେ ସୁଶିକ୍ଷିତା ହେଲେ ନିଜ ଭଲ ମନ୍ଦ ନିଜେ ଠିକ୍ କରି ପାରିବେ; ସେଥିପାଇଁ ପୁରୁଷମାନଙ୍କର ମଥା ପୁରାଇବାର ପ୍ରୟୋଜନ ନାହିଁ । କାର୍ଯ୍ୟକ୍ଷେତ୍ରରେ ନାରୀର ସ୍ୱାଭାବିକ ଦକ୍ଷତା ସ୍ୱାଧୀନ ଭାବରେ ଜାତୀୟ ଉନ୍ନତି ସାଧନରେ ନିଯୁକ୍ତ ହେଲେ କଲ୍ୟାଣ ହେବ ।

## ଶାରୀରିକ ଅସୁସ୍ଥତା ଓ ଆଲମୋଡ଼ା ଯାତ୍ରା

ମଠ, ସେବାଶ୍ରମ ଇତ୍ୟାଦି ପ୍ରତିଷ୍ଠା ଉଦ୍ଦେଶ୍ୟରେ ସ୍ୱାମୀଜୀ ଚେଷ୍ଟା କରିବାରେ ଲାଗିଲେ ସତ୍ୟ; କିନ୍ତୁ ତାଙ୍କ ଦୈହିକ ଅବସ୍ଥା ଦେଖି ଶିଷ୍ୟ ଓ ଗୁରୁଭ୍ରାତାଗଣ ଶଙ୍କିତ ହେଲେ । ଇତିମଧ୍ୟରେ ଇଂଲଣ୍ଡରୁ ମିସ୍ ମୁଲର୍ ଆସି ଉପସ୍ଥିତ ହେଲେ । ଚିକିତ୍ସକମାନଙ୍କ ପରାମର୍ଶରେ ସ୍ୱାମୀଜୀ ଅନିଚ୍ଛା ସତ୍ତ୍ୱେ ବାୟୁ ପରିବର୍ତ୍ତନ ନିମିତ୍ତ ଆଲମୋଡ଼ା ଯିବାକୁ ରାଜି ହେଲେ । ଅବଶେଷରେ ମଇ ଛଅ ତାରିଖ ଦିନ କେତେଜଣ ଶିଷ୍ୟ ଓ ଗୁରୁଭ୍ରାତାଙ୍କୁ ସଙ୍ଗରେ ନେଇ ସେ କଲିକତା ଛାଡ଼ି ଆଲମୋଡ଼ା ଅଭିମୁଖେ ଯାତ୍ରା କଲେ ।

ସ୍ୱାମୀଜୀଙ୍କୁ ଉପଯୁକ୍ତ ଅଭ୍ୟର୍ଥନା ଦେବା ଲାଗି ଆଲମୋଡ଼ା ହିନ୍ଦୁ-ସମାଜ ଆଗରୁ ପ୍ରସ୍ତୁତ ହୋଇଥିଲେ । ସ୍ୱାମୀଜୀଙ୍କ ଆଗମନ ବାର୍ତ୍ତା ପାଇବା ମାତ୍ରକେ ସେମାନେ ଆଲାମୋଡ଼ା ନିକଟବର୍ତ୍ତୀ ଲୋଦିଆ ନାମକ ସ୍ଥାନରେ ସ୍ୱାମୀଜୀଙ୍କୁ ଅଭ୍ୟର୍ଥନା କଲେ । ବିରାଟ ଶୋଭାଯାତ୍ରାରେ ପରିବେଷ୍ଟିତ ହୋଇ ସ୍ୱାମୀଜୀ ଘୋଡ଼ାଚଢ଼ି ନଗର ମଧ୍ୟରେ ପ୍ରବେଶ କଲେ । ପୁରନାରୀମାନେ ବାତାୟନରୁ ପୁଷ୍ପ ଓ ତଣ୍ଡୁଳ ବର୍ଷଣ କରିବାରେ ଲାଗିଲେ—ସହସ୍ର ସହସ୍ର ଉତ୍ସୁକ ଦର୍ଶକଙ୍କ ଆନନ୍ଦ ବର୍ଦ୍ଧନ କରି ସ୍ୱାମୀଜୀ ସଭାମଣ୍ଡପରେ ପ୍ରବେଶ କଲେ । ବିରାଟକାୟ ମଣ୍ଡପରେ ପ୍ରାୟ ପାଞ୍ଚହଜାର ବ୍ୟକ୍ତି ସମବେତ ହୋଇଥିଲେ । ପଣ୍ଡିତ ଜ୍ୱାଲଦତ୍ତ ଯୋଷୀ ମହାଶୟ ଅଭିନନ୍ଦନ-ପତ୍ର ପାଠ କଲେ । ଲାଲା ବଦରୀ ସାହାଙ୍କ ପକ୍ଷରୁ ପଣ୍ଡିତ ହରେରାମ ପାଣ୍ଡେ ଆଉ ଖଣ୍ଡିଏ ଅଭିନନ୍ଦନ-ପତ୍ର ପ୍ରଦାନ କରିବା ପରେ ସ୍ୱାମୀଜୀ ଗୋଟିଏ ସଂକ୍ଷିପ୍ତ ବକ୍ତୃତା ଦେଲେ । ସାର୍ବଭୌମିକ ଧର୍ମ-ଶିକ୍ଷାଦାନ ଲାଗି ହିମାଳୟରେ ଗୋଟିଏ ମଠ ସ୍ଥାପନ କରିବା ସଂକଳ୍ପ ତାଙ୍କର ବହୁଦିନୁ ଥିଲା; ଏହି ସଭାରେ ସେ ତାଙ୍କ ସଂକଳ୍ପ ପ୍ରକାଶ୍ୟ ଭାବରେ ବ୍ୟକ୍ତ କଲେ ।

ସ୍ଥାନୀୟ ବିଖ୍ୟାତ ବ୍ୟବସାୟୀ ଲାଲା ବଦରୀ ସାହାଙ୍କ ଆତିଥ୍ୟ ଗ୍ରହଣ କରି ସ୍ୱାମୀଜୀ ଆଲମୋଡ଼ାରୁ କୋଡ଼ିଏ ମାଇଲ ଦୂରରେ ଥିବା ଉଦ୍ୟାନ-ଗୃହରେ ବାସ କରିବାକୁ ଲାଗିଲେ । ହିମାଳୟର ଗମ୍ଭୀର, ବୈରାଗ୍ୟ-ଉଦ୍ଦୀପକ, ମନୋହର ଶ୍ରୀ ତାଙ୍କ କର୍ମଶ୍ରାନ୍ତ ମନରେ ବହୁଦିନ ପରେ ଅପୂର୍ବ ଶାନ୍ତି ଆଣିଦେଲା । ଏଠାରେ ମଧ୍ୟ

ସ୍ୱାମୀଜୀ ବିଶ୍ରାମ କରିବା ଲାଗି ଖୁବ୍ କମ୍ ଅବକାଶ ପାଇଲେ; କାରଣ ଦିନର ଅଧିକାଂଶ ସମୟରେ ତାଙ୍କୁ ସମାଗତ ବ୍ୟକ୍ତିଗଣଙ୍କ ସହିତ ଧର୍ମାଲୋଚନାରେ ନିଯୁକ୍ତ ହେବାକୁ ପଡୁଥିଲା । ତଥାପି ଦୁଇ ସପ୍ତାହ ମଧ୍ୟରେ ତାହାଙ୍କ ସ୍ୱାସ୍ଥ୍ୟରେ ଅନେକ ଉନ୍ନତି ହୋଇଥିଲା । ପ୍ରଭାତ ଓ ରଜନୀର ଅଧିକାଂଶ ସମୟ ସେ ଧ୍ୟାନମଗ୍ନ ହୋଇ ରହୁଥିଲେ ।

ସବୁପ୍ରକାର କାମରୁ ଅବସର ନେଇ ହିମାଳୟର ଜନବିରଳ ଅରଣ୍ୟାନୀ ମଧ୍ୟରେ ଆତ୍ମଗୋପନ କରି ମଧ୍ୟ ସ୍ୱାମୀଜୀ ବହିର୍ଜଗତ୍ ସମ୍ବନ୍ଧରେ ପୂରାପୂରି ଉଦାସୀନତା ଅବଲମ୍ବନ କରିପାରିଲେ ନାହିଁ । ତାଙ୍କର ଭାରତବ୍ୟାପୀ ପ୍ରତିଷ୍ଠା, ପ୍ରତିପତ୍ତି, ଯଶ, ଆଦର, ସମ୍ମାନ ଦର୍ଶନ କରି କେତେଜଣ ମିଶନାରୀ ଆମେରିକାରେ ତାଙ୍କ ବିରୋଧରେ ନାନାପ୍ରକାର କୁତ୍ସା ରଟନା କରିବାକୁ ଆରମ୍ଭ କଲେ । ସେ ଭାରତ ଆସିବାର ଅବ୍ୟବହିତ ପରେ ଚିକାଗୋ ଧର୍ମସଭାର ସଭାପତି ଡାକ୍ତର ବ୍ୟାରୋଜ ଭାରତ ଆସିଥିଲେ; ସେ ମଧ୍ୟ ସ୍ୱଦେଶକୁ ଫେରିଯାଇ ସ୍ୱାମୀଜୀଙ୍କୁ ନିନ୍ଦା କରିବାରେ ଲାଗିଲେ । ଫଳରେ ସମଗ୍ର ଆମେରିକାରେ ବିବେକାନନ୍ଦଙ୍କ ବିରୋଧରେ ଗୋଟିଏ ଆନ୍ଦୋଳନର ସୂତ୍ରପାତ ହେଲା । କେତେକ ସମ୍ବାଦପତ୍ରରେ ତାଙ୍କ ବିଷୟ ତୀବ୍ରଭାବରେ ଆଲୋଚିତ ହେଲା । ସେ କୁଆଡ଼େ ଭାରତର ନଗରେ ନଗରେ ଆମେରିକୀୟ ରମଣୀମାନଙ୍କୁ ନିନ୍ଦା କରୁଥିଲେ ! ବିବେକାନନ୍ଦଙ୍କ କାର୍ଯ୍ୟ ଓ ବକ୍ତୃତାରେ ଭାରତବାସୀ ତାଙ୍କ ଉପରେ ବିରକ୍ତ ହୋଇ ଉଠିଛନ୍ତି । ଭାରତରେ ତାଙ୍କ ଅଭ୍ୟର୍ଥନା ସମ୍ବନ୍ଧରେ ଯେଉଁ ବିବରଣୀ ସମ୍ବାଦପତ୍ରରେ ପ୍ରକାଶିତ ହୋଇଛି, ତାହା ଅତିରଞ୍ଜିତ ଓ ମିଥ୍ୟା । ବିବେକାନନ୍ଦ ଅତି ନିମ୍ନ ଶ୍ରେଣୀର; ହିନ୍ଦୁ ସମାଜରେ ତାଙ୍କର କୌଣସି ପ୍ରତିଷ୍ଠା ନାହିଁ, ଇତ୍ୟାଦି ଇତ୍ୟାଦି । ସ୍ୱଦେଶ ଓ ବିଦେଶରେ ସ୍ୱାମୀଜୀଙ୍କ ଭକ୍ତ ଓ ଗୁଣାନୁରାଗୀ ଅନେକେ ଏହିସବୁ କାରଣରୁ ବିଚଳିତ ହୋଇ ଉଠିଲେ । ପ୍ରତ୍ୟହ ସ୍ୱାମୀଜୀଙ୍କ ନିକଟକୁ ରାଶି ରାଶି ଖବରକାଗଜ ଓ ପତ୍ର ଆସିଲା । ତାଙ୍କ ବିରୋଧରେ ଏହି ଭୟାନକ ଷଡ଼ଯନ୍ତ୍ର ଦେଖି ସେ ଆଦୌ ବିସ୍ମିତ ହୋଇ ନ ଥିଲେ — ଭୀତ ବା ଉତ୍କଣ୍ଠିତ ହେବା ତ ଦୂରର କଥା ! ନୂତନ ତତ୍ତ୍ୱ, ନୂତନ ନୀତି, ନୂତନ ଭାବ ପ୍ରଚାରକାରୀ କୌଣସି ମହାପୁରୁଷ ଏକାଳ ପର୍ଯ୍ୟନ୍ତ ବାଧା-ବିପତ୍ତି, ନିନ୍ଦା-ଅପବାଦରୁ ନିଷ୍କୃତି ପାଇନାହାନ୍ତି । ତଥାପି ସେମାନେ ମାନବଜାତିର କଲ୍ୟାଣକଳ୍ପେ କାର୍ଯ୍ୟ କରିବାରୁ ବିରତ ହୋଇ ନାହାନ୍ତି । ବିବେକାନନ୍ଦ ମଧ୍ୟ ପୂର୍ବର ଆଚାର୍ଯ୍ୟଗଣଙ୍କ ପନ୍ଥାନୁସରଣ କରି ଅନୁକମ୍ପା-ମିଶ୍ରିତ ଉପେକ୍ଷା ସହିତ ଏହି ସମସ୍ତ ନିନ୍ଦାରେ ଅବିଚଳିତ ରହି ଦୃଢ଼ଭାବରେ ନିଜ କର୍ତ୍ତବ୍ୟ କରି ଯାଇଛନ୍ତି ।

ଏ ଦିଗରେ ମୁର୍ଶିଦାବାଦ୍‌ର ଦୁର୍ଭିକ୍ଷପୀଡ଼ିତ ବ୍ୟକ୍ତିମାନଙ୍କ ଦୁଃଖ ନିବାରଣ ଲାଗି ସ୍ୱାମୀ ଅଖଣ୍ଡାନନ୍ଦଙ୍କ ଅକ୍ଳାନ୍ତ ଚେଷ୍ଟା ବିଷୟ ସମ୍ବାଦ ପାଇ ସ୍ୱାମୀଜୀ ସମଧିକ ଆନନ୍ଦ ସହକାରେ ନିଜ ଶିଷ୍ୟ ସ୍ୱାମୀ ନିତ୍ୟାନନ୍ଦ ଓ ବ୍ରହ୍ମଚାରୀ ସୁରେଶ୍ୱରାନନ୍ଦଙ୍କୁ

ତାଙ୍କୁ ସାହାଯ୍ୟ କରିବା ଲାଗି ପ୍ରେରଣ କଲେ । ସ୍ୱାମୀଜୀ ଆଲମୋଡ଼ାରୁ ଉତ୍ସାହ ପ୍ରଦାନ କରି ପତ୍ର ଲେଖିଲେ; ଏପରି କି ସ୍ୱୟଂ ଉକ୍ତ ସ୍ଥାନକୁ ଯିବା ନିମିତ୍ତ ଅଧୀର ହୋଇ ଉଠିଲେ; କିନ୍ତୁ ଚିକିତ୍ସକମାନେ ଏବଂ ତାଙ୍କ ଶିଷ୍ୟବୃନ୍ଦ ବାଧା ଦେବାରୁ ସେ ଯାଇ ପାରିଲେ ନାହିଁ ।

କଲିକତା 'ରାମକୃଷ୍ଣ ମିଶନ'ର କାର୍ଯ୍ୟ ଉତ୍ତମ ରୂପେ ଚାଲୁଥିଲା । ସ୍ୱାମୀ ରାମକୃଷ୍ଣାନନ୍ଦ ମଧ୍ୟ ମାନ୍ଦ୍ରାଜରେ ପ୍ରଚାର କାର୍ଯ୍ୟରେ ଯଥେଷ୍ଟ ସଫଳତା ଅର୍ଜନ କରିଥିଲେ । ସ୍ୱାମୀ ଅଭେଦାନନ୍ଦ ଓ ସ୍ୱାମୀ ସାରଦାନନ୍ଦଙ୍କର ଇଂଲଣ୍ଡ ଓ ଆମେରିକାରେ ବେଦାନ୍ତ ପ୍ରଚାରକାର୍ଯ୍ୟ ଉତ୍ତମ ରୂପେ ଚାଲିଥିଲା । ଏହି ସମସ୍ତ ସମ୍ବାଦ ପାଇଁ ସ୍ୱାମୀଜୀଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେ ପୁନରାୟ ନବୀନ ଉତ୍ସାହରେ କାର୍ଯ୍ୟ ଆରମ୍ଭ କରିବା ଲାଗି ଉତ୍ସୁକ ହୋଇ ଉଠିଲେ । ସେ ସତ୍ୱର ଆଲମୋଡ଼ା ତ୍ୟାଗ କରୁଛନ୍ତି, ଏ ସମ୍ବାଦ ପାଇ ତାଙ୍କ ବନ୍ଧୁ ଓ ଭକ୍ତମଣ୍ଡଳୀ ତାଙ୍କୁ ଗୋଟିଏ ବକ୍ତୃତା ଦେବା ଲାଗି ବାରମ୍ବାର ଅନୁରୋଧ କଲେ । ସ୍ୱାମୀଜୀ ସ୍ୱୀକୃତ ହୋଇ ସ୍ଥାନୀୟ ଜିଲ୍ଲା ସ୍କୁଲରେ ସୁଲଳିତ ହିନ୍ଦୀରେ ବେଦାନ୍ତ ସମ୍ବନ୍ଧରେ ଗୋଟିଏ ବକ୍ତୃତା ଦେଲେ । ସ୍ୱାମୀଜୀଙ୍କ ଖ୍ୟାତି ସମ୍ବନ୍ଧରେ ଅବଗତ ହୋଇ ସ୍ଥାନୀୟ ଇଂରେଜ ଅଧିବାସୀବୃନ୍ଦ ମଧ୍ୟ ତାଙ୍କ ବକ୍ତୃତା ଶୁଣିବା ଲାଗି ଉତ୍ସୁକ ହୋଇ ପଡ଼ିଲେ । ତଦନୁସାରେ 'ଇଂଲିଶ୍ କ୍ଲବ'ରେ ଗୁର୍ଖା ସୈନ୍ୟଦଳର କର୍ଣ୍ଣେଲ ପୁଲୀଙ୍କ (Col. Pully) ସଭାପତିତ୍ୱରେ ଗୋଟିଏ ସଭା ଆହୂତ ହେଲା । ସ୍ଥାନୀୟ ଇଂରେଜ ଭଦ୍ରଲୋକ ଓ ଭଦ୍ରମହିଳାବୃନ୍ଦ ଏବଂ କେତେଜଣ ଗଣ୍ୟମାନ୍ୟ ଭାରତୀୟ ଏହି ସଭାରେ ଉପସ୍ଥିତ ଥିଲେ । ସ୍ୱାମୀଜୀ ଆତ୍ମତତ୍ତ୍ୱ ସମ୍ବନ୍ଧରେ ଗୋଟିଏ କ୍ଷୁଦ୍ର ବକ୍ତୃତା ଦେଲେ । କୁମାରୀ ମୁଲର ଏହି ବକ୍ତୃତା ସମ୍ବନ୍ଧରେ କହିଛନ୍ତି —

" x x x କ୍ରମଶଃ ଅଗ୍ରସର ହୋଇ ସ୍ୱାମୀଜୀ ଆତ୍ମା ସହିତ ପରମାତ୍ମାଙ୍କ ସମ୍ବନ୍ଧ ଏବଂ ଉଭୟର ସ୍ୱରୂପତଃ ଏକତ୍ୱ ବିବୃତ କଲେ । ମୁହୂର୍ତ୍ତକ ପାଇଁ ବୋଧ ହେଲା — ବକ୍ତା, ତାହାଙ୍କ ବକ୍ତୃତା ଓ ଶ୍ରୋତୃବୃନ୍ଦ ଯେପରି କି ଏକ ହୋଇଗଲେ ! ଯେପରି କି 'ମୁଁ' 'ତୁମେ' ଓ 'ସେ' ଭିତରେ କିଛି ତଫାତ୍ ରହିଲା ନାହିଁ । ଯେଉଁମାନେ ସେଠାରେ ଉପସ୍ଥିତ ଥିଲେ, ସେମାନେ ଯେପରି କି କ୍ଷଣକାଳ ପାଇଁ ଆଚାର୍ଯ୍ୟଦେବଙ୍କ ଦେହରୁ ବାହାରୁଥିବା ମହାଶକ୍ତିର ନିଃସରଣଶୀଳ ଆଧ୍ୟାତ୍ମିକ ଜ୍ୟୋତିରେ ମିଶି ଆତ୍ମହରା ହୋଇ ମନ୍ତ୍ରମୁଗ୍ଧ ପରି ରହିଲେ । ଯେଉଁମାନେ ବହୁବାର ସ୍ୱାମୀଜୀଙ୍କ ବକ୍ତୃତା ଶୁଣିଛନ୍ତି, ସେମାନଙ୍କ ମଧ୍ୟରୁ ଅନେକଙ୍କ ଜୀବନରେ ଏହି ପ୍ରକାର ଅନୁଭୂତି ଥିଲା । କ୍ଷଣକାଳ ପାଇଁ ସେ ଯେପରି କି ଆଉ ଅବହିତ, ଦୋଷଗୁଣ ସମାଲୋଚକ ଶ୍ରୋତୃବୃନ୍ଦଙ୍କ ସମ୍ମୁଖରେ ବକ୍ତୃତାକାରୀ ବିବେକାନନ୍ଦ ହୋଇ ରହିଲେ ନାହିଁ — ସେହି ସମୟ ପାଇଁ ଯେପରି କି ସବୁ ବିଭିନ୍ନତା ଓ ବ୍ୟକ୍ତିତ୍ୱ ଅନ୍ତର୍ହିତ ହୋଇଗଲା — ନାମରୂପ ଉଡ଼ିଗଲା — କେବଳ ଏକ କୈବଲ୍ୟ ମାତ୍ର ବିରାଜିତ ଥାଏ — ଯେଉଁଥିରେ ବକ୍ତା, ଶ୍ରୋତା ଓ ବାକ୍ୟ ଏକ ହୋଇଗଲା ।"

## ପଞ୍ଜାବ ଓ କାଶ୍ମୀର

ଅଢ଼େଇମାସ କାଳ ଆଲମୋଡ଼ାରେ ଅବସ୍ଥାନ କରି ସ୍ୱାମୀଜୀ ପଞ୍ଜାବ ଓ କାଶ୍ମୀରର ବିଭିନ୍ନ ସ୍ଥାନରୁ ନିମନ୍ତ୍ରଣ ପାଇ ସମତଳ ଭୂମିକୁ ଓହ୍ଲାଇଲେ । ଅଗଷ୍ଟ ନଅ ତାରିଖରେ ସେ ବରେଲୀରେ ଉପସ୍ଥିତ ହେଲେ । ବରେଲୀରେ ପହଞ୍ଚିବା ସଙ୍ଗେ ସଙ୍ଗେ ଜ୍ୱର ହେଲା । ଶାରୀରିକ ଦୁର୍ବଳତା ସତ୍ତ୍ୱେ ସେ ପରଦିନ ପ୍ରଭାତରେ ଆର୍ଯ୍ୟସମାଜର ଅନାଥାଳୟ ପରିଦର୍ଶନ କଲେ । ସ୍ଥାନୀୟ ଛାତ୍ରବୃନ୍ଦଙ୍କୁ ବେଦାନ୍ତର ଆଦର୍ଶଗୁଡ଼ିକ କାର୍ଯ୍ୟରେ ପରିଣତ କରିବା ନିମିତ୍ତ ଉତ୍ସାହ ଦେଇ ଗୋଟିଏ ଛାତ୍ର ସମିତି ପ୍ରତିଷ୍ଠା କରାଇଲେ । ଅଗଷ୍ଟ ବାର ତାରିଖ ଦିନ ମଧ୍ୟାହ୍ନ ଭୋଜନ ପରେ ପୁନରାୟ ଭୀଷଣ ଜ୍ୱର ହେଲା । ତଥାପି ସନ୍ଧ୍ୟା ପୂର୍ବରୁ ସମାଗତ ଭଦ୍ରବ୍ୟକ୍ତିମାନଙ୍କୁ ଧର୍ମୋପଦେଶ ପ୍ରଦାନ କଲେ । ଏହି ଦିନ ରାତ୍ରରେ ବରେଲୀ ତ୍ୟାଗ କରି ଅମ୍ବାଲା ଅଭିମୁଖେ ପ୍ରସ୍ଥାନ କଲେ । ଅମ୍ବାଲାରେ ସେ ଏକ ସପ୍ତାହ କାଳ ଅବସ୍ଥାନ କଲେ । ଏଠାରେ ସେ ଅପେକ୍ଷାକୃତ ସୁସ୍ଥ ବୋଧକଲେ । ପ୍ରତ୍ୟହ ମୁସଲମାନ, ବ୍ରାହ୍ମ, ଆର୍ଯ୍ୟ-ସମାଜ, ହିନ୍ଦୁ ଆଦି ବିଭିନ୍ନ ମତାବଲମ୍ବୀ ବ୍ୟକ୍ତିମାନଙ୍କ ସହିତ ବିବିଧ ବିଷୟରେ ଆଲୋଚନା ଚାଲିଲା । ଏହି ସ୍ଥାନରେ ଶ୍ରୀଯୁକ୍ତ ସେଭିୟର ସ୍ୱାମୀଜୀଙ୍କ ଗହଣରେ ମିଶିଲେ । ଅମ୍ବାଲାରୁ ସ୍ୱାମୀଜୀ ଅମୃତସର ଯାଇ ସେଠାରେ କିଛିଦିନ ରହିବାପରେ ରାଓଲ୍‌ପିଣ୍ଡି ଅଭିମୁଖେ ପ୍ରସ୍ଥାନ କଲେ । ସେଠାରୁ ମାରି ଓ ବାରମୁଲା ବାଟେ ସେପ୍‌ଟେମ୍ବର ଆଠ ତାରିଖ ଦିନ ନୌକାଯୋଗେ ଶ୍ରୀନଗର ଅଭିମୁଖେ ଯାତ୍ରା କଲେ । ଶ୍ରୀନଗରର ଚିଫ୍ ଜଷ୍ଟିସ୍ ବାବୁ ଋଷିବର ମୁଖୋପାଧ୍ୟାୟ ଆଗ୍ରହ ସହକାରେ ସ୍ୱାମୀଜୀଙ୍କୁ ନିଜ ଘରେ ରଖି ତାଙ୍କର ପରିଚର୍ଯ୍ୟା କଲେ ।

କାଶ୍ମୀରର ଅତୁଳନୀୟ ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଜଳବାୟୁ ଗୁଣରେ ସ୍ୱାମୀଜୀ ଅପେକ୍ଷାକୃତ ସୁସ୍ଥ ଓ ପ୍ରଫୁଲ୍ଲଚିତ୍ତ ହେଲେ । ସ୍ଥାନୀୟ ପଣ୍ଡିତଗଣ, ବଙ୍ଗାଳୀ ଓ କାଶ୍ମୀରୀ ଭଦ୍ରଲୋକମାନେ ପ୍ରତ୍ୟହ ତାଙ୍କ ପାଖକୁ ଆସି ସତ୍‌ଚର୍ଚ୍ଚା କରୁଥିଲେ । ସେପ୍‌ଟେମ୍ବର ଚଉଦ ତାରିଖ ଦିନ ଦୁଇଟାବେଳେ ସେ ରାଜଭବନକୁ ଗଲେ । ରାଜା ରାମସିଂହ ସ୍ୱାମୀଜୀଙ୍କୁ ଯଥୋଚିତ ସମାଦର କଲେ । ତାଙ୍କୁ ଚଉକିରେ ବସାଇ ନିଜେ କର୍ମଚାରୀମାନଙ୍କ ସହିତ ତଳେ ବସିଲେ । ପ୍ରାୟ ଦୁଇଘଣ୍ଟା କାଳ ଧର୍ମ ଓ ଭାରତୀୟ ଜନତାର ଉନ୍ନତି ସମ୍ବନ୍ଧରେ ନାନାବିଧ ଆଲୋଚନା ହେଲା । ସ୍ୱାମୀଜୀଙ୍କ ଉଦାରଭାବ ଓ ମହତ୍ ହୃଦୟର ପରିଚୟ ପାଇ ରାଜା ମୁଗ୍ଧ ହେଲେ । ସେପ୍‌ଟେମ୍ବର ସତର ତାରିଖରେ ରାଜା ଅମରସିଂହଙ୍କ ଉଜୀର୍ ସାହେବ ଆସି ସ୍ୱାମୀଜୀଙ୍କ ସହିତ ଦେଖାକଲେ । ନୌ-ଭ୍ରମଣରେ ସ୍ୱାମୀଜୀଙ୍କ ସ୍ୱାସ୍ଥ୍ୟୋନ୍ନତି ହେବ ବୋଲି ଭାବି ସ୍ଥାନୀୟ ଭକ୍ତବୃନ୍ଦ ତାଙ୍କ ପାଇଁ 'ହାଉସ୍-ବୋଟ୍' ସନ୍ଧାନ କରୁଥିଲେ । ଉଜୀର୍ ଏ ବିଷୟ ଜାଣିପାରି ଶୀଘ୍ର ବୋଟ୍ ବନ୍ଦୋବସ୍ତ କରିବେ ବୋଲି ପ୍ରତିଶ୍ରୁତି ଦେଲେ । ତଦନୁସାରେ ତାଙ୍କ ସେକ୍ରେଟାରୀ ଅପରାହ୍ନରେ ବୋଟ୍

ଆଣି ଆସିଲେ । ସେହିଦିନଠାରୁ ସ୍ୱାମୀଜୀ ବୋଟ୍‌ରେ ବାସ କଲେ । ସ୍ୱାମୀଜୀ ନୌ-ଭ୍ରମଣ କରିବା ଉଦ୍ଦେଶ୍ୟରେ କାଶ୍ମୀରର ଇତିହାସ ପ୍ରସିଦ୍ଧ ସ୍ଥାନସମୂହ ଓ ପ୍ରାଚୀନ କାଳର ଧ୍ୱଂସାବଶେଷଗୁଡ଼ିକ ପରିଦର୍ଶନ କରି ବୁଲିଲେ । ଏହାପରେ ଅକ୍ଟୋବର ବାର ତାରିଖ ଦିନ ସେ ପୁନରାୟ ମାରୀ ପାହାଡ଼ରେ ପହଞ୍ଚିଲେ । ଚଉଦ ତାରିଖ ଦିନ ସ୍ଥାନୀୟ ବଙ୍ଗାଳୀ ଓ ପଞ୍ଜାବୀ ଭଦ୍ରଲୋକଗଣ ସ୍ୱାମୀଜୀଙ୍କୁ ଖଣ୍ଡିଏ ଅଭିନନ୍ଦନ-ପତ୍ର ଦେଲେ । ସେ ଉତ୍ତରରେ ଗୋଟିଏ ସୁନ୍ଦର ବକ୍ତୃତା ଦେଇ ସାଧାରଣଙ୍କର ଆନନ୍ଦ ବର୍ଦ୍ଧନ କରିଥିଲେ ।

ଅକ୍ଟୋବର ୧୬ ତାରିଖରେ ସେ ରାଓଲପିଣ୍ଡିରେ ପହଞ୍ଚିଲେ । ସ୍ଥାନୀୟ ଭଦ୍ରଲୋକମାନେ ତାଙ୍କୁ ଅଭ୍ୟର୍ଥନା କରି ଓକିଲ ହଂସରାଜଙ୍କ ଘରକୁ ନେଇଗଲେ । ଏହି ସ୍ଥାନରେ ଅପରାହ୍ଣରେ ଆର୍ଯ୍ୟ-ସମାଜୀ ସ୍ୱାମୀ ପ୍ରକାଶାନନ୍ଦଙ୍କ ସହିତ ତାଙ୍କର କଥୋପକଥନ ହେଲା । ଏହାଙ୍କ ସହିତ ଆଳାପ କରି ସ୍ୱାମୀଜୀ ଅତୀବ ପ୍ରୀତି ଲାଭ କଲେ । ଏହି ଆଲୋଚନା ବେଳେ ଜଜ୍ ନାରାୟଣ ଦାସ, ବାରିଷ୍ଟର ଭକ୍ତରାମ ପ୍ରଭୃତି ଅନେକ ଗଣମାନ୍ୟ ଶିକ୍ଷିତ ଭଦ୍ରଲୋକ ସେଠାରେ ଉପସ୍ଥିତ ଥିଲେ । ସତର ତାରିଖ ଦିନ ସେ ଜନସାଧାରଣଙ୍କ ଅନୁରୋଧରେ ହିନ୍ଦୁଧର୍ମ ସମ୍ବନ୍ଧରେ ଦୁଇଘଣ୍ଟା କାଳ ସୁଲଳିତ ଇଂରେଜୀରେ ଗୋଟିଏ ସୁଦୀର୍ଘ ଭାଷଣ ଦେଲେ । ଉଣେଇଶ ତାରିଖ ଦିନ ସ୍ଥାନୀୟ କାଳୀ-ମନ୍ଦିରରେ ଆଉ ଗୋଟିଏ କ୍ଷୁଦ୍ର ସଭାରେ ସେ ସ୍ୱଦେଶର କଲ୍ୟାଣ କରିବା ପନ୍ଥା ସମ୍ବନ୍ଧରେ ଉପଦେଶ ଦେଲେ ।

ଅକ୍ଟୋବର କୋଡ଼ିଏ ତାରିଖରେ ସେ କାଶ୍ମୀରର ମହାରାଜା ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କଦ୍ୱାରା ଆହୂତ ହୋଇ ଜାମ୍ମୁ ଅଭିମୁଖେ ପ୍ରସ୍ଥାନ କଲେ ।

ଜାମ୍ମୁରେ ପହଞ୍ଚିବା ମାତ୍ରକେ ରାଜକର୍ମଚାରୀଗଣ ତାଙ୍କୁ ସାଦର ଅଭ୍ୟର୍ଥନା କରି ତାଙ୍କ ରହଣି ପାଇଁ ନିର୍ଦ୍ଦିଷ୍ଟ ଭବନକୁ ନେଇଗଲେ । ପର ଦିବସ ଭୋଜନାନ୍ତେ ସ୍ୱାମୀଜୀ ରାଜପ୍ରାସାଦକୁ ଗଲେ । ମହାରାଜା, ତାଙ୍କର ଦୁଇଜଣ ଭାଇ ଓ କର୍ମଚାରୀବୃନ୍ଦ ତାଙ୍କୁ ସାଦର ଅଭ୍ୟର୍ଥନା କରି ସ୍ୱତନ୍ତ୍ର ଆସନରେ ବସାଇଲେ । ମହାରାଜା ପ୍ରଥମେ ତାଙ୍କୁ ସନ୍ନ୍ୟାସ ଧର୍ମ ସମ୍ବନ୍ଧରେ ପ୍ରଶ୍ନ କଲେ । ସ୍ୱାମୀଜୀ ତାହାର ଯଥୋଚିତ ଉତ୍ତର ଦେଲେ । ପ୍ରସଙ୍ଗକ୍ରମେ ସ୍ୱାମୀଜୀ କେତେଗୁଡ଼ିଏ ଅର୍ଥହୀନ ବାହାର ଆଚରଣର ଅସାରତା ପ୍ରତିପାଦନ କରି ବୁଝାଇଦେଲେ ଯେ, ଏହିସବୁ କୁସଂସ୍କାରରେ ଆବଦ୍ଧ ରହିବା ଭାରତର ଅବନତିର ମୁଖ୍ୟ କାରଣ । ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ଯାହା ଯଥାର୍ଥ ପାପ, ଯାହା ସକଳ ଅନର୍ଥର ମୂଳ, ଯଥା ବ୍ୟଭିଚାର, ସୁରାପାନ, ପରଦାରାଗମନ ଇତ୍ୟାଦି, ସେଥିରେ ଲୋକେ ଆଜିକାଲି ସମାଜଚ୍ୟୁତ ହେଉନାହାନ୍ତି; କେବଳ ଖାଇବା ପିଇବା ବିଷୟରେ ଖୁଣ୍ଟିନାଟି ବିଚାର ହୋଇ ଆପତ୍ତି ଉଠୁଛି । ପ୍ରସଙ୍ଗକ୍ରମେ ସମୁଦ୍ର ଯାତ୍ରା କଥା ଉଠିବାରୁ ସ୍ୱାମୀଜୀ କହିଲେ, ବିଦେଶକୁ ନ ଗଲେ, ପ୍ରକୃତ ଶିକ୍ଷା ହୁଏ ନାହିଁ । ସର୍ବଶେଷରେ ଆମେରିକା ଓ ଇଂଲଣ୍ଡରେ ବେଦାନ୍ତ ପ୍ରଚାରକାର୍ଯ୍ୟର ଆଶୁ

ପ୍ରୟୋଜନୀୟତା ସମ୍ବନ୍ଧରେ କଥାବାର୍ତ୍ତା ହେଲା । ସ୍ୱାମୀଜୀ ଏହି ଉଦ୍ଦେଶ୍ୟରେ ଭାରତରେ ଯେପରି କାର୍ଯ୍ୟ କରିବେ ବୋଲି ସଙ୍କଳ୍ପ କରିଛନ୍ତି, ତାହା ପ୍ରକାଶ କଲେ । ଦୀର୍ଘ ଚାରିଘଣ୍ଟା କାଳ ମହାରାଜା ମନୋଯୋଗ ସହିତ ସ୍ୱାମୀଜୀଙ୍କ ଜ୍ଞାନଗର୍ଭ ଓ ଯୁକ୍ତିପୂର୍ଣ୍ଣ ମତାମତ ଶ୍ରବଣ କରି ଅତୀବ ପ୍ରୀତ ହେଲେ । ପରଦିନ ସ୍ୱାମୀଜୀ ଗୋଟିଏ ବକ୍ତୃତା ଦେଲେ । ଉକ୍ତ ବକ୍ତୃତାରେ ମହାରାଜା ଏତେ ସନ୍ତୁଷ୍ଟ ହେଲେ ଯେ, ସେ ସ୍ୱାମୀଜୀଙ୍କୁ କେତେଦିନ ସେଠାରେ ରହି ବକ୍ତୃତା ଦେବା ଲାଗି ଅନୁରୋଧ କଲେ । ଆଉ କେତେଗୋଟି ବକ୍ତୃତା ଦେଇ ଅବଶେଷରେ ଅକ୍ଟୋବର ୨୯ ତାରିଖରେ ସ୍ୱାମୀଜୀ ମହାରାଜାଙ୍କଠାରୁ ବିଦାୟ ଗ୍ରହଣ କରି ଶିଆଲ୍‌କୋଟ୍ ଗଲେ । ସେଠାରେ ସେ ଦୁଇଟି ବକ୍ତୃତା ପ୍ରଦାନ କଲେ । ଏହି ସମୟରେ ଅଧିକାଂଶ ବକ୍ତୃତା ହିନ୍ଦୀ ଭାଷାରେ ଦିଆ ହୋଇଥିଲା ବୋଲି ଏଗୁଡ଼ିକ ସଂଗୃହୀତ ହୋଇପାରି ନାହିଁ । ଶିଆଲ୍‌କୋଟରେ ସ୍ତ୍ରୀ-ଶିକ୍ଷାର ବନ୍ଦୋବସ୍ତ ନ ଥିବା ଦେଖି ସ୍ୱାମୀଜୀ ଗୋଟିଏ ବାଳିକା ବିଦ୍ୟାଳୟ ସ୍ଥାପନ କରାଇବା ଇଚ୍ଛା ପ୍ରକାଶ କଲେ । ତଦନୁସାରେ ସ୍ୱାମୀଜୀଙ୍କ ଭକ୍ତ, ସ୍ଥାନୀୟ ପ୍ରସିଦ୍ଧ ଓକିଲ ଲାଲା ମୁଲଚାନ୍ଦ ଗୋଟିଏ ସମିତି ସ୍ଥାପନ କରି ସ୍ୱୟଂ ଏହାର ସେକ୍ରେଟାରୀ ହେଲେ ।

ନଭେମ୍ବର ପାଞ୍ଚ ତାରିଖ ଦିନ ଶିଆଲ୍‌କୋଟ୍‌ରୁ ସଙ୍ଗୀମାନଙ୍କ ସହିତ ସ୍ୱାମୀଜୀ ଲାହୋରରେ ପହଞ୍ଚିଲେ । ସ୍ଥାନୀୟ ସନାତନ ସଭାର ସଭ୍ୟବୃନ୍ଦ ତାଙ୍କୁ ଷ୍ଟେସନରେ ଅଭ୍ୟର୍ଥନା କରି 'ରାଜା ଧ୍ୟାନସିଂହଙ୍କ ହାବେଳୀ' ନାମକ ସୁବୃହତ୍ ପ୍ରାସାଦକୁ ନେଇଗଲେ । କିଛିକ୍ଷଣ ସ୍ୱାମୀଜୀ ସମାଗତ ଦର୍ଶକମଣ୍ଡଳୀକୁ ଧର୍ମୋପଦେଶ ଦେଲେ ଏହାପରେ 'ଟ୍ରିବିଉନ' ପତ୍ରିକାର ସମ୍ପାଦକ ଶ୍ରୀଯୁକ୍ତ ନଗେନ୍ଦ୍ରନାଥ ଗୁପ୍ତଙ୍କ ଆତିଥ୍ୟ ଗ୍ରହଣ କରି ତାଙ୍କ ଘରକୁ ଗଲେ । ପ୍ରତ୍ୟହ ଦଳେ ଦଳେ ବ୍ୟକ୍ତି ତାଙ୍କ ସହିତ ସାକ୍ଷାତ୍ କରିବାକୁ ଆସିଲେ । ସ୍ୱାମୀଜୀ ଲାହୋରରେ ଯଥାକ୍ରମେ 'ହିନ୍ଦୁ ଧର୍ମର ସାଧାରଣ ଭିତ୍ତି', 'ଭକ୍ତି' ଓ 'ବେଦାନ୍ତ' ସମ୍ବନ୍ଧରେ ତିନିଗୋଟି ବକ୍ତୃତା ଦେଲେ । ପଞ୍ଜାବୀମାନଙ୍କ ଭକ୍ତିଭାବ କମ୍ ଦେଖି ସ୍ୱାମୀଜୀ ଧର୍ମାଳାପ ସମୟରେ ଭକ୍ତିଯୋଗର କଥା ହିଁ ଅଧିକ ଆଲୋଚନା କରିଥିଲେ ।

## ସ୍ୱାମୀ ବିବେକାନନ୍ଦ ଓ ଆର୍ଯ୍ୟସମାଜ

ଆର୍ଯ୍ୟସମାଜର ପ୍ରସିଦ୍ଧ ଓ ପ୍ରଧାନ ନେତାମାନେ ପ୍ରତ୍ୟହ ତାଙ୍କ ସହିତ ବେଦ ଓ ବେଦାନ୍ତର ଆଲୋଚନା ନିମିତ୍ତ ଆସୁଥିଲେ । ଆର୍ଯ୍ୟସମାଜୀମାନେ ବି ବଙ୍ଗପ୍ରଦେଶର ବ୍ରାହ୍ମଗଣଙ୍କ ପରି ଅଦ୍ୱୈତବାଦ ଓ ମୂର୍ତ୍ତିପୂଜାର ଘୋର ବିରୋଧୀ, ତେଣୁ ସ୍ୱାମୀଜୀଙ୍କ ସହିତ ସେମାନଙ୍କର ସବୁବେଳେ ତର୍କ ହେଉଥିଲା । ଆର୍ଯ୍ୟସମାଜୀମାନଙ୍କ ମତାନ୍ଧତାକୁ ଦୂର କରିବା ଲାଗି ସ୍ୱାମୀଜୀ ଚେଷ୍ଟା କରିଥିଲେ । ଦୟାନନ୍ଦ ଆଙ୍ଗ୍ଲୋ-ବେଦିକ କଲେଜର ଅଧ୍ୟକ୍ଷ ଲାଲା ହଂସରାଜ ପ୍ରମୁଖ ଆର୍ଯ୍ୟସମାଜୀମାନେ କଥା ପ୍ରସଙ୍ଗରେ 'ବେଦର କେବଳ ଏକ ପ୍ରକାର

ଅର୍ଥ ହୋଇପାରେ' ବୋଲି ମତକୁ ସମର୍ଥନ କଲେ । ସ୍ୱାମୀଜୀ ନାନା ପ୍ରକାର ଯୁକ୍ତି ପ୍ରୟୋଗ କରି ବୁଝାଇ ଦେଲେ ଯେ, ପ୍ରତ୍ୟେକ ବ୍ୟକ୍ତି ସମ୍ପୂର୍ଣ୍ଣ ବିପରୀତ ବୋଧ ହେଉଥିବା ବିଭିନ୍ନ ବ୍ୟାଖ୍ୟା ଅବଲମ୍ବନ କରି ଉନ୍ନତି ପଥରେ ଅଗ୍ରସର ହେବା ବରଂ ଶ୍ରେୟସ୍କର । ହଂସରାଜ ବିପରୀତ ଯୁକ୍ତି ଦେଇ ସ୍ୱାମୀଜୀଙ୍କ ମତକୁ ଖଣ୍ଡନ କରିବା ଲାଗି ଚେଷ୍ଟା କଲେ; ଶେଷରେ ସ୍ୱାମୀଜୀ କହିଲେ, ''ଲାଲାଜୀ, ଆପଣ ଯେଉଁ ବିଷୟରେ ଏତେ ଆଗ୍ରହ ପ୍ରକାଶ କରୁଛନ୍ତି, ଆମେ ତାକୁ କହୁ, ମତାନ୍ଧତା, ସମ୍ପ୍ରଦାୟର ସତ୍ୱର ବିସ୍ତୃତି ଲାଗି ଏହା ସାହାଯ୍ୟ କରେ ବୋଲି ମୋତେ ଜଣାଅଛି । ଆଉ ଶାସ୍ତ୍ରର ମତାନ୍ଧତା ଅପେକ୍ଷା ମଣିଷର (ବ୍ୟକ୍ତି ବିଶେଷକୁ ଅବତାର କହି ତାଙ୍କର ଆଶ୍ରୟ ନେଲେ, ମୁକ୍ତି ହୁଏ—ଏହି ପ୍ରଚାର) ମତାନ୍ଧତାଦ୍ୱାରା ଆହୁରି ଅଦ୍ଭୁତ ରୂପେ ଓ ଅତି ଶୀଘ୍ର ସମ୍ପ୍ରଦାୟର ବିସ୍ତୃତି ହୁଏ, ଏହା ମଧ୍ୟ ମୋତେ ଭଲ ଜଣା । ପୁଣି ମୋ ହାତରେ ସେ ଶକ୍ତି ମଧ୍ୟ ଅଛି । ମୋ ଗୁରୁ ଶ୍ରୀରାମକୃଷ୍ଣ ପରମହଂସଙ୍କୁ ଈଶ୍ୱରଙ୍କ ଅବତାର ରୂପେ ପ୍ରଚାର କରିବା ନିମିତ୍ତ ମୋର ଅନ୍ୟାନ୍ୟ ଗୁରୁଭାଇମାନେ ବଦ୍ଧପରିକର; କେବଳ ମୁଁ ଏପରି ପ୍ରଚାରର ବିରୋଧ କରୁଛି । କାରଣ, ମୋର ଦୃଢ଼ ବିଶ୍ୱାସ, ମଣିଷକୁ ତା'ର ନିଜ ବିଶ୍ୱାସ ଓ ଧାରଣାନୁଯାୟୀ ଉନ୍ନତି କରିବାକୁ ଛାଡ଼ି ଦେଲେ, ଯଦିବା ଅତି ଧୀରେ ଧୀରେ ଉନ୍ନତି ହୁଏ, ଏହା ପକ୍‌କା ଉନ୍ନତି ।''

ଆଉ ଦିନେ ସ୍ୱାମୀଜୀ ଶ୍ରାଦ୍ଧ ସମ୍ବନ୍ଧରେ ଆର୍ଯ୍ୟସମାଜୀମାନଙ୍କ ସହିତ ଯୁକ୍ତି-ତର୍କରେ ପ୍ରବୃତ୍ତ ହେଲେ । ଆର୍ଯ୍ୟସମାଜୀମାନେ ପିତୃ-ପୁରୁଷଙ୍କ ଶ୍ରାଦ୍ଧକୁ ବିଶ୍ୱାସ କରନ୍ତି ନାହିଁ; ଏହାର ଉପଯୋଗିତା ମଧ୍ୟ ସ୍ୱୀକାର କରନ୍ତି ନାହିଁ । ହିନ୍ଦୁ-ସମାଜ ପକ୍ଷରୁ ଅନୁରୁଦ୍ଧ ହୋଇ ସ୍ୱାମୀଜୀ ଏହି କାର୍ଯ୍ୟରେ ଅଗ୍ରସର ହେଲେ ଏବଂ ସେଦିନ ଆର୍ଯ୍ୟସମାଜୀ ପଣ୍ଡିତମାନେ ସ୍ୱାମୀଜୀଙ୍କ ଯୁକ୍ତିତର୍କ ସମ୍ମୁଖରେ ନିସ୍ତବ୍ଧ ହେବାକୁ ବାଧ୍ୟ ହେଲେ । ସ୍ୱାମୀଜୀ କଥା ପ୍ରସଙ୍ଗରେ ଆର୍ଯ୍ୟସମାଜୀ ପ୍ରଚାରକମାନଙ୍କ ଉତ୍କଟ ମତାନ୍ଧତା ଓ ପରମତ ଅସହିଷ୍ଣୁତା ବିଷୟରେ ତୀବ୍ର ସମାଲୋଚନା କଲେ ମଧ୍ୟ ସେମାନେ କେବେ ଅସନ୍ତୁଷ୍ଟ ହୋଇ ନ ଥିଲେ । ସ୍ୱମତ ସମର୍ଥନ ଅଥବା ଅଯୌକ୍ତିକ ମତ ଖଣ୍ଡନ ବେଳେ ଏହି ଯୋଦ୍ଧୃ-ସନ୍ନ୍ୟାସୀ ଯଦିବା ଦୃପ୍ତ ତେଜରେ ପ୍ରତିପକ୍ଷର ଯୁକ୍ତି ନିର୍ମମ ଭାବରେ ଖଣ୍ଡନ କରୁଥିଲେ, ତଥାପି ତାଙ୍କର ପ୍ରତ୍ୟେକ କଥାରେ ଅସାମ୍ପ୍ରଦାୟିକ ଉଦାର ଭାବ ସର୍ବଦା ଫୁଟି ଉଠୁଥିଲା । ସ୍ୱାମୀଜୀଙ୍କର ଏହି ଅସାମ୍ପ୍ରଦାୟିକ ଉଦାର ଭାବ ଦେଖି ସନାତନପନ୍ଥୀ ଓ ଆର୍ଯ୍ୟସମାଜୀ ଉଭୟ ଦଳ ସମାନ ଭାବରେ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ଆର୍ଯ୍ୟସମାଜୀ ପ୍ରଚାରକମାନେ ପ୍ରାଚୀନପନ୍ଥୀ ହିନ୍ଦୁ ସମାଜ ଉପରେ ଅବିରାମ ଅଭିଶାପ ବର୍ଷଣ କରିବା ଫଳରେ ଉଭୟ ଦଳରେ ମନୋମାଳିନ୍ୟ ଓ ଅସନ୍ତୋଷର ସୃଷ୍ଟି ହୋଇଥିଲା । ସ୍ୱାମୀଜୀ ଅନେକଙ୍କ ହୃଦୟରୁ ଗ୍ଲାନିର ବେଦନା ଦୂର କରିବାକୁ ସମର୍ଥ ହୋଇଥିଲେ । ଆର୍ଯ୍ୟସମାଜୀ ହିନ୍ଦୁ ଓ ଶିଖମାନଙ୍କ ମଧ୍ୟରେ ପ୍ରୀତି ସ୍ଥାପନ

ନିମିତ୍ତ ସ୍ୱାମୀଜୀ ସବୁଶ୍ରେଣୀର ଯୁବକମାନଙ୍କୁ ନେଇ ଲାହୋରରେ ଗୋଟିଏ ସମିତି ସ୍ଥାପନ କଲେ ଏବଂ ଜାତି-ଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ଔଷଧ, ଶୁଶ୍ରୂଷା, ଖାଦ୍ୟ, ବସ୍ତ୍ର, ଶିକ୍ଷାଦାନ ଇତ୍ୟାଦିଦ୍ୱାରା ସେବା କରିବା ନିମିତ୍ତ ଯୁବକମାନଙ୍କୁ ଉତ୍ସାହିତ କଲେ । 'ସେବାଧର୍ମ'ର ଉଦାର ନୈତିକ ଆଦର୍ଶକୁ ଜୀବନରେ ପରିଣତ କରିବାର କର୍ମକ୍ଷେତ୍ର ନିର୍ଦ୍ଦେଶ କରି ସ୍ୱାମୀଜୀ ସକଳ ସମ୍ପ୍ରଦାୟର ଶ୍ରଦ୍ଧାଭାଜନ ହୋଇଥିଲେ ।

ଆର୍ଯ୍ୟସମାଜର ପୂର୍ବତନ ପ୍ରଚାରକ, ସ୍ୱାମୀଜୀଙ୍କର ବିଶେଷ ଭକ୍ତ ସ୍ୱାମୀ ଅଚ୍ୟୁତାନନ୍ଦ ଭବିଷ୍ୟତ ଜୀବନରଚିତ ଲେଖକଙ୍କ ସୁବିଧା ପାଇଁ ଆଚାର୍ଯ୍ୟଦେବଙ୍କ ପଞ୍ଜାବ ଓ କାଶ୍ମୀର ଭ୍ରମଣର ଯେଉଁ ସଂକ୍ଷିପ୍ତ ଡାଏରୀ ଲେଖିଥିଲେ, ତନ୍ମଧ୍ୟରେ ସ୍ୱାମୀଜୀଙ୍କ ଉଦାର ହୃଦୟର ଦୁଇଟି ସୁନ୍ଦର ଦୃଷ୍ଟାନ୍ତ ମିଳେ । ଦିନେ ସ୍ୱାମୀଜୀ ତାଙ୍କ ସଙ୍ଗୀବୃନ୍ଦଙ୍କ ସମ୍ମୁଖରେ କୌଣସି ବ୍ୟକ୍ତିର ଖୁବ୍ ପ୍ରଶଂସା କରୁଥିଲେ, ଏହି ସମୟରେ ଜଣେ ସଙ୍ଗୀ କହିଉଠିଲେ, ''ସ୍ୱାମୀଜୀ ! ସେ କିନ୍ତୁ ଆପଣଙ୍କୁ ମାନେ ନାହିଁ ।'' ସ୍ୱାମୀଜୀ ତତ୍‌କ୍ଷଣାତ୍ ଉତ୍ତର ଦେଲେ, ''ଭଲ ଲୋକ ହେବାକୁ ହେଲେ ଯେ ମୋତେ ମାନିବାକୁ ହେବ, ଏହାର ଅର୍ଥ କ'ଣ ?''

ଏହି ସମୟରେ 'ଗ୍ରେଟ ଇଣ୍ଡିଆନ୍ ସର୍କସ୍'ର ଅନ୍ୟତମ ସ୍ୱତ୍ୱାଧିକାରୀ ମୋତିଲାଲ ଘୋଷ କାର୍ଯ୍ୟ ପ୍ରୟୋଜନରେ ନଗେନ୍ ବାବୁଙ୍କ ଘରକୁ ଦିନେ ଆସିଥିଲେ । ସ୍ୱାମୀଜୀ ତାଙ୍କୁ ଦେଖିବା ମାତ୍ରକେ ଚିହ୍ନିପାରିଲେ ଏବଂ ନିତାନ୍ତ ଆତ୍ମୀୟଙ୍କ ପରି ସରଳ ଭାବରେ କଥାବାର୍ତ୍ତା କରିବାକୁ ଲାଗିଲେ । ବାଲ୍ୟକାଳରେ ଏମାନେ ଗୋଟିଏ ଆଖଡ଼ାରେ ବ୍ୟାୟାମ କରୁଥିଲେ । ତାଙ୍କର ବାଲ୍ୟ ସଙ୍ଗୀଙ୍କ ଅପୂର୍ବ ତେଜ, ପ୍ରତିଭା ଓ ଶକ୍ତି-ପ୍ରଦୀପ୍ତ ମୁଖମଣ୍ଡଳ ଦେଖି ମୋତିବାବୁଙ୍କ ଆଖି ଝଲସିଗଲା — ସ୍ୱାମୀଜୀ ଯେତେ ତାଙ୍କ ସହିତ ଆପଣାର ପରି ବ୍ୟବହାର ଓ କଥାବାର୍ତ୍ତା କରିବା ଲାଗି ଚେଷ୍ଟା କଲେ, ମୋତିବାବୁ ସେତେ ସଙ୍କୁଚିତ ହୋଇଗଲେ । ଶେଷରେ ଅନେକ ସାହସ ସଂଗ୍ରହ କରି ମୋତିବାବୁ ସ୍ୱାମୀଜୀଙ୍କୁ ଦୀନ ଭାବରେ କହିଲେ, ''ଭାଇ, ତୁମକୁ ମୁଁ କ'ଣ ବୋଲି ଡାକିବି ?'' ସ୍ୱାମୀଜୀ ଅତିଶୟ ସ୍ନେହପୂର୍ଣ୍ଣ ସ୍ୱରରେ କହିଲେ, ''ହଇରେ ମୋତି, ତୁ କ'ଣ ପାଗଳ ହୋଇଗଲୁ କି ? ମୁଁ କ'ଣ ହୋଇଯାଇଛି ? ମୁଁ ତ ସେହି ନରେନ୍, ତୁ ତ ସେହି ମୋତି ।'' ସ୍ୱାମୀଜୀ ଏପରି ଭାବରେ କଥାଗୁଡ଼ିକ କହିଲେ ଯେ, ମୋତିବାବୁଙ୍କର ସବୁ ସଙ୍କୋଚ ଦୂର ହୋଇଗଲା ।

## ସ୍ୱାମୀ ରାମତୀର୍ଥ ଓ ବେଦାନ୍ତ ପ୍ରଚାର

ସ୍ୱାମୀଜୀ ଲାହୋରରେ ସ୍ଥାନୀୟ କଲେଜର ଗଣିତ ଅଧ୍ୟାପକ ତୀର୍ଥରାମ ଗୋସ୍ୱାମୀଙ୍କ ସହିତ ପରିଚିତ ହେଲେ । ସ୍ୱାମୀଜୀଙ୍କ ବକ୍ତୃତା ଓ ଚରିତ୍ରରେ ଅଧ୍ୟାପକ ମହାଶୟ ସ୍ୱାମୀଜୀଙ୍କ ପ୍ରତି ଆକୃଷ୍ଟ ହେଲେ । ଘନିଷ୍ଠ ପରିଚୟ ଫଳରେ ଅନୁରାଗ ବୃଦ୍ଧି ପାଇଲା । ଦିନେ ଅଧ୍ୟାପକ ସ୍ୱାମୀଜୀଙ୍କୁ ଶିଷ୍ୟମାନଙ୍କ ସହିତ ତାଙ୍କ ଘରକୁ

ଆସି ଭିକ୍ଷାଗ୍ରହଣ କରିବା ଲାଗି ନିମନ୍ତ୍ରଣ କଲେ । ଉଦ୍ଦେଶ୍ୟ — ସ୍ୱାମୀଜୀଙ୍କ ସହିତ ତାଙ୍କ କାର୍ଯ୍ୟପ୍ରଣାଳୀ ସମ୍ବନ୍ଧରେ ଆଲୋଚନା କରିବା । ଯୋଗ୍ୟ ଅଧିକାରୀ ଦେଖି ସ୍ୱାମୀଜୀ 'ବେଦାନ୍ତ ପ୍ରଚାର' କାର୍ଯ୍ୟରେ ତାଙ୍କୁ ପ୍ରେରଣା ଦେଲେ । ସ୍ୱାମୀଜୀ ବିବେକ ବୈରାଗ୍ୟବାନ କୃତବିଦ୍ୟ ବନ୍ଧୁଙ୍କୁ ସ୍ୱଦେଶ ଓ ବିଦେଶରେ 'ବେଦାନ୍ତ ପ୍ରଚାର'ର ସୁମହତ୍ କଲ୍ୟାଣ ଏଭଳି ଭାବରେ ବୁଝାଇ ଦେଲେ ଯେ, ଅଧ୍ୟାପକଙ୍କ ଜୀବନ ଆମୂଳ ପରିବର୍ତ୍ତିତ ହୋଇଗଲା । ସେ ବେଦାନ୍ତ ପ୍ରଚାର କାର୍ଯ୍ୟରେ ଜୀବନ ଉତ୍ସର୍ଗ କରିବା ନିମିତ୍ତ ବଦ୍ଧପରିକର ହେଲେ । ବିଦାୟର ପ୍ରାକ୍କାଳରେ ତୀର୍ଥରାମ ସ୍ୱାମୀଜୀଙ୍କୁ ତାଙ୍କ ପ୍ରିୟ ବହୁମୂଲ୍ୟ ସୁନା ଘଡ଼ିଟି ଉପହାର ଦେଇଥିଲେ; ସ୍ୱାମୀଜୀ ତାହା ପରମାନନ୍ଦରେ ଗ୍ରହଣ କରିଥିଲେ ଏବଂ ପରକ୍ଷଣରେ ଆଦର କରି ଅଧ୍ୟାପକଙ୍କ ପକେଟରେ ଘଡ଼ିଟିକୁ ରଖିଦେଇ କହିଲେ, "ବନ୍ଧୁ, ଏହି ଘଡ଼ିଟିକୁ ମୁଁ ଏହି ପକେଟରେ ରଖି ବ୍ୟବହାର କରିବି ।" ରହସ୍ୟମୟ ହସରେ ସ୍ୱାମୀଜୀ ତୀର୍ଥରାମଙ୍କ ପ୍ରତି ଅର୍ଥପୂର୍ଣ୍ଣ ଦୃଷ୍ଟି ନିକ୍ଷେପ କଲେ । ସେହି ମୌନ ଇଙ୍ଗିତ ସେ ସମଗ୍ର ହୃଦୟ ଦେଇ ଗ୍ରହଣ କଲେ ଏବଂ ଅଳ୍ପକାଳ ପରେ କର୍ମତ୍ୟାଗ କରି ସେ ସ୍ୱାମୀଜୀଙ୍କ ପଦାଙ୍କ ଅନୁସରଣ କରି ପ୍ରଚାର କାର୍ଯ୍ୟରେ ଆତ୍ମୋତ୍ସର୍ଗ କଲେ । ଏହି ପ୍ରଚାରକ ସନ୍ନ୍ୟାସୀ ସାଧାରଣରେ ସ୍ୱାମୀ ରାମତୀର୍ଥ ନାମରେ ସୁପରିଚିତ । ପ୍ରତିଭାଶାଳୀ ସ୍ୱାମୀ ରାମତୀର୍ଥ ଆମେରିକା, ମିଶର ଓ ଭାରତରେ ବେଦାନ୍ତ ପ୍ରଚାର କାର୍ଯ୍ୟରେ ଯଥେଷ୍ଟ ସଫଳତା ଲାଭ କରିଥିଲେ; କିନ୍ତୁ ଦେଶର ଦୁର୍ଭାଗ୍ୟବଶତଃ ଅତି ସ୍ୱଳ୍ପକାଳ ମଧ୍ୟରେ କର୍ମକ୍ଷେତ୍ରରୁ ଅପସରି ଗଲେ । ଆର୍ଯ୍ୟସମାଜୀ ସ୍ୱାମୀ ଅଚ୍ୟୁତାନନ୍ଦ, ପ୍ରକାଶାନନ୍ଦ ଏବଂ ଆଉ କେତେଜଣ ପ୍ରଚାରକ ସନ୍ନ୍ୟାସୀ ସ୍ୱାମୀଜୀଙ୍କ ଜ୍ୱଳନ୍ତ ଉତ୍ସାହରେ ଅନୁପ୍ରାଣିତ ହୋଇ ବେଦାନ୍ତ ପ୍ରଚାର କାର୍ଯ୍ୟରେ ବଦ୍ଧପରିକର ହେଲେ । ଆର୍ଯ୍ୟସମାଜ ଉପରେ ସ୍ୱାମୀଜୀ ଏହି ସମୟରେ ଏତେ ପ୍ରଭାବ ବିସ୍ତାର କରିଥିଲେ ଯେ, ସେ ଶୀଘ୍ର ନେତା ରୂପେ ଉକ୍ତ ସମାଜର ପରିଚାଳନା-ଭାର ଗ୍ରହଣ କରୁଛନ୍ତି ବୋଲି ଗୁଜବ ପ୍ରଚାରିତ ହୋଇଥିଲା ।

ଶାରୀରିକ ଅସୁସ୍ଥତା ଯୋଗୁଁ ସ୍ୱାମୀଜୀ କେତେଦିନ ଡେରାଡୁନ ଆସି ବାସ କରିବାକୁ ବାଧ୍ୟ ହୋଇଥିଲେ, କିନ୍ତୁ ସେ ବିଶ୍ରାମ କରିବା ଲାଗି ଅବସର ପାଇଲେ ନାହିଁ । ସମାଗତ ବ୍ୟକ୍ତିବର୍ଗଙ୍କ ସହିତ ଧର୍ମ ଓ ସମାଜ ସମ୍ବନ୍ଧୀୟ ସମସ୍ୟାଗୁଡ଼ିକର ଆଲୋଚନା ବ୍ୟତୀତ ପ୍ରତ୍ୟହ ନିୟମିତ ରୂପେ ଶିଷ୍ୟବୃନ୍ଦଙ୍କୁ ଆଚାର୍ଯ୍ୟ ରାମାନୁଜଙ୍କ ଭାଷ୍ୟ ସହ ବେଦାନ୍ତ ଦର୍ଶନ ଓ ସାଂଖ୍ୟ ଦର୍ଶନ ପଢ଼ାଇବାରେ ଲାଗିଲେ । ଡେରାଡୁନ୍‌ଠାରେ ଖେତଡ଼ିଠାରୁ ପ୍ରେରିତ ଅନେକ ନିମନ୍ତ୍ରଣ ପତ୍ର ପାଇଲେ । ସେହି ଅନୁସାରେ ସେ ରାଜପୁତନା ଯିବା ନିମିତ୍ତ ଡେରାଡୁନ୍‌ଠାରୁ ସାହାରଣପୁର ବାଟେ ଯାଇ ଦିଲ୍ଲୀରେ ପହଞ୍ଚିଲେ । ଦିଲ୍ଲୀରେ ଚାରିପାଞ୍ଚ ଦିନ କଟାଇ, ସ୍ୱାମୀଜୀ ସଦଳବଳେ ଆଲୋୟାର ଯାତ୍ରା କଲେ ।

## ଆଲୋୟାର ଓ ଖେତଡ଼ି

କେତେବର୍ଷ ତଳେ ସ୍ୱାମୀଜୀ ପରିବ୍ରାଜକ ବେଶରେ ଏହି ନଗରରେ ନିତାନ୍ତ ଅପରିଚିତ ଭାବରେ ପ୍ରବେଶ କରିଥିଲେ । ସ୍ୱାମୀଜୀ ଷ୍ଟେସନରେ ଅବତରଣ କରିବା ମାତ୍ରକେ ସ୍ଥାନୀୟ ଭଦ୍ରବୃନ୍ଦ ତାଙ୍କୁ ସମୁଚିତ ଅଭ୍ୟର୍ଥନା କଲେ । ସମ୍ଭ୍ରାନ୍ତ, ଶିକ୍ଷିତ ଓ ଜ୍ଞାନୀ ବ୍ୟକ୍ତିମାନଙ୍କ ସହିତ ସ୍ୱାମୀଜୀ କଥୋପକଥନ କରିବାରେ ବ୍ୟସ୍ତ, ଏହି ସମୟରେ ଦେଖିଲେ ଯେ, କିଛି ଦୂରରେ ତାଙ୍କର ଜଣେ ଦରିଦ୍ର ଶିଷ୍ୟ ମଳିନ ବେଶରେ ଦଣ୍ଡାୟମାନ ହୋଇ ସତୃଷ୍ଣ ନୟନରେ ତାଙ୍କ ଉପରେ ଦୃଷ୍ଟି ପକାଉଛି । ସ୍ୱାମୀଜୀ ତତ୍କ୍ଷଣାତ୍ ତାଙ୍କୁ ନିକଟକୁ ଡାକିଲେ । ଶିଷ୍ୟ ଆନନ୍ଦ ସହକାରେ ଆସି ତାଙ୍କ ପଦଧୂଳି ଗ୍ରହଣ କଲା । ପରେ ସ୍ୱାମୀଜୀ ତାଙ୍କ ଅନ୍ୟାନ୍ୟ ଶିଷ୍ୟଗଣଙ୍କୁ କୁଶଳ ବାର୍ତ୍ତା ପଚାରିବାରେ ଲାଗିଲେ, ଏଣେ ତାଙ୍କ ପାଇଁ ଭଦ୍ରଲୋକମାନେ ଅପେକ୍ଷା କରିଥିଲେ—ସେମାନଙ୍କ ଅସ୍ତିତ୍ୱ ଯେପରି କି କ୍ଷଣକାଳ ପାଇଁ ସେ ଭୁଲି ଯାଇଥିଲେ । ତାଙ୍କ ପୂର୍ବପରିଚିତ ବନ୍ଧୁବାନ୍ଧବ ଓ ଭକ୍ତଗଣ ବିସ୍ମିତ ହେଲେ ଯେ, ଜଗଦ୍‌ବ୍ୟାପୀ ପ୍ରତିଷ୍ଠା ଯଶଃ ଓ ସମ୍ମାନ ଲାଭ କରି ମଧ୍ୟ ସେ ସେହି ଉଦାର, ସ୍ନେହପରାୟଣ, ବନ୍ଧୁବତ୍ସଳ, ଉଦାସୀନ ସନ୍ନ୍ୟାସୀ ହିଁ ଅଛନ୍ତି । ତାଙ୍କ ଦରିଦ୍ର ଶିଷ୍ୟ ଓ ଭକ୍ତମାନଙ୍କ ଗୃହକୁ ଯାଇ ସେ ଆଗପରି ସରଳ ଭାବରେ ଭିକ୍ଷା ଗ୍ରହଣ କରିବାରେ ଲାଗିଲେ । ଏଥିପୂର୍ବରୁ ସ୍ୱାମୀଜୀ ଜଣେ ଦରିଦ୍ରା ଭକ୍ତିମତୀ ବିଧବା ମହିଳାଙ୍କ ଆତିଥ୍ୟ ଗ୍ରହଣ କରି ପରମ ତୃପ୍ତି ଲାଭ କରିଥିଲେ; ବହୁବର୍ଷ ତଳର କଥା ହେଲେ ମଧ୍ୟ ସେ ତାହା ଭୁଲି ନ ଥିଲେ । ଦିନେ ସେ ଭକ୍ତ ମହିଳାଙ୍କୁ ସମ୍ବାଦ ଦେଲେ ଯେ, ସେଦିନ ଶିଷ୍ୟମାନଙ୍କୁ ସାଙ୍ଗରେ ଧରି ଭିକ୍ଷା ଗ୍ରହଣ କରିବା ଲାଗି ତାଙ୍କ ଘରକୁ ଯିବେ । ସେ ଯେପରି ଆଗପରି ରୁଟି ତିଆରି କରି ରଖନ୍ତି ! ଏ ସମ୍ବାଦ ପାଇ ଉକ୍ତ ମହିଳାଙ୍କ ହୃଦୟ ଆନନ୍ଦରେ ନାଚି ଉଠିଲା । ସାଧ୍ୟମତେ ଅତିଥି-ସେବାର ଆୟୋଜନ କଲେ । ସ୍ୱାମୀଜୀ ଶିଷ୍ୟମାନଙ୍କ ସହ ଭୋଜନରେ ବସନ୍ତେ ସେ ଗଳଦଶ୍ରୁ ଲୋଚନରେ ରୁଟି ପରଷୁ ପରଷୁ ଆର୍ଦ୍ର କଣ୍ଠରେ କହିଲେ, "ମୁଁ ଗରିବ, ଇଚ୍ଛା ଥିଲେ ବି ତୁମକୁ ଦେବା ଯୋଗ୍ୟ ମିଷ୍ଟ ସାମଗ୍ରୀ କୁଆଡୁ ପାଇବି ବାବା ?" ସ୍ୱାମୀଜୀ ଆନନ୍ଦ ସହକାରେ ସେହି ରୁଟି ଖାଉ ଖାଉ କହିଲେ, "ମା, ତୁମର ଏହି ରୁଟିପରି ମଧୁର ଖାଦ୍ୟଦ୍ରବ୍ୟ ମୁଁ କେବେ ଆହାର କରିନାହିଁ ।" ଶିଷ୍ୟମାନଙ୍କୁ କହିଲେ, "ଦେଖିଲ, କି ଭକ୍ତିମତୀ ମହିଳା ! ଏଭଳି ସାତ୍ତ୍ୱିକ ଆହାର ମୋ ଭାଗ୍ୟରେ ଅନେକ ଦିନ ହେଲା ଜୁଟି ନ ଥିଲା ।" ସ୍ୱାମୀଜୀ ତାଙ୍କ ସାଂସାରିକ ଶୋଚନୀୟ ଦୁରବସ୍ଥା ବିଷୟ ଅବଗତ ଥିଲେ । ସେହି ହେତୁ ମହିଳାଙ୍କ ଅଜ୍ଞାତସାରରେ ଘରର ଜଣେ ପୁରୁଷ ହାତରେ ଗୋଟିଏ ଶହେଟଙ୍କିଆ ନୋଟ୍ ଦେଇଦେଲେ । ସେମାନେ ଏହି ଟଙ୍କା ନେବାକୁ ପ୍ରବଳ ଆପତ୍ତି କରିଥିଲେ ସତ୍ୟ, କିନ୍ତୁ ସ୍ୱାମୀଜୀ ତାହା ଶୁଣିଲେ ନାହିଁ ।

ଆଲୋୟାର୍‌ରୁ ସ୍ୱାମୀଜୀ ଜୟପୁର ଗଲେ; ସେଠାରୁ ଖେତଡ଼ିର ରାଜାଙ୍କ ବନ୍ଦୋବସ୍ତ ଅନୁଯାୟୀ ଖେତଡ଼ି ଅଭିମୁଖେ ଯାତ୍ରା କଲେ । ଜୟପୁରଠାରୁ ଖେତଡ଼ି ନବେ ମାଇଲ ଦୂର । କେହି ଘୋଡ଼ାରେ, କେହି ଓଟରେ, କେହି ବା ରଥରେ ଚଢ଼ି ଗଲେ । ରାଜା ବାହାଦୁର ଖେତଡ଼ିରୁ ବାର ମାଇଲ ଆଗକୁ ଆସି ସ୍ୱାମୀଜୀଙ୍କୁ ରାଜୋଚିତ ସମାରୋହରେ ଅଭ୍ୟର୍ଥନା କଲେ । ନଗରକୁ ସ୍ୱାମୀଜୀଙ୍କ ଆଗମନ ଉପଲକ୍ଷେ ନାନାପ୍ରକାର ଆମୋଦ-ପ୍ରମୋଦ ଅନୁଷ୍ଠିତ ହେଲା । ରାତ୍ରିରେ ଅଗ୍ନିଉତ୍ସବ ହେଲା । ଦରିଦ୍ର-ନାରାୟଣଙ୍କୁ ଭୂରିଭୋଜନ ଦିଆହେଲା ।

ଅଭ୍ୟର୍ଥନା ସଭାରେ ସ୍ୱାମୀଜୀ ଉପବେଶନ କରନ୍ତେ, ରାଜକର୍ମଚାରୀବୃନ୍ଦ ଓ ସର୍ଦ୍ଦାର ଏବଂ ଉପସ୍ଥିତ ସମ୍ଭ୍ରାନ୍ତ ନାଗରିକଗଣ ଜଣ ଜଣ ହୋଇ ସ୍ୱାମୀଜୀଙ୍କ ପଦଧୂଳି ଗ୍ରହଣ କଲେ ଏବଂ ରାଜ ଦରବାର ପ୍ରଥାନୁଯାୟୀ ତାଙ୍କୁ ପ୍ରତ୍ୟେକେ ଦୁଇଟଙ୍କା ଲେଖାଏଁ ଭେଟି ଦେଲେ । ରାଜା ବାହାଦୁର ନିଜେ ତିନିହଜାର ଟଙ୍କା ପ୍ରଣାମି ଦେଲେ । ଏହି ବ୍ୟାପାର ଶେଷ ହେବାକୁ ପ୍ରାୟ ଦୁଇଘଣ୍ଟା ସମୟ ଲାଗିଲା । ତତ୍ପରେ ଅଭିନନ୍ଦନ-ପତ୍ର ପଢ଼ାହେଲା । ରାଜା ବାହାଦୂର ସ୍ୱାମୀଜୀଙ୍କ ଉପଦେଶ ଅନୁଯାୟୀ ଶିକ୍ଷା ବିସ୍ତାର ଲାଗି ଚେଷ୍ଟା କରୁଛନ୍ତି ବୋଲି ଜାଣିପାରି ସେ ଆନନ୍ଦ ପ୍ରକାଶ କଲେ । ଶିକ୍ଷା ସମ୍ବନ୍ଧରେ ସ୍ୱାମୀଜୀ ଆଲୋଚନା କରି କହିଲେ, "ଶିଶୁମାନଙ୍କୁ ଶିକ୍ଷା ଦେବାକୁ ହେଲେ ସେମାନଙ୍କ ପ୍ରତି ଅଗାଧ ବିଶ୍ୱାସ ସମ୍ପନ୍ନ ହେବାକୁ ପଡ଼ିବ, ସେମାନଙ୍କୁ ବିଶ୍ୱାସ କରିବାକୁ ହେବ; ପ୍ରତ୍ୟେକ ଶିଶୁ ଅନନ୍ତ ଐଶୀ-ଶକ୍ତିର ଆଧାର । ଶିଶୁମାନଙ୍କୁ ଶିକ୍ଷା ଦେବା ସମୟରେ ଆମମାନଙ୍କୁ ଆଉ ଗୋଟିଏ ବିଷୟ ମନେ ରଖିବାକୁ ହେବ । ସେମାନେ ଯେପରି ନିଜେ ଚିନ୍ତା କରିବାକୁ ଶିଖନ୍ତି, ସେ ବିଷୟରେ ଉତ୍ସାହ ଦେବାକୁ ହେବ । ଏହି ମୌଳିକ ଚିନ୍ତାର ଅଭାବ ହିଁ ଭାରତର ହୀନାବସ୍ଥାର କାରଣ । ଯଦି ଏହି ଭାବରେ ପିଲାମାନଙ୍କୁ ଶିକ୍ଷା ଦିଆଯାଏ, ତେବେ ସେମାନେ ମଣିଷ ହେବେ ଏବଂ ଜୀବନ-ସଂଗ୍ରାମରେ ନିଜ ସମସ୍ୟା ପୂରଣ କରିବାକୁ ସମର୍ଥ ହେବେ ।"

ଡିସେମ୍ବର କୋଡ଼ିଏ ତାରିଖ ଦିନ ସ୍ୱାମୀଜୀ ଶିଷ୍ୟମାନଙ୍କ ସହିତ ଯେଉଁ ବଙ୍ଗଳାରେ ରହୁଥିଲେ, ସେଠାରେ ଗୋଟିଏ ସଭା ହେଲା । ସ୍ଥାନୀୟ ସବୁ ଶିକ୍ଷିତ ବ୍ୟକ୍ତି ଏବଂ କେତେଜଣ ଇଉରୋପୀୟ ଭଦ୍ରଲୋକ ଓ ମହିଳା ସେଠାରେ ଉପସ୍ଥିତ ହୋଇଥିଲେ । ରାଜା ବାହାଦୂର ସଭାପତି ହେଲେ । ସେ ସ୍ୱାମୀଜୀଙ୍କ ପରିଚୟ ଦେବାପରେ ସ୍ୱାମୀଜୀ ପ୍ରାୟ ଦେଢ଼ଘଣ୍ଟା କାଳ ଗୋଟିଏ ଜ୍ଞାନଗର୍ଭ ଅଭିଭାଷଣ ଦେଲେ । ବର୍ତ୍ତମାନ ଭାରତର ଧର୍ମଜଗତ ଅବସ୍ଥା ବର୍ଣ୍ଣନା କରି ସେ ଗଭୀର ଦୁଃଖକ୍ଷୋଭର ସହିତ କହିଲେ, "ଆମେ ହିନ୍ଦୁ ନୋହୁଁ ବୈଦାନ୍ତିକ ନୋହୁଁ— ଆମେ ଅସ୍ପୃଶ୍ୟତା ମାନୁଥିବା ଦଳ । ରୋଷାଇଘର ହେଲା ଆମ ମନ୍ଦିର; ଭାତହାଣ୍ଡି ହେଉଛି ଉପାସ୍ୟ ଦେବତା; ଛୁଅଁନା, ଛୁଅଁନା ହେଲା ଆମ ମନ୍ତ୍ର । ସମାଜର ଏହି

ଅନ୍ଧ କୁସଂସ୍କାରକୁ ସତ୍ୱର ଦୂର କରିବାକୁ ହେବ । ଏକମାତ୍ର ଉପନିଷଦର ଉଦାର ମତଗୁଡ଼ିକୁ ପ୍ରଚାର କଲେ ଏହା ସାଧିତ ହେବ ।

କେତେଦିନ ଆନନ୍ଦରେ ରାଜ-ଶିଷ୍ୟଙ୍କ ପ୍ରାସାଦରେ କଟାଇ ସ୍ୱାମୀଜୀ ବିଦାୟ ଗ୍ରହଣ କଲେ । ସେ କ୍ରମାଗତ ବକ୍ତୃତା ଓ ପ୍ରଚାର କାର୍ଯ୍ୟରେ ପରିଶ୍ରାନ୍ତ ହୋଇ ପଡ଼ିଥିଲେ, ତଥାପି ସାଗ୍ରହ ଆହ୍ୱାନ ଉପେକ୍ଷା କରି ନ ପାରି କୌଣସି ପ୍ରକାରେ କିଶନଗଡ଼, ଆଜ୍‌ମୀର, ଯୋଧପୁର, ଇନ୍ଦୋର ବାଟେ ଶେଷରେ ଖଣ୍ଡୱାରରେ ପହଞ୍ଚିଲେ । ଖଣ୍ଡୱାରକୁ ଆସି ସ୍ୱାମୀଜୀଙ୍କ ଶରୀର ଅସୁସ୍ଥ ହୋଇପଡ଼ିଲା । ବରୋଦା, ଗୁଜରାଟ ଓ ବମ୍ବେ ପ୍ରଦେଶରୁ ସାଗ୍ରହ ଆହ୍ୱାନ ସୂଚକ ପତ୍ର ଓ ତାର ଆସିବାକୁ ଲାଗିଲା । ସେଠାକୁ ଯିବା ଲାଗି ଏକାନ୍ତ ଇଚ୍ଛା ଥିଲେ ମଧ୍ୟ ସ୍ୱାମୀଜୀ ଭ୍ରମଣ ସ୍ଥଗିତ ରଖି କଲିକତାକୁ ଫେରିଗଲେ ।

ପଞ୍ଜାବ, କାଶ୍ମୀର ଓ ରାଜପୁତନାରେ ପ୍ରଦତ୍ତ ସ୍ୱାମୀଜୀଙ୍କ ପ୍ରସିଦ୍ଧ ବକ୍ତୃତାଗୁଡ଼ିକ ପାଠ କଲେ ତାଙ୍କର ଉଦାରଭାବ, ଧର୍ମର ସାର୍ବଭୌମିକ ଆଦର୍ଶ ଓ ଶିକ୍ଷାଦାନପ୍ରଣାଳୀର ମୌଳିକତାରେ ଚମତ୍କୃତ ହେବାକୁ ହୁଏ । ଏକ ପକ୍ଷରେ ସେ ଯେପରି ଆଧୁନିକ ସଂସ୍କାରକ-ଗୋଷ୍ଠୀର ବୈଦେଶିକ ଭାବ-ବହୁଳ କାର୍ଯ୍ୟପ୍ରଣାଳୀର ତୀବ୍ର ସମାଲୋଚନା କରିଛନ୍ତି, ଅପର ପକ୍ଷରେ ଉନ୍ନତିର ପରିପନ୍ଥୀ ସଂକୀର୍ଣ୍ଣଚେତା ଧର୍ମାନ୍ଧମାନଙ୍କର ପ୍ରାଚୀନ କୁସଂସ୍କାରଗୁଡ଼ିକୁ ଅନ୍ଧଭାବରେ ଜାବୁଡ଼ି ଧରି ରଖିବା ଭଳି ହାସ୍ୟୋଦ୍ଦୀପକ ଚେଷ୍ଟାକୁ ମଧ୍ୟ ବାତୁଳତା ବୋଲି ଉପହାସ କରିବାକୁ ସଙ୍କୁଚିତ ହୋଇନାହାନ୍ତି । ସେ ବୁଝିଥିଲେ, ବେଦାନ୍ତର ମହାନ୍ ସତ୍ୟକୁ ଉପେକ୍ଷା କରିଥିବାରୁ ଭାରତବର୍ଷର ବର୍ତ୍ତମାନ ଦୁରବସ୍ଥା । ଏକମାତ୍ର ବେଦାନ୍ତ ଦର୍ଶନ ଅବଲମ୍ବନରେ ବିଭିନ୍ନ ପ୍ରକାର ବିରୋଧୀ ଭାବସମୂହର ଉଦ୍ଭବ ହେବାରୁ କାଳକ୍ରମେ ଏହା ଦାର୍ଶନିକ ପଣ୍ଡିତମାନଙ୍କ ଉର୍ବର ମସ୍ତିଷ୍କର ପ୍ରଶସ୍ତ ବ୍ୟାୟାମକ୍ଷେତ୍ରରେ ପରିଣତ ହୋଇଆସିଛି । ନାନା ପୁରାଣ, କେତେଖଣ୍ଡ ଆଧୁନିକ ସ୍ମୃତିଶାସ୍ତ୍ର—ବିଶେଷଭାବରେ ଦେଶାଚାର, ଲୋକାଚାର ହିଁ ଧର୍ମ ଜଗତରେ ବେଦାନ୍ତର ସ୍ଥାନ ଅଧିକାର କରିବସିଛି; ଏପରି କି ବେଦାନ୍ତ କହିଲେ, ସାଧାରଣ ଲୋକେ ବୁଝୁଛନ୍ତି—ଦୁର୍ବୋଧ ଦର୍ଶନ ଶାସ୍ତ୍ର, ଯାହା ସହିତ ପ୍ରଚଳିତ ଧର୍ମର କୌଣସି ସମ୍ବନ୍ଧ ନାହିଁ । ଏହି ଭ୍ରାନ୍ତ ବିଶ୍ୱାସର ଅପନୋଦନ ଲାଗି ଯୁଗପ୍ରବର୍ତ୍ତକ ଆଚାର୍ଯ୍ୟଦେବ ଅଦ୍ୱୈତାନୁଭୂତିର ଅଭ୍ରଭେଦୀ ଶିଖରରେ ଦଣ୍ଡାୟମାନ ହୋଇ ସବୁ ଜାତି, ସବୁ ମତ, ସବୁ ସମ୍ପ୍ରଦାୟର ଦୁର୍ବଳ, ଦରିଦ୍ର, ଦୁଃଖୀ ପଦଦଳିତ ଲୋକଙ୍କୁ ବଜ୍ରନିର୍ଘୋଷରେ ଆହ୍ୱାନ କରି ନିଜ ଗୋଡ଼ରେ ଠିଆ ହୋଇ ମୁକ୍ତିଲାଭର ଚେଷ୍ଟା କରିବାକୁ କହିଛନ୍ତି । ଯଦି ଭାରତ ଏବେ ମଧ୍ୟ ତାଙ୍କ ଉପଦେଶର ମର୍ମ ବୁଝି ନ ଥାଏ ଓ ତାଙ୍କ ପ୍ରଚାରିତ ଆଦର୍ଶକୁ କାର୍ଯ୍ୟରେ ପରିଣତ କରିବା ଲାଗି ଚେଷ୍ଟା ନ କରେ, ତାହାହେଲେ ଭାରତର ଭବିଷ୍ୟତ ଇତିହାସ ଅନ୍ଧକାରମୟ ।

## କଲିକତାକୁ ପ୍ରତ୍ୟାବର୍ତ୍ତନ ଓ ବେଲୁଡ଼ ମଠ ନିର୍ମାଣ

୧୮୯୮ ଖ୍ରୀଷ୍ଟାବ୍ଦ ଜାନୁୟାରୀ ମଧ୍ୟଭାଗରେ ସ୍ୱାମୀଜୀ ତାଙ୍କ ଗୌରବମୟ ଭାରତ ଭ୍ରମଣ ପରିସମାପ୍ତି କରି କଲିକତା ଫେରିଆସିଲେ । ବହୁଦିନରୁ ଭାଗୀରଥି କୂଳରେ ଗୋଟିଏ ସ୍ଥାୟୀ ମଠ ନିର୍ମାଣ କରିବାର ଇଚ୍ଛା ସ୍ୱାମୀଜୀ ପୋଷଣ କରିଥିଲେ । ପାଶ୍ଚାତ୍ୟ ଦେଶରୁ ଭାରତକୁ ଫେରିଆସିବା ମାତ୍ରକେ ଏହି ସଙ୍କଳ୍ପ ବିଷୟ ତାଙ୍କ ଗୁରୁଭ୍ରାତାମାନଙ୍କ ନିକଟରେ ପ୍ରକାଶ କରିଥିଲେ । ସେହି ଅନୁସାରେ ସେମାନେ ଗୋଟିଏ ଉପଯୁକ୍ତ ସ୍ଥାନ ଅନୁସନ୍ଧାନ କରୁଥିଲେ । ଭାଗୀରଥିର ପଶ୍ଚିମ ତୀରରେ ବେଲୁଡ଼ ଗ୍ରାମରେ ଉପଯୁକ୍ତ ସ୍ଥାନର ସନ୍ଧାନ ପାଇବା ମାତ୍ରକେ ସ୍ୱାମୀଜୀଙ୍କ ଭକ୍ତ କୁମାରୀ ହେନରୀଏଟ୍ଟା ମୁଲର ଦେଇଥିବା ପ୍ରଚୁର ଅର୍ଥ ବିନିମୟରେ ଏହି ସ୍ଥାନଟି ଖରିଦ ହେଲା । ଆଗେ ଏହି ସ୍ଥାନରେ ନୌକାଗୁଡ଼ିକ ଏକତ୍ରିତ ହେଉଥିଲା । ଏହାକୁ ସମତଳ କରି ମଠ ନିର୍ମାଣ କରିବାକୁ ପ୍ରାୟ ଏକବର୍ଷ ଲାଗିଗଲା । ମଠର ଜମି ସମତଳ କରିବା ଓ ପ୍ରାଚୀନ ଏକମହଲା କୋଠାର ଜୀର୍ଣ୍ଣ-ସଂସ୍କାର କରି ଦୋମହଲା କୋଠା ତିଆରି କରିବା ଲାଗି ଯେଉଁ ଅର୍ଥ ବ୍ୟୟ ହୋଇଥିଲା, ତାହା ସ୍ୱାମୀଜୀଙ୍କ ଲଣ୍ଡନବାସୀ ଶିଷ୍ୟମାନେ ଦେଇଥିଲେ । ସ୍ୱାମୀଜୀଙ୍କ ଅନ୍ୟତମା ଆମେରିକୀୟା ଶିଷ୍ୟା ଶ୍ରୀମତୀ ଓଲିବୁଲ୍ ଠାକୁର-ଘର ନିର୍ମାଣର ସମସ୍ତ ବ୍ୟୟଭାର ବହନ କଲେ ଏବଂ ମଠର ଖର୍ଚ୍ଚପତ୍ର ଚଳିବା ନିମିତ୍ତ ବେଲୁଡ଼ ମଠର ପରିଚାଳକମାନଙ୍କ ହାତରେ ଲକ୍ଷାଧିକ ମୁଦ୍ରା ପ୍ରଦାନ କଲେ । ଏହିରୂପେ ଭଗବତ୍-କୃପାରୁ ସ୍ୱାମୀଜୀଙ୍କ ଜୀବନର ଗୋଟିଏ ବଡ଼ ସଙ୍କଳ୍ପ ପୂର୍ଣ୍ଣ ହେଲା । ଏଣେ ହିମାଳୟରେ ମଠ ସ୍ଥାପନ ଲାଗି ସେଭିୟର ଦମ୍ପତି ଉପଯୁକ୍ତ ସ୍ଥାନ ଅନୁସନ୍ଧାନ କରୁଥିଲେ । ବେଲୁଡ଼ ମଠ ନିର୍ମାଣ କାର୍ଯ୍ୟ ଆରମ୍ଭ ହେବା ସଙ୍ଗେ ସଙ୍ଗେ ଆଲମବଜାରରୁ ମଠ ନୀଳାମ୍ବର ମୁଖୋପାଧ୍ୟାୟଙ୍କ ଉଦ୍ୟାନଗୃହକୁ ଉଠି ଯାଇଥିଲା । ଏହି ଉଦ୍ୟାନଗୃହଟି ସନ୍ନ୍ୟାସୀମାନଙ୍କ ଲାଗି ଅସ୍ଥାୟୀ ଭାବରେ ଭଡ଼ା ନିଆ ହୋଇଥିଲା । ସ୍ୱାମୀଜୀ, ଶିଷ୍ୟ ଓ ଗୁରୁଭ୍ରାତାମାନଙ୍କ ସହିତ ସେଠାକୁ ଆସି ବାସ କରିବାକୁ ଲାଗିଲେ ।

ଇତିମଧ୍ୟରେ ସ୍ୱାମୀ ସାରଦାନନ୍ଦ ଆମେରିକାରେ ବେଦାନ୍ତ ପ୍ରଚାର କାର୍ଯ୍ୟରେ ଯଥେଷ୍ଟ ସାଫଲ୍ୟ ଲାଭ କରି କାର୍ଯ୍ୟପ୍ରୟୋଜନ ହେତୁ ମଠକୁ ଫେରି ଆସିଲେ । ସ୍ୱାମୀ ଶିବାନନ୍ଦ ମଧ୍ୟ ପ୍ରାୟ ବର୍ଷାଧିକ କାଳ ହେଲା ସିଂହଳରେ ପ୍ରଚାର କାର୍ଯ୍ୟ କରୁଥିଲେ; ସେ ମଧ୍ୟ ମଠକୁ ଫେରି ଆସିଲେ । ସ୍ୱାମୀ ତ୍ରିଗୁଣାତୀତାନନ୍ଦ ଦିନାଜପୁରରେ ଦୁର୍ଭିକ୍ଷ ସମ୍ବାଦ ପାଇ ସେବା ଓ ସାହାଯ୍ୟ ଦାନ କଳ୍ପେ ସେଠାକୁ ଯାଇଥିଲେ । ଉକ୍ତ କାର୍ଯ୍ୟ ସୁଚାରୁରୂପେ ସମ୍ପନ୍ନ କରି ସେ ମଠକୁ ଫେରିଆସିଲେ । ସ୍ୱାମୀଜୀଙ୍କ ଅନୁପସ୍ଥିତି ସମୟରେ ସ୍ୱାମୀ ବ୍ରହ୍ମାନନ୍ଦ 'ରାମକୃଷ୍ଣ ମିଶନ' କାର୍ଯ୍ୟ ଉତ୍ତମ ରୂପେ ନିର୍ବାହ କରୁଥିଲେ ଏବଂ ସ୍ୱାମୀ ତୁରୀୟାନନ୍ଦ ମଠରେ ଅବସ୍ଥାନ

କରି ନବୀନ ସନ୍ନ୍ୟାସୀ ଓ ବ୍ରହ୍ମଚାରୀବୃନ୍ଦଙ୍କୁ ଶିକ୍ଷାଦାନ କାର୍ଯ୍ୟରେ ବ୍ୟାପୃତ ଥିଲେ । ଗୁରୁଭ୍ରାତାମାନଙ୍କ ନିଃସ୍ୱାର୍ଥ ଆତ୍ମତ୍ୟାଗ ଦର୍ଶନ କରି ସ୍ୱାମୀଜୀ ଅତୀବ ଆନନ୍ଦିତ ହେଲେ । ସେମାନଙ୍କୁ ଧନ୍ୟବାଦ ଦେବା ନିମିତ୍ତ ଶିବରାତ୍ରି ଦିନ ଅପରାହ୍ନରେ ଗୋଟିଏ କ୍ଷୁଦ୍ର ସଭା ଆହୂତ ହେଲା । ସ୍ୱାମୀଜୀ ସଭାପତି ହେଲେ । ତାଙ୍କ ଆଦେଶରେ ପ୍ରଥମତଃ ଅନ୍ୟାନ୍ୟ ଗୁରୁଭାଇମାନେ ବକ୍ତୃତା କଲେ । ଏହା ପରେ ସ୍ୱାମୀଜୀ ପ୍ରାୟ ଅଧଘଣ୍ଟାକାଳ ଓଜସ୍ୱିନୀ ଭାଷାରେ ସନ୍ନ୍ୟାସୀ ଓ ବ୍ରହ୍ମଚାରୀମାନଙ୍କୁ 'ଉପସ୍ଥିତ କର୍ତ୍ତବ୍ୟ ଓ ସେମାନଙ୍କ ଆଦର୍ଶ କ'ଣ ହେବା ଉଚିତ୍' ବିଷୟରେ ଗୋଟିଏ ବକ୍ତୃତା ଦେଲେ ।

## ଗୃହୀଭକ୍ତମାନଙ୍କୁ ଉପବୀତ ପ୍ରଦାନ

ଏହାର କେତେଦିନ ପରେ ଶ୍ରୀଶ୍ରୀଠାକୁରଙ୍କ ଜନ୍ମତିଥି ଉପସ୍ଥିତ ହେଲା । ମହୋତ୍ସବ ବନ୍ଦୋବସ୍ତ କରିବା ଭାର ସ୍ୱାମୀଜୀ ସ୍ୱୟଂ ଗ୍ରହଣ କଲେ । ଏହି ଦିନ ସକାଳେ ସ୍ୱାମୀଜୀ ଘୋଷଣା କଲେ ଯେ, ଶ୍ରୀରାମକୃଷ୍ଣଙ୍କର ଓ ନିଜର ବ୍ରାହ୍ମଣେତର ଶିଷ୍ୟମାନଙ୍କୁ ସେ ଉପବୀତ ପ୍ରଦାନ କରିବେ । ଶିଷ୍ୟ ଶ୍ରୀ ଶରତ୍‌ଚନ୍ଦ୍ର ଚକ୍ରବର୍ତ୍ତୀଙ୍କ ଉପରେ ଉପନୟନ ଓ ଗାୟତ୍ରୀମନ୍ତ୍ର ପ୍ରଦାନ କରିବା ଭାର ଅର୍ପିତ ହେଲା । ସ୍ୱାମୀଜୀ କହିଲେ, ''ଶ୍ରୀରାମକୃଷ୍ଣଙ୍କ ଭକ୍ତମାନେ ସମସ୍ତେ ବ୍ରାହ୍ମଣ । ବେଦ କହେ, ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ, ଏହି ତିନିବର୍ଣ୍ଣର ଲୋକଙ୍କର ଉପନୟନ ସଂସ୍କାର ଲାଗି ଅଧିକାର ଅଛି । ସଂସ୍କାର ଅଭାବରୁ ଏମାନେ ବର୍ତ୍ତମାନ ବ୍ରାତ୍ୟତ୍ୱ ପାଇଛନ୍ତି । ଆଜି ଶ୍ରୀରାମକୃଷ୍ଣଙ୍କ ଜନ୍ମତିଥି । ଏହି ପୁଣ୍ୟ ଦିବସରେ ଏମାନେ ନିଜ ନିଜ ଅଧିକାର ଅନୁଯାୟୀ କ୍ଷତ୍ରିୟତ୍ୱ ଓ ବୈଶ୍ୟତ୍ୱ ଗ୍ରହଣ କରନ୍ତୁ । କାଳକ୍ରମେ ଏମାନଙ୍କୁ ବ୍ରାହ୍ମଣ କରିବାକୁ ହେବ ।'' ସ୍ୱାମୀଜୀଙ୍କ ଆଦେଶରେ ପ୍ରାୟ ପଚାଶ ଜଣ ବ୍ୟକ୍ତି ଗଙ୍ଗାସ୍ନାନ କରି ଶ୍ରୀଶ୍ରୀରାମକୃଷ୍ଣଙ୍କ ପ୍ରତିକୃତି ସମ୍ମୁଖରେ ଉପବୀତ ଓ ଗାୟତ୍ରୀ ମନ୍ତ୍ର ଗ୍ରହଣ କଲେ । ଉପବୀତ ଗ୍ରହଣ କରିଥିବା ଭକ୍ତମାନଙ୍କୁ ସମ୍ବୋଧନ କରି ସ୍ୱାମୀଜୀ ପ୍ରୟୋଜନୀୟ ଉପଦେଶାଦି ପ୍ରଦାନ କଲେ ଏବଂ ପ୍ରତ୍ୟହ ଗାୟତ୍ରୀ ମନ୍ତ୍ର ଜପ କରିବା ଲାଗି ଆଦେଶ ଦେଲେ ।

ସାମାଜିକ ଚିରାଚରିତ ପ୍ରଥା ବିରୋଧରେ ସ୍ୱାମୀଜୀଙ୍କର ଏହି ଅସୀମ ସାହସିକ କାର୍ଯ୍ୟ ସେଦିନ ମତାନ୍ଧ ହିନ୍ଦୁସମାଜ ନିକଟରେ କି ଭଳି ତୀବ୍ର ସମାଲୋଚନାର ବିଷୟ ହୋଇଥିଲା, ତାହା ସହଜରେ ଅନୁମେୟ । ଯଦିବା କେତେଗୁଡ଼ିଏ ସାମାଜିକ ପ୍ରଥା ଓ ଆଚାର ବ୍ୟବହାର ହିନ୍ଦୁଶାସ୍ତ୍ର ଓ ଭାରତୀୟ ବିଶିଷ୍ଟ ସଭ୍ୟତାର ବିରୋଧୀ ବୋଲି ଅନୁମିତ ହୋଇଥିଲା, ତଥାପି କୌଣସି ନବୀନ-ସଂସ୍କାରଦ୍ୱାରା ଅକସ୍ମାତ୍ ସମାଜକୁ ଆଘାତ ଦେବା ତାଙ୍କର ଉଦ୍ଦେଶ୍ୟ ନ ଥିଲା; କିନ୍ତୁ ଏହି ଉପନୟନ ସଂସ୍କାର ସେପରି ନୁହେଁ । ଏହାର ଅସଲ ଉଦ୍ଦେଶ୍ୟ ଥିଲା, ବହୁଦିନୁ ପ୍ରସୁପ୍ତ ହିନ୍ଦୁଜାତିକୁ ଏକପ୍ରକାର ଆତ୍ମସଂବିତ୍ ଦେବା । ବହୁଦିନ

ଧରି ନାନା ଶାଖା ଓ ଉପଶାଖାରେ ବିଭକ୍ତ ହିନ୍ଦୁ ବୋଲି ପରିଚୟ ପ୍ରଦାନକାରୀ ଜାତିଗୁଡ଼ିକୁ ଏକୀଭୂତ କରି ଶାସ୍ତ୍ରାନୁଶାସନ ଅନୁଯାୟୀ ଚାରିଗୋଟି ମୂଳବର୍ଣ୍ଣକୁ ଫେରାଇ ଆଣିବାର ପ୍ରୟୋଜନ ସେ ଅନୁଭବ କରିଥିଲେ ଏବଂ ତାହାହେଲେ ପୁନରାୟ ବର୍ଣ୍ଣାଶ୍ରମ-ଧର୍ମ ପ୍ରତିଷ୍ଠା କରିବା ସମ୍ଭବପର ହେବ ବୋଲି ସେ ବିଶ୍ୱାସ କରୁଥିଲେ । ସମାଜରେ ଶୂଦ୍ର ବୋଲି କଥିତ ଯେଉଁସବୁ ବ୍ୟକ୍ତି ଏହି ସମୟରେ ଉପବୀତ ଗ୍ରହଣ କଲେ, ସେମାନଙ୍କୁ ସମାଜରେ ଅନେକ ଯାତନା ସହ୍ୟ କରିବାକୁ ହୋଇଥିଲା, ସନ୍ଦେହ ନାହିଁ; କିନ୍ତୁ ବେଲୁଡ଼ ମଠର ଏହି କ୍ଷୁଦ୍ର ଅଥଚ ନିର୍ଭୀକ ଅନୁଷ୍ଠାନଟି ପରବର୍ତ୍ତୀ କାଳରେ ବଙ୍ଗ ସମାଜରେ ଯଥେଷ୍ଟ ପ୍ରଭାବ ବିସ୍ତାର କରିଛି; କାରଣ ସ୍ୱାମୀଜୀ ଜୀବିତ ଥିବା ବେଳେ ବଙ୍ଗଳାର କେତେଗୋଟି ପ୍ରବଳ ଜାତି କ୍ଷତ୍ରିୟତ୍ୱ ଓ ବୈଶ୍ୟତ୍ୱର ଦାବି ବିଷୟରେ ଆନ୍ଦୋଳନ ଆରମ୍ଭ କଲେ । ପ୍ରାଚୀନ ଦଳର ତୀବ୍ର ଆପତ୍ତି ସତ୍ତ୍ୱେ ସେମାନେ ଅନେକାଂଶରେ ସଫଳକାମ ହେଲେ । ଅବଶ୍ୟ ସତ୍ୟର ଖାତିରିରେ ଏ'କଥା ସ୍ୱୀକାର କରିବାକୁ ହେବ ଯେ, କୌଣସି କୌଣସି ଜାତିର କ୍ଷତ୍ରିୟ ବା ବୈଶ୍ୟୋଚିତ ସଂସ୍କାର ଲାଭ ମଧ୍ୟରେ ଅତୀତର ଆବର୍ଜନା ପରିହାରର ଚେଷ୍ଟା ଅପେକ୍ଷା କୃତ୍ରିମ ଆଭିଜାତ୍ୟ ଲାଭ କରିବାର ଚେଷ୍ଟା ହିଁ ଅଧିକ ପ୍ରକଟିତ ହୋଇଛି । ତଥାପି ଏହି ସବୁ ଚେଷ୍ଟାର ଦୋଷ-ତ୍ରୁଟିଗୁଡ଼ିକୁ ଉପେକ୍ଷା କରି ଏହାର ମୂଳ ତତ୍ତ୍ୱ ସହିତ ଚିନ୍ତାଶୀଳ ସ୍ୱଜାତିହିତୈଷୀ ବ୍ୟକ୍ତି ମାତ୍ରକେ ସହାନୁଭୂତି ରଖିବା ଏକାନ୍ତ ବାଞ୍ଛନୀୟ । ନିଜକୁ ଜାଣିବା, ବୁଝିବା ଏବଂ ସାମାଜିକ ଜୀବନରେ ଯଥାଯୋଗ୍ୟ ସ୍ଥାନ ଓ ଦାୟିତ୍ୱ ଗ୍ରହଣ କରିବା ଲାଗି ଏହି ଚେଷ୍ଟା ଆତ୍ମ-ଚେତନା ଜାଗ୍ରତ କରିବ ଓ ପରିଣାମରେ ସୁଫଳ ପ୍ରସବ କରିବ । କାଳପୁରୁଷର ଇଙ୍ଗିତ, ବଙ୍ଗଳାର ଶ୍ରେଷ୍ଠ ଜାତିମାନେ ପତିତ ପର୍ଯ୍ୟାୟଭୁକ୍ତ ରହିବେ ନାହିଁ । ସ୍ୱବର୍ଣ୍ଣୋଚିତ ଶିକ୍ଷା-ଦୀକ୍ଷା ଆୟତ୍ତ କରିବା ଲାଗି ଉତ୍ସାହୋଚ୍ଛଳ ଉଦ୍ୟମ ସେମାନଙ୍କ ମଧ୍ୟରେ ଜାଗିଉଠିଛି—ଏହା ଯୁଗଧର୍ମର ପ୍ରେରଣା; ବାଧା ପ୍ରଦାନ କରିବାକୁ ଯିବା ମୂଢ଼ତା ମାତ୍ର । ଅର୍ଥହୀନ ପ୍ରଥାର ଜୀର୍ଣ୍ଣ କନ୍ଥାରେ ନବଜାଗରଣକୁ ଆବୃତ କରି ରଖିବା ଅସମ୍ଭବ—ଅସାଧ୍ୟ । ଏହି ପ୍ରସଙ୍ଗରେ ଆଉ ଗୋଟିଏ କଥାର ଉଲ୍ଲେଖ କରାଯାଇପାରେ । ଜାତିର ଶକ୍ତିବୃଦ୍ଧି ନିମିତ୍ତ ସ୍ୱାମୀଜୀ ପ୍ରଥମତଃ ଗୋଟିଏ ଜାତିର ବିଭିନ୍ନ ଶାଖା ମଧ୍ୟରେ ବୈବାହିକ ଆଦାନ-ପ୍ରଦାନ ପ୍ରତି ଦୃଷ୍ଟି ଆକର୍ଷଣ କରିଥିଲେ । ଗୋଟିଏ ଦିଗରେ କନ୍ୟାଦାୟ, ଅନ୍ୟ ଦିଗରେ ବିବାହଯୋଗ୍ୟ କନ୍ୟାର ଅଭାବ, ଏହି ଦୁଇ ବିପରୀତ ଅବସ୍ଥାର ପ୍ରବଳ ପେଷଣରେ ପିଷ୍ଟ ହୋଇ ଆଜି ପର୍ଯ୍ୟନ୍ତ କେହି ଏ ବିଷୟରେ ସେପରି ଆନ୍ଦୋଳନ କରି ନ ଥିଲେ । ତଥାପି ଆଶା ଅଛି—ଉଦୀୟମାନ, ଉନ୍ନତିକାମୀ ନବ୍ୟ ଯୁବକଗଣ ଏ ବିଷୟରେ ଆଉ ଅଧିକ ଦିନ ଉଦାସୀନ ରହିବେ ନାହିଁ ।

## କୁମାରୀ ମାର୍ଗାରେଟ ନୋବ୍‌ଲ — ଭଗିନୀ ନିବେଦିତା

ଜାନୁୟାରୀ ମାସ ଶେଷଭାଗରେ କୁମାରୀ ମୁଲରଙ୍କ ସହିତ କୁମାରୀ ମାର୍ଗାରେଟ୍ ନୋବ୍‌ଲ ପାଶ୍ଚାତ୍ୟ ସମାଜର ସକଳ ବନ୍ଧନ ଛିନ୍ନ କରି ସ୍ୱାମୀଜୀଙ୍କ ଆହ୍ୱାନରେ ଭାରତକୁ ଆସିଲେ । କୁମାରୀ ମୁଲରଙ୍କ ସାହାଯ୍ୟରେ ଗୋଟିଏ ଆଦର୍ଶ ବାଳିକା ବିଦ୍ୟାଳୟ ସ୍ଥାପନ କରି ଭାରତୀୟ ରମଣୀମାନଙ୍କୁ ଶିକ୍ଷା ଦେବା କାର୍ଯ୍ୟରେ ଆତ୍ମୋତ୍ସର୍ଗ କରିବା ନିମିତ୍ତ ସେ ପ୍ରସ୍ତୁତ ହେଲେ । ଫେବୃୟାରୀ ମାସରେ ଶ୍ରୀମତୀ ଓଲିବୁଲ୍ ଓ କୁମାରୀ ମ୍ୟାକ୍‌ଲାଉଡ୍ ଆମେରିକାରୁ ଶ୍ରୀଗୁରୁଙ୍କ ଜନ୍ମସ୍ଥାନ ପରିଦର୍ଶନ କରିବା ଏବଂ ଭାରତୀୟ ଶିକ୍ଷା-ଦୀକ୍ଷା, ଆଚାର-ବ୍ୟବହାର ସହିତ ସମ୍ୟକ୍‌ରୂପେ ପରିଚିତ ହେବା ନିମିତ୍ତ ଭାରତକୁ ଆସିଥିଲେ । ଏମାନେ ସମସ୍ତେ ମିଶି ବେଲୁଡ଼ ମଠର ପୁରାତନ କୋଠାରେ ବାସ କଲେ । ସ୍ୱାମୀଜୀ ଅବସର ଅନୁସାରେ ନୀଳାମ୍ବର ବାବୁଙ୍କ ଉଦ୍ୟାନରୁ ଏମାନଙ୍କ କୁଟୀରକୁ ଆସି ଭାରତୀୟ ରୀତି, ନୀତି, ଇତିହାସ, ଦର୍ଶନ, ପୁରାଣ ଇତ୍ୟାଦି ବିବିଧ ବିଷୟରେ ଆଲୋଚନା କରୁଥିଲେ ।

କିଛିଦିନ ପରେ, ସ୍ୱାମୀଜୀ କୁମାରୀ ମାର୍ଗାରେଟ୍ ନୋବ୍‌ଲଙ୍କୁ ବ୍ରହ୍ମଚାରିଣୀ କରି ଦୀକ୍ଷା ଦେଲେ । ସେହି ଦିନଠାରୁ ସେ ସମଗ୍ର ଭାରତରେ 'ଭଗିନୀ ନିବେଦିତା' ନାମରେ ଭୂଷିତା ହେଲେ । ଏହାଙ୍କ ଶିକ୍ଷାଭାର ସ୍ୱାମୀଜୀ ତାଙ୍କ ଅନ୍ୟତମ ସୁଯୋଗ୍ୟ ଶିଷ୍ୟ ସ୍ୱାମୀ ସ୍ୱରୂପାନନ୍ଦଙ୍କ ହସ୍ତରେ ଅର୍ପଣ କଲେ ।

## କଲିକତାରେ ପ୍ଲେଗ୍ ଓ ସ୍ୱାମୀଜୀଙ୍କ ସେବା କାର୍ଯ୍ୟ

ସାଧାରଣରେ ବକ୍ତୃତା ଦେବା କାର୍ଯ୍ୟ ପରିତ୍ୟାଗ କରି ସ୍ୱାମୀଜୀ କ୍ରମାଗତ ଦୁଇମାସ କାଳ ସନ୍ନ୍ୟାସୀ, ବ୍ରହ୍ମଚାରୀ ଓ ଇଉରୋପୀୟ ଶିଷ୍ୟମାନଙ୍କୁ ଶିକ୍ଷାଦାନ କରିବାରେ ରହିଲେ । ସ୍ୱୟଂ ବେଦାନ୍ତ, ଗୀତା ଇତ୍ୟାଦି ଅଧ୍ୟାପନା କରିବାରେ ଲାଗିଲେ; କିନ୍ତୁ ପ୍ରବଳ ଶାରୀରିକ ଅସୁସ୍ଥତା ଯୋଗୁଁ ସତ୍ୱର ବାୟୁ ପରିବର୍ତ୍ତନ ତାଙ୍କ ପକ୍ଷରେ ଏକାନ୍ତ ଆବଶ୍ୟକ ହୋଇ ପଡ଼ିଲା । ଅବଶେଷରେ ସେ ବାଧ୍ୟ ହୋଇ ମାର୍ଚ୍ଚ ମାସ ମଧ୍ୟ ଭାଗରେ ଦାର୍ଜିଲିଂ ଗଲେ । ଦାର୍ଜିଲିଂ ଆସି ତାଙ୍କ ସ୍ୱାସ୍ଥ୍ୟ ଧୀରେ ଧୀରେ ଉନ୍ନତିଲାଭ କଲା ସତ୍ୟ; କିନ୍ତୁ ସହସା କଲିକତାରେ ପ୍ଲେଗ୍ ରୋଗ ଭୀଷଣ ଆକାର ଧାରଣ କଲା । ଶତ ଶତ ବ୍ୟକ୍ତି ପ୍ରତ୍ୟହ ମୃତ୍ୟୁର କବଳରେ ପଡୁଛନ୍ତି ବୋଲି ଶୁଣି ମହାପ୍ରାଣ ବିବେକାନନ୍ଦ କ'ଣ ବିଶ୍ରାମ ଭୋଗ କରିପାରନ୍ତି ! ମଇ ତିନି ତାରିଖ ଦିନ କଲିକତାକୁ ପ୍ରତ୍ୟାବର୍ତ୍ତନ କରି ଭଗିନୀ ନିବେଦିତା, ମଠର ସନ୍ନ୍ୟାସୀ ଓ ବ୍ରହ୍ମଚାରୀମାନଙ୍କୁ ସଙ୍ଗରେ ନେଇ ରୋଗୀ ସେବା କାର୍ଯ୍ୟ ଆରମ୍ଭ କରିଦେଲେ । ଏହି କାର୍ଯ୍ୟ ପାଇଁ ପ୍ରୟୋଜନୀୟ ଅର୍ଥ କୁଆଡୁ ଆସିବ ବୋଲି ଚିନ୍ତା କରି ଜଣେ ଗୁରୁଭ୍ରାତା, ପଚାରିଲେ, "ସ୍ୱାମୀଜୀ ! ଟଙ୍କା କୁଆଡୁ ଆସିବ ?" ସ୍ୱାମୀଜୀ ତତ୍‌କ୍ଷଣାତ୍ ଉତ୍ତର ଦେଲେ, "କାହିଁକି ? ଯଦି ପ୍ରୟୋଜନ ହୁଏ, ତାହା

ହେଲେ ମଠ ପାଇଁ ନୂଆ ହୋଇ କିଣା ହୋଇଥିବା ଜମି ବିକ୍ରି ହେବ । ହଜାର ହଜାର ଲୋକ ଆମ ଆଖି ଆଗରେ ଯନ୍ତ୍ରଣା ଭୋଗ କରିବେ, ଆଉ ଆମେ ମଠରେ ବସିରହିବା ? ଆମେ ସନ୍ନ୍ୟାସୀ, ନ ହେଲା ଏବେ ଆମେ ଆଗପରି ଗଛତଳେ ବାସ କରିବା, ଭିକ୍ଷା କରି ପେଟ ପୋଷିବା !''

ସୁଖର ବିଷୟ, ମଠବାଡ଼ି ବିକ୍ରୟ କରିବାକୁ ପଡ଼ିଲା ନାହିଁ । ଚାରିଆଡୁ ପ୍ରଚୁର ଅର୍ଥ ସାହାଯ୍ୟ ମିଳିଲା । କଲିକତାରେ ଖଣ୍ଡିଏ ପ୍ରଶସ୍ତ ଭୂମି ଭଡ଼ାରେ ନେଇ ତାହା ଉପରେ ଗୁଡ଼ିଏ କୁଡ଼ିଆ ତିଆରି ହେଲା । ଜାତି-ବର୍ଣ୍ଣ-ନିର୍ବିଶେଷରେ ଅସହାୟ ପ୍ଲେଗ୍-ରୋଗାକ୍ରାନ୍ତ ନରନାରୀଙ୍କୁ ସେଠାକୁ ଅଣାଯାଇ ଉତ୍ସାହୀ କର୍ମୀମାନେ ସେମାନଙ୍କର ସେବା କଲେ । ସ୍ୱାମୀଜୀ ନିଜେ ଉପସ୍ଥିତ ରହି ତତ୍ତ୍ୱାବଧାନ କଲେ । ଯେଉଁ ପଲ୍ଲୀରେ ଏମାନଙ୍କର କାର୍ଯ୍ୟ ଆରମ୍ଭ ହେଲା, ଉକ୍ତ ପଲ୍ଲୀର ଆବର୍ଜନା ଦୂର କରିବା ଏବଂ ପ୍ରତିଷେଧକ ଔଷଧାଦିଦ୍ୱାରା ସ୍ଥାନ ଶୁଦ୍ଧ କରିବା ନିମିତ୍ତ ପ୍ରତ୍ୟହ କର୍ମୀବୃନ୍ଦ ସେଠାକୁ ଯାଉଥିଲେ । ଦରିଦ୍ର-ନାରାୟଣଙ୍କ ସେବାରେ ତାଙ୍କର ଅସୀମ ଉତ୍ସାହ ଓ ଆତ୍ମତ୍ୟାଗ ଦେଖି ଅନେକ ବିରୁଦ୍ଧବାଦୀ; ନିନ୍ଦୁକ ଏବଂ ଯେଉଁମାନେ କୁତ୍ସା ଶୁଣି ତାଙ୍କ ସମ୍ବନ୍ଧରେ ଖରାପ ଧାରଣା କରିଥିଲେ, ସେମାନେ ବୁଝିପାରିଲେ ଯେ, ବିବେକାନନ୍ଦ କେବଳ ମୁହଁରେ ବେଦାନ୍ତ ପ୍ରଚାର କରନ୍ତି ନାହିଁ, କାର୍ଯ୍ୟରେ ମଧ୍ୟ ସେ ବୈଦାନ୍ତିକ । 'ଯତ୍ର ଜୀବ, ତତ୍ର ଶିବ' ମନ୍ତ୍ରର ଋଷି ବିବେକାନନ୍ଦ ମୃତ୍ୟୁଙ୍କୁ ଆଗ୍ରାହ୍ୟ କରି ସ୍ୱଦେଶବାସୀଙ୍କୁ ଶିକ୍ଷା ଦେବାରେ ଲଗିଲେ, କି ଭଳି ଭାବରେ 'ନାରାୟଣ' ଜ୍ଞାନରେ ସେବା କରିବାକୁ ହୁଏ !

ବେଦାନ୍ତର ମହାନ୍ ଆଦର୍ଶ ନିଜ କର୍ମଜୀବନରେ ପରିଣତ କରି ସେହି ଆଦର୍ଶ ଜୀବନ ଗଠନ କରିବା ନିମିତ୍ତ ଆଚାର୍ଯ୍ୟଦେବ ସ୍ୱୀୟ ଦେଶବାସୀଙ୍କୁ ଉଚ୍ଚ ସ୍ୱରରେ ଆହ୍ୱାନ କରିଯାଇଛନ୍ତି । ଯେଉଁ ହାଡ଼ି, ଡମ, ଚଣ୍ଡାଳ, ମୋଚି, ମେହେନ୍ତର ଆଦିଙ୍କୁ ବହୁ ଶତାବ୍ଦୀ ଧରି ତଥାକଥିତ ଜାତ୍ୟାଭିମାନିଗଣ 'ଚଳମାନ ଶ୍ମଶାନ ବୋଲି' ଘୃଣାରେ ଆଡ଼େଇ ଆସୁଥିଲେ, ସେ ସେମାନଙ୍କୁ 'ମୋ ଭାଇ, ମୋ ରକ୍ତ' କହି ଆଲିଙ୍ଗନ କରିଥିଲେ । ଭାରତର କଲ୍ୟାଣକାମୀ କର୍ମୀବୃନ୍ଦଙ୍କୁ, ତମୋହ୍ରଦରେ ନିମଜ୍ଜମାନ ପ୍ରାୟ କୋଟି କୋଟି ଅଜ୍ଞାନ ନର-ନାରୀଙ୍କୁ ଜ୍ଞାନାଲୋକଦ୍ୱାରା ଉଦ୍ଧାର କରିବା ବ୍ରତ ଗ୍ରହଣ କରିବା ନିମିତ୍ତ ପୁନଃ ପୁନଃ ଆକୁଳ ଭାବରେ ଅନୁରୋଧ କରିଛନ୍ତି । ସେମାନଙ୍କ ଦୁଃଖ, ଦୈନ୍ୟ, ଅଜ୍ଞତା ଘୁଚାଇବା ନିମିତ୍ତ ପ୍ରାଣପାତ ଚେଷ୍ଟା ରୁଗ୍ଣ, ଆତୁର, ଆର୍ତ୍ତ-ଅନାଥଙ୍କୁ ଔଷଧ, ପଥ୍ୟ ଓ ଆହାର ଦାନ, ଏହା ହିଁ ଅଶେଷ କଲ୍ୟାଣକର — ବର୍ତ୍ତମାନ ଯୁଗୋପଯୋଗୀ ମୁକ୍ତିର ପ୍ରଶସ୍ତ ରାଜପଥ — ସେବା-ଧର୍ମ । ବହୁତ୍ୱ ମଧ୍ୟରେ ଏକତ୍ୱ ହିଁ ହିନ୍ଦୁ ଜୀବନର ଚରମ ଲକ୍ଷ୍ୟ ବୋଲି ବୁଝି ଆଚାର୍ଯ୍ୟଦେବ ଅଦ୍ୱୈତବାଦର ସୁଦୃଢ଼ ଭିତ୍ତି ଉପରେ ସେବାଧର୍ମର ମଙ୍ଗଳମୟ ପ୍ରାସାଦ ଗଢ଼ିଥିଲେ — ଯାହାର ଅଭ୍ରଂଲିହ ଶତ ଶତ ଶିଖରମାଳାରେ ତ୍ୟାଗର ଗୌରବ-ପତାକା ସ୍ୱମହିମାରେ ଉଡ୍ଡୀନ ରହି ବିଶ୍ୱର ବିସ୍ମିତ ଦୃଷ୍ଟି ଆକର୍ଷଣ

କରିଛି । ଅକ୍ଳାନ୍ତ ଜନହିତୈଷା ମାଧ୍ୟମରେ ସ୍ୱଧର୍ମପରାୟଣ ଜାତିର ତ୍ୟାଗ ଓ ତିତିକ୍ଷାର ମହିମାମୟ ଦୃଶ୍ୟ ବର୍ତ୍ତମାନ ଯୁଗରେ ଉଜ୍ଜ୍ୱଳରୂପେ ଫୁଟି ଉଠିଛି । ସେବା-ଧର୍ମକୁ ଉପଲକ୍ଷ୍ୟ କରି ଜ୍ଞାନ, କର୍ମ ଓ ଭକ୍ତିରୂପକ ତ୍ରିଧାରା ବହୁଦିନ ପରେ ବିବେକାନନ୍ଦଙ୍କ ହୃଦୟ-ପ୍ରୟାଗରେ ଆନନ୍ଦ ସମ୍ମିଳନ — ନବଯୁଗର ସେହି ପବିତ୍ର ତ୍ରିବେଣୀ ତୀର୍ଥର ପବିତ୍ର ପ୍ରେମସଲିଳରେ ସାମ୍ପ୍ରଦାୟିକ ବିଦ୍ୱେଷବୁଦ୍ଧିହୀନ ଅଥଚ ଭିନ୍ନ ଭିନ୍ନ ଭାବ ସହାୟ ସାଧକଗଣ ଆନନ୍ଦରେ ଅବଗାହନରତ ।

## କାଶ୍ମୀର ଭ୍ରମଣ ଲାଗି ଯାତ୍ରା — ନୈନୀତାଲରେ

ସ୍ୱାମୀଜୀ ତାଙ୍କ ପାଶ୍ଚାତ୍ୟ ଶିଷ୍ୟମାନଙ୍କ ଗହଣରେ ହିମାଳୟ ପରିଭ୍ରମଣରେ ବାହାରିବେ ବୋଲି ଆଗରୁ କୁହାଯାଇଛି । ପ୍ଲେଗ୍‌ର ପ୍ରକୋପ କମିଯିବାରୁ ସ୍ୱାମୀଜୀ ଶ୍ରୀଯୁକ୍ତ ସେଭିୟରଙ୍କ ଆହ୍ୱାନ ଅନୁଯାୟୀ ଆଲମୋଡ଼ା ଅଭିମୁଖେ ଯାତ୍ରା କଲେ । ସାଙ୍ଗରେ ସ୍ୱାମୀ ତୁରୀୟାନନ୍ଦ, ନିରଞ୍ଜନାନନ୍ଦ, ସ୍ୱାମୀ ସଦାନନ୍ଦ, ସ୍ୱରୂପାନନ୍ଦ ଇତ୍ୟାଦି ଓ ତାଙ୍କର ଚାରିଜଣ ପାଶ୍ଚାତ୍ୟ ଶିଷ୍ୟା ଯାଇଥିଲେ । ନୈନୀତାଲରେ ପହଞ୍ଚି ସ୍ୱାମୀଜୀ ସଦଳବଳେ କେତେଦିନ ବିଶ୍ରାମ କଲେ । ଖେତଡ଼ିର ମହାରାଜା ପୂର୍ବରୁ ଗୁରୁଦେବଙ୍କ ଦର୍ଶନ କାମନାରେ ସେଠାରେ ଅବସ୍ଥାନ କରୁଥିଲେ । ସ୍ୱାମୀଜୀଙ୍କ ଶ୍ରୀଚରଣ ଦର୍ଶନ କରି ଓ ତାଙ୍କ ପାଶ୍ଚାତ୍ୟ ଶିଷ୍ୟଗଣଙ୍କ ସହିତ ପରିଚିତ ହୋଇ ମହାରାଜା ଆନନ୍ଦିତ ହେଲେ । ଏହି ସମୟର ଭ୍ରମଣ-କାହାଣୀ ଓ ସ୍ୱାମୀଜୀଙ୍କ ଅମୂଲ୍ୟ କଥୋପକଥନ ଭଗିନୀ ନିବେଦିତା ତାଙ୍କ 'ସ୍ୱାମୀଜୀଙ୍କ ସହିତ ହିମାଳୟରେ' ନାମକ ପୁସ୍ତକରେ ସୁନ୍ଦର ରୂପେ ବର୍ଣ୍ଣନା କରିଅଛନ୍ତି । ଏହି ସମୟରେ ସ୍ୱାମୀଜୀ ତାଙ୍କ ଶିଷ୍ୟମାନଙ୍କ ଆଗରେ ଭାରତର ପୌରାଣିକ ଓ ଐତିହାସିକ ଯୁଗର ଜୀବନ୍ତ ବିଗ୍ରହସ୍ୱରୂପ ପ୍ରତିଭାତ ହେଉଥିଲେ । ଭାରତର ଅତୀତ ଇତିହାସର ପୁଣ୍ୟ କାହାଣୀ ବର୍ଣ୍ଣନା କରୁ କରୁ ସମୟ ସମୟରେ ସେ ଭାବାବେଗ ହେତୁ ବର୍ତ୍ତମାନକୁ ଭୁଲି ଯାଉଥିଲେ ।

ସ୍ୱାମୀଜୀଙ୍କ ବାଲ୍ୟବନ୍ଧୁ ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ଦତ୍ତ ଦିନେ ତାଙ୍କ ସହିତ ଦେଖା କରିବାକୁ ଆସିଲେ । କଥାପ୍ରସଙ୍ଗରେ ଯୋଗେଶ ବାବୁ ସ୍ୱାମୀଜୀଙ୍କୁ କହିଲେ, ସେ ଯଦି ଭାରତୀୟ ଶିକ୍ଷିତ ଯୁବକମାନଙ୍କୁ ଭାରତୀୟ ସିଭିଲ୍ ସର୍ଭିସ୍ ପଢ଼ିବା ପାଇଁ ଇଂଲଣ୍ଡକୁ ପଠାଇବା ନିମିତ୍ତ ଚାନ୍ଦା ସଂଗ୍ରହ କରି ସେମାନଙ୍କୁ ସାହାଯ୍ୟ କରିପାରନ୍ତି, ତାହା ହେଲେ ଏହି ଯୁବକମାନେ କୃତକାର୍ଯ୍ୟ ହୋଇ ମାତୃଭୂମିର କଲ୍ୟାଣକଳ୍ପେ ଅନେକ କାର୍ଯ୍ୟ କରିବାକୁ ସମର୍ଥ ହେବେ । ସ୍ୱାମୀଜୀ ଗମ୍ଭୀର ଭାବରେ ଉତ୍ତର ଦେଲେ, ''ତୁମେ ଗୋଟିଏ ବିରାଟ ଭୁଲ୍ କରୁଛ । ଏହି ଯୁବକମାନେ ସ୍ୱଦେଶକୁ ଫେରିଆସି ଇଉରୋପୀୟ ସମାଜରେ ମିଶିବା ଲାଗି ଚେଷ୍ଟା କରିବେ, ଏହା ତୁମେ ନିଶ୍ଚିତ ରୂପେ ଜାଣ । ସେମାନେ ପଦେ ପଦେ ସାହେବମାନଙ୍କ ଖିଆପିଆ, ଅଚାର-ବ୍ୟବହାର ନକଲ କରିବେ, ସ୍ୱଦେଶ ବା ଜାତୀୟ ଆଦର୍ଶ କଥା ଭୁଲରେ

ମଧ୍ୟ ଚିନ୍ତା କରିବେ ନାହିଁ ।'' କହୁ କହୁ ସ୍ୱାମୀଜୀ ଭାରତବର୍ଷର ନିଶ୍ଚେଷ୍ଟ ଜଡ଼ତ୍ୱ, ସାଂସାରିକ ଜୀବନର ଦୁଃଖ-କଷ୍ଟର ପ୍ରତିକାର ଚେଷ୍ଟା ଲାଗି ଏକାନ୍ତ ଉଦାସୀନତା, ଉଦ୍ୟମ-ବିହୀନତା ଇତ୍ୟାଦି ଜ୍ୱଳନ୍ତ ଭାଷାରେ ବର୍ଣ୍ଣନା କରିଗଲେ । ଦେଶର ଦୁର୍ଦ୍ଦଶା କଥା କହୁ କହୁ ତାଙ୍କର ବିଶାଳ ଲୋଚନଦ୍ୱୟ ଅଶ୍ରୁପୂର୍ଣ୍ଣ ହୋଇଗଲା । ସେଦିନ ଯୋଗେଶ ବାବୁଙ୍କ ବନ୍ଧୁ ରାମପୁର ଷ୍ଟେଟ୍ କଲେଜର ଅଧ୍ୟକ୍ଷ ବାବୁ ବ୍ରହ୍ମାନନ୍ଦ ସିଂହ ସେଠାରେ ଉପସ୍ଥିତ ଥିଲେ । ସେ ଏହି ଅପୂର୍ବ ଦୃଶ୍ୟ ଦେଖି ଶ୍ରଦ୍ଧାମୁଗ୍ଧ ହୃଦୟରେ ଲେଖିଥିଲେ, ''ସେ ଦୃଶ୍ୟ ମୁଁ ଜୀବନରେ ଭୁଲିବି ନାହିଁ । ସ୍ୱାମୀଜୀ ସଂସାରତ୍ୟାଗୀ ସନ୍ନ୍ୟାସୀ, ତଥାପି ଭାରତବର୍ଷ ତାଙ୍କ ହୃଦୟ ଆବୋରି ରହିଛି । ତାଙ୍କ ସମସ୍ତ ସ୍ନେହ ଭାରତ ପ୍ରତି ଥିଲା; ଭାରତକୁ ସେ ପ୍ରାଣ ଦେଇ ଅନୁଭବ କରୁଥିଲେ । ଭାରତ ପାଇଁ ଅଶ୍ରୁ ବିସର୍ଜନ କରୁଥିଲେ ଏବଂ ଭାରତର ସେବାରେ ସେ ତନୁତ୍ୟାଗ କରିଥିଲେ । ତାଙ୍କ ହୃଦ୍‌ଯନ୍ତ୍ରରେ ଭାରତବର୍ଷ କମ୍ପିତ ହେଉଥିଲା । ତାଙ୍କ ଶିରାପ୍ରଶିରାରେ ଭାରତବର୍ଷ ସ୍ପନ୍ଦିତ ହେଉଥିଲା । ଗୋଟିଏ କଥାରେ ଭାରତବର୍ଷ ତାଙ୍କ ଜୀବନ ସହିତ ମିଶି ଏକ ହୋଇଯାଇଥିଲା ।''

## ଆଲମୋଡ଼ାରେ — ନିବେଦିତାଙ୍କ ଆତ୍ମନିବେଦନ

ଆଲୋମୋଡ଼ା ଆସି ସ୍ୱାମୀଜୀ, ତାଙ୍କ ଗୁରୁଭ୍ରତା ଓ ସନ୍ନ୍ୟାସୀ ଶିଷ୍ୟମାନଙ୍କ ସହିତ ସେଭିୟର ସାହେବଙ୍କ ବଙ୍ଗଳାରେ ରହୁଥିଲେ । ତାଙ୍କ ପାଶ୍ଚାତ୍ୟ ଶିଷ୍ୟଗଣ ନିକଟବର୍ତ୍ତୀ ଆଉ ଗୋଟିଏ ଘରେ ଅବସ୍ଥାନ କରୁଥିଲେ । ସ୍ୱାମୀଜୀ ତାଙ୍କ ଗୁରୁଭ୍ରାତାଗଣଙ୍କ ସହିତ ପ୍ରାତଃଭ୍ରମଣ ପରେ ସେମାନଙ୍କ ଆବାସରେ ଉପସ୍ଥିତ ହୋଇ କଥୋପକଥନରେ ପ୍ରବୃତ୍ତ ହେଉଥିଲେ । ଶିଷ୍ୟ ଓ ଶିଷ୍ୟାଗଣ ଭକ୍ତି-ବିନମ୍ର ଚିତ୍ତରେ ତନ୍ମୟ ହୋଇ ସ୍ୱାମୀଜୀଙ୍କ ଶ୍ରୀମୁଖନିଃସୃତ ଭାରତୀୟ ଆଦର୍ଶସମୂହର ଅଫୁରନ୍ତ ବ୍ୟାଖ୍ୟା ଶ୍ରବଣ କରୁଥିଲେ । ଯେଉଁ ସମାଲୋଚକ ଭାରତକୁ ଜୀର୍ଣ୍ଣ, ସ୍ଥବିର ଓ କ୍ରମାଗତ ଅଧଃପତନ ପଥରେ ଗତି କରୁଛି ବୋଲି ଧାରଣା କରୁଛନ୍ତି, ସେମାନଙ୍କର ବିଦ୍ୱେଷ ଓ ଅବଜ୍ଞାପ୍ରଣୋଦିତ ସମାଲୋଚନାଗୁଡ଼ିକ ବିରୋଧରେ ତୀବ୍ର ପ୍ରତିବାଦ କରି ସେ ତାହାଙ୍କ ଶିଷ୍ୟ ଓ ଭକ୍ତମାନଙ୍କୁ ବୁଝାଇ ଦେଉଥିଲେ ଯେ, ଭାରତ ଏକପ୍ରକାର ଗୌରବମୟ ବିକାଶ ନିମିତ୍ତ ପ୍ରସ୍ତୁତ ହୋଇ ସ୍ୱନିର୍ଦ୍ଦିଷ୍ଟ ପଥରେ ଅଗ୍ରସର ହେଉଛି । ତେଣୁ ଏହି ନବଯୁଗର ପ୍ରାରମ୍ଭରେ ସ୍ୱଦେଶ-ସେବାରେ ଅଗ୍ରସର ହେବାକୁ ହେଲେ କେତେ ବିଶ୍ୱାସ, ଗଭୀର ସ୍ନେହ ଓ ସଦା ଜାଗ୍ରତ ସହାନୁଭୂତି ନେଇ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହେବାକୁ ପଡ଼ିବ — ତାହା ଶିଷ୍ୟମାନଙ୍କୁ ବୁଝାଉ ବୁଝାଉ ସେ ଦିନେ ଯେପରି କି ଏକପ୍ରକାର ଅଜ୍ଞାତସାରରେ କହି ପକାଇଲେ, ''ମୁଁ ନିଜକୁ ବହୁ ଶତାବ୍ଦୀ ପରେ ଆବିର୍ଭୂତ-ପୁରୁଷ ପରି ଅନୁଭବ କରୁଛି । ମୁଁ ଦେଖୁଛି ଯେ, ଭାରତ ଯୁବାବସ୍ଥା ।''

ସ୍ୱାମୀଜୀ ଶିକ୍ଷାଦାନ ଓ ଆଲୋଚନା ପ୍ରସଙ୍ଗରେ ଯେଉଁ ସମସ୍ତ ଅଭିମତ ବ୍ୟକ୍ତ କରୁଥିଲେ, ତାହାର ଅଧିକାଂଶ ଭଗିନୀ ନିବେଦିତା ସଯତ୍ନରେ ସଂଗ୍ରହ କରି ରଖିଯାଇଛନ୍ତି । ନିବେଦିତାଙ୍କୁ ଭାରତୀୟ ଭାବରେ ଗଠିତ କରିବା ଲାଗି ଅନେକ ସମୟରେ ସ୍ୱାମୀଜୀ ବାଧ ହୋଇ ତାଙ୍କ ଚିରପୋଷିତ ରୀତି–ନୀତି ଓ ଆଦର୍ଶକୁ ତୀବ୍ରଭାବରେ ଆକ୍ରମଣ କରୁଥିଲେ । ଦୃଢ଼–ହୃଦୟା ନିବେଦିତା ନିଜ ସ୍ୱାତନ୍ତ୍ର୍ୟକୁ ଜଳାଞ୍ଜଳି ଦେଇ ସବୁ ସମୟରେ ଗୁରୁଙ୍କ ସହିତ ଏକମତ ହୋଇପାରୁ ନ ଥିଲେ । ଗୁରୁ ଓ ଶିଷ୍ୟାଙ୍କର ଏହି ମାନସିକ ବିରୋଧ ନିବେଦିତାଙ୍କ ଭାରତ ଆଗମନଠାରୁ ଆରମ୍ଭ ହୋଇଥିଲା । ନିବେଦିତା ସ୍ୱୟଂ ଲେଖିଛନ୍ତି, ''ଏହି ସମୟରେ ମୋର ସମସ୍ତ ଯତ୍ନପୋଷିତ ଧାରଣାଗୁଡ଼ିକ ଉପରେ ଯେଉଁ ନିତ୍ୟ ଆକ୍ରମଣ ଓ ତିରସ୍କାର ବର୍ଷିତ ହେଉଥିଲା, ମୁଁ ସେଥିପାଇଁ ଆଦୌ ପ୍ରସ୍ତୁତ ନ ଥିଲି । ଅନେକ ସମୟରେ ଅକାରଣ ଦୁଃଖ ଭୋଗିବାକୁ ହୋଇଛି । ମୁଁ ଲକ୍ଷ୍ୟ କଲି, ଅନୁକୂଳଭାବାପନ୍ନ ପ୍ରିୟ ଆଚାର୍ଯ୍ୟଙ୍କ ବିଷୟରେ ସ୍ୱପ୍ନ ଅନ୍ତର୍ହିତ ହୋଇ ସେ ସ୍ଥାନରେ ଏପରି ଜଣେ ବ୍ୟକ୍ତିଙ୍କ ଚିତ୍ର ଉଦିତ ହେଲା, ଯେ ଅନନ୍ତ ଉଦାସୀନ ଓ ସମ୍ଭବତଃ ପ୍ରତିକୂଳଭାବାପନ୍ନ ହେବେ ଏବଂ ଏହି ସମୟରେ ମୁଁ ଯେଉଁ ମାନସିକ ଯନ୍ତ୍ରଣା ଭୋଗ କରୁଥିଲି, ତାହା ଯୁକ୍ତିଦ୍ୱାରା ବିଚାର କରିବା ବିଡ଼ମ୍ବନା ମାତ୍ର ।''

ଏହି ଭାବ–ସଂଘାତ ନିବେଦିତାଙ୍କ ଜୀବନରେ ଅତି ମର୍ମାନ୍ତିକ ହୋଇ ଉଠିଥିଲା; ତାଙ୍କର ପରିଣତ ଇଂରାଜୀ–ମନ, ନିଜ ରୁଚିଗତ ବୈଶିଷ୍ଟ୍ୟକୁ ସଯତ୍ନ ଚେଷ୍ଟାରେ ରକ୍ଷା କରି ଚଳିଲେ ଭାରତବର୍ଷର ଆଦର୍ଶକୁ ଇଂରେଜ ଦୃଷ୍ଟିରେ ବିଚାର କରିବାକୁ ହେବ । ଜଣେ ଇଂରେଜ ମହିଳାଙ୍କ ପକ୍ଷରେ ପରିଣତ ବୟସରେ ଭାରତୀୟ ଭାବରେ ଭାରତର ସାଧନା ଓ ଆଦର୍ଶକୁ ଗ୍ରହଣ ଓ ହୃଦୟଙ୍ଗମ କରିବା ଅତି ସୁକଠିନ କାର୍ଯ୍ୟ; ଆଉ ଏହି ସୁକଠିନ କାର୍ଯ୍ୟ ପାଇଁ ସ୍ୱାମୀଜୀଙ୍କ ପ୍ରବଳ ପ୍ରେରଣା ହିଁ ଜାତୀୟ ଆଭିଜାତ୍ୟପ୍ରିୟ ସ୍ୱାତନ୍ତ୍ର୍ୟାଭିମାନୀ ନିବେଦିତାଙ୍କ ଚିତ୍ତକୁ ବିକ୍ଷୁବ୍ଧ କରି ଦେଉଥିଲା । ସେ ଏପରି ଭାବରେ ନିଜକୁ ସମ୍ପୂର୍ଣ୍ଣ ରୂପେ ଭାଙ୍ଗି ପୁନର୍ବାର ଗଢ଼ିବା ଲାଗି ପ୍ରସ୍ତୁତ ନ ଥିଲେ; ବାଟ ଖୋଜି ମଧ୍ୟ ପାଉ ନ ଥିଲେ । ଅବଶେଷରେ ଦିନେ ରାତ୍ରିରେ ସହସା ଏହି ସମସ୍ୟାର ମୀମାଂସା ହୋଇଗଲା । ଅକାଶର କ୍ଷୀଣଚନ୍ଦ୍ରକୁ ଚାହିଁ ସ୍ୱାମୀଜୀ ନିବେଦିତାଙ୍କୁ କହିଲେ, ମୁସଲମାନମାନେ ନୂତନ ଚନ୍ଦ୍ରକୁ ଆଦର କରନ୍ତି । ଆସ, ଆମେ ନୂତନ ଚନ୍ଦ୍ର ସହିତ ନୂତନ ଜୀବନ ଆରମ୍ଭ କରିବା । ସ୍ୱାମୀଜୀଙ୍କ କଲ୍ୟାଣ ହସ୍ତ ଈଶ୍ୱରଙ୍କର ସର୍ବଶ୍ରେଷ୍ଠ ଆଶୀର୍ବାଦ ପରି ପଦତଳେ ଉପବିଷ୍ଟା ନିବେଦିତାଙ୍କ ମସ୍ତକ ସ୍ପର୍ଶ କଲା ! ଦିବ୍ୟ ସ୍ପର୍ଶରେ ଜନ୍ମଗତ ଓ ଜାତିଗତ ସଂସ୍କାର ମୁହୂର୍ତ୍ତକେ ମିଳାଇଗଲା । ଭଗିନୀ ଲେଖିଛନ୍ତି, ବହୁ ଆଗରୁ ଶ୍ରୀରାମକୃଷ୍ଣ ତାଙ୍କ ଶିଷ୍ୟମାନଙ୍କୁ କହିଥିଲେ, ଏପରି ଦିନ ଆସିବ, ଯେତେବେଳେ 'ନରେନ୍ଦ୍ର' ସ୍ପର୍ଶ ମାତ୍ରକେ ଅନ୍ୟର ହୃଦୟରେ ଜ୍ଞାନସଞ୍ଚାର କରିଦେବ । ଆଲମୋଡ଼ାରେ ସେହି ସନ୍ଧ୍ୟାରେ ଏହି ଭବିଷ୍ୟତ୍–ବାଣୀ ସଫଳ ହୋଇଥିଲା ।

## କବି ରବୀନ୍ଦ୍ରନାଥ ଓ ନିବେଦିତା

ଅନେକଙ୍କ ମନରେ ଏପରି ଧାରଣା ହେବା ସ୍ୱାଭାବିକ ଯେ, ହୁଏତ ନିବେଦିତା ମୃଦୁ ସ୍ୱଭାବା ଦୁର୍ବଳା ରମଣୀ ଥିଲେ; ସେହି କାରଣରୁ ଅମିତ ତେଜସ୍ୱୀ ବିବେକାନନ୍ଦ ତାଙ୍କୁ ମନ୍ତ୍ରମୁଗ୍ଧ କରି ମନୋମତ ରୂପେ ଗଢ଼ି ନେଇଥିଲେ; କିନ୍ତୁ ଏପରି ଧାରଣା ଯେ ଅମୂଳକ, ତାହା କବି ରବୀନ୍ଦ୍ରନାଥ ନିବେଦିତାଙ୍କ ମୃତ୍ୟୁ ପରେ ତାଙ୍କ ସ୍ମୃତିତର୍ପଣ କରିବାକୁ ଯାଇ ତାଙ୍କ ଅତୁଳନୀୟ ଭାଷାରେ ବ୍ୟକ୍ତ କରିଥିଲେ । ତାହାର କିୟଦଂଶ ନିମ୍ନରେ ଉଦ୍ଧୃତ ହେଲା —

"ନାନା ଦିଗରୁ ତାଙ୍କ ସହିତ ପରିଚିତ ହେବାର ସୁବିଧା ମୋତେ ମିଳିଥିଲା । ତାଙ୍କର ପ୍ରବଳ ଶକ୍ତି ମୁଁ ଅନୁଭବ କରିଛି, କିନ୍ତୁ ସେଥି ସହିତ ଏହା ମଧ୍ୟ ମୁଁ ବୁଝିଛି ଯେ, ତାଙ୍କ ଚଳିବା ପଥ ମୋ ଚଳିବା ପଥ ପରି ନୁହେଁ । ତାଙ୍କର ସର୍ବତୋମୁଖୀ ପ୍ରତିଭା ଥିଲା; ସେଥି ସହିତ ତାଙ୍କର ଆଉ ଗୋଟିଏ ଜିନିଷ ଥିଲା; ତାହା ହେଲା ତାଙ୍କ ଯୋଦ୍ଧୃତ୍ୱ । ତାଙ୍କର ବଳ ଥିଲା, ସେହି ବଳ ସେ ଅନ୍ୟର ଜୀବନ ଉପରେ ଏକାନ୍ତବେଗରେ ପ୍ରୟୋଗ କରୁଥିଲେ — ମନକୁ ପରାଭୂତ କରିଦେବା ଲାଗି ତାଙ୍କ ଭିତରେ ଗୋଟିଏ ବିପୁଳ ଉତ୍ସାହ କାମ କରୁଥିଲା । ଯେଉଁଠି ତାଙ୍କୁ ମାନି ଚଳିବା ଅସମ୍ଭବ ଥିଲା, ସେଠି ତାଙ୍କ ସଙ୍ଗେ ମିଳି ଚଳିବା କଠିନ ଥିଲା । ଅନ୍ତତଃ ମୁଁ ନିଜ ପକ୍ଷରୁ କହିପାରେ, ତାଙ୍କ ସଙ୍ଗେ ମୋର ମିଳନ ପାଇଁ ନାନା ଅବକାଶ ଘଟିଲେ ସୁଦ୍ଧା ଗୋଟିଏ ସ୍ଥାନରେ ମୁଁ ଅନ୍ତର ମଧ୍ୟରେ ଗଭୀର ବାଧା ଅନୁଭବ କରୁଥିଲି । ସେ ଠିକ୍ ମତାନୈକ୍ୟର ବାଧା ନୁହେଁ, ସେ ଯେପରି କି ଗୋଟିଏ ବଳବାନ ଆକ୍ରମଣର ବାଧା ।

"ଆଜି ଏହି କଥା ମୁଁ ନିଃସଙ୍କୋଚରେ ପ୍ରକାଶ କରୁଛି ତାର କାରଣ ଏହି ଯେ, ଗୋଟିଏ ଦିଗରେ ସେ ମୋ ଚିତ୍ତକୁ ପ୍ରତିହିତ କରିବା ସତ୍ତ୍ୱେ ଆଉ ଗୋଟିଏ ଦିଗରେ ତାଙ୍କଠାରୁ ଯେପରି ଉପକାର ପାଇଛି, ଏପରି ଉପକାର ଆଉ କାହାଠାରୁ ପାଇଛି ବୋଲି ମନେ ହେଉନାହିଁ । ତାଙ୍କ ସହିତ ପରିଚୟ ହେବା ପରଠାରୁ ଏଭଳି ବାରମ୍ବାର ଘଟିଛି, ଯେତେବେଳେ ତାଙ୍କ ଚରିତ ସ୍ମରଣ କରି ଓ ତାଙ୍କ ପ୍ରତି ଗଭୀର ଭକ୍ତି ଅନୁଭବ କରି ମୁଁ ଯଥେଷ୍ଟ ବଳ ପାଇଛି ।

"ନିଜକୁ ଏପରି ସମ୍ପୂର୍ଣ୍ଣ ନିବେଦନ କରିଦେବା ପାଇଁ ଆଶ୍ଚର୍ଯ୍ୟ ଶକ୍ତି ମୁଁ ଆଉ କାହାରିଠାରେ ଦେଖିନାହିଁ । ସେଥିପାଇଁ ତାଙ୍କ ଭିତରେ କୌଣସି ପ୍ରକାର ବାଧା ନ ଥିଲା । ତାଙ୍କ ଶରୀର, ତାଙ୍କର ଆଶୈଶବ ଇଉରୋପୀୟ ଅଭ୍ୟାସ, ତାଙ୍କ ଆତ୍ମୀୟସ୍ୱଜନଙ୍କ ସ୍ନେହମମତା, ତାଙ୍କ ସ୍ୱଦେଶୀ ସମାଜ ପ୍ରତି ଉପେକ୍ଷା ଏବଂ ଯେଉଁମାନଙ୍କ ପାଇଁ ସେ ପ୍ରାଣ ସମର୍ପଣ କରିଯାଇଛନ୍ତି, ସେମାନଙ୍କର ଔଦାସୀନ୍ୟ, ଦୁର୍ବଳତା ଓ ତ୍ୟାଗ ସ୍ୱୀକାରର ଅଭାବ, କୌଣସିଟି ତାଙ୍କୁ ଫେରାଇ ଦେଇ ପାରିଲା ନାହିଁ । ମନୁଷ୍ୟର ସତ୍ୟରୂପ, ଚିତ୍ରୂପ ଯେ କ'ଣ, ତାହା ଯେ

ତାଙ୍କୁ ଜାଣିଛି, ସେ ହିଁ କେବଳ ଦେଖିଛି; ମନୁଷ୍ୟର ଆନ୍ତରିକ ସତ୍ତା ସବୁପ୍ରକାର ସ୍ଥୂଳ ଆବରଣକୁ ଏକାବେଳକେ ମିଥ୍ୟା କରାଇ ଦେଇ କି ପ୍ରକାର ଅପ୍ରତିହତ ତେଜରେ ପ୍ରକାଶ ପାଇପାରେ, ତାହା ଦେଖିବାକୁ ପାଇବା ପରମ ସୌଭାଗ୍ୟର କଥା । ଭଗିନୀ ନିବେଦିତାଙ୍କ ମଧ୍ୟରେ ମଣିଷର ଅପରାହତ ମାହାତ୍ମ୍ୟକୁ ପ୍ରତ୍ୟକ୍ଷ କରି ଆମେ ଧନ୍ୟ ହୋଇଛୁ ।''

## ପାଓହାରୀ ବାବା ଓ ମି. ଗୁଡ୍‌ଉଇନଙ୍କ ମୃତ୍ୟୁସଂବାଦ

ଆଲମୋଡ଼ା ଆସିବା ପରଠାରୁ ସ୍ୱାମୀଜୀ ନିର୍ଜନତାପ୍ରିୟ ହୋଇ ଉଠିଲେ । ପ୍ରାୟ ପ୍ରତ୍ୟହ ଦଶଘଣ୍ଟାକାଳ ଗଭୀର ଅରଣ୍ୟରେ ଏକାକୀ ଧ୍ୟାନ-ଧାରଣାରେ ଯାପନ କରୁଥିଲେ । କ୍ରମାଗତ ଦର୍ଶନାର୍ଥୀଗଣଙ୍କ ସହିତ ଆଧ୍ୟାତ୍ମିକ ଆଲୋଚନାରେ ସେ ଯେପରି କି ବିରକ୍ତ ହୋଇ ଉଠୁଥିଲେ; ଏପରି କି ସମୟେ ସମୟେ ଅନ୍ତରଙ୍ଗ ଭକ୍ତବୃନ୍ଦଙ୍କ ସହିତ କୌଣସି ବିଷୟରେ ଆଲୋଚନା ତାଙ୍କର ଅସହ୍ୟ ବୋଧ ହେଉଥିଲା । ଲୋକଶିକ୍ଷା ଓ ଧର୍ମପ୍ରଚାର ନିମିତ୍ତ ପରିବ୍ରାଜକ ସନ୍ନ୍ୟାସୀ ବର୍ତ୍ତମାନ ପର୍ଯ୍ୟନ୍ତ ଯେଉଁପରି ଜୀବନଯାପନ କରି ଆସିଥିଲେ, ତାହା ଅଭିନେତାଙ୍କ ବେଶ ପରି କାଢ଼ି ରଖି ସେ ଉଦାସୀନ ଯୋଗୀଙ୍କ ପରି ବିଚରଣ କରିବାକୁ ଲାଗିଲେ । ତାଙ୍କ ଅତୀତ ଜୀବନର ତୀବ୍ର ତପୋଭାବ ଓ ବହିର୍ଜଗତ ପ୍ରତି ଗୋଟିଏ ପ୍ରବଳ ବିତୃଷ୍ଣା ସମୟେ ସମୟେ ତାଙ୍କ ହାବଭାବରେ ସୁସ୍ପଷ୍ଟ ହୋଇଯାଉଥିଲା । ଲୋକାଳୟ ପରିତ୍ୟାଗ କରି ସେ ପ୍ରାୟ ଗଭୀର ଅରଣ୍ୟରେ ଏକାକୀ ବାସ କରିବାକୁ ଲାଗିଲେ । ଏହିପରି ଥରେ ପ୍ରାୟ ଏକ ସପ୍ତାହ ପରେ ଜୁନ୍ ପାଞ୍ଚ ତାରିଖ ସନ୍ଧ୍ୟାରେ ସେ ଦୁଇଟି ନିଦାରୁଣ ସମ୍ବାଦ ଶୁଣି ଆଲମୋଡ଼ାକୁ ଫେରି ଆସିଲେ । ସ୍ୱାମୀଜୀଙ୍କ ଅନୁପସ୍ଥିତି ସମୟରେ ତାଙ୍କ ଶିଷ୍ୟଗଣ ସମ୍ବାଦ ପାଇଲେ ଯେ, ଗାଜୀପୁରର ବିଖ୍ୟାତ ସାଧୁ ପାଓହାରୀବାବାଙ୍କର ମୃତ୍ୟୁ ହୋଇଯାଇଛି ଏବଂ ସାଙ୍କେତିକ ଲିପିବିଦ୍ ଶ୍ରୀଯୁକ୍ତ ଗୁଡ୍‌ଉଇନ୍ ଜୁନ୍ ଦୁଇ ତାରିଖ ଦିନ ଜ୍ୱରରୋଗରେ ଉତ୍ତକାମଣ୍ଡଠାରେ ପ୍ରାଣତ୍ୟାଗ କରିଛନ୍ତି । ପରଦିନ ସକାଳେ ଶ୍ରୀମତୀ ବୁଲ୍‌ଙ୍କ ବଙ୍ଗଳାରେ ସ୍ୱାମୀଜୀଙ୍କୁ ଉକ୍ତ ସମ୍ବାଦ ଦିଆଗଲା । ସେ ଧୀରଭାବେ ଶୁଣିଲେ, କୌଣସି ଅଭିମତ ପ୍ରକାଶ କଲେ ନାହିଁ । ପୂର୍ବପରି ଗମ୍ଭୀର ଭାବରେ ତ୍ୟାଗ ଓ ଭକ୍ତିର ମହିମା କୀର୍ତ୍ତନ କରିବାରେ ଲାଗିଲେ; କିନ୍ତୁ କେଇଘଣ୍ଟା ପରେ ସେ ତାଙ୍କ ପ୍ରିୟତମ ଶିଷ୍ୟଙ୍କ ବିୟୋଗରେ ଯେ ମର୍ମାନ୍ତିକ ଆଘାତ ପାଇଛନ୍ତି, ତାହା ବ୍ୟକ୍ତ କଲେ । ପ୍ରାଣାଧିକ ଶିଷ୍ୟଙ୍କ ବିୟୋଗରେ ସେ କାତର ହୋଇ ନ ଥିଲେ; ଭାରତମାତା ଯେ ଜଣେ ଉଦୀୟମାନ କର୍ମୀଙ୍କୁ ଅକାଳରେ ହରାଇଲା, ଏହି ଦୁଃଖ ହିଁ ତାଙ୍କୁ ବ୍ୟଥିତ କରିଥିଲା ।

## କାଶ୍ମୀର

କିଛି ଦିନ ହେଲା ମାନ୍ଦ୍ରାଜର 'ପ୍ରବୁଦ୍ଧ ଭାରତ' ପତ୍ରିକାରେ ସମ୍ପାଦକ ଇହଲୋକ ତ୍ୟାଗ କରିବାରୁ ଉକ୍ତ ପତ୍ରିକାଟି ଆଲମୋଡ଼ାରୁ ପ୍ରକାଶ କରିବା ଲାଗି ବନ୍ଦୋବସ୍ତ ହେଲା । ତଦନୁସାରେ ସ୍ୱାମୀ ସ୍ୱରୂପାନନ୍ଦ ଏହାର ସମ୍ପାଦକ ଓ ଶ୍ରୀଯୁକ୍ତ ସେଭିୟର ପରିଚାଳକ ନିଯୁକ୍ତ ହେଲେ । ଏହି ପତ୍ରିକା ଖଣ୍ଡିକ ପ୍ରତି ସ୍ୱାମୀଜୀଙ୍କର ଅତ୍ୟନ୍ତ ଅନୁରାଗ ଥିଲା; ସୁଯୋଗ୍ୟ ବ୍ୟକ୍ତିମାନେ ଏହାର ଭାର ଗ୍ରହଣ କରିବା ଦେଖି ସେ ଅତୀବ ଆନନ୍ଦିତ ହେଲେ । ଏହାପରେ ସେ କେବଳ ଇଉରୋପୀୟ ଶିଷ୍ୟଗଣଙ୍କ ସହିତ ଶ୍ରୀମତୀ ବୁଲ୍‌ଙ୍କ ଅତିଥିରୂପେ କାଶ୍ମୀର ଭ୍ରମଣରେ ବାହାରିଲେ ।

ରାଓଲପିଣ୍ଡିଠାରୁ ଟାଙ୍ଗାରେ ଯାଇ ସେମାନେ ମାରୀରେ ପହଞ୍ଚିଲେ । ସେଠାରେ ତିନିଦିନ ବିଶ୍ରାମ କରି ଶ୍ରୀନଗର ଅଭିମୁଖେ ଯାତ୍ରା କଲେ । ଝେଲମ୍ ଉପତ୍ୟକାର ମନୋରମ ଦୃଶ୍ୟଗୁଡ଼ିକୁ ଦର୍ଶନ କରି ସେମାନେ ବାରମୂଳାରେ ପହଞ୍ଚିଲେ । ଏହି ସ୍ଥାନରେ ତିନିଖଣ୍ଡ ହାଉସ୍‌ବୋଟ୍ ଭଡ଼ା କରି ନଦୀର ଜଳପଥରେ ସେମାନେ ଶ୍ରୀନଗର ଅଭିମୁଖେ ଅଗ୍ରସର ହେଲେ । ସ୍ୱାମୀଜୀ ପ୍ରଫୁଲ୍ଲଚିତ୍ତରେ ତାଙ୍କ ପରିବ୍ରାଜକ ଜୀବନର ଭ୍ରମଣକାହାଣୀ ସଙ୍ଗୀମାନଙ୍କୁ ଶୁଣାଉଥିଲେ ଏବଂ ସମୟେ ସମୟେ କାଶ୍ମୀରର ଅତୀତ ଇତିହାସ — କନିଷ୍କଙ୍କ କାହାଣୀ, ଅଶୋକଙ୍କ ବୌଦ୍ଧଧର୍ମ ପ୍ରଚାର, ଶିବ ଉପାସନା ଇତ୍ୟାଦି ବିଭିନ୍ନ ବିଷୟ ଆଲୋଚନାରେ ଏତେ ଆତ୍ମମଗ୍ନ ହୋଇଯାଉଥିଲେ ଯେ, ଖାଇବା କଥା ବି ଭୁଲି ଯାଉଥିଲେ । ଜୁନ୍ ପଚିଶ ତାରିଖ ଦିନ ସେମାନେ ଶ୍ରୀନଗରରେ ପହଞ୍ଚିଲେ ।

କିନ୍ତୁ ସପ୍ତାହକ ମଧ୍ୟରେ ତାଙ୍କର ଭାବାନ୍ତର ଉପସ୍ଥିତ ହେଲା । ହାସ୍ୟପ୍ରଫୁଲ୍ଲ ବିବେକାନନ୍ଦ ଗମ୍ଭୀର ହୋଇ ଉଠିଲେ । ସେ ଶିଷ୍ୟମାନଙ୍କ ଅଜ୍ଞାତସାରରେ ନିଜ ନୌକାରେ ଅନ୍ୟ କୌଣସି ସ୍ଥାନକୁ ଚାଲିଯାଉଥିଲେ । ଏକାକୀ ନିର୍ଜନରେ ରହିବାଲାଗି ବ୍ୟାକୁଳ ଆଗ୍ରହରେ ବିବେକାନନ୍ଦ ଅଧିର ହୋଇ ପଡ଼ିଲେ ।

ଜୁଲାଇ ଚାରି ତାରିଖ ନିକଟ ହୋଇ ଆସୁଥିବା ଦେଖି ସ୍ୱାମୀଜୀ ନିଜ ଆମେରିକୀୟ ଶିଷ୍ୟମାନଙ୍କୁ ସେମାନଙ୍କ ସ୍ୱାଧୀନତା ଦିବସ ଉପଲକ୍ଷେ ବିଶେଷ ଭାବରେ ନିମନ୍ତ୍ରଣ କରିବା ଲାଗି ଗୋପନରେ ଆୟୋଜନ କରୁଥିଲେ । ପରଦିନ ସକାଳେ ପତ୍ର-ପୁଷ୍ପ-ପଲ୍ଲବ-ଶୋଭିତ ଗୋଟିଏ ନୌକା ଉପରେ ଆମେରିକାର ଜାତୀୟ ପତାକା ଉଡ଼ାଇ ଦିଆଗଲା । ତାଙ୍କର ବିସ୍ମିତ ଆମେରିକୀୟ ଶିଷ୍ୟମାନେ ନବୀନ ଆନନ୍ଦରେ ପ୍ରାତଃଭୋଜନରେ ଯୋଗଦାନ କଲେ । ଏହି କ୍ଷୁଦ୍ର ଉତ୍ସବାନୁଷ୍ଠାନଟିକୁ ସର୍ବାଙ୍ଗସୁନ୍ଦର କରିବା ନିମିତ୍ତ ସ୍ୱାମୀଜୀ ଓ ନିବେଦିତା ଉପଯୁକ୍ତ ଆୟୋଜନ କରିବାରେ ତ୍ରୁଟି କରି ନ ଥିଲେ । ସ୍ୱାମୀଜୀ ଆନନ୍ଦରେ 'To the Fourth of July' ଶୀର୍ଷକ ସ୍ୱ-ରଚିତ ଇଂରେଜୀ କବିତା ପାଠ କରି ଶିଷ୍ୟମାନଙ୍କୁ ଶୁଣାଇଲେ । ସେହି କବିତାଟିର ଅନୁବାଦ ତଳେ ଦିଆଗଲା —

## 'ଚାରି ଜୁଲାଇ ପ୍ରତି'

ଦେଖ ବିଗଳିତ, ନିବିଡ଼ କୃଷ୍ଣ ବାରିଦ-ପୁଞ୍ଜ ଗଗନେ,
ସାରା ନିଶା ଧରି ଧରଣୀ ଆବୋରି ଘନ ଘୋର ଆବରଣେ ।
ଐନ୍ଦ୍ରଜାଲିକ ସ୍ପର୍ଶେ ତୁମର ସଜାଗ ହୋଇଲା ଧରା,
ବିହଗ-ମୁଖର କୁଞ୍ଜକାନନ ବନ୍ଦନାଗୀତିଭରା ।
ତାରକାନିନ୍ଦି, ଶୁଭ୍ର-ଶିଶିର-କିରୀଟ ପିନ୍ଧି ଶିରେ,
ତବ ଆବାହନେ ପୁଲକେ ଆକୁଳ ଫୁଲକୁଳ କମ୍ପେ ଧୀରେ ।
ପୂଜାସମ୍ଭାର ପ୍ରେମପୂରିତ ବକ୍ଷେ ସଜାଇ ରଖି,
ସରସୀ ମେଲିଲା ତୁମରେ ଦେଖି ଅୟୁତ କମଳ-ଆଖି ।
ବିଶ୍ୱ ତୁମରେ ବରଣ କଲା, ସେ ଦିନ ଆସିଛି ଆଜ,
ନବ ଆବାହନ କର ହେ ଗ୍ରହଣ ଆଲୋକର ଅଧିରାଜ ।
ଆଜି ହେ ଅରୁଣ କରୁଣାରେ ତବ ମୁଗ୍ଧ ଜଗତବାସୀ,
ମୁକ୍ତି ଛଡ଼ାଇ ହସିଲା ତୁମର କ୍ଳାନ୍ତ କିରଣରାଶି ।
ଭାବି ଦେଖ ତୁମେ, ନିଖିଳ ବିଶ୍ୱ ଦରଶ ଆଶେ ତୁମରେ,
ଭାରି ଯୁଗଚୟ, ଖୋଜିଲା ତୁମକୁ କେତେ ପ୍ରଦେଶ ପରେ ।
ଛାଡ଼ି କେତେଜଣ, ଗୃହ ପରିଜନ, ଛିଣ୍ଡାଇ ପ୍ରଣୟ-ଡୋର,
ଲଭିବାକୁ ତୋରେ ଲଂଘି ସାଗର ପଶିଲା କାନନେ ଘୋର ।
—ପ୍ରତି ପଦେ ଦଳି ଶତ ଶତ ବନ୍ଧ ପରାଣ ଶଙ୍କାହୀନ,
ତେବେ ତ ପୂର୍ଣ୍ଣ କରିଣ ଚେଷ୍ଟା ଉଦେ ହେଲା ପୁଣ୍ୟ ଦିନ ।
ସଫଳ ହୋଇଲା ସାଧନା ଓ ପ୍ରେମ, ସାର୍ଥକ ବଳିଦାନ,
ସକଳ ବେଦନା ଧନ୍ୟ କରିଣ ସିଦ୍ଧି ଲଭିଲା ସ୍ଥାନ ।
ତାହା ପରେ ତୁମେ, ମଙ୍ଗଳାଳୟ ଜାଗିଣ ଉଠିଲ ଧୀରେ,
ମୁକ୍ତି-କିରଣ ବରଷି ହରଷେ ବିଶ୍ୱମାନବ-ଶିରେ ।
ଚାଲ ଅବିରାମ ବାଧାହୀନ ପଥେ—ଜଗତକୁ କରି ତୃପ୍ତ,
—ଗଗନ-କେନ୍ଦ୍ରେ ହେ ଦେବ ବିଛାଡ଼ି ମୁକ୍ତି-କିରଣ ଦୀପ୍ତ ।
ପ୍ରତି ପ୍ରଦେଶର ପ୍ରତି ନରନାରୀ ଉନ୍ନତ ଶିର ଟେକି,
ଦେଖନ୍ତୁ ଆନନ୍ଦେ ବନ୍ଧନ-ପାଶ ନିଃଶେଷେ ଯାଏ ଖୋଲି ।
ପ୍ରଫୁଲ୍ଲ, ନବୀନ ଜୀବନ ଲଭିଣ ହେଉ ସଫଳ ପ୍ରାଣ,
ମୁକ୍ତିର ଦିନ ! ଆଜି ଏ ସଭିଙ୍କୁ ସ୍ୱାଧୀନତା କର ଦାନ ।

ଏହି କବିତାଟି ଲେଖିବାର ଠିକ୍ ଚାରିବର୍ଷ ପରେ ୧୯୦୨ ଖ୍ରୀଷ୍ଟାବ୍ଦ ଜୁଲାଇ ଚାରି ତାରିଖରେ ସ୍ୱାମୀଜୀ ଇହଲୀଳା ସମ୍ବରଣ କଲେ । ଏହି କବିତାଟି କ'ଣ ତାଙ୍କ ଭବିଷ୍ୟତବାଣୀ ? ଅଥବା ଆମେରିକାର ସ୍ୱାଧୀନତା କଥା ଚିନ୍ତା କରିବାକୁ

ଯାଇ ଜଗତର ପଦଦଳିତ ଜାତିମାନଙ୍କ ପୁନରୁତ୍‌ଥାନର ଗୋଟିଏ ଗୌରବମୟ ଚିତ୍ର ତାଙ୍କ ମାନସପଟରେ ଉଦିତ ହୋଇଥିଲା ?

ଜୁଲାଇ ଛଅ ତାରିଖ ଦିନ ଶ୍ରୀମତୀ ବୁଲ୍ ଓ କୁମାରୀ ମ୍ୟାକ୍‌ଲାଉଡ୍ ଶ୍ରୀନଗରରୁ ବିଶେଷ କାର୍ଯ୍ୟୋପଲକ୍ଷେ ଗୁଲ୍‌ମାର୍ଗ ଗଲେ । ଦଶ ତାରିଖ ଦିନ ସେମାନେ ଅପ୍ରତ୍ୟାଶିତ ଭାବରେ ଫେରିଆସି ଶୁଣିଲେ ଯେ, ସ୍ୱାମୀଜୀ କୁଆଡ଼େ ଚାଲିଯାଇଛନ୍ତି ? ଅବଶେଷରେ ଅନେକ ଅନୁସନ୍ଧାନ ପରେ ସେମାନେ ଜାଣିଲେ ଯେ, ସେ ସୋନାମାର୍ଗ ରାସ୍ତାରେ ଅମରନାଥ ଯାତ୍ରା କରିଛନ୍ତି । ପ୍ରଖର ଗ୍ରୀଷ୍ମ ହେତୁ ବରଫ ତରଳି ସୋନାମାର୍ଗ ରାସ୍ତା ବନ୍ଦ ହୋଇଯାଇଥିବାରୁ ସ୍ୱାମୀଜୀ ବିଫଳ ମନୋରଥ ହୋଇ ଜୁଲାଇ ପନ୍ଦର ତାରିଖ ଦିନ ଶ୍ରୀନଗର ଫେରିଆସିଲେ ।

## ଅମରନାଥ

ଜୁଲାଇ ଅଠର ତାରିଖ ଦିନ ସେମାନେ ଇସ୍‌ଲାମାବାଦ୍‌କୁ ଫେରି ଆସିଲେ । ଇସ୍‌ଲାମାବାଦ୍ ନିକଟବର୍ତ୍ତୀ କେତୋଟି ଦେବମନ୍ଦିର ଓ ଅବନ୍ତିପୁରର ଧ୍ୱଂସାବଶେଷ ପରିଦର୍ଶନ କରି ଆଚ୍ଛାବଲ ଅଭିମୁଖେ ଅଗ୍ରସର ହେଲେ । ଏହି ସମୟରେ ପ୍ରତ୍ୟହ ପ୍ରଭାତରେ ସ୍ୱାମୀଜୀ ଶିଷ୍ୟମାନଙ୍କ ସହିତ ଝେଲମ୍ ନଦୀକୂଳରେ ଭ୍ରମଣ କରୁ କରୁ ହିନ୍ଦୁଧର୍ମ, ଖ୍ରୀଷ୍ଟଧର୍ମ ଓ ମୁସଲମାନଧର୍ମ ସମ୍ବନ୍ଧରେ ନାନା ପ୍ରକାର ତତ୍ତ୍ୱାଲୋଚନା କରୁଥିଲେ, କେତେବେଳେ ଅବା ସେମାନଙ୍କୁ ତ୍ୟାଗ ଓ ବୈରାଗ୍ୟର ମହିମାରେ ଅନୁପ୍ରାଣିତ କରୁଥିଲେ । ଆଚ୍ଛାବଲଠାରେ ଦିନେ ମଧ୍ୟାହ୍ନ ଭୋଜନ ସମୟରେ ସ୍ୱାମୀଜୀ ତାଙ୍କର ଅମରନାଥ ଯିବା ସଂକଳ୍ପ ବ୍ୟକ୍ତ କଲେ ଓ ଭଗିନୀ ନିବେଦିତାଙ୍କୁ ସଙ୍ଗରେ ଯିବାଲାଗି ଅନୁମତି ଦେଲେ । ତାଙ୍କର ଅନ୍ୟାନ୍ୟ ଶିଷ୍ୟାଗଣ ସ୍ୱାମୀଜୀ ଫେରି ଅସିବା ପର୍ଯ୍ୟନ୍ତ ଫେଲ୍‌ଗାମ୍‌ଠାରେ ଅପେକ୍ଷା କରିବେ ବୋଲି ସ୍ଥିର ହେଲା ।

ଯାତ୍ରାର ବନ୍ଦୋବସ୍ତ ଓ ଲୁଗାପଟା ଇତ୍ୟାଦି କ୍ରୟ କରିବା ନିମିତ୍ତ ସ୍ୱାମୀଜୀ ପୁନରାୟ ଇସ୍‌ଲାମାବାଦ୍‌କୁ ଫେରି ଆସିଲେ । ସେଠାରୁ ଭଗିନୀ ନିବେଦିତାଙ୍କ ସହ ମିଶି ପଦବ୍ରଜରେ ସେ ଅମରନାଥ ଗଲେ । ସନ୍ଧ୍ୟା ହେବା ଆଗରୁ ତୀର୍ଥଯାତ୍ରୀମାନେ ରାତ୍ରିଯାପନ କରିବା ନିମିତ୍ତ ପ୍ରାନ୍ତର ମଧ୍ୟରେ ଲୁଗା ଟାଙ୍ଗି ନିଜ ନିଜ ଆଶ୍ରୟସ୍ଥଳ ତିଆରି କଲେ । ସ୍ୱାମୀଜୀ ଓ ନିବେଦିତାଙ୍କୁ ସେମାନଙ୍କ ଭିତରେ ବସ୍ତ୍ରାବାସ ସ୍ଥାପନ କରୁଥିବା ଦେଖି ସନ୍ନ୍ୟାସୀମାନେ ଜଣେ ଇଂରେଜ ମହିଳାଙ୍କର ତାଙ୍କ ସହିତ ଏକତ୍ର ଅବସ୍ଥାନ ସମ୍ବନ୍ଧରେ ଭୀଷଣ ଆପତ୍ତି ଉତ୍‌ଥାପନ କଲେ । ସ୍ୱାମୀଜୀ କୌଣସି ମତେ ଅଲଗା ବସ୍ତ୍ରାବାସ ନିର୍ମାଣ କରିବାକୁ ରାଜି ହେଲେ ନାହିଁ । ସେ ତୀବ୍ର ଭର୍ତ୍ସନା କରି ସନ୍ନ୍ୟାସୀମାନଙ୍କ ଅଜ୍ଞତାମୂଳକ ଆପତ୍ତି ବିରୋଧରେ ପ୍ରତିବାଦ କରୁଛନ୍ତି, ଏହି ସମୟରେ ଜନୈକ ନାଗା-ସନ୍ନ୍ୟାସୀ ତାଙ୍କର ସମ୍ମୁଖୀନ ହୋଇ ବିନୀତ ଭାବରେ କହିଲେ, "ସ୍ୱାମୀଜୀ ! ଆପଣଙ୍କର ଶକ୍ତି ଅଛି ସତ୍ୟ; କିନ୍ତୁ ତାହା ପ୍ରକାଶ କରିବା ଉଚିତ୍ ନୁହେଁ ।" ସ୍ୱାମୀଜୀ ତତ୍‌କ୍ଷଣାତ୍ ନିଜ ଭ୍ରମ ବୁଝିପାରି ନିରସ୍ତ

ହେଲେ । ଆଶ୍ଚର୍ଯ୍ୟର ବିଷୟ, ପରଦିନ ସେହି ସନ୍ନ୍ୟାସୀବୃନ୍ଦ ସ୍ୱତଃ ପ୍ରଣୋଦିତ ହୋଇ ସ୍ୱାମୀଜୀ ଓ ନିବେଦିତାଙ୍କ ବସ୍ତ୍ରାବାସ ସମସ୍ତଙ୍କ ସମ୍ମୁଖରେ ରଖିଲେ । ସ୍ୱାମୀଜୀଙ୍କ ପ୍ରଭାବ ଯେପରି କି ସନ୍ନ୍ୟାସୀବୃନ୍ଦଙ୍କ ମଧ୍ୟରେ ମନ୍ତ୍ରଶକ୍ତି ପରି କାମ କଲା । ସନ୍ଧ୍ୟା ପରେ ପ୍ରଜ୍ୱଳିତ ଧୂନି ପାଖରେ ଶତ ଶତ ସନ୍ନ୍ୟାସୀ ତାଙ୍କ ସହିତ ଧର୍ମାଲୋଚନା କରିବାରେ ଲାଗିଲେ । ଅଭିଜ୍ଞ ସନ୍ନ୍ୟାସୀବୃନ୍ଦ ତାଙ୍କୁ ବ୍ରହ୍ମଜ୍ଞ ପୁରୁଷ ବୋଲି ବୁଝିପାରି ଶ୍ରଦ୍ଧା କରିବାକୁ ଲାଗିଲେ । ଭଗିନୀ ନିବେଦିତା ଭିନ୍ନଦେଶୀୟା ରମଣୀ ବୋଲି ସେମାନେ ସଙ୍କୋଚ ପ୍ରକାଶ କରିବା ଦୂରେ ଥାଉ, ଆନନ୍ଦର ସହିତ ତାଙ୍କୁ ନାନପ୍ରକାର ସାହାଯ୍ୟ ଦେଲେ ।

ବାଓୟାନର ପବିତ୍ର ନିର୍ଝରିଣୀରେ ଅବଗାହନ କରି ଏକାଦଶୀ ପାଳନ କରିବା ନିମିତ୍ତ ଯାତ୍ରୀମାନେ ଦିନେ ଫେଲ୍‌ଗାମ୍‌ଠାରେ ବିଶ୍ରାମ କଲେ । ଧ୍ୟାନ, ତପସ୍ୟା, ମାଳାଜପ, ହବିଷ୍ୟ ଇତ୍ୟାଦି ତୀର୍ଥଯାତ୍ରୀର ପ୍ରତ୍ୟେକ କର୍ତ୍ତବ୍ୟ ସ୍ୱାମୀଜୀ ବିଶେଷ ଭାବରେ ପାଳନ କରୁଥିଲେ । ସେଠାରୁ ଦୁର୍ଗମ ପାର୍ବତ୍ୟ ପଥ ଅତିକ୍ରମ କରି ଯାତ୍ରୀମାନେ ଅଗଷ୍ଟ ଦୁଇ ତାରିଖରେ ଅମରନାଥରେ ପହଞ୍ଚିଲେ ।

ଅମରନାଥର ପବିତ୍ର ଗୁହା ଦୃଷ୍ଟିପଥରେ ପଡ଼ିବାମାତ୍ରେ ସ୍ୱାମୀଜୀଙ୍କର ଆପାଦମସ୍ତକ ଭକ୍ତ୍ୟାପ୍ଳୁତ ପୁଲକରେ କଣ୍ଟକିତ ହୋଇ ଉଠିଲା । ବିଭୂତିଲେପିତ କଳେବରରେ କୌପୀନଧାରୀ ବିବେକାନନ୍ଦ କମ୍ପିତପଦରେ ବିଶାଳ ଗୁହାମଧ୍ୟରେ ପ୍ରବେଶ କଲେ । ସମ୍ମୁଖରେ ଚିରତୁଷାର-ଗଠିତ ଭଗବାନ ମହାଦେବଙ୍କ ଅନାଦିଲିଙ୍ଗ ବିରାଜମାନ—ସ୍ୱାମୀଜୀ ଭକ୍ତିଭରେ ଲୁଣ୍ଠିତ ହୋଇ ପୁନଃ ପୁନଃ ପ୍ରଣାମ କରି ଗଭୀର ଧ୍ୟାନସ୍ଥ ହେଲେ । କହିବା ବାହୁଲ୍ୟ ଯେ, ଭଗିନୀ ନିବେଦିତାଙ୍କ ଗୁହା ମଧ୍ୟରେ ପ୍ରବେଶ କରି ମହାଦେବଙ୍କ ଆରାଧନା କରିବାକୁ କେହି ଆପତ୍ତି ପ୍ରକାଶ କରି ନ ଥିଲେ । ସ୍ୱାମୀଜୀ ଗୁହାରୁ ନିର୍ଗତ ହୋଇ ଉଡ଼୍‌ଡୀୟମାନ ଶ୍ୱେତପରାଗୁଡ଼ିକୁ ଦର୍ଶନ କରି ନିଜକୁ ସୌଭାଗ୍ୟବାନ୍ ଓ ସିଦ୍ଧସଙ୍କଳ୍ପ ଜ୍ଞାନ କଲେ । ଏହା ପରେ ନିବେଦିତାଙ୍କୁ ଗଭୀର ବିଶ୍ୱାସର ସହିତ କହିଲେ, ''ଦେବାଧିଦେବ ମହାଦେବ ଆଜି ମୋତେ ଇଚ୍ଛାମୃତ୍ୟୁ ବର ପ୍ରଦାନ କରିଛନ୍ତି ।''

ପୂର୍ବ ବନ୍ଦୋବସ୍ତ ଅନୁସାରେ ସ୍ୱାମୀଜୀ ପହେଲଗାମ ଆସି ତାଙ୍କ ଶିଷ୍ୟମାନଙ୍କ ସହିତ ମିଳିତ ହେଲେ । ସେଠାରୁ ସେମାନେ ଶ୍ରୀନଗରରୁ ପ୍ରତ୍ୟାବର୍ତ୍ତନ କଲେ । ନିର୍ଜନରେ ଏକାକୀ ରହି ଧ୍ୟାନ-ଧାରଣାର ପ୍ରବଳ ଆଗ୍ରହରେ ସ୍ୱାମୀଜୀ ପ୍ରାୟଶଃ ନିଜ ନୌକାଟିକୁ ଶିଷ୍ୟମାନଙ୍କ ନୌକାଠାରୁ ଦୂରରେ ରଖିଲେ । ଏହି ସମୟରେ ତାଙ୍କର ସମସ୍ତ ପ୍ରାଣ-ମନ ଯେପରି ଶିବମୟ ହୋଇଗଲା ।

କାଶ୍ମୀରରେ ଗୋଟିଏ ସଂସ୍କୃତ କଲେଜ ଓ ମଠ ସ୍ଥାପନ କରିବା ନିମିତ୍ତ କାଶ୍ମୀର ମହାରାଜା ସ୍ୱାମୀଜୀଙ୍କୁ ଆବଶ୍ୟକମତେ ଭୂମି ଦେବାକୁ ଅଙ୍ଗୀକାର କରିଥିଲେ । ଝେଲମ୍ ନଦୀ ତୀରରେ ସ୍ୱାମୀଜୀ ଗୋଟିଏ ସ୍ଥାନ ବାଛିଲେ; ମହାରାଜା ଏହା ତାଙ୍କୁ ଦାନ କରିବା ଇଚ୍ଛା ପ୍ରକାଶ କଲେ । ସ୍ୱାମୀଜୀଙ୍କ ଶିଷ୍ୟାଗଣ

ସେଠାରେ ବସ୍ତ୍ରାବାସ ସ୍ଥାପନ କରି ବାସ କରୁଥିଲେ; କିନ୍ତୁ ସେପ୍‌ଟେମ୍ବର ମଧ୍ୟଭାଗରେ ତାଙ୍କୁ ସରକାରୀ ଭାବରେ ଜଣାଇ ଦିଆଗଲା ଯେ, ଏହି ଜମି ଖଣ୍ଡିକ ସେ ପାଇବେ ନାହିଁ । ସଙ୍କଳ୍ପଭଙ୍ଗ ହେବାରୁ ସ୍ୱାମୀଜୀ ଅତୀବ ଦୁଃଖିତ ହେଲେ । ତଦାନୀନ୍ତନ ରେସିଡେଣ୍ଟ ଶ୍ରୀଯୁକ୍ତ ଏଡାଲ୍ ବାଟ୍ ଟଲବ୍ୟାଟ୍ (Adalbert Talbat) ସାହେବଙ୍କ ବିରୋଧ ହେତୁ ଏହି ପ୍ରସ୍ତାବଟି କାଉନ୍‌ସିଲରେ ଆଲୋଚନା ପର୍ଯ୍ୟନ୍ତ ହୋଇପାରିଲା ନାହିଁ । ସାମୟିକ ନୈରାଶ୍ୟ ଯୋଗୁଁ ବିମର୍ଷ ହେଲେ ମଧ୍ୟ ଏ ଘଟଣାରେ ସ୍ୱାମୀଜୀ ବୁଝି ପାରିଲେ, ଦେଶୀୟ ରାଜ୍ୟ ଅପେକ୍ଷା ବ୍ରିଟିଶଶାସିତ ଅଞ୍ଚଳ ହିଁ ତାଙ୍କର ଉପଯୁକ୍ତ କାର୍ଯ୍ୟକ୍ଷେତ୍ର । ସେପ୍‌ଟେମ୍ବର କୋଡ଼ିଏ ତାରିଖରେ ସ୍ୱାମୀଜୀ ଆମେରିକାର ବାଣିଜ୍ୟ ପ୍ରତିନିଧିଙ୍କଦ୍ୱାରା ଆହୂତ ହୋଇ ଡାଲ୍ ହ୍ରଦକୁ ଗଲେ । ସେଠାରେ ଦୁଇଦିନ ରହି ପୁନରାୟ ଶ୍ରୀନଗରକୁ ଫେରିଆସିଲେ ।

## କ୍ଷୀର–ଭବାନୀ

ସେପ୍‌ଟେମ୍ବର ତିରିଶ ତାରିଖରେ ସ୍ୱାମୀଜୀ ସହସା କ୍ଷୀରଭବାନୀ ଅଭିମୁଖେ ପ୍ରସ୍ଥାନ କଲେ ଏବଂ କୌଣସି ଶିଷ୍ୟା ଯେପରି ତାଙ୍କ ପଛରେ ନ ଯାଆନ୍ତି, ସେ ବିଷୟରେ ବିଶେଷ ଭାବରେ ସାବଧାନ କରିଦେଲେ ।

କ୍ଷୀରଭବାନୀର ପବିତ୍ର ପ୍ରସ୍ରବଣ ତଟରେ ଉପନୀତ ହୋଇ ସ୍ୱାମୀଜୀ କଠୋର ତପସ୍ୟାରେ ବ୍ରତୀ ହେଲେ । ପ୍ରତ୍ୟହ ପ୍ରଭାତରେ ଏକମହଣ ଦୁଗ୍ଧ, ଅରୁଆ ଚାଉଳ ଓ ବାଦାମ ଇତ୍ୟାଦି ପ୍ରଚୁର ପରିମାଣରେ ଜଗଜ୍ଜନନୀଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କଲେ । ସ୍ଥାନୀୟ ଜନୈକ ବ୍ରାହ୍ମଣ ପଣ୍ଡିତଙ୍କ କୁମାରୀ କନ୍ୟାକୁ ପ୍ରତ୍ୟହ ଶାସ୍ତ୍ରବିଧି ଅନୁଯାୟୀ ପୂଜା କଲେ । ଦିନେ ପ୍ରଜ୍ୱଳିତ ହୋମାଗ୍ନି ସମ୍ମୁଖରେ ଯୋଗାସନରେ ଉପବିଷ୍ଟ ହୋଇ ବିବେକାନନ୍ଦ ମହାମାୟାଙ୍କୁ ଧ୍ୟାନ କରିବା ଲାଗି ଯାଉଛନ୍ତି—ଏହି ସମୟରେ ସମ୍ମୁଖସ୍ଥ ଭଗ୍ନ ମନ୍ଦିର ଦର୍ଶନ କରି ତାଙ୍କର ମନେହେଲା, ଯେତେବେଳେ ଏହି ମନ୍ଦିରକୁ ମୁସଲମାନମାନେ ଭାଙ୍ଗିଦେଇଥିଲେ, ସେତେବେଳେ ହିନ୍ଦୁମାନେ କ'ଣ ବାହୁବଳରେ ତାଙ୍କ ଗତିରୋଧ କରିପାରିଲେ ନାହିଁ ? ମୁଁ ଯଦି ସେତେବେଳେ ଉପସ୍ଥିତ ଥାଆନ୍ତି, ତାହାହେଲେ ପ୍ରାଣପଣ କରି ମଧ୍ୟ ଜନନୀଙ୍କ ମନ୍ଦିରକୁ ରକ୍ଷା କରିଥାଆନ୍ତି, କୌଣସି ମତେ ପବିତ୍ର ମନ୍ଦିରକୁ ଧ୍ୱଂସ ହେବାକୁ ଦେଇ ନ ଥାନ୍ତି ।

ସହସା ଏ କି ଦୈବବାଣୀ ! ବିସ୍ମୟ–ବିମୂଢ଼ ବିବେକାନନ୍ଦ ଉତ୍‌କର୍ଣ୍ଣ ହୋଇ ଶୁଣିଲେ, ଜଗଜ୍ଜନନୀ ସସ୍ନେହ ଭର୍ତ୍ସନା କରି କହୁଛନ୍ତି, "ଯଦିବା ମୁସଲମାନମାନେ ମୋ ମନ୍ଦିରକୁ ଧ୍ୱଂସ କରି ପ୍ରତିମା ଅପବିତ୍ର କରିଅଛନ୍ତି, ସେଥିରେ ତୋର କ'ଣ ଅଛି ? ତୁ ମୋତେ ରକ୍ଷା କରିବୁ, ନା, ମୁଁ ତୋତେ ରକ୍ଷା କରିବି ?"

ଏ କି ଅପ୍ରତ୍ୟାଶିତ ଘଟଣା ! ସ୍ୱାମୀଜୀ ସମ୍ୟକ୍ ବୁଝିପାରିଲେ ନାହିଁ ! ପରଦିନ ସେ ପୁନରାୟ ଭାବିଲେ, ଯାହା ହେବାର ହୋଇଯାଇଛି । ମୁଁ ଭିକ୍ଷା କରି

ଅର୍ଥସଂଗ୍ରହ କରି ଜୀର୍ଣ୍ଣ ମନ୍ଦିର ସଂସ୍କାର କରିବି, ଏ କାର୍ଯ୍ୟରେ ଅଗ୍ରସର ହେଲେ ମୁଁ କୃତକାର୍ଯ୍ୟ ହେବି, ସନ୍ଦେହ ନାହିଁ । ସହସା ପୁନର୍ବାର ଦୈବବାଣୀ । ଜନନୀ କହୁଛନ୍ତି, ''ଯଦି ମୋର ଇଚ୍ଛା ହୁଏ, ତାହାହେଲେ ମୁଁ କ'ଣ ସାତମହଲା ସୁବର୍ଣ୍ଣ ମନ୍ଦିର ଏହି ମୁହୂର୍ତ୍ତରେ ଗଠନ କରିପାରିବି ନାହିଁ ? ମୋ ଇଚ୍ଛାନୁସାରେ ଏହି ମନ୍ଦିର ଭଗ୍ନ ଅବସ୍ଥାରେ ପଡ଼ିରହିଛି ।''

କର୍ମଯୋଗୀଙ୍କ ବିଦ୍ୟାର ଅହଙ୍କାର ଚୂର୍ଣ୍ଣ ହୋଇଗଲା । ରାଜୋଗୁଣର ଅଭ୍ରଭେଦୀ ସମୁନ୍ନତ ଗରିମା ସହସା ଅବନତ ହୋଇ ଜଗଜ୍ଜନନୀଙ୍କ ପାଦତଳେ ଲୋଟିଗଲା । ଶ୍ରୀରାମକୃଷ୍ଣ କହିଥିଲେ, ''ନରେନ୍ଦ୍ରଙ୍କ ହୃଦୟରେ ଅଜ୍ଞାନତାର ଗୋଟିଏ ପତଳା ଆବରଣ ମା' ରଖି ଯାଇଛନ୍ତି; ଏତଦ୍ୱାରା ଅନେକ କାମକରାଇ ନେବେ''—ତାହା ଯେପରି କ୍ଷଣକାଳ ପାଇଁ ଦୂର ହୋଇଗଲା । ସେ ଦିବ୍ୟଦୃଷ୍ଟିରେ ଦେଖିଲେ, ମହାମାୟାଙ୍କ ବିରାଟ ଇଚ୍ଛାରେ ସେ ଯନ୍ତ୍ରପରି ଚାଳିତ ହେଉଛନ୍ତି । ଏହି ଅଭିନବ ଅନୁଭୂତି ତାଙ୍କ ମନୋରାଜ୍ୟରେ ବିଚିତ୍ର ପରିବର୍ତ୍ତନ ଆଣିଲା । ପ୍ରାଣରେ ଅପୂର୍ବ ଶାନ୍ତି, ଅଦ୍ଭୁତ ନିସ୍ତବ୍‌ଧତା ସହ ସ୍ୱାମୀଜୀ ଶ୍ରୀନଗରକୁ ଫେରି ଆସିଲେ ।

ସ୍ୱାମୀଜୀଙ୍କ ଭାବାନ୍ତର ଲକ୍ଷ୍ୟକରି ତାଙ୍କ ଶିଷ୍ୟମାନେ ବିସ୍ମିତ ହେଲେ । ସେହି ଅଦ୍ଭୁତକର୍ମୀ, ଉତ୍ସାହୋଦ୍ଦୀପ୍ତ ବିବେକାନନ୍ଦ ଗମ୍ଭୀରଭାବରେ ସେମାନଙ୍କୁ ଲକ୍ଷ୍ୟକରି କହିଲେ, ''ମୋର କର୍ମସ୍ପୃହା, ସ୍ୱଦେଶପ୍ରେମ ସବୁ ଅନ୍ତର୍ହିତ ହୋଇଯାଇଛି । ହରି ଓଁ ! ମୁଁ ଭୁଲ କରିଥିଲି; ମୁଁ ଯନ୍ତ୍ର, ସେ ଯନ୍ତ୍ରୀ ! ମା, ମା, ସେ ସବୁ, ସେ କର୍ତ୍ତା—ମୁଁ କିଏ ? ତାଙ୍କର ଅଜ୍ଞାନ ସନ୍ତାନ ମାତ୍ର !'' ପୁନରାୟ କେତେଦିନ ନିର୍ଜ୍ଜନରେ ଗଭୀର ସାଧନାରେ ରତ ରହି ଲଣ୍ଡିତମସ୍ତକ ବିବେକାନନ୍ଦ ସାମାନ୍ୟ ବେଶରେ ସେମାନଙ୍କ ପାଖକୁ ଫେରିଆସିଲେ । କ୍ଷୀରଭବାନୀ ଯିବା ପୂର୍ବରୁ ସେ 'କାଳୀମାତା' (Kali the Mother) ଶୀର୍ଷକ ଯେଉଁ କବିତା ଲେଖିଥିଲେ, ଏହା ଆବୃତ୍ତି କଲେ । ସେହି ଇଂରେଜୀ କବିତାର ଅନୁବାଦ ତଳେ ଦିଆଗଲା—

## ମୃତ୍ୟୁରୂପା ମାତା

ନିଃଶେଷେ ଲିଭିଛି ତାରାଦଳ, ମେଘ ଆସି ଆବୋରିଛି ମେଘ,<br>
ସ୍ପନ୍ଦିତ, ଧ୍ୱନିତ, ଅନ୍ଧକାର, ଗରଜୁଛି ଘୂର୍ଣ୍ଣ ବାୟୁବେଗ !<br>
ଲକ୍ଷ ଲକ୍ଷ ଉନ୍ମାଦ ପରାଣ ବନ୍ଦୀଶାଳା ମଧ୍ୟୁଁ ବହିର୍ଗତ,<br>
ମହାବୃକ୍ଷ ସମୂଳେ ଓପାଡ଼ି, ଫୁତ୍‌କାରେ ଉଡ଼ାଇ ଚାଲେ ପଥ ।<br>
ସମୁଦ୍ର ସଂଗ୍ରାମେ ଦେଲା ଝାସ, ଉଠେ ଢେଉ ଗିରିଚୂଡ଼ା ପରି,<br>
ଆକାଶକୁ ପରଶିବା ଚାହେଁ ! ଘୋରରୂପା ହସୁଛି ଶର୍ବରୀ ।<br>
ପ୍ରକାଶୁଛି ଦିଗେ ଦିଗେ ତାର—ମୃତ୍ୟୁର କାଳିମାମଖା ଦେହେ,<br>
ଲକ୍ଷ ଲକ୍ଷ ଛାୟାର ଶରୀର, ଦୁଃଖରାଶି ଜଗତେ ଛଡ଼ାଏ—<br>
ନାଚେ ତାରା ଉନ୍ମାଦ ତାଣ୍ଡବେ ମୃତ୍ୟୁରୂପା ମା' ଆମର ଆସେ ।

କରାଳି ! କରାଳ ନାମ ତୋର ମୃତ୍ୟୁ ତୋର ନିଃଶ୍ୱାସେ ପ୍ରଶ୍ୱାସେ,
ତୋର ଭୀମ ଚରଣ ନିକ୍ଷେପ ପ୍ରତିପଦେ ବ୍ରହ୍ମାଣ୍ଡ ବିନାଶେ ।
କାଳୀ ତୁହି ପ୍ରଣୟରୂପିଣୀ, ଆସ ମାଗୋ, ଆସ ମୋର ପାଶେ;
ସାହସେ ଯେ ଦୁଃଖ ଦୈନ୍ୟ ଚାହେଁ ମୃତ୍ୟୁକୁ ଯେ ବାନ୍ଧେ ବାହୁପାଶେ —
କାଳନୃତ୍ୟ କରେ ଉପଭୋଗ — ମାତୃରୂପା ତାହା ପାଶେ ଆସେ ।

ଜନନୀଙ୍କର ଏହି ଧ୍ୱଂସମୂର୍ତ୍ତିର ଉପାସନା ବିବେକାନନ୍ଦ ନିଜ ଗୁରୁ ରାମକୃଷ୍ଣ ପରମହଂସଙ୍କଠାରୁ ଶିକ୍ଷା କରିଥିଲେ । ଦୀର୍ଘ-ଜୀବନ-ବ୍ୟାପୀ ସାଧନାଦ୍ୱାରା ସେ ଧୀରେ ଧୀରେ ଅନୁଭବ କରିଥିଲେ — ଦୁଃଖ, ଦୈନ୍ୟ, ବ୍ୟାଧି, ମଡ଼କ, ପରାଜୟ, ବ୍ୟର୍ଥତା ସହିତ ବୀରପରି ସଂଗ୍ରାମ କରିବା, ପ୍ରୟୋଜନ ହେଲେ ନିର୍ଭୀକ ଦୃଢ଼ତାରେ ମୃତ୍ୟୁକୁ ବୀରପରି ଆଲିଙ୍ଗନ କରିବା ପାଇଁ ବର୍ତ୍ତମାନ ଯୁଗର ଅବଶ୍ୟ କର୍ତ୍ତବ୍ୟ ଶକ୍ତି-ସାଧନା । 'ରୁଦ୍ରମୁଖେ ସଭିଏଁ ଡରନ୍ତି; କେହି ଚାହେଁ ନାହିଁ ମୃତ୍ୟୁରୂପା ମୁକ୍ତକେଶୀ !' ସେହି ଯୋଗୁଁ ଆଜି ତିରିଶ କୋଟି ଲୋକଙ୍କ ମନୁଷ୍ୟତ୍ୱ ନିର୍ବୀର୍ଯ୍ୟ ଓ ଅଳସ ! ତେଣୁ ଗୁରୁବଳରେ ବଳୀୟାନ୍ ସାଧକ ନବଯୁଗ ପ୍ରାରମ୍ଭରେ ଭାରତବାସୀଙ୍କୁ ଭୀଷଣର ପୂଜା, ମୃତ୍ୟୁର ଉପାସନା ପାଇଁ ଉଚ୍ଚ ସ୍ୱରରେ ଆହ୍ୱାନ କରିଥିଲେ । ଆସ ନବଯୁଗର ଶକ୍ତିସାଧକ — ଆଶା, ଆନନ୍ଦ, ଉଲ୍ଲାସ, ଓ ଅତୀତ ଗୌରବର କଙ୍କାଳ-ପରିପ୍ଲୁତ ଏହି ଭାରତ ମହାଶ୍ମଶାନରେ — ନୈରାଶ୍ୟ, ଉଦ୍‌ବେଗ, ଆଶଙ୍କାରେ ଏହି ଘୋର ନିଶାର ଶୁଭଲଗ୍ନରେ — ଅଭୀମନ୍ତ୍ରରେ ଦୀକ୍ଷିତ ହୋଇ ଶକ୍ତି-ସାଧନାରେ ଅଗ୍ରସର ହୁଅ । କ୍ଷୁଧିତର କାତର କ୍ରନ୍ଦନ, ବ୍ୟାଧିପୀଡ଼ିତର ଅସହାୟ ହାହାକାର, ପଦଦଳିତର ଅକ୍ଷମ କାତରତା ଦେଖି କମ୍ପି ଉଠ ନାହିଁ; ଏହି ଭୀଷଣା ତୁମର ଉପାସ୍ୟା ଇଷ୍ଟଦେବୀ । ଯାଅ, ଯେଉଁଠାରେ ଦୁର୍ଭିକ୍ଷ, ବ୍ୟାଧି ଓ ମଡ଼କ ଅଛି । ମୃତ୍ୟୁକୁ ଅଗ୍ରାହ୍ୟ କରି ସେଠାକୁ ଯାଅ — ଦଉଡ଼ି ଯାଅ ! ତାଣ୍ଡବନୃତ୍ୟ-ପରାୟଣା ମୃତ୍ୟୁରୂପା ମାତାଙ୍କ ଚରଣରେ ହୃଦୟର ଉଷ୍ଣଶୋଣିତ ଉତ୍ସର୍ଗ କର । ପ୍ରେତର ଅଟ୍ଟହାସ୍ୟ, ଶୃଗାଳର ଚିତ୍କାର ଶୁଣି ରମଣୀର ଅଞ୍ଚଳ ତଳେ ଭୀରୁ ପରି ଆତ୍ମଗୋପନ କରିବା ଆଉ ତୁମକୁ ଶୋଭା ପାଏ ନାହିଁ ! ଶିରରେ ମହାସର୍ବନାଶ, ନିଷ୍ପଲକ ନେତ୍ରରେ ତୀବ୍ର ଦୃଷ୍ଟିରେ ତୁମ ଆଡ଼କୁ ଚାହିଁ — ପ୍ରେମର ସ୍ୱପ୍ନ ଦେଖିବା ଅବସର ତୁମର ଅଛି କି ? ଆସ, ଦୂରକର ନାରୀମାୟା — ଭୋଗବିଳାସର କାମନା ହୃଦୟରୁ ନିର୍ମମଭାବରେ ଦୂର କରିଦିଅ । ରୁଦ୍ଧ ଗୃହଦ୍ୱାର ମୁକ୍ତ କରି ଆସ, ଏହି ଅନ୍ଧକାରରେ ବାହାରି ପଡ଼ । ଭୟ ? ଭୟ କ'ଣ ? କେଉଁଥିପାଇଁ ନୈରାଶ୍ୟ ? ସିଂହୀ ଯେତେବେଳେ କରୀକୁମ୍ଭ ବିଦାରଣ କରି ରକ୍ତପାନ କରେ, ଯେତେବେଳେ ଭୀଷଣ ଗର୍ଜନ କରି ସମଗ୍ର ଅରଣ୍ୟକୁ ପ୍ରକମ୍ପିତ କରିପକାଏ, ସେତେବେଳେ ପାଖରେ ଠିଆ ହୋଇଥିବା ସିଂହ-ଶାବକ କ'ଣ ଭୟ କରେ ? ସମ୍ମୁଖରେ ଏହି ରୁଧିରାକ୍ତ-ରସନା, କରାଳଦ୍ରଂଷ୍ଟ୍ରା ସିଂହୀ ଯେତେ ଭୟଙ୍କରୀ

ହେଲେ ମଧ୍ୟ ସେ ତାର ଜନନୀ ! ଆସ, ଯୁଗଯୁଗାନ୍ତରର ନିରାଶା ଓ ଜଡ଼ତ୍ୱର ଫାଶ ଛିଣ୍ଡାଇ ଫିଙ୍ଗିଦେଇ କୋଟି କଣ୍ଠରେ ଥରେ ଏହି ଭୀଷଣାକୁ 'ମା' 'ମା' ବୋଲି ଡାକ—ସେହି ଦକ୍ଷିଣେଶ୍ୱରର ପଞ୍ଚବଟୀ ତଳେ ପାଗଳ ପୂଜାରୀ ଯେପରି ଭାବରେ, ଯେଉଁଭଳି ସରଳତା ସହ ଡାକିଥିଲେ । ଡାକ ଏଥର ! ମୃତ୍ୟୁରୂପା ମା' ପ୍ରସନ୍ନା ହେବେ, ସାଧନାରେ ସିଦ୍ଧି ମିଳିବ, ସଙ୍ଗେ ସଙ୍ଗେ ଦେଶ ଓ ଦଶର ଦୁର୍ଦ୍ଦଶା ମଧ୍ୟ ଘୁଞ୍ଚିଯିବ ।''

## ବେଲୁଡ଼କୁ ପ୍ରତ୍ୟାବର୍ତ୍ତନ

କାଶ୍ମୀର ଭ୍ରମଣ ସମାପ୍ତ ହେଲା । ପ୍ରକୃତିର ରମ୍ୟ ଲୀଳାନିକେତନକୁ ପଛରେ ରଖି ସ୍ୱାମୀଜୀ ଶିଷ୍ୟମାନଙ୍କ ସହିତ ଅକ୍ଟୋବର ତେର ତାରିଖ ଦିନ ଲାହୋରରେ ପହଞ୍ଚିଲେ । ଶିଷ୍ୟମାନେ ଭାରତର କେତେଗୋଟି ବିଖ୍ୟାତ ନଗରୀ ପରିଦର୍ଶନ କରିବା ଇଚ୍ଛା ପ୍ରକାଶ କରନ୍ତେ, ସ୍ୱାମୀଜୀ ଆଲମୋଡ଼ାଠାରୁ ଆସିଥିବା ଶିଷ୍ୟ ସଦାନନ୍ଦଜୀଙ୍କୁ ସାଙ୍ଗରେ ନେଇ ଅକ୍ଟୋବର ଅଠର ତାରିଖ ଦିନ ବେଲୁଡ଼କୁ ଫେରି ଆସିଲେ । ଅପ୍ରତ୍ୟାଶିତ ଭାବେ ସ୍ୱାମୀଜୀଙ୍କୁ ଦେଖି ମଠର ସନ୍ନ୍ୟାସୀ ଓ ବ୍ରହ୍ମଚାରୀମାନେ ଉଦ୍‌ବେଳ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ପଡ଼ିଲେ ସତ; କିନ୍ତୁ ସ୍ୱଳ୍ପକାଳ ପରେ ସ୍ୱାମୀଜୀଙ୍କ ଶାରୀରିକ ଓ ମାନସିକ ଅବସ୍ଥା ସେମାନଙ୍କୁ ଚିନ୍ତିତ କରି ପକାଇଲା । ତାଙ୍କର ପାଂଶୁବର୍ଣ୍ଣ ମୁଖମଣ୍ଡଳ, ବାମ ନୟନରେ ଜମାଟ ରକ୍ତ ପ୍ରଭୃତି ଲକ୍ଷଣ ଦେଖି ମଠର ସନ୍ନ୍ୟାସୀ ଓ ଭକ୍ତବୃନ୍ଦ ଅବିଳମ୍ବେ ଚିକିତ୍ସାର ବନ୍ଦୋବସ୍ତ କରିବାକୁ ଚେଷ୍ଟିତ ହେଲେ । ପ୍ରସିଦ୍ଧ ଡାକ୍ତର ଆର୍. ଏଲ୍. ଦତ୍ତ ଓ ଜଣେ ଦୁଇଜଣ କବିରାଜ ତାଙ୍କ ଦୈହିକ ଅବସ୍ଥା ବିଶେଷ ରୂପେ ପର୍ଯ୍ୟବେକ୍ଷଣ କରି ସମଧିକ ସତର୍କତା ଅବଲମ୍ବନ କରିବାକୁ ଉପଦେଶ ଦେଲେ । ମଠର ସନ୍ନ୍ୟାସୀମାନେ ଯାହାଙ୍କ ପାଇଁ ବ୍ୟସ୍ତ ଓ ଶଙ୍କିତ ହୋଇଯାଇଥିଲେ, ସେ ନିଜେ ନିର୍ବିକାର ଓ ଉଦାସୀନ; ଯେପରି କି କୌଣସି ବାହ୍ୟ ବିଷୟରେ ଅନୁରାଗ ନାହିଁ, କୌଣସି କାର୍ଯ୍ୟ ସମ୍ବନ୍ଧରେ ପ୍ରଶ୍ନ କଲେ ସେ ଗମ୍ଭୀର ଔଦାସ୍ୟ ସହକାରେ ଉତ୍ତର ଦିଅନ୍ତି, ''ମୁଁ କ'ଣ ଜାଣେ, ଯାହା ମା'ଙ୍କ ଇଚ୍ଛା ତାହା ହିଁ ହେବ !'' ଅନେକେ କୌତୁକପୂର୍ଣ୍ଣ ଗଳ୍ପ କହି ତାଙ୍କ ମନକୁ ଉଚ୍ଚ ଭାବରାଜ୍ୟରୁ ଟାଣି ଆଣିବାକୁ ଚେଷ୍ଟା କରୁଥିଲେ ସିନା, କିନ୍ତୁ ଆତ୍ମମଗ୍ନ ବିବେକାନନ୍ଦ ଅସଂଲଗ୍ନ ଉତ୍ତର ଦେଇ ଲୋକସଙ୍ଗ ପରିତ୍ୟାଗ କରି ନିର୍ଜନ ସ୍ଥାନକୁ ଚାଲି ଯାଉଥିଲେ । ଇତିମଧ୍ୟରେ ଦିନେ ଶିଷ୍ୟ ଶରତ୍‌ବାବୁ ଗୁରୁଙ୍କ ଦର୍ଶନ ନିମିତ୍ତ ପହଞ୍ଚିଲେ । କଥା ପ୍ରସଙ୍ଗରେ ସ୍ୱାମୀଜୀ ତାଙ୍କୁ କହିଲେ ଯେ, ଅମରନାଥ ଓ କ୍ଷୀରଭାବାନୀରେ କଠୋର ତପଶ୍ଚର୍ଯ୍ୟା ହେତୁ ତାଙ୍କ ଶରୀର କିଞ୍ଚିତ୍ ଅସୁସ୍ଥ ହେଲେ ହେଁ ତାହା କିଛି ନୁହେଁ । କ୍ରମେ ଶିଷ୍ୟଙ୍କ ସାଗ୍ରହ ଅନୁରୋଧରେ ଅମରନାଥ ଓ କ୍ଷୀରଭବାନୀର ଅଲୌକିକ ଦର୍ଶନ ଓ ଅନୁଭୂତି

ସମ୍ବନ୍ଧରେ ଦୁଇ ଚାରିପଦ କହି ଶେଷରେ କହିଲେ, ''ଅମରନାଥରୁ ଫେରିବା ସମୟରେ ଶିବ ମୋ ମୁଣ୍ଡରେ ପଶିଛନ୍ତି, କୌଣସି ମତେ ବାହାରୁ ନାହାନ୍ତି ।''

ସ୍ୱାମୀଜୀଙ୍କୁ ଚିକିତ୍ସା ଲାଗି ମଠରୁ କଲିକତା ବାଗ୍‌ବଜାରରେ ଥିବା ବଳରାମବାବୁଙ୍କ ଘରକୁ ନିଆଗଲା । ଧୀରେ ଧୀରେ ସ୍ୱାମୀଜୀଙ୍କ ମନ ଉଚ୍ଚତମ ଭାବରାଜ୍ୟରୁ ଫେରି ଆସିଲା । ପୂର୍ବପରି ଉତ୍ସାହ ଓ ଆଗ୍ରହ ସହିତ ନ ହେଲେ ବି ଦର୍ଶନାର୍ଥୀ ଭକ୍ତବୃନ୍ଦଙ୍କ ସହିତ କଥୋପକଥନ କରି ସେ ଧର୍ମୋପଦେଶ ଦେବାକୁ ଲାଗିଲେ । କଲିକତାରୁ ମଝିରେ ମଝିରେ ମଠକୁ ଫେରିଆସି ସେ କାର୍ଯ୍ୟ-ପ୍ରଣାଳୀ ଲକ୍ଷ୍ୟ କରୁଥିଲେ । ସ୍ୱାମୀ ତୁରୀୟାନନ୍ଦଜୀ ଜ୍ୱଳନ୍ତ ଉତ୍ସାହ ଘେନି ଆଲମୋଡ଼ାରୁ ଆସି ମଠରେ ପହଞ୍ଚିଲେ । ମଠରେ ଶାସ୍ତ୍ରାଲୋଚନା, ଧ୍ୟାନ, ତପସ୍ୟା ଅବିରତ ଚାଲିଲା । ଦିନେ ଦିନେ ସ୍ୱାମୀଜୀ ମଧ୍ୟ ଉପସ୍ଥିତ ଥାଇ ଧର୍ମ, ଦର୍ଶନ, ଇତିହାସ, ବିଜ୍ଞାନ ଇତ୍ୟାଦି ବିଭିନ୍ନ ବିଷୟରେ ଚର୍ଚ୍ଚା କରି ନବୀନ ସନ୍ନ୍ୟାସୀମାନଙ୍କୁ ଉତ୍ସାହିତ କରୁଥିଲେ ।

## ନିବେଦିତାଙ୍କ ବାଳିକା-ବିଦ୍ୟାଳୟ ପ୍ରତିଷ୍ଠା

ଇତିମଧ୍ୟରେ ଭଗିନୀ ନିବେଦିତା କଲିକତାକୁ ଫେରି ଆସିଲେ । ଶ୍ରୀଗୁରୁଙ୍କ ଚରଣରେ ପୂର୍ଣ୍ଣଭାବେ ଆତ୍ମ-ସମର୍ପଣ କରି ସେ ସ୍ତ୍ରୀ-ଶିକ୍ଷା ବିସ୍ତାର ଲାଗି ସମସ୍ତ ଶକ୍ତି ନିୟୋଗ କଲେ । ହିନ୍ଦୁ ରମଣୀମାନଙ୍କ ଦୈନନ୍ଦିନ ଜୀବନ-ଯାତ୍ରା ସହିତ ପ୍ରତ୍ୟକ୍ଷ ଭାବରେ ପିରିଚିତ ହେବା ନିମିତ୍ତ ସେ ବାଗବଜାରର ଶ୍ରୀଶ୍ରୀମାତା ଠାକୁରାଣୀଙ୍କ ଭବନରେ ବାସ କଲେ । ଠାକୁରଙ୍କ ଅନ୍ୟାନ୍ୟ ସ୍ତ୍ରୀ-ଭକ୍ତଗଣ ସାଦରରେ ଓ ଦ୍ୱିଧାହୀନ ଚିତ୍ତରେ ନିବେଦିତାଙ୍କୁ ନିଜ ଭିତରେ ସ୍ଥାନ ଦେଲେ । ସ୍ୱଳ୍ପକାଳ ମଧ୍ୟରେ ବାଗ୍‌ବଜାରରେ ଗୋଟିଏ ବାଳିକା ବିଦ୍ୟାଳୟ ସ୍ଥାପନ ଲାଗି ବନ୍ଦୋବସ୍ତ ହୋଇଗଲା ।

ନଭେମ୍ବର ବାରତାରିଖ ଦିନ ଶ୍ରୀଶ୍ରୀମା କେତେଜଣ ସ୍ତ୍ରୀ-ଭକ୍ତଙ୍କ ସଙ୍ଗେ ବେଲୁଡ଼ ମଠରେ ଶୁଭ-ପଦାର୍ପଣ କଲେ । ସେ ଦିନ ଥାଏ ଶ୍ରୀଶ୍ରୀଶ୍ୟାମାପୂଜା । ପୂଜା ଓ ଭୋଗ ବିଧିମତେ ଆୟୋଜନ କରିବାକୁ ସନ୍ନ୍ୟାସୀଗଣ ତ୍ରୁଟି କରି ନ ଥିଲେ । ଶ୍ରୀଶ୍ରୀମା ନିଜେ ପୂଜା ସମାପ୍ତ କରି ସନ୍ନ୍ୟାସୀମାନଙ୍କୁ ଆଶୀର୍ବାଦ କଲେ । ତାଙ୍କ ଆଶୀର୍ବାଦରେ ମଠର ଶୁଭ-ଉଦ୍ଦେଶ୍ୟ ପୂର୍ଣ୍ଣ ହେବ ଭାବି ସମସ୍ତେ ଆନନ୍ଦିତ ଓ କୃତାର୍ଥ ହେଲେ । ଅପରାହ୍ନରେ ଶ୍ରୀଶ୍ରୀମା, ସ୍ୱାମୀ ବିବେକାନନ୍ଦ, ବ୍ରହ୍ମାନନ୍ଦ ଓ ସାରଦାନନ୍ଦଜୀଙ୍କ ସହିତ ବାଗ୍‌ବଜାରରେ ନିବେଦିତାଙ୍କଦ୍ୱାରା ପ୍ରତିଷ୍ଠିତ ବାଳିକା ବିଦ୍ୟାଳୟକୁ ଫେରି ଆସିଲେ । ସ୍ୱାମୀଜୀଙ୍କ ପ୍ରାର୍ଥନାରେ ଶ୍ରୀଶ୍ରୀମା ବିଦ୍ୟାଳୟ ପ୍ରତିଷ୍ଠା ଲାଗି ବିଶେଷ ପୂଜା ସମାପ୍ତ କରି ଜଗଜ୍ଜନନୀଙ୍କ ଚରଣରେ ପ୍ରାର୍ଥନା କଲେ । ଯେପରି ତାଙ୍କ ଆଶୀର୍ବାଦ ଫଳରେ ବିଦ୍ୟାଳୟରୁ ଆଦର୍ଶ ବାଳିକାମାନେ ଶିକ୍ଷିତା ହୋଇ ସମାଜର କଲ୍ୟାଣ କରନ୍ତି । ପରମାରାଧ୍ୟା ଶ୍ରୀଶ୍ରୀମାଙ୍କ ଆଶୀର୍ବାଦ

ଲାଭ କରି ଭଗିନୀ ନିବେଦିତା ଆନନ୍ଦରେ ନିଜ ସଂକଳ୍ପ ସିଦ୍ଧ ହେଲା ବୋଲି ମନେକଲେ ।

## ବେଲୁଡ଼ରେ ଶ୍ରୀରାମକୃଷ୍ଣ ମଠ ପ୍ରତିଷ୍ଠା

ଡ଼ିସେମ୍ବର ନଅ ତାରିଖ ଦିନ ନବନିର୍ମିତ ମଠରେ ଶ୍ରୀଶ୍ରୀରାମକୃଷ୍ଣଦେବଙ୍କ ଦେହାବଶେଷ-ରକ୍ଷିତ ପବିତ୍ର ତାମ୍ରାଧାର ଓ ତାଙ୍କ ପ୍ରତିକୃତି ପ୍ରତିଷ୍ଠା କାର୍ଯ୍ୟ ସମ୍ପନ୍ନ କରି ସ୍ୱାମୀଜୀ ନିଶ୍ଚିନ୍ତ ଓ କୃତାର୍ଥ ହେଲେ । ମଠର ଭବିଷ୍ୟତ କାର୍ଯ୍ୟପ୍ରଣାଳୀ ଆଲୋଚନା କରୁ କରୁ ସେ ଦିନେ ଶିଷ୍ୟ ଶରତ୍‌ବାବୁଙ୍କୁ କହିଲେ, ''ଏହିଠାରେ ସାଧୁମାନଙ୍କ ରହଣି ପାଇଁ ବନ୍ଦୋବସ୍ତ ହେବ । ସାଧନ, ଭଜନ, ଜ୍ଞାନଚର୍ଚ୍ଚା ଲାଗି ଏହି ମଠ ପ୍ରଧାନ କେନ୍ଦ୍ର ହେବ, ଏହା ହିଁ ମୋର ଅଭିପ୍ରାୟ । ଏଠାରୁ ଯେଉଁ ଶକ୍ତିର ଅଭ୍ୟୁଦୟ ହେବ, ତାହା ଜଗତକୁ ଆଚ୍ଛାଦିତ କରି ପକାଇବ ଓ ମଣିଷର ଜୀବନଗତିକୁ ଫେରାଇ ଦେବ । ଜ୍ଞାନ, ଭକ୍ତି, ଯୋଗ ଓ କର୍ମର ଏକତ୍ର ସମନ୍ୱୟ ହୋଇ ଏଠାରୁ ideals (ମାନବହିତକର ଉଚ୍ଚାଦର୍ଶସମୂହ) ବାହାରିବ; ଏହି ମଠଭୁକ୍ତ ବ୍ୟକ୍ତିମାନଙ୍କ ଇଙ୍ଗିତରେ ସମୟରେ ଦିଗ୍‌ଦିଗନ୍ତରେ ପ୍ରାଣର ସଞ୍ଚାର ହେବ; ଯଥାର୍ଥ ଧର୍ମାନୁରାଗୀମାନେ ସମସ୍ତେ ଏଠାରେ ଆସି ଜୁଟିବେ—ମନରେ ଏପରି କେତେ କଳ୍ପନା ଉଦିତ ହେଉଛି !''

ଶ୍ରୀଶ୍ରୀରାମକୃଷ୍ଣଦେବଙ୍କ ଉପଦେଶ ଓ ଆଦର୍ଶକୁ ଜନସାଧାରଣଙ୍କ ଭିତରେ ପ୍ରଚାର କରିବା ଲାଗି ଖଣ୍ଡିଏ ବଙ୍ଗଳା ପତ୍ରିକା ପ୍ରକାଶ କରିବାର ପ୍ରୟୋଜନୀୟତା ସ୍ୱାମୀଜୀ ବହୁଦିନରୁ ଅନୁଭବ କରୁଥିଲେ । ତଦନୁସାରେ ଖଣ୍ଡିଏ ପାକ୍ଷିକ ପତ୍ର ବାହାର କରିବା ପ୍ରସ୍ତାବକୁ ସମସ୍ତେ ଅନୁମୋଦନ କରିବାରୁ ସ୍ୱାମୀଜୀଙ୍କ ମତ ଅନୁସାରେ ସ୍ୱାମୀ ତ୍ରିଗୁଣାତୀତାନନ୍ଦ ଉକ୍ତ ପତ୍ରର ପରିଚାଳନା ଭାର ଗ୍ରହଣ କଲେ । ୧୩୦୫ ସାଲ ମାଘ ପହିଲା ଦିନ ଏହି ପତ୍ରିକାର ପ୍ରଥମ ସଂଖ୍ୟା ବାହାରିଲା । ଏହି କାର୍ଯ୍ୟ ଲାଗି ଅକ୍ଳାନ୍ତକର୍ମୀ ସ୍ୱାମୀ ତ୍ରିଗୁଣାତୀତାନନ୍ଦ ଯେଉଁ ଅସାଧାରଣ ପରିଶ୍ରମ କରୁଥିଲେ, ତାହା ବର୍ଣ୍ଣନାତୀତ । ସ୍ୱାମୀଜୀ ତାଙ୍କ ଅସୀମ ତ୍ୟାଗ ସ୍ୱୀକାର, ଉଦ୍ୟମଶୀଳତା ପ୍ରଭୃତି ଦର୍ଶନ କରି ଆନନ୍ଦର ସହିତ ଆଶୀର୍ବାଦ ଓ ଉତ୍ସାହ ପ୍ରଦାନ କଲେ । ସ୍ୱାମୀଜୀ ଉକ୍ତ ପତ୍ରିକାର ନାମ ରଖିଲେ 'ଉଦ୍‌ବୋଧନ' ଏବଂ ନିଜେ ଏହାର ପ୍ରସ୍ତାବନା ଲେଖିଥିଲେ । ସଂଘରୂପେ ପରିଣତ ରାମକୃଷ୍ଣ ମିଶନର ସଭ୍ୟମାନଙ୍କୁ ସ୍ୱାମୀଜୀ ଏହି ପତ୍ରିକା ପାଇଁ ପ୍ରବନ୍ଧ ଲେଖିବାକୁ ଏବଂ ଠାକୁରଙ୍କ ଧର୍ମମତ ଜନସାଧାରଣରେ ପ୍ରଚାର କରିବାକୁ ଅନୁରୋଧ କରିଥିଲେ ।

## ବୈଦ୍ୟନାଥରେ

ମଠରେ ପ୍ରତିଦିନ ଶାସ୍ତ୍ର ଆଲୋଚନା ଓ ଦର୍ଶନାର୍ଥୀ ଭକ୍ତବୃନ୍ଦଙ୍କୁ ଉପଦେଶାଦି ପ୍ରଦାନ ହେଉଥିବା ଯୋଗୁଁ କଠୋର ମାନସିକ ପରିଶ୍ରମ ଜନିତ କ୍ଳାନ୍ତି ହେତୁ ସ୍ୱାମୀଜୀଙ୍କ ଶରୀର ଦିନକୁ ଦିନ ଅଧିକ ଅସୁସ୍ଥ ହୋଇ ପଡ଼ିଲା । ଆଗାମୀ ଗ୍ରୀଷ୍ମ

ରତୁରେ ତାଙ୍କୁ ପାଶ୍ଚାତ୍ୟ ଦେଶକୁ ଯିବାକୁ ହେବ, ତେଣୁ କେତେଦିନ ବିଶ୍ରାମ ନେବା ଏକାନ୍ତ ପ୍ରୟୋଜନ ବୋଲି ସମସ୍ତେ ମନରେ ଭାବିଲେ । କଲିକତା ଓ ବେଲୁଡ଼ ମଠରେ ରହି ବିଶ୍ରାମ ନେବା ଆଶା ଏକାନ୍ତ ଅସମ୍ଭବ ବୋଲି ସ୍ୱାମୀଜୀ ଡିସେମ୍ବର ଊଣେଇଶ ତାରିଖ ଦିନ ପ୍ରିୟନାଥ ସିଂହଙ୍କ ଅତିଥି ରୂପେ ବୈଦ୍ୟନାଥ ଗଲେ । ବୈଦ୍ୟନାଥ ବିଖ୍ୟାତ ସ୍ୱାସ୍ଥ୍ୟକର ସ୍ଥାନ ହେଲେ ମଧ୍ୟ ଏହି ସ୍ଥାନକୁ ଆସି ସ୍ୱାମୀଜୀ ଧଇଁଶ୍ୱାସ ରୋଗରେ ପ୍ରଥମେ ପ୍ରଥମେ ବିଶେଷ କଷ୍ଟ ଭୋଗ କଲେ । ଦିନେ ଶ୍ୱାସର ପ୍ରକୋପ ଏତେ ପ୍ରଖର ହେଲା ଯେ, ତାଙ୍କର ମୃତ୍ୟୁ ହୋଇଯାଇପାରେ ବୋଲି ସମସ୍ତଙ୍କର ଆଶଙ୍କା ହେଲା । ସୁଖର କଥା, ଅଳ୍ପ ସମୟ ଭିତରେ ସ୍ୱାମୀଜୀ ପୁନରାୟ ସୁସ୍ଥ ବୋଧ କଲେ । ସାମାନ୍ୟ ସୁସ୍ଥ ହେବା ମାତ୍ରକେ ସେ ପୁନର୍ବାର କର୍ମକ୍ଷେତ୍ରକୁ ଯିବା ଲାଗି ମନସ୍ଥ କଲେ । ନିଶ୍ଚିନ୍ତ ଭାବରେ ଅଳସୁଆ ହୋଇ ବିଶ୍ରାମ କରିବା ସ୍ୱାମୀଜୀଙ୍କ ପକ୍ଷରେ ଏକାନ୍ତ ଅସମ୍ଭବ ବ୍ୟାପାର ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଜଗତର ଦୁଃଖଦୈନ୍ୟରୂପକ କ୍ରୁଶଦଣ୍ଡ ଯେଉଁଦିନ କାନ୍ଧରେ ବହନ କରି ସେ ପତିତୋଦ୍ଧାରଣ ଉଦ୍ଦେଶ୍ୟରେ ନବଯୁଗର ଘୋଷଣା କରି ବିଶ୍ୱଭ୍ରମଣରେ ବାହାରି ଯାଇଥିଲେ, ସେହିଦିନଠାରୁ ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ ସେ କ୍ଷଣେ ମାତ୍ର ବିଶ୍ରାମ କରିବା ନିମିତ୍ତ ଅବସର ପାଇନାହାନ୍ତି ।  ଅନ୍ୟ କଥା ଦୂରେ ଥାଉ, ଏକାଦିକ୍ରମେ ଅଧଘଣ୍ଟାଏ କାଳ ସେ ସୁଷୁପ୍ତିର ଶାନ୍ତି ଉପଭୋଗ କରିବାରୁ ବଞ୍ଚିତ ହୋଇଥିଲେ । ଡାକ୍ତର ଓ ଶୁଭାନୁଧ୍ୟାୟୀ ବନ୍ଧୁଗଣ ତାଙ୍କୁ ସମ୍ପୂର୍ଣ୍ଣରୂପେ କର୍ମକ୍ଷେତ୍ରରୁ ଅବସର ଗ୍ରହଣ କରି ବିଶ୍ରାମ କରିବା ନିମିତ୍ତ ଅନୁରୋଧ କରୁଥିଲେ । ଗୁରୁତର ମାନସିକ ପରିଶ୍ରମ ବା କୌଣସି ପ୍ରକାର ଗଭୀର ଚିନ୍ତା ଇତ୍ୟାଦିରୁ ବିରତ ହେବାକୁ ପରାମର୍ଶ ଦେଉଥିଲେ; କିନ୍ତୁ ଜଳନ୍ତା ଚୁଲୀ ଉପରର ଫୁଟନ୍ତା ଜଳପାତ୍ରକୁ ସ୍ତବ୍ଧ ହେବା ଲାଗି ଆଦେଶ ଦେବାପରି ସ୍ୱାମୀଜୀଙ୍କ ପାଇଁ ଏଭଳି ପରାମର୍ଶ କେବଳ ହାସ୍ୟକର ବ୍ୟାପାର ଥିଲା ।

## ମଠରେ ରହି ଶିକ୍ଷାଦାନ

ଫେବୃଆରୀ ତିନିତାରିଖ ଦିନ ସ୍ୱାମୀଜୀ ବୈଦ୍ୟନାଥରୁ ପୁନରାୟ ମଠକୁ ଫେରି ଆସିଲେ । ମଠର କାର୍ଯ୍ୟ ସୁଚାରୁରୂପେ ଚାଲିଥିବା ଦେଖି ସେ ଆନନ୍ଦିତ ହେଲେ । ପ୍ରଶ୍ନୋତ୍ତର ସଭା, ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦର୍ଶନଶାସ୍ତ୍ରର ତୁଳନାତ୍ମକ ଆଲୋଚନା, ସଂସ୍କୃତ ଭାଷା ଶିକ୍ଷାଦାନ ଇତ୍ୟାଦି କାର୍ଯ୍ୟ ସ୍ୱାମୀ ତୁରୀୟାନନ୍ଦଜୀଙ୍କ ନେତୃତ୍ୱରେ ସୁନ୍ଦର ରୂପେ ସମ୍ପାଦିତ ହେଉଥିଲା । ଅପର ଦିଗରେ ଧ୍ୟାନ, ତପସ୍ୟା ଆଦିର ବିରାମ ନ ଥିଲା । ସ୍ୱାମୀଜୀ ମଠକୁ ଆସି ସେହିଦିନ ହିଁ ତାଙ୍କ ଗୁରୁଭାଇମାନଙ୍କୁ ଡାକି ଗୋଟିଏ କ୍ଷୁଦ୍ର ସଭା କଲେ । ମହାସମନ୍ୱୟାଚାର୍ଯ୍ୟ ଶ୍ରୀଶ୍ରୀରାମକୃଷ୍ଣଙ୍କ ବାଣୀ ସମଗ୍ର ଭାରତରେ ପ୍ରଚାର କରିବା ନିମିତ୍ତ ତାଙ୍କ ଗୁରୁଭ୍ରାତା ଓ ଶିଷ୍ୟବୃନ୍ଦଙ୍କୁ ଉପଦେଶ ଦେଲେ । ସ୍ୱାମୀ ବିରଜାନନ୍ଦ ଓ ସ୍ୱାମୀ ପ୍ରକାଶାନନ୍ଦ ପୂର୍ବବଙ୍ଗର ଢାକା

ଅଞ୍ଚଳରେ ପ୍ରଚାର କାର୍ଯ୍ୟ କରିବା ପାଇଁ ଆଦିଷ୍ଟ ହେଲେ । ବିରଜାନନ୍ଦଜୀ ବିନୀତ ଭାବରେ ଆପତ୍ତି କରି କହିଲେ, ''ସ୍ୱାମୀଜୀ ! ମୁଁ କିଛି ଜାଣି ନାହିଁ, ଲୋକଙ୍କୁ କ'ଣ କହିବି ?'' ସ୍ୱାମୀଜୀ ତତ୍‌କ୍ଷଣାତ୍ ଗମ୍ଭୀର ହୋଇ କହିଲେ, ''ଯାଅ, କହିବ ଯେ ମୁଁ କିଛି ଜାଣି ନାହିଁ—ଏହା ହିଁ ଗୋଟିଏ ମହତ୍ତମ ବାର୍ତ୍ତା !'' ବିରଜାନନ୍ଦ ପ୍ରଚାର-କାର୍ଯ୍ୟ ଦାୟିତ୍ୱରୁ ଅବ୍ୟାହତି ପାଇବାକୁ ହେଉ, ବା ଅନ୍ତରର ତୀବ୍ର ବୈରାଗ୍ୟ-ବାଣୀ ଅନୁସରଣ କରିବାକୁ ହେଉ, ଶ୍ରୀଗୁରୁଙ୍କ ଚରଣରେ ନିବେଦନ କଲେ ଯେ, ଆଗେ ସାଧନା ବଳରେ ଆତ୍ମସାକ୍ଷାତ୍‌କାର ନ କରି ସେ କିପରି ଲୋକଶିକ୍ଷା କାମରେ ଅଗ୍ରସର ହେବେ ? ତେଣୁ ତାଙ୍କୁ ଆଉ କିଛିଦିନ ସାଧନା କରିବାକୁ ଆଦେଶ ଦିଆଯାଉ ।

ମାନବମିତ୍ର ବିବେକାନନ୍ଦ ଶିଷ୍ୟଙ୍କର ଏହି ମୁକ୍ତିଲାଭ ଆକାଙ୍‌କ୍ଷାକୁ ଧିକ୍‌କାର କରି ଗର୍ଜିଉଠି କହିଲେ, ''ସ୍ୱାର୍ଥପରଙ୍କ ପରି ନିଜ ମୁକ୍ତିପାଇଁ ଚେଷ୍ଟା କଲେ ତୁମେ ନରକକୁ ଯିବ ! ଯଦି ତୁମେ ସେହି ପୂର୍ଣ୍ଣବ୍ରହ୍ମକୁ ଉପଲବ୍‌ଧି କରିବାକୁ ଚାହଁ, ତାହା ହେଲେ ଅନ୍ୟର ମୁକ୍ତି ଲାଗି ସାହାଯ୍ୟ କର; ନିଜ ମୁକ୍ତିଲାଭ ଆକାଙ୍‌କ୍ଷାକୁ ସମୂଳେ ବିନାଶ କରିବା ହିଁ ସର୍ବଶ୍ରେଷ୍ଠ ସାଧନା !'' ସ୍ୱାମୀ ବିବେକାନନ୍ଦଙ୍କ ଶିଷ୍ୟ ଓ ଅନ୍ତରଙ୍ଗ ଭକ୍ତଗଣ ନିଜ ନିଜ ଇହଲୌକିକ କଲ୍ୟାଣ ଚିନ୍ତା କରିବା ଦୂରେ ଥାଉ, ପାରଲୌକିକ କଲ୍ୟାଣଲାଭ ଆଶାରେ ଜଗତର ହିତ-ଚିନ୍ତାରେ ବିମୁଖ ରହିବେ, ଏ ଚିନ୍ତା ସମୂହ ତାଙ୍କ ନିକଟରେ କିପରି ମର୍ମାନ୍ତିକ କ୍ଳେଶଦାୟକ ଥିଲା ! ମୁକ୍ତିଲାଭର ଚେଷ୍ଟାରେ ସଂସାର ଲୋକାଳୟ ତ୍ୟାଗ କରି ଗଭୀର ଅରଣ୍ୟ ବା ଗିରିଗୁହାବାସୀ ସନ୍ନ୍ୟାସୀଙ୍କ ଅଭାବ ତ ଭାରତରେ କୌଣସି ଦିନ ନ ଥିଲା ! ପରକଲ୍ୟାଣ କାମନାରେ ସ୍ୱୀୟ ସାଧନ, ଭଜନ, ମୁକ୍ତି ଚେଷ୍ଟା ଉତ୍ସର୍ଗ କରି କର୍ମପଥରେ ଠିଆ ହେବେ—ଏହିପରି ନିର୍ଭୀକ କର୍ମଯୋଗୀ ସନ୍ନ୍ୟାସୀ ତିଆରି କରିବା ନିମିତ୍ତ ହିଁ ତାଙ୍କ ଆଦର୍ଶ ମଠର ପ୍ରତିଷ୍ଠା ! ଆଚାର୍ଯ୍ୟଦେବ ମୌନ ଶିଷ୍ୟକୁ ସମ୍ବୋଧନ କରି ସ୍ନେହାର୍ଦ୍ର କଣ୍ଠରେ କହିଲେ, ''ବତ୍ସ ! ଫଳାକାଙ୍‌କ୍ଷାଶୂନ୍ୟ ହୋଇ ଜଗତର ହିତ ଲାଗି କର୍ମରେ ଅଗ୍ରସର ହୁଅ । ଯଦି ପର-କଲ୍ୟାଣ କାମନାରେ କର୍ମରେ ଅଗ୍ରସର ହୋଇ ନରକକୁ ବି ଯିବାକୁ ହୁଏ, ସେଥିରେ ବା କ'ଣ ଯାଏ ଆସେ ?''—ଅତଃପର ଶିଷ୍ୟଦ୍ୱୟଙ୍କୁ ସାଙ୍ଗରେ ଧରି ମଠର ଠାକୁରଘରେ ପ୍ରବେଶ କରି ଧ୍ୟାନସ୍ଥ ହେଲେ । ବହୁକ୍ଷଣ ଗଭୀର ଧ୍ୟାନାନ୍ତେ ସେ ଚକ୍ଷୁ ଉନ୍ମୀଳନ କରି କହିଲେ, ''ମୁଁ ମୋ ଶକ୍ତିକୁ ତୁମ ଭିତରେ ସଞ୍ଚାରିତ କରିବି । ଶ୍ରୀଭଗବାନ ସର୍ବଦା ତୁମ ପଛରେ ରହିବେ, କୌଣସି ଚିନ୍ତା କର ନାହିଁ ।''

ସେହିଦିନ ସ୍ୱାମୀଜୀ ଶିଷ୍ୟଦ୍ୱୟଙ୍କୁ ପ୍ରଚାରକାର୍ଯ୍ୟ ସମ୍ବନ୍ଧରେ ନାନାପ୍ରକାର ଉପଦେଶ ଦେଲେ ଏବଂ କେହି ଦୀକ୍ଷା ପ୍ରାର୍ଥନା କରନ୍ତେ, କେଉଁ ମନ୍ତ୍ରରେ ଓ କିପରି ଭାବରେ ଦୀକ୍ଷା ପ୍ରଦାନ କରିବାକୁ ହେବ, ତାହା ମଧ୍ୟ ଶିଖାଇ ଦେଲେ । ନବଶକ୍ତି ବଳରେ ବଳୀୟାନ ଶିଷ୍ୟଦ୍ୱୟ ପରଦିବସରେ ଶ୍ରୀଗୁରୁଙ୍କ ପବିତ୍ର ପଦଧୂଳି ମସ୍ତକରେ

ଧାରଣ କରି ପ୍ରଚାର ଉଦ୍ଦେଶ୍ୟରେ ଢାକା ଯାତ୍ରା କଲେ । ସ୍ୱାମୀଜୀ ଫେବୃୟାରୀ ସାତ ତାରିଖ ଦିନ ସ୍ୱାମୀ ତୁରୀୟାନନ୍ଦ ଓ ସଦାନନ୍ଦଙ୍କୁ ପ୍ରଚାରକାର୍ଯ୍ୟରେ ଗୁଜରାଟ ପଠାଇଲେ ।

ସ୍ୱାମୀଜୀ ବେଲୁଡ଼ ମଠରେ ଅବସ୍ଥାନ କରୁଥିବା ବିଷୟ ଜାଣି ପ୍ରତ୍ୟହ ବହୁ କଲେଜ ଛାତ୍ର ଏବଂ ଶିକ୍ଷିତ ଯୁବକ ତାଙ୍କର ଦର୍ଶନ ପାଇଁ ଆସୁଥିଲେ । ସ୍ୱାମୀଜୀ ନିଜ ଦୈହିକ ଅସୁସ୍ଥତା ପ୍ରତି ଦୃଷ୍ଟି ନ ଦେଇ ଉତ୍ସାହ ସହକାରେ ସେମାନଙ୍କ ସହିତ ଧର୍ମ, ଦର୍ଶନ, ସାହିତ୍ୟ, ବିଜ୍ଞାନ ଇତ୍ୟାଦି ଆଲୋଚନା କରୁଥିଲେ । ଯେଉଁଥିରେ ଏହି ଯୁବକଗଣ ଦେଶସେବାରେ ଆତ୍ମନିୟୋଗ କରିବାକୁ ବର୍ତ୍ତମାନ ଜାତୀୟ ଜୀବନର ଶ୍ରେଷ୍ଠତମ ବ୍ରତ ବୋଲି ପ୍ରାଣେ ପ୍ରାଣେ ଅନୁଭବ କରି ସେହି ଆଦର୍ଶରେ ଜୀବନ ଗଠନ କରିବେ, ସେଥିନିମିତ୍ତ ସେ ଓଜସ୍ୱିନୀ ଭାଷାରେ ସେବା-ଧର୍ମର ମହିମା ଶତମୁଖରେ କୀର୍ତ୍ତନ କରୁଥିଲେ । ଦେଶର ଦୁର୍ଦ୍ଦଶା ଆଲୋଚନା କରିବାକୁ ଯାଇ ବେଳେ ବେଳେ ଭାବର ଆତିଶଯ୍ୟ ହେତୁ ଅଶ୍ରୁ ବିସର୍ଜନ କରୁଥିଲେ, କେବେ ଅବା ଗମ୍ଭୀର ଭାବରେ ଗଭୀର ଚିନ୍ତାମଗ୍ନ ରହୁଥିଲେ । ଅଧିକାଂଶ ଯୁବକଙ୍କ ଶାରୀରିକ ଦୌର୍ବଲ୍ୟ, ନୈତିକ ଚରିତ୍ରହୀନତା ଓ ଇଂରେଜୀ ଶିକ୍ଷା ପ୍ରଭାବରେ ମସ୍ତିଷ୍କ-ବିକୃତି ଲକ୍ଷ୍ୟ କରି ସମୟେ ସମୟେ ସ୍ୱାମୀଜୀ କ୍ଷୁବ୍ଧ ହୋଇ ତୀବ୍ର ମନ୍ତବ୍ୟ ପ୍ରକାଶ କରୁଥିଲେ, ''ଦୁଇ ହଜାର ବୀର-ହୃଦୟ, ବିଶ୍ୱାସୀ, ଚରିତ୍ରବାନ ଓ ମେଧାବୀ ଯୁବକ ଏବଂ ତିରିଶି କୋଟି ଟଙ୍କା ହେଲେ ମୁଁ ଭାରତକୁ ନିଜ ଗୋଡ଼ରେ ଠିଆ କରାଇ ପାରିବି ।''—ଏହି ପ୍ରକାର ମନ୍ତବ୍ୟ ମଧ୍ୟ ସେ ପ୍ରାୟ ପ୍ରକାଶ କରୁଥିଲେ ଏବଂ ଏହାର ଅଭାବରେ ତାଙ୍କ ଜୀବନର ଉଦ୍ଦେଶ୍ୟ ବିଫଳ ହୋଇଯାଉଛି, ଏହିପରି ଗୋଟିଏ ନୈରାଶ୍ୟ ମଧ୍ୟ ସମୟେ ସମୟେ ତାଙ୍କୁ ଆଚ୍ଛନ୍ନ ଓ ବ୍ୟାକୁଳ କରି ପକାଉଥିଲା; କିନ୍ତୁ ପର୍ବତପ୍ରମାଣ ବାଧାବିଘ୍ନ ଏବଂ ନୈରାଶ୍ୟର ଘନ ଅନ୍ଧକାର ମଧ୍ୟରେ ରାସ୍ତା ଖୋଜି ବାହାର କରିବାକୁ ହେବ— ତାଙ୍କ ନିଃସ୍ୱାର୍ଥ ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ଯେଉଁ କେତେଜଣ ଜଗତର ମଙ୍ଗଳ ପାଇଁ ଆତ୍ମସମର୍ପଣ କରିଥିଲେ, ସେହି ମୁଷ୍ଟିମେୟ ନରନାରୀଙ୍କୁ ହିଁ 'ଅଗ୍ରଗାମୀ ନିରାଶ ସୈନ୍ୟଦଳ' ରୂପେ ଗଢ଼ିବାକୁ ହେବ—ଏହା ସେ ପ୍ରାଣେ ପ୍ରାଣେ ଉପଲବ୍‌ଧି କରୁଥିଲେ । ଅପରାହ୍ନରେ ବୀର ସନ୍ନ୍ୟାସୀ ଧୀରପଦ ନିକ୍ଷେପରେ ଭାଗୀରଥି କୂଳରେ ଅବସ୍ଥିତ ମଠପ୍ରାଙ୍ଗଣରେ ଭ୍ରମଣ କରୁଥିବାବେଳେ ତାଙ୍କ ଗଭୀର ଚିନ୍ତାର ଗୋଟିଏ ଦୁଇଟି କ୍ଷୁଦ୍ର ଅଂଶ ସମୟେ ସମୟେ ବିକ୍ଷୁବ୍‌ଧ ହୃଦୟର ଅଭ୍ୟନ୍ତରରୁ ଅଜ୍ଞାତସାରରେ ବାହାରି ଆସୁଥିଲା । ଦିନେ ଭ୍ରମଣ କରୁଥିବା ବେଳେ ସମ୍ମୁଖରେ କେତେଜଣ ବ୍ରହ୍ମଚାରୀ ଓ ସନ୍ନ୍ୟାସୀଙ୍କୁ ଦର୍ଶନ କରି ସହସା ସେ କହି ପକାଇଲେ, ''ଶୁଣ ବତ୍ସଗଣ ! ଶ୍ରୀରାମକୃଷ୍ଣ ଆସିଥିଲେ, ଜଗତର କଲ୍ୟାଣ କାମନାରେ ଦେହ ବିସର୍ଜନ କରି ଯାଇଛନ୍ତି । ମୁଁ, ତୁମେ, ପ୍ରତ୍ୟେକଙ୍କୁ ହିଁ ଜଗତର କଲ୍ୟାଣ ଲାଗି ଦେହ ବିସର୍ଜନ କରିବାକୁ ହେବ । ବିଶ୍ୱାସ କର—ଆମମାନଙ୍କ

ହୃଦୟମୋକ୍ଷିତ ପ୍ରତ୍ୟେକ ରକ୍ତବିନ୍ଦୁରୁ ଭବିଷ୍ୟତରେ ମହା ମହା କର୍ମବୀରଗଣ ଉଦ୍ଭୁତ ହୋଇ ଜଗତକୁ ଆଲୋଡ଼ିତ କରିଦେବେ ।'' କଳ୍ପନାପ୍ରିୟ ଭାବୁକ ସନ୍ୟାସୀ ଏହା ବିଶ୍ୱାସ କରୁଥିଲେ ଏବଂ ସେହି କାରଣରୁ ବକ୍ତୃତା ଓ କଥାବାର୍ତ୍ତା ବେଳେ ପ୍ରାୟ କହୁଥିଲେ, ''I want to preach a man-making religion — ମୁଁ ଏପରି ଏକ ଧର୍ମ ପ୍ରଚାର କରିବାକୁ ଚାହେଁ, ଯହିଁରେ ମଣିଷ ତିଆରି ହେବେ !'' ସେହି କାରଣରୁ ସ୍ୱାମୀଜୀ ବକ୍ତୃତା ଦେବା ଛାଡ଼ି ଅକ୍ଲାନ୍ତ ଚେଷ୍ଟାରେ ମଠର ମୁଷ୍ଟିମେୟ ସନ୍ୟାସୀ ଓ ବ୍ରହ୍ମଚାରୀମାନଙ୍କୁ ଗଠନ କରିବା ଲାଗି ପ୍ରାଣପଣ ଉଦ୍ୟମ କରିଥିଲେ । ଦିନେ ଜଣେ ଶିଷ୍ୟ ତାଙ୍କୁ ପଚାରିଲେ, ''ସ୍ୱାମୀଜୀ ! ଆପଣ ଅସାଧାରଣ ବାଗ୍ମିତାବଳରେ ଇଉରୋପ ଓ ଆମେରିକାକୁ ମତାଇ ସାରି ନିଜ ଜନ୍ମଭୂମିରେ ଚୁପ୍ ହୋଇ ବସିବାର କାରଣ କ'ଣ ?'' ଉତ୍ତରରେ ଆଚାର୍ଯ୍ୟଦେବ କହିଲେ, ''ଏ ଦେଶରେ ଆଗ ground (କ୍ଷେତ୍ର) ପ୍ରସ୍ତୁତ କରିବାକୁ ହେବ । ପାଶ୍ଚାତ୍ୟ ମାଟି ଖୁବ୍ ଉର୍ବର । ଅନ୍ନାଭାବ ହେତୁ କ୍ଷୀଣ-ଦେହ, କ୍ଷୀଣ-ମନ, ରୋଗ-ଶୋକ-ପରିତାପର ଜନ୍ମଭୂମି ଭାରତରେ ବକ୍ତୃତା ଦେଲେ କ'ଣ ହେବ ? ପ୍ରଥମେ କେତେଗୁଡ଼ିଏ ତ୍ୟାଗୀ-ପୁରୁଷ ଆବଶ୍ୟକ, ଯେଉଁମାନେ ନିଜ ସଂସାରର କଥା ନ ଭାବି ପର ପାଇଁ ଜୀବନ ଉତ୍ସର୍ଗ କରିବାକୁ ପ୍ରସ୍ତୁତ ହେବେ । ମୁଁ ମଠ ସ୍ଥାପନ କରି କେତେଜଣ ବାଳ-ସନ୍ୟାସୀଙ୍କୁ ଏହିପରି ଭାବରେ ତିଆରି କରୁଛି । ଶିକ୍ଷା ଶେଷ ହେଲେ ଏମାନେ ଦ୍ୱାରେ ଦ୍ୱାରେ ସମସ୍ତଙ୍କୁ ସେମାନଙ୍କ ଶୋଚନୀୟ ଅବସ୍ଥା ସମ୍ବନ୍ଧରେ ବୁଝାଇବେ । ଏହି ଅବସ୍ଥାର ଉନ୍ନତି କିପରି ହୋଇପାରିବ, ସେ ବିଷୟରେ ଉପଦେଶ ଦେବେ ଏବଂ ସଙ୍ଗେ ସଙ୍ଗେ ଧର୍ମର ମହାନ୍ ସତ୍ୟଗୁଡ଼ିକ ସହଜ ଭାଷାରେ ପାଣିପରି ପରିଷ୍କାର ଭାବରେ ସେମାନଙ୍କୁ ବୁଝାଇ ଦେବେ । ଦେଖୁଛ ନା, ପୂର୍ବ ଆକାଶରେ ଅରୁଣୋଦୟ ହୋଇଛି, ସୂର୍ଯ୍ୟ ଉଦୟ ହେବାକୁ ଆଉ ଡେରି ନାହିଁ । ତୁମେ ଏହି ସମୟରେ ଅଣ୍ଟାଭିଡ଼ି ଲାଗିପଡ଼ — ସଂସାର କରି କ'ଣ ହେବ ? ତୁମର ବର୍ତ୍ତମାନ କାମ ହେଉଛି, ଦେଶେ ଦେଶେ ଗ୍ରାମେ ଗ୍ରାମେ ଦେଶର ଲୋକଙ୍କୁ ବୁଝାଇ ଦେବା — ଆଉ ଅଳସୁଆ ହୋଇ ବସିରହିଲେ ଚଳିବ ନାହିଁ; ଶିକ୍ଷାହୀନ, ଧର୍ମହୀନ, ବର୍ତ୍ତମାନ ଅବନତି ସମ୍ବନ୍ଧରେ ସେମାନଙ୍କୁ ବୁଝାଇ ଦେଇ କହିବ, 'ଭାଇମାନେ, ଉଠ, ଜାଗ, କେତେଦିନ ଏପରି ଶୋଇ ରହିଥିବ ?' ଆଉ ଶାସ୍ତ୍ରର ମହାନ୍ ସତ୍ୟଗୁଡ଼ିକୁ ସରଳ କରି ସେମାନଙ୍କୁ ବୁଝାଇ ଦିଅ । ଏତେଦିନ ଏ ଦେଶର ବ୍ରାହ୍ମଣମାନେ ଧର୍ମକୁ ଏକଚାଟିଆ କରି ବସିଥିଲେ । କାଳର ସ୍ରୋତରେ ତାହା ଯେତେବେଳେ ଆଉ ତିଷ୍ଠିଲା ନାହିଁ, ସେତେବେଳେ ସେହି ଧର୍ମକୁ ଦେଶର ସମସ୍ତେ ଯେପରି ପାଆନ୍ତି, ସେଥିଲାଗି ବ୍ୟବସ୍ଥା କର । ସମସ୍ତଙ୍କୁ ବୁଝାଅ, ବ୍ରାହ୍ମଣମାନଙ୍କ ପରି ତୁମର ମଧ୍ୟ ଧର୍ମ ଉପରେ ସମାନ ଅଧିକାର ଅଛି । ଆଚଣ୍ଡାଳଙ୍କୁ ଏହି ମନ୍ତ୍ରରେ ଦୀକ୍ଷିତ କର । ଆଉ ସହଜ କଥାରେ ସେମାନଙ୍କୁ କୃଷି, ବ୍ୟବସାୟ, ବାଣିଜ୍ୟ ପ୍ରଭୃତି ଗୃହସ୍ଥ ଜୀବନର ଅତ୍ୟାବଶ୍ୟକ

ବିଷୟଗୁଡ଼ିକ ସମ୍ବନ୍ଧରେ ଉପଦେଶ ଦିଅ । ନଚେତ୍ ତୁମ ଲେଖାପଢ଼ାକୁ ଧିକ୍, ଆଉ ତୁମ ବେଦ ବେଦାନ୍ତ ପଢ଼ିବା ଧିକ୍; ଲାଗିଯାଅ କେତେଦିନ ପାଇଁ ଅବା ଜୀବନ ? ଜଗତକୁ ଯେତେବେଳେ ଆସିଛ, ଗୋଟିଏ ଦାଗ ରଖିଯାଅ । ତା' ନ ହେଲେ ଗଛ ଓ ପଥର ତ ଜନ୍ମ ନେଉଛନ୍ତି, ମରୁଛନ୍ତି—ଏହିଭଳି ଜନ୍ମ ଲଭି ମରିବାକୁ ମଣିଷର ଇଚ୍ଛା ହୁଏ କି ? ମୋତେ କାର୍ଯ୍ୟରେ ଦେଖାଇ ଦିଅ, ତୁମ ବେଦାନ୍ତ ପଢ଼ା ସାର୍ଥକ ହୋଇଛି ବୋଲି । ସମସ୍ତଙ୍କୁ ଏହି କଥା ଶୁଣାଅ—'ତୁମ ଭିତରେ ଅନନ୍ତ ଶକ୍ତି ରହିଛି । ସେହି ଶକ୍ତିକୁ ଜଗାଅ ।' ନିଜର ମୁକ୍ତି ହେଲେ କ'ଣ ହେବ ? ମୁକ୍ତିକାମନା ତ ମହା ସ୍ୱାର୍ଥପରତା । ଧ୍ୟାନ ଛାଡ଼ିଦିଅ, ସେ ମୁକ୍ତି-ଚିନ୍ତା ପରିହାର କର—ମୁଁ ଯେଉଁ କାମରେ ଲାଗିଛି, ସେହି କାମରେ ଲାଗିଯାଅ । ତୁମେ ଏହି ପରି ଆଗେ ପ୍ରସ୍ତୁତ କର; ମୋ ପରି ହଜାର ହଜାର ବିବେକାନନ୍ଦ ପରେ ବକ୍ତୃତା କରିବା ଲାଗି ନରଲୋକକୁ ଶରୀର ଧରି ଆସିବେ, ସେଥିପାଇଁ ଚିନ୍ତା ନାହିଁ । ଏହି ଦେଖୁନାହଁ, ଯେଉଁମାନେ ଆଗେ ଭାବୁଥିଲେ ଯେ, ସେମାନଙ୍କର କୌଣସି ଶକ୍ତି ନାହିଁ ସେହିମାନେ ଏବେ ସେବାଶ୍ରମ, ଅନାଥାଶ୍ରମ, ଦୁର୍ଭିକ୍ଷ-ପାଣ୍ଠି ଇତ୍ୟାଦି କେତେ କ'ଣ ଖୋଲୁଛନ୍ତି ? ଦେଖୁ ନାହଁ, ନିବେଦିତା ଇଂରେଜ ଝିଅ ହୋଇ ମଧ୍ୟ ତୁମ୍ଭମାନଙ୍କ ସେବା କରି ଶିଖିଛି ! ଆଉ ତୁମେ ନିଜ ଦେଶର ଲୋକଙ୍କ ପାଇଁ ଏହା କରିପାରିବ ନାହିଁ ? ଯେଉଁଠାରେ ମହାମାରୀ ହେଉଛି, ଯେଉଁଠାରେ ଲୋକ ଦୁଃଖ ପାଉଛନ୍ତି, ଯେଉଁଠାରେ ଦୁର୍ଭିକ୍ଷ ପଡ଼ିଛି, ସେଠାକୁ ଚାଲି ଯା, ଚାଲି ଯା ସେଠାକୁ । ହୁଏତ ମରିଯିବୁ ! ତୁମ ମୋ ପରି କେତେ କୀଟ ଜନ୍ମ ନେଉଛନ୍ତି, ମରୁଛନ୍ତି; ସେଥିରେ ଜଗତର କ'ଣ ଯାଏ ଆସେ ? ଗୋଟିଏ ମହତ୍ ଉଦ୍ଦେଶ୍ୟ ନେଇ ମର । ନିଶ୍ଚେ ତ ମରିବ, ତେବେ ଭଲ ଉଦ୍ଦେଶ୍ୟ ଲାଗି ମରିବ ନାହିଁ କାହିଁକି ? ଏହି ଭାବଧାରା ଘରେ ଘରେ ପ୍ରଚାର କର, ନିଜର ଓ ଦେଶର ମଙ୍ଗଳ ହେବ । ତୁମେ ହିଁ ଦେଶର ଆଶା-ଭରସା । ତୁମକୁ କର୍ମହୀନ ଦେଖିଲେ ମୋତେ କଷ୍ଟ ଲାଗୁଛି । ଲାଗି ଯା, ଲାଗି ଯା । ଡେରି କରନା, ମୃତ୍ୟୁ ତ ଦିନକୁ ଦିନ ନିକଟ ହୋଇ ଆସୁଛି ! ଆଉ ପରେ କରିବ ବୋଲି ଭାବି ବସି ରହ ନାହିଁ—ତା' ହେଲେ କିଛି ହେବ ନାହିଁ ।'' (ସ୍ୱାମୀଜୀ-ଶିଷ୍ୟ ସମ୍ବାଦ)

କଲିକତା କଥା ଛାଡ଼ିଦେଲେ ବି ବଙ୍ଗ ପ୍ରଦେଶର ବିଭିନ୍ନ ସ୍ଥାନରୁ ଅନେକ ଲୋକ ସ୍ୱାମୀଜୀଙ୍କ ଶ୍ରୀଚରଣ ଦର୍ଶନ ଲାଗି ବେଲୁଡ଼ ମଠକୁ ଆସୁଥିଲେ । ସେ କାହାର ଧର୍ମ-ସମ୍ବନ୍ଧୀୟ ସମସ୍ୟା ସମାଧାନ କରି ଦେଉଥିଲେ, କେଉଁ ଭାଗ୍ୟବାନଙ୍କୁ ଶିଷ୍ୟରୂପେ ଗ୍ରହଣ କରି କୃତାର୍ଥ କରୁଥିଲେ । ମାନବ ମଧ୍ୟରେ ସର୍ବଶକ୍ତିମାନ୍ ଆତ୍ମାର ସୁପ୍ତ ମହିମାକୁ ଜାଗ୍ରତ କରିବା ଆଗ୍ରହରେ ମହାପୁରୁଷ ସର୍ବଦା ପ୍ରସ୍ତୁତ ଥିଲେ । ପାତ୍ରାପାତ୍ର ବିଚାର ନାହିଁ, ଧନୀ-ଦରିଦ୍ର ଭେଦ ନାହିଁ, ପଣ୍ଡିତ-ମୂର୍ଖ ସମସ୍ତେ ହିଁ ତାଙ୍କ ନିକଟରେ ସମାନ ଆଦର ଓ ଯତ୍ନ ପାଉଥିଲେ । କେତେବେଳେ ଅବା ପ୍ରଶ୍ନକର୍ତ୍ତାଙ୍କର ଜଟିଳ ଦାର୍ଶନିକ ସମସ୍ୟା ମୀମାଂସା କରୁଥିଲେ; କେତେବେଳେ ବା

ଭାରତର ଆର୍ଥିକ ଓ ଲୌକିକ ଉନ୍ନତି କେଉଁ ପ୍ରକାର ସମ୍ଭବ ହୋଇପାରେ, ତାହା ଶ୍ରୋତୃବୃନ୍ଦଙ୍କୁ ବୁଝାଇ ଦେଉଥିଲେ । ପୁଣି କେତେବେଳେ ଅବା ବ୍ରହ୍ମଚାରୀମାନଙ୍କୁ ସଂଯମ-ସାଧନା ଲାଗି ଉତ୍ସାହିତ କରୁଥିଲେ । ନିୟମର ସାମାନ୍ୟ ତ୍ରୁଟିକୁ ମଧ୍ୟ କ୍ଷମା ନ କରି ତୀବ୍ର ଭର୍ତ୍ସନା କରୁଥିଲେ, ପୁଣି ପର ମୁହୂର୍ତ୍ତରେ ହୁଏତ ସମସ୍ତଙ୍କ ସହିତ ମିଶି ଆନନ୍ଦରେ ମଠର ଜଙ୍ଗଲ ସଫା କରୁଥିଲେ । ଧର୍ମୋପଦେଶ ପ୍ରଦାନଠାରୁ ଝାଡୁ ଧରି ଆବର୍ଜନା ପରିଷ୍କାର କରିବା ପର୍ଯ୍ୟନ୍ତ ପ୍ରତ୍ୟେକ କାର୍ଯ୍ୟ ତାଙ୍କ ଦୃଷ୍ଟିରେ ସମାନ ଥିଲା — ସବୁ ହିଁ ପ୍ରଭୁଙ୍କ କାମ !

## ସ୍ୱାମୀଜୀ ଓ ନାଗ ମହାଶୟ

ଦିନେ ବିବେକାନନ୍ଦ ସୁର-ଗୁରୁ ବୃହସ୍ପତିଙ୍କ ପରି ଶିଷ୍ୟମଣ୍ଡଳୀ ପରିବେଷ୍ଟିତ ହୋଇ ଶାସ୍ତ୍ରବ୍ୟାଖ୍ୟାରେ ନିଯୁକ୍ତ ଅଛନ୍ତି, ଏହି ସମୟରେ ଶୁକ୍ଳକର୍ମା ସାଧୁ ନାଗ ମହାଶୟ ତାଙ୍କୁ ଦର୍ଶନ କରିବା ଆଶାରେ ମଠରେ ପହଞ୍ଚିଲେ । ଶ୍ରୀରାମକୃଷ୍ଣଙ୍କର ଶ୍ରେଷ୍ଠତମ ସୃଷ୍ଟି ଦୁହିଁଙ୍କର ବହୁଦିନପରେ ଆନନ୍ଦର ସମ୍ମିଳନୀ ହେଲା । ଜଣେ ସନ୍ନ୍ୟାସର ଚରମ ଆଦର୍ଶ — ଅପର ମୂର୍ତ୍ତିମାନ୍ ଗାର୍ହସ୍ଥ୍ୟଧର୍ମ !! ସ୍ୱାମୀଜୀ ପ୍ରଣାମ କରିବା ପରେ ପଚାରିଲେ, ''ଭଲ ଅଛନ୍ତି ତ ?'' ନାଗ ମହାଶୟ ଉତ୍ତର ଦେଲେ, ''ଆପଣଙ୍କ ଦର୍ଶନ ପାଇଁ ଆସିଲି । ଜୟ ଶଙ୍କର ! ସାକ୍ଷାତ୍ ଶିବ-ଦର୍ଶନ ହେଲା ।''

ସ୍ୱାମୀଜୀ କୁଶଳ ପ୍ରଶ୍ନ ପଚାରୁଛନ୍ତି; କିନ୍ତୁ କିଏ ଉତ୍ତର ଦେବ ? ହାତ ଯୋଡ଼ି ଠିଆ ହୋଇଥିବା ଭାବମୁଗ୍ଧ ମହାପୁରୁଷ ଯେ ଅତୃପ୍ତ ନୟନରେ ସାକ୍ଷାତ୍ ଶଙ୍କର ଦର୍ଶନ କରୁଥିଲେ ! ଦେହଜ୍ଞାନ ଥିଲେ ସିନା 'ଭଲ ଅଛି' ବୋଲି କହନ୍ତେ ! 'ପାଉଁଶ ଓ ହାଡ଼-ମାଂସ କଥା' ତାଙ୍କର କ'ଣ ଆଉ ମନେ ଅଛି ? ତାଙ୍କ ମନ ଯେ ସେତେବେଳେ ଶ୍ରୀରାମକୃଷ୍ଣଙ୍କ ଲୀଳା-ହ୍ରଦରେ ପୂର୍ଣ୍ଣ ପ୍ରସ୍ଫୁଟିତ 'ସହସ୍ର-ଦଳପଦ୍ମ'ର ଅପୂର୍ବ ମାଧୁରୀ ନୟନମୟ ହୋଇ ପାନ କରୁଛି !! ଉତ୍ତର ଦେବାକୁ ଅବସର କାହିଁ ?

ଆଚାର୍ଯ୍ୟଦେବ, ସ୍ୱାମୀ ପ୍ରେମାନନ୍ଦଜୀଙ୍କୁ ପ୍ରସାଦ ଆଣି ନାଗ ମହାଶୟଙ୍କୁ ଦେବା ଲାଗି ଆଦେଶ ଦେଲେ । ନାଗ ମହାଶୟ କହି ଉଠିଲେ, ''ପ୍ରସାଦ ! ପ୍ରସାଦ ! ଆପଣଙ୍କ ଦର୍ଶନ ଲାଭ କରି ମୋର ଭବ-କ୍ଷୁଧା ଦୂର ହୋଇଯାଇଛି । x x x

ସ୍ୱାମୀଜୀ — (ସମସ୍ତଙ୍କୁ ଚାହିଁ)''ଦେଖୁଛ ! ନାଗ ମହାଶୟଙ୍କୁ ! ଏ ଗୃହସ୍ଥ, କିନ୍ତୁ ଜଗତ ଅଛି କି ନାହିଁ, ଏହାଙ୍କର ସେ ଜ୍ଞାନ ନାହିଁ । ସର୍ବଦା ତନ୍ମୟ ହୋଇ ରହିଛନ୍ତି । (ନାଗ ମହାଶୟଙ୍କୁ ଚାହିଁ) ଏହିସବୁ ବ୍ରହ୍ମଚାରୀଙ୍କୁ ଓ ମୋତେ ମଧ୍ୟ ଠାକୁରଙ୍କ କଥା କିଛି କହନ୍ତୁ ।''

ନାଗ ମହାଶୟ — ''କ'ଣ କହୁଛନ୍ତି ! ମୁଁ କ'ଣ କହିବି ? ମୁଁ ଆପଣଙ୍କୁ ଦେଖିବାକୁ ଆସିଛି; ଠାକୁରଙ୍କ ଲୀଳାର ମହାବୀରଙ୍କ ଦର୍ଶନ ପାଇବାକୁ ଆସିଛି । ଠାକୁରଙ୍କ କଥା ବର୍ତ୍ତମାନ ଲୋକେ ବୁଝିବେ ! ଜୟ ରାମକୃଷ୍ଣ ! ଜୟ ରାମକୃଷ୍ଣ !!''

ସ୍ୱାମୀଜୀ—"ଆପଣ ହିଁ ଯଥାର୍ଥ ରାମକୃଷ୍ଣଦେବଙ୍କୁ ଚିହ୍ନିଛନ୍ତି । ଆମେ ବୁଲି ବୁଲି ମଲୁଣି ।"

ନାଗ ମହାଶୟ—"ଛିଃ ! ଏ କଥା କ'ଣ କହୁଛନ୍ତି ! ଆପଣ ଠାକୁରଙ୍କ ଛାୟା ! ଏପଟ ପୁଣି ସେପଟ, ଯାହାର ଆଖି ଅଛି, ସେ ଦେଖୁ ।"

ସ୍ୱାମୀଜୀ—"ଏହି ଯେ ମଠ ଫଠ ହେଉଛି, ଏହା ଠିକ୍ ଅଛି ତ ?"

ନାଗ ମହାଶୟ—"ମୁଁ କ୍ଷୁଦ୍ର ଜୀବ, ମୁଁ କ'ଣ ବୁଝିବି ? ଆପଣ ଯାହା କରୁଛନ୍ତି, ତଦ୍ୱାରା ଜଗତର ମଙ୍ଗଳ ହେବ, ଏ କଥା ମୁଁ ନିଶ୍ଚିତ ଭାବରେ ଜାଣେ ।"

X X X

ସ୍ୱାମୀଜୀ—"ମୁଁ ଥରେ ଆପଣଙ୍କ ଅଞ୍ଚଳକୁ ଯିବି ।"

ନାଗ ମହାଶୟ ଆନନ୍ଦରେ ଉନ୍ମତ୍ତ ହୋଇ କହିଲେ, "ଏଭଳି ଦିନ କ'ଣ ଆସିବ ? ଆମ ଅଞ୍ଚଳ କାଶୀ ହୋଇଯିବ । ସେ ଭାଗ୍ୟ ଆମର ହେବ କି ?"

ସ୍ୱାମୀଜୀ—"ମୋର ତ ଇଚ୍ଛା ଅଛି । ମା' ନେଇଗଲେ ହେଲା ।"

ନାଗ ମହାଶୟ—"ଆପଣଙ୍କୁ କିଏ ବୁଝିବ ? ଦିବ୍ୟଦୃଷ୍ଟି ନ ଖୋଲିଲେ ଚିହ୍ନିବା କ୍ଷମତା କାହାର ଅଛି ? ଏକମାତ୍ର ଠାକୁର ହିଁ ଚିହ୍ନିଥିଲେ । ଆଉ ସମସ୍ତେ ତାଙ୍କ କଥାରେ ବିଶ୍ୱାସ କରନ୍ତି ମାତ୍ର, କେହି ବୁଝିପାରି ନାହାନ୍ତି ।"

ସ୍ୱାମୀଜୀ—"ମୋର ବର୍ତ୍ତମାନ ଏକମାତ୍ର ଇଚ୍ଛା, ଦେଶଟାକୁ ଜାଗ୍ରତ କରିବି । ମହାବୀର ଯେପରି କି ନିଜ ଶକ୍ତିମତ୍ତାରେ ଅନାସ୍ଥାବାନ ହୋଇ ଶୋଇଛି— ସୋର୍ ନାହିଁ, ଶବ୍ଦ ନାହିଁ ! ସନାତନ ଧର୍ମ ଭାବରେ ଏହାକୁ କୌଣସି ମତେ ଜଗାଇ ପାରିଲେ ବୁଝିବି, ଠାକୁର ଓ ଆମମାନଙ୍କର ଆସିବା ସାର୍ଥକ ହେଲା ! କେବଳ ଏଇ ଇଚ୍ଛାଟି ଅଛି—ମୁକ୍ତି-ଫୁକ୍ତି ସବୁ ତୁଚ୍ଛ ମନେ ହେଉଛି । ଆପଣ ଆଶୀର୍ବାଦ କରନ୍ତୁ, ଯେପରି କୃତକାର୍ଯ୍ୟ ହୁଏ ।"

ନାଗ ମହାଶୟ—"ଠାକୁରଙ୍କର ଆଶୀର୍ବାଦ । ଆପଣଙ୍କ ଇଚ୍ଛାର ଗତିରୋଧ କରି ପାରିବ ଏପରି କାହାରିକୁ ଦେଖି ନାହିଁ । ଯାହା ଇଚ୍ଛା କରିବେ, ତାହା ହିଁ ହେବ ।"

ସ୍ୱାମୀଜୀ—"କାହିଁ, କିଛି ହେଉ ନାହିଁ ତ ? ତାଙ୍କର ଇଚ୍ଛା ନ ଥିଲେ କିଛି ହେବ ନାହିଁ ।"

ନାଗ ମହାଶୟ—"ତାଙ୍କର ଇଚ୍ଛା, ଆଉ ଆପଣଙ୍କ ଇଚ୍ଛା ଏକ ହୋଇ ଯାଇଛି । ଆପଣଙ୍କର ଯାହା ଇଚ୍ଛା, ଠାକୁରଙ୍କର ବି ସେଇ ଇଚ୍ଛା । ଜୟ ରାମକୃଷ୍ଣ ! ଜୟ ରାମକୃଷ୍ଣ !"

X X X

ସ୍ୱାମୀଜୀ—"ନାଗ ମହାଶୟ ! କ'ଣ କରୁଛି, କ'ଣ ନ କରୁଛି, କିଛି ଭାବି ପାରୁନି । ବେଳେ ବେଳେ ଗୋଟିଏ ଆଡ଼କୁ ଝୁଙ୍କ ଆସୁଛି, ସେହିପରି କାମ କରି ଯାଉଛି, ଏଥିରେ ଭଲ ହେଉଛି କି ଖରାପ ହେଉଛି, କିଛି ବୁଝିପାରୁ ନାହିଁ ।"

ନାଗ ମହାଶୟ—''ଠାକୁର ଯେ କହିଥିଲେ, 'ଚାବି ଦିଆହୋଇ ରହିଲା ।' ସେଥିପାଇଁ ଏବେ ବୁଝିବାକୁ ଦେଉନାହାନ୍ତି । ବୁଝିଗଲେ ଲୀଳା ସରିଯିବ ।''

ନାଗ ମହାଶୟଙ୍କ କଥା ଶୁଣି ସ୍ୱାମୀଜୀ ଚିନ୍ତାମଗ୍ନ ହେଲେ । କଳ୍ପନା କର, ବେଲୁଡ଼ର ପୁଣ୍ୟ ମଠ ମନ୍ଦିରରେ ପରସ୍ପର ସମ୍ମୁଖୀନ ଦୁଇଟି ମହାପୁରୁଷ-ମୂର୍ତ୍ତି । ବିଶ୍ୱବିଜୟୀ ସନ୍ନ୍ୟାସୀଶ୍ରେଷ୍ଠ ଦୀନ ଭାବରେ ତତୋଽଧିକ ଦୀନ ଗୃହସ୍ଥୋତ୍ତମଙ୍କ ନିକଟରେ ଆଶୀର୍ବାଦ ଭିକ୍ଷା କରୁଛନ୍ତି ! ଯେଉଁ ବିବେକାନନ୍ଦ ଜାତି, ବର୍ଣ୍ଣ, ନରନାରୀ ନିର୍ବିଶେଷରେ ପ୍ରତ୍ୟେକଙ୍କୁ ସମାନ ଭାବରେ ସନାତନ-ଧର୍ମ-ସାଗର-ମଥିତ ଅଦ୍ୱୈତାମୃତ ପରିବେଷଣ କରିଛନ୍ତି ଓ କରୁଛନ୍ତି, ସେ ତାଙ୍କ କାମ ଭଲ କି ମନ୍ଦ, ସେ ସମ୍ବନ୍ଧରେ ସନ୍ଦିହାନ ହୋଇ କହୁଛନ୍ତି, 'ମୁଁ କିଛି ବୁଝିପାରୁ ନାହିଁ !' ଏହି ବୀର ସନ୍ନ୍ୟାସୀ ଅନ୍ତର୍ନିହିତ ପ୍ରବଳତମ ଆତ୍ମଶକ୍ତି ପ୍ରେରଣାରେ ଗର୍ବୋଦ୍ଦୃପ୍ତ ଶିର ଟେକି ସିଂହ ସଂଯତ ଶୌର୍ଯ୍ୟରେ ବକ୍ରଗ୍ରୀବ ହୋଇ ଠିଆ ହେବାର ବହୁବାର ଲକ୍ଷ୍ୟ କରାଯାଇଛି; ଆଜି ମହିମାମୟ ମନୁଷ୍ୟତ୍ୱ ସମ୍ମୁଖରେ ମହା ନମ୍ରତାରେ ଶିର ନୁଆଁଇ ସେ କିଭଳି ହୃଦୟର ଅକୃତ୍ରିମ ଶ୍ରଦ୍ଧା ନିବେଦନ କରୁଛନ୍ତି, ତାହା ମଧ୍ୟ ଲକ୍ଷ୍ୟ କରିବାର କଥା । ମହାଶକ୍ତି ଓ ମହାନମ୍ରତା ଏହି ମହାପୁରୁଷଙ୍କର ବିଶାଳ ହୃଦୟରେ କି ଅପରୂପ ମାଧୁରୀରେ ଏକତ୍ର ମିଳିତ ହୋଇଛି ! ଆଉ ନାଗ ମହାଶୟ ! ତାହାଙ୍କ ବିଷୟ ଅବର୍ଣ୍ଣନୀୟ ! ତାଙ୍କ ସମ୍ବନ୍ଧରେ ସ୍ୱାମୀଜୀ କହିଛନ୍ତି, ''ସମସ୍ତ ପୃଥିବୀ ଭ୍ରମଣ କଲି; ନାଗ ମହାଶୟଙ୍କ ପରି ସାଧୁ ଆଉ ଜଣେ ଦେଖିଲି ନାହିଁ ।'' ପୂର୍ବବଙ୍ଗର ହୀରକ ଖଣିରେ ଏହି ଉଜ୍ଜ୍ୱଳ କୋହିନୂର—ପୁରୁଷୋତ୍ତମ ନାଗ ମହାଶୟଙ୍କ ସହିତ ସ୍ୱାମୀଜୀଙ୍କୁ ତୁଳନା କରି ଭକ୍ତଚୂଡ଼ାମଣି ନାଟ୍ୟସମ୍ରାଟ ଗିରିଶଚନ୍ଦ୍ର ଲେଖିଛନ୍ତି, ''ମହାମାୟା ଦୁଇଜଣଙ୍କ ନିକଟରେ ହାର୍ ମାନିଛନ୍ତି । ସ୍ୱାମୀଜୀଙ୍କୁ ମହାମାୟା ଯେତେବେଳେ ବାନ୍ଧିବାକୁ ଯାଆନ୍ତି, ସ୍ୱାମୀଜୀ ସେତେବେଳେ ଏତେ ବଡ଼ ହୋଇଯାଆନ୍ତି ଯେ ମାୟାର ଦଉଡ଼ି ପାଏ ନାହିଁ; ପୁଣି ନାଗ ମହାଶୟ ଏତେ ଛୋଟ ହୋଇଯାନ୍ତି ଯେ, ଖସି ପଳାଇ ଯାଆନ୍ତି ।''

## ପଣ୍ଡିତ ସଖାରାମ ଗଣେଶ ଦେଉସ୍କର

ଦିନେ 'ହିତବାଦୀ'ର ସମ୍ପାଦକ ଶ୍ରଦ୍ଧାସ୍ପଦ ପଣ୍ଡିତ ସଖାରାମ ଗଣେଶ ଦେଉସ୍କର ଦୁଇଜଣ ବନ୍ଧୁଙ୍କ ସହିତ ସ୍ୱାମୀଜୀଙ୍କର ଦର୍ଶନ ପାଇଁ ଆସିଥିଲେ । କଥା ପ୍ରସଙ୍ଗରେ ପଣ୍ଡିତଜୀଙ୍କ ବନ୍ଧୁମାନଙ୍କ ମଧ୍ୟରୁ ଜଣକୁ ପଞ୍ଜାବୀ ବୋଲି ଜାଣିପାରି ସ୍ୱାମୀଜୀ ତାଙ୍କ ସହିତ ପଞ୍ଜାବ ପ୍ରଦେଶର ଅଭାବ ଅଭିଯୋଗ ସମ୍ବନ୍ଧରେ ଆଲୋଚନା କରି ବସିଲେ । ଭାରତୀୟ ଜନସାଧାରଣଙ୍କ ଦାରିଦ୍ର୍ୟ ଦୁଃଖ ଓ ଶିକ୍ଷାହୀନତା, ସାମାଜିକ ଜୀବନର ଦୁରବସ୍ଥା ଦୂରୀକରଣ ପ୍ରତ୍ୟେକ ଶିକ୍ଷିତ

ବ୍ୟକ୍ତିଙ୍କ କର୍ତ୍ତବ୍ୟ ଏବଂ ସେହି ଉଦ୍ଦେଶ୍ୟରେ ପ୍ରତ୍ୟେକ ବ୍ୟକ୍ତି ପ୍ରାଣପଣେ ଚେଷ୍ଟା କରିବା ଉଚିତ୍ ଇତ୍ୟାଦି ଜାତୀୟ ଜୀବନ ସମସ୍ୟାର ପ୍ରଧାନତମ ବିଷୟଗୁଡ଼ିକ ସ୍ୱାମୀଜୀ ଜ୍ୱଳନ୍ତ ଭାଷାରେ ବର୍ଣ୍ଣନା କରିବାକୁ ଲାଗିଲେ । ବହୁକ୍ଷଣ ସଦାଳାପ ପରେ ପଣ୍ଡିତଜୀ ବିଦାୟ ନେଲେ । ଏହି ସମୟରେ ତାଙ୍କ ବନ୍ଧୁ ପଞ୍ଜାବୀ ଭଦ୍ରଲୋକ ଜଣକ ସ୍ୱାମୀଜୀଙ୍କୁ ଲକ୍ଷ୍ୟ କରି କହିଲେ, "ସ୍ୱାମୀଜୀ ! ଆପଣଙ୍କଠାରୁ ଧର୍ମୋପଦେଶ ଶୁଣିବା ଲାଗି ବହୁତ ଆଶା କରି ଆସିଥିଲୁ ! କିନ୍ତୁ ଦୁର୍ଭାଗ୍ୟକ୍ରମେ ଅତି ସାଧାରଣ ବିଷୟରେ ଆଲୋଚନା ହେଲା । ଆଜି ଦିନଟି ବୃଥା ଗଲା ।"

ସ୍ୱାମୀଜୀଙ୍କ ତପୋଦୀପ୍ତ ମୁଖମଣ୍ଡଳ ବ୍ୟଥିତ କରୁଣାରେ ଗମ୍ଭୀର ହୋଇଗଲା । ସେ ଧୀର ଭାବରେ କହିଲେ, "ମହାଶୟ ! ଯେଉଁଦିନ ପର୍ଯ୍ୟନ୍ତ ମୋର ଜନ୍ମଭୂମିର ଗୋଟିଏ କୁକୁର ଭୋକିଲା ରହିଥିବ, ସେପର୍ଯ୍ୟନ୍ତ ତାକୁ ଆହାର ଦେବା ମୋର ଧର୍ମ ! ଏହାଛଡ଼ା ଆଉ ଯାହା କିଛି—ଅଧର୍ମ ।"

ପଣ୍ଡିତ ଦେଉସ୍କର ସ୍ୱାମୀଜୀଙ୍କ ମୃତ୍ୟୁର ବହୁବର୍ଷ ପରେ ଏହି କଥା ବର୍ଣ୍ଣନା କରି ମନ୍ତବ୍ୟ ଦେଇଛନ୍ତି ଯେ, ସ୍ୱାମୀଜୀଙ୍କର ଏହି ଗଭୀର ସମବେଦନାପୂର୍ଣ୍ଣ ଉକ୍ତି ତାଙ୍କ ମର୍ମରେ ଚିରନୂତନ ଭାବରେ ସର୍ବଦା ଜାଗ୍ରତ ରହିଛି । ସେହିଦିନଠାରୁ ପ୍ରକୃତ 'ସ୍ୱଦେଶପ୍ରେମ' କ'ଣ ସେ ବୁଝିଥିଲେ ।

## ଦ୍ୱିତୀୟଥର ପାଶ୍ଚାତ୍ୟ ଦେଶକୁ ଗମନ

ଇତିପୂର୍ବରୁ ଡିସେମ୍ବର ଷୋହଳ ତାରିଖରେ ସ୍ୱାମୀଜୀ ଦ୍ୱିତୀୟ ଥର ଇଂଲଣ୍ଡ ଓ ଆମେରିକାକୁ ଗମନର ଅଭିପ୍ରାୟ ପ୍ରକାଶ କରିଥିଲେ ବୋଲି କୁହାଯାଇଛି । ଗ୍ରୀଷ୍ମଋତୁ ଆସିବାରୁ ସମୁଦ୍ରଯାତ୍ରାରେ ତାଙ୍କର ସ୍ୱାସ୍ଥ୍ୟୋନ୍ନତି ହେବ ବୋଲି ଆଶା କରି ବନ୍ଧୁ ଓ ଚିକିତ୍ସକମାନେ ଏକସ୍ୱରରେ ତାଙ୍କୁ ଯାତ୍ରା କରିବା ଲାଗି ଅନୁରୋଧ କଲେ । ଅବଶେଷରେ ଜୁନ୍ ଉଣେଇଶ ତାରିଖ ସ୍ୱାମୀଜୀଙ୍କ ଇଂଲଣ୍ଡ ଯାତ୍ରା-ଦିବସରୂପେ ସ୍ଥିର ହେଲା । ସ୍ୱାମୀ ତୁରୀୟାନନ୍ଦ ସ୍ୱାମୀଜୀଙ୍କ ସାଗ୍ରହ ଅନୁରୋଧ ଯୋଗୁଁ ତାଙ୍କ ସଙ୍ଗରେ ଗଲେ । ବାଳିକା ବିଦ୍ୟାଳୟର ଆବଶ୍ୟକ କାର୍ଯ୍ୟ ଉପଲକ୍ଷେ ଭଗିନୀ ନିବେଦିତା ମଧ୍ୟ ଇଂଲଣ୍ଡ ଯିବାକୁ ସ୍ଥିର କଲେ ।

ବାଲ୍ୟକାଳରୁ କଠୋର ବ୍ରହ୍ମଚର୍ଯ୍ୟବ୍ରତାବଲମ୍ବୀ ସଂଯତମାନ ସାଧକ ସ୍ୱାମୀ ତୁରୀୟାନନ୍ଦ ସାଧାରଣ ଧର୍ମପ୍ରଚାର ଉଦ୍ଦେଶ୍ୟରେ ବକ୍ତୃତା ଦେବାକୁ ଏକାନ୍ତ ଅନିଚ୍ଛୁକ ଥିଲେ; କିନ୍ତୁ ବିବେକାନନ୍ଦଙ୍କ ସର୍ବବିଜୟିନୀ ପ୍ରୀତି ନିକଟରେ ତାଙ୍କର ସବୁ ଆପତ୍ତି ଭାସିଗଲା । ସ୍ୱାମୀ ତୁରୀୟାନନ୍ଦଙ୍କ ଆମେରିକା ଗମନ କଥା ଠିକ୍ ହୋଇଯିବା ପରେ ପ୍ରଚାରକାର୍ଯ୍ୟରେ ସୁବିଧା ହେବ ବୋଲି ବିବେଚନା କରି ସେ ବେଦାନ୍ତ-ଦର୍ଶନ ସମ୍ବନ୍ଧରେ କେତେଖଣ୍ଡି ସଂସ୍କୃତ-ପୋଥି ସାଙ୍ଗରେ ନେବାକୁ

ଚାହିଁଲେ । ତାହା ଶୁଣି ଆଚାର୍ଯ୍ୟଦେବ ତତ୍କ୍ଷଣାତ୍ କହିଲେ, ''ଶାସ୍ତ୍ରଜ୍ଞାନ ଓ ପୋଥି ସେମାନେ ଅନେକ ଦେଖିଛନ୍ତି ! ସେମାନେ କ୍ଷତ୍ରିୟ-ଶକ୍ତି ଯଥେଷ୍ଟ ଦେଖିଛନ୍ତି— ମୁଁ ତାଙ୍କୁ ବ୍ରାହ୍ମଣ-ଶକ୍ତି ଦେଖାଇବାକୁ ଚାହେଁ ।'' ଅର୍ଥାତ୍ ତର୍କ, ଯୁକ୍ତି, ନିର୍ଭୀକ ବାଦାନୁବାଦ, ବକ୍ତୃତା ଇତ୍ୟାଦି ରଜୋଶକ୍ତିର ବିକାଶ ପାଶ୍ଚାତ୍ୟ ଜଗତ ସ୍ୱାମୀଜୀଙ୍କ ଭିତରେ ବିଶେଷ ଭାବରେ ଲକ୍ଷ୍ୟ କରିଛନ୍ତି । ଏବେ ସେ ସତ୍ତ୍ୱଗୁଣାତ୍ମକ ଧ୍ୟାନ, ତପସ୍ୟା, ସାଧନା ଇତ୍ୟାଦି ସମବାୟରେ ଗଠିତ ପ୍ରକୃତ ବ୍ରାହ୍ମଣର ପବିତ୍ର ଜୀବନ ସେମାନଙ୍କ ସମ୍ମୁଖରେ ଆଦର୍ଶରୂପେ ସ୍ଥାପନ କରିବାକୁ ଚାହାଁନ୍ତି ।

## ବିଦାୟ ଅଭିନନ୍ଦନ—ନବଯୁଗ ସନ୍ନ୍ୟାସର ଆଦର୍ଶ

ଜୁନ୍ ଉଣେଇଶ ତାରିଖ ଦିନ ସ୍ୱାମୀଜୀ ଓ ସ୍ୱାମୀ ତୁରୀୟାନନ୍ଦଙ୍କୁ ବିଦାୟଅଭିନନ୍ଦନ ଦେବା ନିମିତ୍ତ ବେଲୁଡ଼ ମଠରେ ଗୋଟିଏ ସଭା ହୋଇଥିଲା । ସ୍ୱାମୀଜୀ 'ସନ୍ନ୍ୟାସୀର ଆଦର୍ଶ ଓ ତାହାର ସାଧନ' ସମ୍ବନ୍ଧରେ ଇଂରେଜୀରେ ଗୋଟିଏ କ୍ଷୁଦ୍ର ବକ୍ତୃତା ଦେଲେ । ଅତିମାତ୍ରାରେ ଉଚ୍ଚ ଆଦର୍ଶ ଜାତିକୁ ହୀନ ଓ ଦୁର୍ବଳ କରି ପକାଏ ବୋଲି ବୌଦ୍ଧ ଓ ଜୈନ ସଂସ୍କାରକଗଣଙ୍କ ଅନୁବର୍ତ୍ତୀ ପ୍ରବଳ ସନ୍ନ୍ୟାସୀ ସମ୍ପ୍ରଦାୟ-ଗୁଡ଼ିକର ଉତ୍ଥାନ ଓ ପତନର ଇତିହାସ ଆଲୋଚନା କରି ସ୍ୱାମୀଜୀ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ତେଣୁ ସେ ନବଯୁଗର ସନ୍ନ୍ୟାସୀମାନଙ୍କୁ ଆଦର୍ଶ ବୁଝାଇ କହିଲେ—

(୧) ସାଧାରଣ ଲୋକ ବଞ୍ଚିବାକୁ ଭଲ ପାଏ; ତୁମକୁ ମୃତ୍ୟୁକୁ ଭଲ ପାଇବାକୁ ହେବ । ମୃତ୍ୟୁକୁ ଭଲ ପାଇବାର ଅର୍ଥ, ପରକଲ୍ୟାଣ କାମନାରେ ସତତ ଆତ୍ମବିସର୍ଜନ କରିବାକୁ ପ୍ରସ୍ତୁତ ରହିବା ।

(୨) ଗୁହାରେ ବସି ଧ୍ୟାନ କରି ଦେହତ୍ୟାଗ କରିବା ପରି ପ୍ରାଚୀନ ଆଦର୍ଶର ଆବଶ୍ୟକତା ବର୍ତ୍ତମାନ ଯୁଗରେ ନାହିଁ ! ଶ୍ରେୟଃ-ପନ୍ଥାରେ ଦଣ୍ଡାୟମାନ ହୋଇ ପ୍ରତ୍ୟେକ ମାନବ-ଭ୍ରାତାଙ୍କୁ ମୁକ୍ତି ନିମିତ୍ତ ସାହାଯ୍ୟ କରିବାକୁ ହେବ ।

(୩) ଗଭୀର ଭାବପରାୟଣତା ଓ ପ୍ରବଳ କର୍ମଶୀଳତା ସହଯୋଗରେ ଜୀବନ ଗଠନ କରିବାକୁ ହେବ । ତୁମ୍ଭେମାନେ ସତତ ଗଭୀର ଧ୍ୟାନରେ ନିମଗ୍ନ ହେବା ନିମିତ୍ତ ପ୍ରସ୍ତୁତ ରହିବ—ପୁଣି ପର ମୁହୂର୍ତ୍ତରେ ମଠ ସଂଲଗ୍ନ ଭୂମି କର୍ଷଣ କରିବାକୁ ବି ଦ୍ୱିଧା ବୋଧ କରିବ ନାହିଁ । ଶାସ୍ତ୍ରର କଠିନ ସମସ୍ୟାଗୁଡ଼ିକର ମୀମାଂସା କରିବ, ପୁଣି ମଠ ଜମିରେ ଉତ୍ପନ୍ନ ଶସ୍ୟକୁ ବଜାରରେ ବିକ୍ରୟ କରିବାକୁ ମଧ୍ୟ ପ୍ରସ୍ତୁତ ରହିବ !

(୪) ତୁମେ ପ୍ରତ୍ୟେକେ ସ୍ମରଣ ରଖିବ ଯେ, ଏହି ମଠର ଉଦ୍ଦେଶ୍ୟ, ମଣିଷ ତିଆରି କରିବା ! ରମଣୀସୁଲଭ କୋମଳ ହୃଦୟ, କିନ୍ତୁ ଶକ୍ତିମାନ ଓ

ବଳୀୟାନ, ସର୍ବୋତମୁଖୀ, ସ୍ୱାଧିନତାପ୍ରିୟ, ଅଥଚ ବିନୀତ ଆଜ୍ଞାବହ—ଏହା ହିଁ ମନୁଷ୍ୟର ଲକ୍ଷଣ । ପରର ଦୁଃଖରେ ଅଶ୍ରୁ ବିସର୍ଜନ କରିବାକୁ ହେବ କିନ୍ତୁ ଦୃଢ଼ଚିତ୍ତ ହୋଇ ରହିବ ।

ହୃଦୟର ସଂକୀର୍ଣ୍ଣତା ଓ ଉଚ୍ଛୃଙ୍ଖଳ ଅବାଧ୍ୟତା ହିଁ ଯେ ବ୍ୟକ୍ତିବିଶେଷକୁ ଗଣ୍ଡିବଦ୍ଧ ସମ୍ପ୍ରଦାୟ ଗଠନ କରିବାକୁ ଉତ୍ସାହିତ କରେ, ଏହା ବୁଝି ନବପ୍ରତିଷ୍ଠିତ ସନ୍ନ୍ୟାସୀ ସଂଘକୁ ସ୍ୱାମୀଜୀ ପୁନଃ ପୁନଃ ସାବଧାନ କରି କହିଛନ୍ତି, "ଏଠାରେ ଅବାଧ୍ୟ ଲୋକଙ୍କର ସ୍ଥାନ ନାହିଁ । ଯଦି କେହି ଅବାଧ୍ୟ ହୁଏ, ତାକୁ ମମତା ନ ଦେଖାଇ ଦୂର କରିଦିଅ, କେହି ବିଶ୍ୱାସଘାତକ ନ ରହୁ । ବାୟୁ ପରି ମୁକ୍ତ ଓ ଅବାଧଗତି ହୁଅ, ତଥାପି ଏହି ଲତା ଓ କୁକୁର ପରି ନମ୍ର ଓ ଆଜ୍ଞାବହ ହୁଅ ।"

## ସପ୍ତମ ଅଧ୍ୟାୟ

# ମାନବମିତ୍ର ବିବେକାନନ୍ଦ

## (୧୮୯୯-୧୯୦୨)

''ଯଦି ଯଥାର୍ଥ ସ୍ୱଦେଶର ବା ମନୁଷ୍ୟକୁଳର କଲ୍ୟାଣ ହୁଏ, ଶ୍ରୀଗୁରୁଙ୍କ ପୂଜା ଛାଡ଼ିବା ବଡ଼ କଥା କ'ଣ, କୌଣସି ଉତ୍କଟ ପାପ କରି ଖ୍ରୀଷ୍ଟିଆନମାନଙ୍କ ଅନନ୍ତନରକ ଭୋଗ କରିବାକୁ ମଧ୍ୟ ପ୍ରସ୍ତୁତ ଅଛି ।'

—ବିବେକାନନ୍ଦ

### ମାନ୍ଦ୍ରାଜ ଓ କଲମ୍ବୋ

ସ୍ୱାମୀ ତୁରୀୟାନନ୍ଦ ଓ ଭଗିନୀ ନିବେଦିତାଙ୍କ ସହିତ ଆଚାର୍ଯ୍ୟଦେବ ୧୮୯୯ ଖ୍ରୀଷ୍ଟାବ୍ଦ ଜୁନ୍ କୋଡ଼ିଏ ତାରିଖ ଦିନ 'ଗୋଲକୁଣ୍ଡା' ଜାହାଜରେ ଇଂଲଣ୍ଡ ଅଭିମୁଖେ ଯାତ୍ରା କଲେ । ଜୁନ୍ ଚବିଶ ତାରିଖ ଦିନ ଜାହାଜ ମାନ୍ଦ୍ରାଜ ବନ୍ଦରରେ ପହଞ୍ଚିଲା । ସ୍ୱାମୀଜୀଙ୍କ କଲିକତା ପରିତ୍ୟାଗ ସମ୍ବାଦ ଯଥା ସମୟରେ ମାନ୍ଦ୍ରାଜସ୍ଥ ଭକ୍ତମାନଙ୍କୁ ତାରଦ୍ୱାରା ଜଣାଇ ଦିଆହୋଇଥିଲା । କଲିକତାରେ ପ୍ଲେଗ୍‌ର ପ୍ରକୋପ ସେପର୍ଯ୍ୟନ୍ତ ପ୍ରଶମିତ ହୋଇ ନ ଥିଲା; ତେଣୁ ପ୍ଲେଗ୍ ନିୟମାନୁସାରେ କଲିକତାରୁ ଆସୁଥିବା କୌଣସି ଭାରତୀୟ ଯାତ୍ରୀଙ୍କୁ ମାନ୍ଦ୍ରାଜରେ ଅବତରଣ କରିବାକୁ ନିଷେଧ କରାଯାଉଥିଲା । ଏହି ଆଇନ୍ ସାହାଯ୍ୟରେ ରାଜକର୍ମଚାରୀମାନେ ସ୍ୱାମୀଜୀଙ୍କ ମାନ୍ଦ୍ରାଜ ଅବତରଣ ବିଷୟରେ ବାଧା ସୃଷ୍ଟି କରିବେ ବୋଲି ଆଶଙ୍କା କରି ମାନ୍ଦ୍ରାଜ ସହରର ସମ୍ଭ୍ରାନ୍ତ ବ୍ୟକ୍ତିବୃନ୍ଦ ମିଳିତ ହୋଇ ମାନନୀୟ ଶ୍ରୀଯୁକ୍ତ ପି. ଆନନ୍ଦ ଚାର୍ଲୁ ମହୋଦୟଙ୍କ ନେତୃତ୍ୱରେ ଗୋଟିଏ ବିରାଟ ସଭା ଆହ୍ୱାନ କରିଥିଲେ । ସଭା ତରଫରୁ ସ୍ଥାନୀୟ ସରକାରଙ୍କ ନିକଟକୁ ଅନୁରୋଧପତ୍ର ପ୍ରେରିତ ହେଲା । ସମସ୍ତେ ଆଶା କରିଥିଲେ ଯେ, କେତେ ଘଣ୍ଟା ପାଇଁ ସ୍ୱାମୀଜୀଙ୍କୁ ମାନ୍ଦ୍ରାଜରେ ପ୍ରବେଶ କରିବାକୁ ଅନୁମତି ଦେବା ଲାଗି କର୍ତ୍ତୃପକ୍ଷ ଆପତ୍ତି କରିବେ ନାହିଁ; କିନ୍ତୁ ଫଳରେ ଦେଖାଗଲା, ବହୁ ବିଳମ୍ବରେ ସ୍ୱାସ୍ଥ୍ୟ ବିଭାଗର ସର୍ବୋଚ୍ଚ କର୍ତ୍ତା ଆଦେଶ ଦେଲେ ଯେ ସ୍ୱାମୀଜୀଙ୍କୁ ମାନ୍ଦ୍ରାଜରେ ପ୍ରବେଶ କରିବା ଲାଗି ଅନୁମତି ଦିଆଯିବ ନାହିଁ । ବିବେକାନନ୍ଦଙ୍କ ପ୍ରତି ଭାରତୀୟ ଶାସନକର୍ତ୍ତୃପକ୍ଷ ସନ୍ତୁଷ୍ଟ ନ ଥିଲେ । ଇତିପୂର୍ବରୁ କାଶ୍ମୀରରେ ମଠ ନିର୍ମାଣ କାର୍ଯ୍ୟରେ ବାଧା ଦେଇ ସେଠାରେ ରେସିଡେଣ୍ଟ ଶ୍ରୀଯୁକ୍ତ ଟଲବ୍ୟାଟ୍ ଯେଉଁ ମନୋବୃତ୍ତିର ପରିଚୟ ଦେଇଥିଲେ, ମାନ୍ଦ୍ରାଜ କର୍ତ୍ତୃପକ୍ଷଙ୍କ ମନୋବୃତ୍ତି ମଧ୍ୟ ସେହିପରି ଥିଲା ।

ରବିବାର ଦିନ ସକାଳେ 'ଗୋଲକୁଣ୍ଡା' ମାନ୍ଦ୍ରାଜ ବନ୍ଦରରେ ଲଙ୍ଗର ପକାଇଲା । ହଜାର ହଜାର ଉତ୍ସୁକ ଦର୍ଶକ ଜେଟୀରେ ସମବେତ ହୋଇଥିଲେ; କିନ୍ତୁ ଯେତେବେଳେ ସେମାନେ ନିଶ୍ଚିତ ଭାବରେ ଜାଣିଲେ ଯେ, ସ୍ୱାମୀଜୀଙ୍କୁ

କୌଣସିମତେ ବନ୍ଦରରେ ଅବତରଣ କରିବା ଲାଗି ଅନୁମତି ଦିଆଯିବ ନାହିଁ; ସେତେବେଳେ ଅନେକେ ବିରକ୍ତି-ବିକୃତ-ଚିତ୍ତରେ ସ୍ଥାନ ପରିତ୍ୟାଗ କଲେ, କେହି କେହି ପ୍ରବଳ ଆଗ୍ରହ ଯୋଗୁଁ ନୌକା ଭଡ଼ା କରି ଜାହାଜ ନିକଟକୁ ଯାଇ ସ୍ୱାମୀଜୀଙ୍କ ପୁଣ୍ୟ ଦର୍ଶନ ଲାଭ କଲେ । ସ୍ୱାମୀଜୀ ଡେକ୍ ଉପରେ ଠିଆ ହୋଇ ହାସ୍ୟୋଜ୍ଜ୍ୱଳ ବଦନରେ ପ୍ରତ୍ୟେକଙ୍କୁ ଆଶୀର୍ବାଦ କଲେ ଏବଂ କୌଣସି କୌଣସି ଭକ୍ତ ଦେଉଥିବା ନାରିକେଳ ଆଦି ଫଳ ଆନନ୍ଦର ସହିତ ଗ୍ରହଣ କଲେ । ଫଳତଃ ମାନ୍ଦ୍ରାଜରେ ଅବତରଣ କରି ନ ପାରି ସ୍ୱାମୀଜୀ ଯେ ଦୁଃଖିତ ହୋଇଥିଲେ, ଏଥିରେ ସନ୍ଦେହ ନାହିଁ ।

'ବ୍ରହ୍ମବାଦିନ୍' ପତ୍ରିକା ପରିଚାଳନା ସମ୍ବନ୍ଧରେ ସ୍ୱାମୀଜୀଙ୍କ ସହିତ ପରାମର୍ଶ କରିବା ଏବଂ ଶ୍ରୀଗୁରୁଙ୍କ ପୁଣ୍ୟ ସଙ୍ଗରେ କେତେଦିନ କଟାଇବାନିମିତ୍ତ ନୀରବକର୍ମୀ ଆଲାସିଙ୍ଗା ପେରୁମଲ ମାନ୍ଦ୍ରାଜରୁ କଲମ୍ବୋ ଯିବା ଲାଗି ଜାହାଜରେ ଚଢ଼ିଲେ । ଜାହାଜ ମାନ୍ଦ୍ରାଜ ଛାଡ଼ି ଚାରିଦିନ ପରେ କଲମ୍ବୋରେ ପହଞ୍ଚିଲା ।

ଜୟଧ୍ୱନି-ମୁଖରିତ ସମୁଦ୍ରକୂଳରେ ଅବତରଣ କରିବା ମାତ୍ରକେ ସ୍ୱାମୀଜୀ ହଜାର ହଜାର ଉତ୍ସୁକ ନରନାରୀଙ୍କଦ୍ୱାରା ସାଦରେ ଗୃହୀତ ହେଲେ । ସୁଖର କଥା, କଲମ୍ବୋ କର୍ତ୍ତୃପକ୍ଷ ଆଉ ପ୍ଲେଗ୍ ଆଇନର ବିଭୀଷିକା ଦେଖାଇ ନୀଚ ମନର ପରିଚୟ ଦେଇ ନ ଥିଲେ । ମାନନୀୟ ସାର୍ କୁମାରସ୍ୱାମୀ ଓ ଶ୍ରୀଯୁକ୍ତ ଅରୁଣାଚଳମ୍‌ଙ୍କୁ ଜନତା ଭିତରେ ଉପସ୍ଥିତ ଥିବାର ଦେଖି ସ୍ୱାମୀଜୀ ବିଶେଷ ଆନନ୍ଦିତ ହେଲେ । ପୁରାତନ ବନ୍ଧୁ ଓ ଭକ୍ତମାନଙ୍କ ସହିତ ସମୟୋଚିତ ଆଳାପ ଓ ସାଦର ସମ୍ଭାଷଣ ଶେଷ କରି ସ୍ୱାମୀଜୀ ସ୍ଥାନୀୟ ଶ୍ରୀମତୀ ହିଗିନ୍‌ସଙ୍କଦ୍ୱାରା ପ୍ରତିଷ୍ଠିତ ବୌଦ୍ଧ ବାଳିକା ବିଦ୍ୟାଳୟର ଛାତ୍ରାବାସ ଓ ତାଙ୍କ ପୂର୍ବ ପରିଚିତ କାଉଣ୍ଟେସ କ୍ୟାନୋଭାରା କର୍ତ୍ତୃକ ପ୍ରତିଷ୍ଠିତ ମଠ ଓ ବିଦ୍ୟାଳୟ ପରିଦର୍ଶନ କରିବାକୁ ଗଲେ ।

## ସମୁଦ୍ରବକ୍ଷରେ

ଜୁନ୍ ଅଠେଇଶ ତାରିଖ ସକାଳେ ଜାହାଜ କଲୋମ୍ବୋ ଛାଡ଼ି ଏଡ଼େନ୍ ଅଭିମୁଖେ ଚାଲିଲା । ଶ୍ରୀଗୁରୁଙ୍କ ସହିତ ଦୀର୍ଘ ଛଅ ସପ୍ତାହ କାଳ ସମୁଦ୍ରଯାତ୍ରା ଭଗିନୀ ନିବେଦିତାଙ୍କ ପାଇଁ ପରମ ଶିକ୍ଷା ଲାଗି ସୁବିଧା ଯୋଗାଇ ଦେଲା । ଭାରତୀୟ ରୀତି, ନୀତି, ଧର୍ମ, ଦର୍ଶନ, ସାହିତ୍ୟ, ଇତିହାସ ଇତ୍ୟାଦି ଆଲୋଚନା ମଧ୍ୟରେ ନିବେଦିତା ତାଙ୍କ ଜଗଦେକାରାଧ୍ୟ ଗୁରୁଦେବଙ୍କ ଜୀବନୋଦ୍ଦେଶ୍ୟ ଓ ତାଙ୍କ ପ୍ରଚାରିତ ସତ୍ୟଗୁଡ଼ିକୁ ସର୍ବଦା ଶ୍ରଦ୍ଧାମୁଗ୍ଧ ହୃଦୟରେ ଉପଲବ୍ଧି କରିବାକୁ ଚେଷ୍ଟା କଲେ । ଏହି ସମୟର କେତେକ ଅମୂଲ୍ୟ କଥୋପକଥନ ଭଗିନୀ ତାଙ୍କ 'My Master as I saw Him' (ମୋ ପ୍ରଭୁଙ୍କୁ ମୁଁ ଯେପରି ଦେଖିଥିଲି) ନାମକ ସୁପ୍ରସିଦ୍ଧ ପୁସ୍ତକରେ ଲିପିବଦ୍ଧ କରିଛନ୍ତି । ତାଙ୍କ ଗୁରୁଦେବଙ୍କ ସହିତ 'ଅର୍ଦ୍ଧ ପୃଥିବୀ ଅତିକ୍ରମ' ର ଗୌରବମୟ ଅଧିକାରଲାଭକୁ ସେ ତାଙ୍କ ଜୀବନର ସର୍ବଶ୍ରେଷ୍ଠ

ଘଟଣା ବୋଲି ଚିତ୍ରଣ କରିଛନ୍ତି । ଯଦିବା ଏହି ସମୟରେ ଗମ୍ଭୀର ଓ ଉଦାସୀନ ବିବେକାନନ୍ଦ ବାହ୍ୟ ଜଗତର ଘଟଣା-ବୈଚିତ୍ର୍ୟରୁ ଏକପ୍ରକାର ଅବସର ନେଇ ଆତ୍ମସ୍ଥ ଯୋଗୀଙ୍କ ପରି ଭାବମଗ୍ନ ହୋଇ ରହିବାକୁ ଅଧିକତର ଆଗ୍ରହ ପ୍ରକାଶ କରୁଥିଲେ, ତଥାପି ତାଙ୍କ ସହିତ ମିଶିବାର କ୍ଷୁଦ୍ରତମ ସୁଯୋଗକୁ ମଧ୍ୟ ନିବେଦିତା କୌଣସି ଦିନ ଉପେକ୍ଷା କରୁ ନ ଥିଲେ । ସେ ଲେଖିଛନ୍ତି ଏହି ସମୁଦ୍ରଯାତ୍ରାର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ନାନାବିଧ ଗଳ୍ପ ଓ ଭାବର ଅବିରାମ ସ୍ରୋତ ଚାଲିଥିଲା । କେହି ଜାଣି ନ ଥିଲେ, କେଉଁ ମୁହୂର୍ତ୍ତରେ ସହସା ସ୍ୱାମୀଜୀଙ୍କ ଉପଲବ୍ଧି-ଦ୍ୱାର ଉନ୍ମୁକ୍ତ ହୋଇଯିବ ଏବଂ ଜ୍ୱଳନ୍ତ ଭାଷାରେ ନୂତନ ନୂତନ ସତ୍ୟର ବାର୍ତ୍ତା ଶୁଣିବାକୁ ମିଳିବ । ସମୁଦ୍ରଯାତ୍ରାର ପ୍ରଥମ ଦିନ ଅପରାହ୍ଣରେ ଆମେ ଭାଗୀରଥୀବକ୍ଷରେ ଜାହାଜରେ ବସି ଗପ କରୁଛୁ, ଏହି ସମୟରେ ସହସା ସ୍ୱାମୀଜୀ କହିଲେ, "ଦେଖ, ଯେତେ ଦିନ ଯାଉଛି, ମୁଁ ସେତେ ସ୍ପଷ୍ଟ ଭାବରେ ଉପଲବ୍ଧି କରୁଛି ଯେ, ମନୁଷ୍ୟତ୍ୱ (Manliness) ଲାଭ ହିଁ ଜୀବନର ସର୍ବଶ୍ରେଷ୍ଠ ସାଧନା । ଏହି ଅଭିନବ ବାର୍ତ୍ତାକୁ ମୁଁ ଜଗତରେ ପ୍ରଚାର କରୁଛି । ଯଦି ଅନ୍ୟାୟ କାମ କରିବାକୁ ହୁଏ, ତେବେ ତାହା ମଣିଷପରି କର । ଯଦି ଦୁଷ୍ଟ ହେବାକୁ ହୁଏ, ତେବେ ଜଣେ ବଡ଼ ଦୁଷ୍ଟ ହୁଅ ।"

ଆଚାର୍ଯ୍ୟଦେବ ଅଧିକାଂଶ ସମୟ ମୌନଭାବରେ ଗଭୀର ଚିନ୍ତାମଗ୍ନ ରହୁଥିଲେ ହେଁ ବେଳେ ବେଳେ ଏକପ୍ରକାର ଅଜ୍ଞାତସାରରେ ନିଜର ଶ୍ରେଷ୍ଠତମ ଚିନ୍ତା ଓ ଅନୁଭୂତିକୁ ବ୍ୟକ୍ତ କରି ପକାଉଥିଲେ; ସେ ଏପରି ପଦେ ଦି'ପଦ କଥା କହି ପକାଉଥିଲେ ଯାହାର ଯୁକ୍ତିପୂର୍ଣ୍ଣ କାରଣ ଖୋଜି ବାହାର କରିବା ଦୁରୂହ ବ୍ୟାପାର ଥିଲା ।

ଦିନେ ସ୍ୱାମୀଜୀ ଡେକ୍‌ରେ ଠିଆ ହୋଇ ସୂର୍ଯ୍ୟାସ୍ତ ଦେଖୁଥିଲେ । ପାଖରେ ଥିଲେ ନିବେଦିତା । ସେପର୍ଯ୍ୟନ୍ତ ସୂର୍ଯ୍ୟଦେବ ଅସ୍ତ ହୋଇ ନ ଥା'ନ୍ତି — ପୀତାଭ - ରକ୍ତିମ-ରଶ୍ମିମାଳା ଲଘୁ-ମେଘଖଣ୍ଡଗୁଡ଼ିକ ଉପରେ ସୁନେଲୀ-ସ୍ୱପ୍ନ ପରି ବିଞ୍ଛି ହୋଇ ପଡ଼ିଥାଏ । ତଳେ ବିଶାଳ ଜଳଧି ବକ୍ଷରେ ତାଙ୍କ ମନୋରମ ପ୍ରତିଛବି ଖଣ୍ଡିକ ମୃଦୁ ତରଙ୍ଗରେ ଦୋହଲୁଥାଏ । ଅଦୂରରେ ଏଟ୍‌ନା ଆଗ୍ନେୟଗିରି ଶିଖରରୁ ଅଳ୍ପ ଅଳ୍ପ ଧୂଆଁ ଉଠୁଥାଏ । କ୍ରମେ ଜାହାଜ ମେସୀନା ପ୍ରଣାଳୀରେ ପ୍ରବେଶ କରିବା ସଙ୍ଗେ ସଙ୍ଗେ ଚନ୍ଦ୍ର ଉଦୟ ହେଲା । ସ୍ୱାମୀଜୀ ଡେକ୍ ଉପରେ ପଦଚାରଣ କରି କରି ଭଗିନୀଙ୍କୁ ସୌନ୍ଦର୍ଯ୍ୟର ବ୍ୟାଖ୍ୟା ଶୁଣାଉଥିଲେ । ବହିର୍ଜଗତରେ ଯେଉଁ ସୌନ୍ଦର୍ଯ୍ୟ ଦେଖି ଆମେ ମୁଗ୍‌ଧ ହେଉ, ତାହା ଯେ ଆମ ମନ ଭିତରେ ଥାଏ — ବାହାରେ ଏହାର କୌଣସି ଅସ୍ତିତ୍ୱ ନାହିଁ, ଏହା ବୁଝାଉ ବୁଝାଉ ଆତ୍ମମଗ୍ନ ଆଚାର୍ଯ୍ୟଦେବ ନୀରବ ହୋଇଗଲେ । ଇଟାଲୀ ଉପକୂଳରେ ଥିବା ଧୂସର ବର୍ଣ୍ଣ ପାହାଡ଼ଗୁଡ଼ିକ ଉପେକ୍ଷାବିମିଶ୍ର ଭ୍ରୁକୁଟିଭଙ୍ଗରେ ଗର୍ବୋନ୍ନତ ଶିର ଟେକି ଦଣ୍ଡାୟମାନ । ଅପର ପାର୍ଶ୍ୱରେ ସ୍ନିଗ୍‌ଧ ଚନ୍ଦ୍ରାଲୋକସ୍ନାତ ହାସ୍ୟମୟ ସିସିଲୀ ଦ୍ୱୀପ — ଏହି ଅପୂର୍ବ

ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖୁ ଦେଖୁ ସହସା ସ୍ୱାମୀଜୀ କହିଲେ, ''ମେସିନା ମୋତେ ଧନ୍ୟବାଦ ଦେବ; କାରଣ ମୁଁ ତାକୁ ଏପରି ଅତୁଳ ସୌନ୍ଦର୍ଯ୍ୟ ଦେଇଛି ।'' ପରକ୍ଷଣରେ ସ୍ୱାମୀଜୀ ତାଙ୍କ ବାଲ୍ୟ-ଜୀବନର ଭଗବତ୍‌ଲାଭ ପାଇଁ ତୀବ୍ର ବ୍ୟାକୁଳତା ଓ ସେଥି ନିମିତ୍ତ କଠୋର ସାଧନୋଦ୍ୟମ ବିଷୟରେ ବର୍ଣ୍ଣନା କରିବାକୁ ଲାଗିଲେ । କିଛି ସମୟ ପୂର୍ବେ ଉଚ୍ଚତମ ଅନୁଭୂତି-ପ୍ରବାହରେ ଅନୁପ୍ରାଣିତ ହୋଇ ଅଜ୍ଞାତସାରରେ ସେ ଯେଉଁ ବାକ୍ୟଟି ସହସା କହିଦେଇଥିଲେ, ଶିଷ୍ୟା ମନରୁ ତାହା ଭୁଲାଇ ଦେବା ନିମିତ୍ତ ଯେପରି କି ସେ ଜ୍ଞାତସାରରେ ଚେଷ୍ଟା କରୁଥିଲେ । ଅନେକ ସମୟରେ ତାଙ୍କ ମୁହଁରୁ ଇଚ୍ଛା ବିରୁଦ୍ଧରେ ଅନେକ କଥା ବାହାରି ପଡୁଥିଲା, ଯେଉଁଥିପାଇଁ ପରମୁହୂର୍ତ୍ତରେ ସେ ଲଜ୍ଜାରେ ରକ୍ତବର୍ଣ୍ଣ ହୋଇ ସେ ସ୍ଥାନ ପରିତ୍ୟାଗ କରୁଥିଲେ ।

ଆଉଦିନେ ସକାଳେ ଜାହାଜ ଜିବ୍ରାଲ୍‌ଟାର ଭିତରେ ଯାଉଥାଏ; ସ୍ୱାମୀଜୀ ଡେକ୍ ଉପରେ ଆତ୍ମମଗ୍ନ ହୋଇ ମୂର୍ତ୍ତିପରି ଠିଆ ହୋଇଛନ୍ତି ଏପରି ସମୟରେ ନିବେଦିତା ଆସି ତାଙ୍କ ନିକଟରେ ଠିଆ ହେଲେ । ତାଙ୍କୁ ଦେଖିବା ମାତ୍ରେ ଆଚାର୍ଯ୍ୟଦେବ କୂଳକୁ ଦେଖାଇ କହିଲେ, ''ତୁମେ କ'ଣ ସେମାନଙ୍କୁ ଦେଖୁ ନାହଁ ? ସେମାନେ କୂଳରେ ଅବତରଣ କରି, 'ଦିଅ ଦିଅ' (ବିଶ୍ୱାସ ବିଶ୍ୱାସ) ଧ୍ୱନିରେ ଦିଗ ମୁଖରିତ କରୁଛନ୍ତି ।''

ଏହି କଥା କହି ସ୍ୱାମୀଜୀ ଭାବାବେଗରେ ଅଧଘଣ୍ଟାଏ ପର୍ଯ୍ୟନ୍ତ ମୁରୀୟ ବିଶ୍ୱାସୀ ମୁସଲମାନଗଣଙ୍କ ସ୍ପେନ-ବିଜୟ କାହାଣୀ ବର୍ଣ୍ଣନା କଲେ ।

ଭଗିନୀ ନିବେଦିତା ଯତ୍ନ ସହକାରେ ଆଚାର୍ଯ୍ୟଦେବଙ୍କ ଅମୂଲ୍ୟ ଉପଦେଶଗୁଡ଼ିକ ଲିପିବଦ୍ଧ କରିଥିଲେ । ସେଗୁଡ଼ିକ ମନଯୋଗ ସହକାରେ ପଢ଼ିଲେ ଜଣାପଡ଼େ, ସେହି କ୍ଷୀରଭବାନୀ ମନ୍ଦିରର ଦୈବବାଣୀ, ଜଗନ୍ମାତାଙ୍କ ସ୍ନେହକରୁଣା ମୃଦୁ ଭର୍ତ୍ସନା ତାଙ୍କ ଚରିତ୍ରରେ ବିଚିତ୍ର ପରିବର୍ତ୍ତନ ଆଣିଥିଲେ ହେଁ ସର୍ବତ୍ୟାଗୀ ସନ୍ନ୍ୟାସୀ ଭାରତର କଲ୍ୟାଣଚିନ୍ତାରୁ କ୍ଷଣେମାତ୍ର ବିରତ ହୋଇ ନ ଥିଲେ । ଭାରତର ପୌରାଣିକ ଓ ଐତିହାସିକ କାହାଣୀଗୁଡ଼ିକ ଆଲୋଚନା କରିବା ମାତ୍ରେ ତାଙ୍କ ଭାବମୁଗ୍ଧ ହୃଦୟ ବର୍ତ୍ତମାନ ଶୋଚନୀୟ ଅଧଃପତନର ନୈରାଶ୍ୟବ୍ୟଞ୍ଜକ ଦୃଶ୍ୟଗୁଡ଼ିକୁ ଯେପରି ସମ୍ପୂର୍ଣ୍ଣଭୁଲି ଯାଉଥିଲା । ଗଭୀର ଶ୍ରଦ୍ଧା ସହିତ ସେ ଗୋଟିଏ ମହିମାସମୁଜ୍ଜ୍ୱଳ ଭବିଷ୍ୟତକୁ ଜୀବନ୍ତ ସତ୍ୟପରି ଚିତ୍ରିତ କରି ନେଉଥିଲେ—ଆଉ ଏହି ସ୍ଥାନରେ ତାଙ୍କର ଗୌରବମୟ ବ୍ୟକ୍ତିତ୍ୱର ପ୍ରଭାବ ଅଧିକତର ସୁସ୍ପଷ୍ଟରୂପେ ଅନୁଭବ କରାଯାଉଥିଲା । ଭାରତର ଉତ୍‌ଥାନ-ପତନର ଇତିହାସ ଓ ଜଗଦ୍ଧିତାୟ ଆବିର୍ଭୂତ ମହାପୁରୁଷଗଣଙ୍କ ଅଲୌକିକ କାର୍ଯ୍ୟପ୍ରଣାଳୀ ମଧ୍ୟରେ ସେ ଜାତୀୟ ଜୀବନର ମୂଳ ଉଦ୍ଦେଶ୍ୟର ଗୋଟିଏ ଘାତ-ପ୍ରତିଘାତପୂର୍ଣ୍ଣ ବିକାଶ ସର୍ବଦା ଉପଲବ୍ଧି କରୁଥିଲେ । ସେ ଲକ୍ଷ୍ୟ କରିଥିଲେ, ''ବାହ୍ୟ ଜାତିର ସଂଘର୍ଷରେ ଭାରତ କ୍ରମେ ବିନିଦ୍ର ହେଉଛି ! ଏହି ସ୍ୱଳ୍ପ ଜାଗରୁକତାର ଫଳ ସ୍ୱରୂପ

ସ୍ୱାଧୀନ ଚିନ୍ତାର କିଞ୍ଚିତ ଉନ୍ମେଷ । ଗୋଟିଏ ଦିଗରେ ପ୍ରତ୍ୟକ୍ଷ ଶକ୍ତି ସଂଗ୍ରହରୂପେ ପ୍ରମାଣବାହନ ଶତସୂର୍ଯ୍ୟଜ୍ୟୋତିଃ ଆଧୁନିକ ପାଶ୍ଚାତ୍ୟ ବିଜ୍ଞାନର ଦୃଷ୍ଟି-ପ୍ରତିଘାତୀ ପ୍ରଭା, ଅପରଦିଗରେ ସ୍ୱଦେଶୀ ବିଦେଶୀ ବହୁ ମନୀଷୀଙ୍କଦ୍ୱାରା ଉଦ୍‌ଘାଟିତ ଯୁଗଯୁଗାନ୍ତରର ସହାନୁଭୂତି ହେତୁ ସର୍ବଶରୀରରେ କ୍ଷିପ୍ର-ସଞ୍ଚାରୀ, ବଳପ୍ରଦ, ଆଶାପ୍ରଦ, ପୂର୍ବପୁରୁଷମାନଙ୍କ ଅପୂର୍ବ ବୀର୍ଯ୍ୟ, ଅମାନବ ପ୍ରତିଭା ଓ ଦେବଦୁର୍ଲ୍ଲଭ ଅଧ୍ୟାତ୍ମ-କାହାଣୀ । ଗୋଟିଏ ଦିଗରେ ଜଡ଼ବିଜ୍ଞାନ, ପ୍ରଚୁର ଧନଧାନ୍ୟ, ପ୍ରଭୂତ ବଳସଞ୍ଚୟ, ତୀବ୍ର ଇନ୍ଦ୍ରିୟସୁଖ ବିଜାତୀୟ ଭାଷାରେ ମହାକୋଳାହଳ ଉତ୍‌ଥାପିତ କରୁଛି, ଅନ୍ୟ ଦିଗରେ ଏହି ମହାକୋଳାହଳ ଭେଦ କରି କ୍ଷୀଣ ଅଥଚ ମର୍ମଭେଦୀ ସ୍ୱରରେ ପୂର୍ବ ଦେବଗଣଙ୍କର ଆର୍ତ୍ତନାଦ କର୍ଣ୍ଣରେ ପ୍ରବେଶ କରୁଛି । ସମ୍ମୁଖରେ ବିଚିତ୍ର ଯାନ, ବିଚିତ୍ର ପାନୀୟ, ସୁସଜ୍ଜିତ ଭୋଜନ, ବିଚିତ୍ର ପରିଚ୍ଛେଦରେ ଲଜ୍ଜାହୀନା ବିଦୁଷୀ ନାରୀମାନଙ୍କର ନୂତନ ଭାବ, ନୂତନ ଭଙ୍ଗୀ, ଅପୂର୍ବ ବାସନାର ଉଦୟ କରୁଛି । ପୁଣି ମଧ୍ୟେ ମଧ୍ୟେ ସେ ଦୃଶ୍ୟ ଅନ୍ତର୍ହିତ ହୋଇ ବ୍ରତ, ଉପବାସ, ସୀତା, ସାବିତ୍ରୀ, ତପୋବନ, ଜଟାବଲ୍‌କଳ, କଷାୟ-କୌପୀନ, ସମାଧି, ଆତ୍ମାନୁସନ୍ଧାନ ଉପସ୍ଥିତ ।'' ଗୋଟିଏ ଦିଗରେ ମିଶନାରୀ, ଅନ୍ୟ ଦିଗରେ ବ୍ରାହ୍ମ କୋଳାହଳ'—'ଗୋଟିଏ ଦିଗରେ ଗତାନୁଗତିକ ଜଡ଼ପିଣ୍ଡବତ୍ ସମାଜ, ଅନ୍ୟ ଦିଗରେ ଅସ୍ଥିର ଧୈର୍ଯ୍ୟହୀନ ଅଗ୍ନିବର୍ଷଣକାରୀ ସଂସ୍କାରକ'—ଏହି ଭାବବିପ୍ଳବ-ସମୁତ୍‌ଥିତ ଅଭାବ ମଧ୍ୟରେ କେବଳ ପଶ୍ଚିମ ଦିଗକୁ ଅହୋରାତ୍ର ହାତ ପତାଇ ରଖିବା ଲାଗି କ'ଣ ଆମ ପାଇଁ ପୂର୍ବ ଦେଶରେ ସ୍ଥାନ ନିର୍ଦ୍ଦିଷ୍ଟ ହୋଇଥିଲା ? ଏହି ସମସ୍ୟାଦ୍ୱାରା ବିବେକାନନ୍ଦଙ୍କ ଜୀବନ ଭିତରେ ଓ ବାହାରେ ପ୍ରବଳ ଝଡ଼ରେ ପ୍ରକାଣ୍ଡ ବଟବୃକ୍ଷ ପରି ଆଲୋଡ଼ିତ ହୋଇଥିଲା । ତାଙ୍କ ଜୀବନର ଝଡ଼ ପୂର୍ବ ଓ ପଶ୍ଚିମ ଉଭୟ ସମୁଦ୍ରରେ ତରଙ୍ଗ ସୃଷ୍ଟି କରିଅଛି । ତଥାପି କଟୀଦେଶକୁ କୌପୀନରେ ଆବୃତ୍ତ କରି ଏହି ଚକ୍ଷୁଷ୍ମାନ୍ ସନ୍ନ୍ୟାସୀ ସୂର୍ଯ୍ୟୋଦୟ ପ୍ରତୀକ୍ଷାରେ ତାଙ୍କ ଦେଶର ମାଟି ଉପରେ ପୂର୍ବାସ୍ୟ ହୋଇ ଦଣ୍ଡାୟମାନ ହୋଇଥିଲେ । ଜାତୀୟ ଭାବ ଓ ସଭ୍ୟତା ବିରୋଧରେ ବିଦ୍ରୋହ କରି, ପରର ନକଲ କରି ଯେ ଗୋଟିଏ ଜାତିର ଅଭ୍ୟୁଦୟ ହୋଇପାରେ ନାହିଁ, ଏହା ବିବେକାନନ୍ଦ ହିଁ ଅତି ଦୁଃସାହସର ସହିତ ପ୍ରଥମେ ଦେଶକୁ ଶୁଣାଇଥିଲେ । ଜାତିର ସ୍ୱଭାବ-ଧର୍ମରୁ ସ୍ୱାଭାବିକ ବିକାଶରୁ ବିଚ୍ଛିନ୍ନ ହୋଇ ଫିରିଙ୍ଗି ଶିକ୍ଷା-ଦୀକ୍ଷାର ଅସଂଯତ ଆସ୍ଫାଳନ—ଏହା କି ଅଭିବ୍ୟକ୍ତ ? ଏହା ଅନୁକରଣ, ଏହା ଆତ୍ମବିସ୍ମରଣ, ଏହା ଜାତୀୟ ପ୍ରକୃତି ବିରୋଧରେ ଅତି ଜଘନ୍ୟ ବ୍ୟଭିଚାର । ଆଉ ଏହି ବ୍ୟଭିଚାରର ପ୍ରକୃତି ନିର୍ଦ୍ଦେଶ କରିବାକୁ ଯାଇ ଆଚାର୍ଯ୍ୟଦେବ ବେଳେ ବେଳେ ତାଙ୍କ ଜୀବନର ମହାନ୍ ଉଦ୍ଦେଶ୍ୟ ବିଷୟ ଉତ୍ସାହୋଦ୍ଦୀପ୍ତ କଣ୍ଠରେ ବ୍ୟକ୍ତ କରୁଥିଲେ । ଭଗିନୀ ନିବେଦିତା ତନ୍ମୟ ହୋଇ ସେହି ସୁଯୋଗରେ ନିଜ ଗୁରୁଙ୍କ ଧାରଣା, ଆଶା ଓ ଆକାଙ୍‌କ୍ଷାଗୁଡ଼ିକୁ ଶ୍ରବଣ କରୁଥିଲେ । ତାଙ୍କର ବିଶ୍ୱାସ ଥିଲା, ଅଦୂର ଭବିଷ୍ୟତରେ ଯେଉଁ

ଅସଂଖ୍ୟ ମହାପ୍ରାଣ ଭକ୍ତ ଓ କର୍ମୀ ଜନ୍ମଗ୍ରହଣ କରି ବିବେକାନନ୍ଦଙ୍କ ସ୍ୱପ୍ନଗୁଡ଼ିକୁ କାର୍ଯ୍ୟରେ ପରିଣତ କରିବା ଚେଷ୍ଟାରେ ଜୀବନ ଉତ୍ସର୍ଗ କରିବେ, ସେମାନଙ୍କର ଓ ସ୍ୱାମୀଜୀଙ୍କ ମଧ୍ୟରେ ସେ ବାର୍ତ୍ତାବାହୀ ବା ସେତୁରୂପେ ଚିରଦିନ ବିରାଜମାନ ରହିବାର ଗୌରବମୟ ଅଧିକାର ଲାଭ କରି ଧନ୍ୟ ହୋଇଛନ୍ତି । ଏହି ପ୍ରଶଂସନୀୟ ଦାୟିତ୍ୱବୋଧ ପ୍ରେରଣାରେ ଦିନେ ଭଗିନୀ ନିବେଦିତା ସ୍ୱାମୀଜୀଙ୍କୁ ପ୍ରଶ୍ନ କରିଥିଲେ, ଭାରତର କଲ୍ୟାଣକଳ୍ପେ ସେ ଯେଉଁ ଉପାୟଗୁଡ଼ିକ ନିର୍ଦ୍ଧାରଣ କରନ୍ତି, ତାହା ସହିତ ଅପରାପର ଭାରତ-ହିତୈଷୀମାନଙ୍କଦ୍ୱାରା ପ୍ରଚାରିତ ଆଦର୍ଶର ପ୍ରତ୍ୟକ୍ଷ ଭାବରେ କେଉଁ କେଉଁ ବିଷୟରେ ପାର୍ଥକ୍ୟ ପରିଲକ୍ଷିତ ହୁଏ ? ଭଗିନୀ ଜାଣିଥିଲେ ଯେ, ଏହି ପ୍ରକାର ମୁହାଁମୁହିଁ ପ୍ରଶ୍ନ ପଚାରି ବିବେକାନନ୍ଦଙ୍କ ମନକଥା ଟାଣି ବାହାର କରିବା ଅତି ଦୁରୂହ ବ୍ୟାପାର; କିନ୍ତୁ ତାଙ୍କ ପ୍ରଶ୍ନର ଉତ୍ତରରେ ସ୍ୱାମୀଜୀ ଯେତେବେଳେ ବିଭିନ୍ନ ମତାବଲମ୍ବୀ ନେତାମାନଙ୍କ କାର୍ଯ୍ୟପ୍ରଣାଳୀର ପ୍ରତିକୂଳ ସମାଲୋଚନା କରିବା ଦୂରେ ଥାଉ, ବରଂ ସେମାନଙ୍କ ଚରିତ୍ର ଓ ଉଦ୍ୟମକୁ ମୁକ୍ତକଣ୍ଠରେ ପ୍ରଶଂସା କରିବାକୁ ଲାଗିଲେ, ସେତେବେଳେ ବିସ୍ମିତା ନିବେଦିତା ଆଉ ଏ ବିଷୟରେ ସ୍ୱାମୀଜୀଙ୍କ ମତାମତ ଜାଣିବା ନିମିତ୍ତ ତାଙ୍କୁ ବିରକ୍ତ କରିବାକୁ ସଙ୍ଗତ ମନେକଲେ ନାହିଁ । ସହସା ସନ୍ଧ୍ୟା ସମୟରେ ସ୍ୱାମୀଜୀ ଏହି ପ୍ରସଙ୍ଗକୁ ପୁନର୍ବାର ଉଠାଇ କହିବାକୁ ଲାଗିଲେ, ''ଯେଉଁମାନେ ସେମାନଙ୍କ ବ୍ୟକ୍ତିଗତ କୁସଂସ୍କାରଗୁଡ଼ିକୁ ଆମ ସ୍ୱଦେଶବାସୀଙ୍କ ଭିତରେ ଚଳାଇନେବାକୁ ଚାହାଁନ୍ତି, ମୁଁ ସର୍ବାନ୍ତକରଣରେ ସେମାନଙ୍କ ବିରୋଧରେ ତୀବ୍ର ପ୍ରତିବାଦ ଜଣାଇବାକୁ ଚାହେଁ । ମିଶର ଦେଶର ପୁରାତତ୍ତ୍ୱାଲୋଚନାକାରୀମାନଙ୍କର ମିଶର ଦେଶ ପ୍ରତି ଅନୁରାଗ ଥିବା ଭଳି କାହାରି କାହାରି ଭାରତ ପ୍ରତି ଗୋଟିଏ ସ୍ୱାର୍ଥଜଡ଼ିତ ଅନୁରାଗ ଥିବା ବିଚିତ୍ର ନୁହେଁ । ପ୍ରତ୍ୟେକେ ହିଁ ନିଜ ନିଜ ଶିକ୍ଷା, କଳ୍ପନା ଓ ପୁସ୍ତକ-ନିବନ୍ଧ ଧାରଣାର ଅନୁକୂଳ ହେବାଭଳି ଦେଖିବାକୁ ଚାହାଁନ୍ତି । ମୋ ଇଚ୍ଛା, ପ୍ରାଚୀନ ଭାରତର ଯାହା କିଛି ଗୌରବମୟ, ତାହା ସହିତ ବର୍ତ୍ତମାନ ଯୁଗର ଭଲ ଜିନିଷଗୁଡ଼ିକ ସ୍ୱାଭାବିକ ଭାବରେ ଏକତ୍ରୀଭୂତ ହୋଇ ନବୀନ ଭାରତ ଗଢ଼ିଉଠୁ । ଆଉ ଏହି ଉନ୍ନତିମୂଳକ ଗଠନ ବ୍ୟାପାରଟି ସର୍ବପ୍ରକାର ବହିଃଶକ୍ତିକୁ ସଂପୂର୍ଣ୍ଣରୂପେ ଉପେକ୍ଷା କରିବା ହିଁ ବାଞ୍ଛନୀୟ ।''

ପ୍ରାଚୀନ ଓ ଆଧୁନିକର ଏକପ୍ରକାର ସମ୍ମିଳନ ଯେ ଗୋଟିଏ ଅସମ୍ଭବ କାଳ୍ପନିକ ବ୍ୟାପାର ନୁହେଁ, ତାହା ନିର୍ଦ୍ଦେଶ କରିବାକୁ ଯାଇ ସେ ଶ୍ରୀରାମକୃଷ୍ଣଙ୍କ ଜୀବନ ପ୍ରତି ବିଶେଷଭାବେ ଦୃଷ୍ଟି ଦେଇ କହିଲେ, ''ସେ ତାହାର ପନ୍ଥାସ୍ୱରୂପ — ଅଦ୍ଭୁତ ଅହଂଜ୍ଞାନରହିତ ପନ୍ଥା !'' — କହୁ କହୁ ସ୍ୱାମୀଜୀ ଦୃଢ଼ ସ୍ୱରରେ କହି ଉଠିଲେ, ''ସେ ଏହିପରି ଅସାଧାରଣ ଜୀବନ ଯାପନ କରି ଯାଇଛନ୍ତି — ମୁଁ ତାଙ୍କର ବ୍ୟାଖ୍ୟାକାର ମାତ୍ର ।''

## ଲଣ୍ଡନ ଓ ନିଉୟର୍କ

ଜୁଲାଇ ଏକତିରିଶ ତାରିଖରେ ଆଚାର୍ଯ୍ୟଦେବ ଲଣ୍ଡନରେ ପହଞ୍ଚିଲେ । ଟିଲବେରୀ ଡକ୍‌ରେ ଅବତରଣ କରି ସେ ଇଂରେଜ ଶିଷ୍ୟ ଓ ଶିଷ୍ୟାମାନଙ୍କ ମଧ୍ୟରେ ଦୁଇଜଣ ଆମେରିକୀୟ ଶିଷ୍ୟା ତାଙ୍କୁ ଅଭ୍ୟର୍ଥନା କରିବା ଲାଗି ଆସିଥିବା ଦେଖି ବିସ୍ମିତ ଓ ଆନନ୍ଦିତ ହେଲେ । ଏମାନେ ସମ୍ବାଦପତ୍ରରେ ସ୍ୱାମୀଜୀଙ୍କ ଇଂଲଣ୍ଡ ଆଗମନ ସମ୍ବାଦ ପଢ଼ି ଗୁରୁଦର୍ଶନ ଲାଗି ତୀବ୍ର ଆକାଙ୍‌କ୍ଷା ହେତୁ ଡେଟ୍ରଏଟରୁ ଲଣ୍ଡନ ଆସିଥିଲେ । ସ୍ୱାମୀଜୀ ଲଣ୍ଡନରୁ ଅଳ୍ପ ଦୂରରେ ଅବସ୍ଥିତ ଉଇମ୍ବଲଡନ୍ ନାମକ ସ୍ଥାନରେ ବାସ କଲେ । ଏଥର ସ୍ୱାମୀଜୀ ଦର୍ଶନାର୍ଥୀ ଜିଜ୍ଞାସୁମାନଙ୍କ ସହିତ ଧର୍ମାଲୋଚନା କରିବା ବ୍ୟତୀତ ପ୍ରକାଶ୍ୟ ଭାବରେ କୌଣସି ବକ୍ତୃତା ଦେଇ ନ ଥିଲେ । ଅବଶେଷରେ ଆମେରିକାରୁ ପୁନଃ ପୁନଃ ଆହୂତ ହୋଇ ଅଗଷ୍ଟ ଷୋହଳ ତାରିଖରେ ଗୁରୁଭାଇ ତୁରୀୟାନନ୍ଦ ଓ ଆମେରିକୀୟ ଶିଷ୍ୟା ଦୁଇଜଣଙ୍କୁ ସାଙ୍ଗରେ ନେଇ ନିଉୟର୍କ ଅଭିମୁଖେ ଯାତ୍ରାକଲେ । ଏହି ସମୁଦ୍ରଯାତ୍ରା ପ୍ରସଙ୍ଗରେ ସ୍ୱାମୀଜୀଙ୍କ ଶିଷ୍ୟା ଶ୍ରୀମତୀ ଫାଙ୍କି ଲେଖିଛନ୍ତି, ‘‘ସମୁଦ୍ରବକ୍ଷରେ ଏହି ଦଶଟି ଦିନର ସ୍ମୃତି କେବେ ହେଁ ଭୁଲିବାର ନୁହେଁ । ପ୍ରତ୍ୟହ ପ୍ରଭାତରେ ଗୀତାପାଠ ଓ ତାହାର ବ୍ୟାଖ୍ୟା ହେଉଥିଲା ଏବଂ କେତେବେଳେ ସଂସ୍କୃତ କବିତା ଓ କାହାଣୀ ଆବୃତ୍ତି ଓ ଅନୁବାଦ ଶ୍ରବଣ କରୁଥିଲୁ; କେତେବେଳେ ଅବା ପ୍ରାଚୀନ ବୈଦିକ ପ୍ରାର୍ଥନାମନ୍ତ୍ରଗୁଡ଼ିକ ପାଠ ହେଉଥିଲା । ନିସ୍ତରଙ୍ଗ ସମୁଦ୍ର, ମନୋହର ଚନ୍ଦ୍ରକରୋଜ୍ଜ୍ୱଳ ରାତ୍ରି—ଦିନେ ଗୁରୁଦେବ ଡେକ୍ ଉପରେ ପାଦଚାରଣ କରୁ କରୁ ପ୍ରାକୃତିକ ସୌନ୍ଦର୍ଯ୍ୟ ବିଷୟରେ ଆମ୍ଭମାନଙ୍କୁ ବୁଝାଉଥାନ୍ତି । ଶୁଭ୍ର ଜ୍ୟୋତ୍ସ୍ନା-ବିଧୌତ ତାଙ୍କ ଦୀର୍ଘ ବପୁ ଅତି ମନୋହର ଦେଖାଯାଉଥିଲା । ଏହି ସମୟରେ ସହସା ଦଣ୍ଡାୟମାନ ହୋଇ ସେ କହିଲେ, ‘‘ମାୟା-ରାଜ୍ୟର ଦୃଶ୍ୟଗୁଡ଼ିକ ଯଦି ଏତେ ସୁନ୍ଦର ହୁଏ, ତାହାହେଲେ ଭାବି ଦେଖ, ଏହା ପଛରେ ଅବସ୍ଥିତ ସେହି ସତ୍ୟସ୍ୱରୂପ କେତେ ସୁନ୍ଦର !!’’

‘‘ଆଉ ଦିନେ ଜ୍ୟୋତ୍ସ୍ନାଲୋକିତ ସନ୍ଧ୍ୟାରେ ସେ ନୀରବରେ ଠିଆ ହୋଇଥିଲେ । ଅପୂର୍ବ ସୌନ୍ଦର୍ଯ୍ୟମୟୀ ରଜନୀର ଉଜ୍ଜ୍ୱଳ ରୂପରାଶି, ଊର୍ଦ୍ଧ୍ୱରେ ସ୍ୱର୍ଣ୍ଣବର୍ଣ୍ଣ ପୂର୍ଣ୍ଣଚନ୍ଦ୍ର ହସୁଥିଲେ—ତନ୍ମୟ ହୋଇ ଏହି ଦୃଶ୍ୟ ଦେଖୁ ଦେଖୁ ସେ ହାତ ଟେକି କହିଲେ, ‘କବିତାର ସାର ସମ୍ମୁଖରେ ବିସ୍ତୃତ ରହିଛି, କବିତା ଆବୃତ୍ତି କରିବାର ପ୍ରୟୋଜନ କ’ଣ ?’’

ନିଉୟର୍କରେ ପହଞ୍ଚି ଆଚାର୍ଯ୍ୟଦେବ ଶ୍ରୀ ଓ ଶ୍ରୀମତୀ ଲିଗେଟ୍‌ଙ୍କଦ୍ୱାରା ସାଦରେ ଅତିଥିରୂପେ ଗୃହୀତ ହେଲେ । ସେମାନଙ୍କ ଭବନରେ କିଛିଦିନ କଟାଇ ସେହିଦିନ ଅପରାହ୍ଣରେ ଲିଗେଟ୍ ଦମ୍ପତିଙ୍କ ଅନୁରୋଧରେ ଗୁରୁଭ୍ରାତା ତୁରୀୟାନନ୍ଦଙ୍କ ସହିତ ନିଉୟର୍କଠାରୁ ଦେଢ଼ଶହ ମାଇଲ ଦୂରବର୍ତ୍ତୀ ସେମାନଙ୍କ ପଲ୍ଲୀ ଭବନ

'ରିଜ୍‌ଲେମ୍ୟାନର୍' ନାମକ ସ୍ଥାନକୁ ଗଲେ । ସ୍ୱାମୀଜୀଙ୍କ ଦୈହିକ ଅବସ୍ଥା ଦର୍ଶନ କରି ସହୃଦୟ ଲିଗେଟ୍ ଦମ୍ପତି ତାଙ୍କୁ ପ୍ରଚାର କାର୍ଯ୍ୟ ଆରମ୍ଭ କରିବାକୁ ଅନୁମତି ଦେଲେ ନାହିଁ । ଭଗ୍ନଦେହ କଠୋର ପରିଶ୍ରମ ଭାର ସହ୍ୟ କରିପାରିବ ନାହିଁ ବୋଲି ଆଶଙ୍କା କରି ସେମାନେ ସ୍ୱାମୀଜୀଙ୍କର ସୁଚିକିତ୍ସାର ବନ୍ଦୋବସ୍ତ କଲେ । ମାସକ ପରେ ନିବେଦିତା ଇଂଲଣ୍ଡରୁ ଆସି ସେଠାରେ ପହଞ୍ଚିଲେ । ଏଣେ ସ୍ୱାମୀ ଅଭେଦାନନ୍ଦ ପ୍ରଚାର କାର୍ଯ୍ୟରେ ଅନ୍ୟତ୍ର ଥିଲେ; ତେଣୁ ନିଉୟର୍କରେ ସ୍ୱାମୀଜୀଙ୍କ ସହିତ ଦେଖା କରି ପାରି ନ ଥିବାରୁ କେତେଦିନ ପରେ ସେ ମଧ୍ୟ ସେଠାରେ ଆସି ପହଞ୍ଚିଲେ । ସ୍ୱାମୀଜୀ ତାଙ୍କଠାରୁ ବେଦାନ୍ତ ପ୍ରଚାର କାର୍ଯ୍ୟରେ ସଫଳତା ସମ୍ବାଦ ଓ ନିଉୟର୍କରେ 'ବେଦାନ୍ତ ସମିତି'ର ଗୋଟିଏ ସ୍ଥାୟୀ ଗୃହର ବନ୍ଦୋବସ୍ତ ହେଉଛି ଶୁଣି ଅତୀବ ଆନନ୍ଦିତ ହେଲେ ଏବଂ ଗୁରୁଭ୍ରାତାଙ୍କ ନିଃସ୍ୱାର୍ଥ ଉଦ୍ୟମ ଯୋଗୁଁ ଧନ୍ୟବାଦ ଦେଲେ । ଅଭେଦାନନ୍ଦ ଦିନକ ପରେ ବେଦାନ୍ତ ସମିତି କାର୍ଯ୍ୟ ଯୋଗୁଁ ନିଉୟର୍କକୁ ଫେରିଗଲେ । ଅକ୍ଟୋବର ପନ୍ଦର ତାରିଖରେ ବେଦାନ୍ତ ସମିତିର ନୂତନ ଗୃହ ପ୍ରତିଷ୍ଠା ସୁସମ୍ପନ୍ନ କରି ବାଇଶ ତାରିଖଠାରୁ ରୀତିମତ ବକ୍ତୃତା ପ୍ରଦାନ ଓ ପ୍ରଶ୍ନୋତ୍ତର କ୍ଲାସ କାର୍ଯ୍ୟ ଆରମ୍ଭ କରିଦେଲେ । କହିବା ବାହୁଲ୍ୟ ଯେ, ସ୍ୱାମୀଜୀ ଭାରତରେ ଅବସ୍ଥାନ କରୁଥିବା ବେଳେ ସ୍ୱାମୀ ଅଭେଦାନନ୍ଦ ଅକ୍ଳାନ୍ତ ପରିଶ୍ରମ ଓ ଦକ୍ଷତାର ସହିତ ପ୍ରଚାର କାର୍ଯ୍ୟ ଅକ୍ଷୁର୍ଣ୍ଣ ରଖିଥିଲେ । ଏଣେ ସ୍ୱାସ୍ଥ୍ୟୋନ୍ନତି ସଙ୍ଗେ ସଙ୍ଗେ ବିବେକାନନ୍ଦ ନିଉୟର୍କକୁ ଫେରିଯିବା ଲାଗି ବ୍ୟାକୁଳ ହୋଇ ପଡ଼ିଲେ । ଅବଶେଷରେ ନଭେମ୍ବର ପାଞ୍ଚ ତାରିଖରେ ଅତିଥିବତ୍ସଳ ଲିଗେଟ୍ ଦମ୍ପତିଙ୍କଠାରୁ ବିଦାୟ ଗ୍ରହଣ କରି ଭଗିନୀ ନିବେଦିତା ଓ ସ୍ୱାମୀ ତୁରୀୟାନନ୍ଦଙ୍କ ସହିତ ନିଉୟର୍କରେ ପହଞ୍ଚିଲେ ।

ନଭେମ୍ବର ଆଠ ତାରିଖରେ ବେଦାନ୍ତ ସମିତି ଗୃହରେ ଆହୂତ ପ୍ରଶ୍ନୋତ୍ତର ସଭାରେ ସ୍ୱାମୀ ବିବେକାନନ୍ଦ ସାଧାରଣଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ସ୍ୱାମୀ ଅଭେଦାନନ୍ଦ ତାଙ୍କୁ ବେଦାନ୍ତ ସମିତିର ନୂତନ ସଭ୍ୟମାନଙ୍କ ସହିତ ପରିଚୟ କରାଇ ଦେଲେ । ଶତ ଶତ ଉତ୍ସୁକ ନରନାରୀଙ୍କ ଆଗ୍ରହପୂର୍ଣ୍ଣ ଆବେଦନ ହେତୁ ସ୍ୱାମୀଜୀ ଉକ୍ତ ଦିବସ ସ୍ୱୟଂ ଜିଜ୍ଞାସୁ ବ୍ୟକ୍ତିମାନଙ୍କ ପ୍ରଶ୍ନର ଉତ୍ତର ପ୍ରଦାନ କରି ସେମାନଙ୍କୁ କୃତାର୍ଥ କଲେ । ନଭେମ୍ବର ଦଶ ତାରିଖ ଦିନ ସ୍ଥାନୀୟ ଜନସାଧାରଣଙ୍କ ପକ୍ଷରୁ ତାଙ୍କୁ ଅଭିନନ୍ଦନ ଦିଆହେଲା । ଆଚାର୍ଯ୍ୟଦେବ ପୁରାତନ ବନ୍ଧୁବାନ୍ଧବ ଓ ଶିଷ୍ୟମଣ୍ଡଳୀ ସହିତ ମିଳିତ ହୋଇ ଆନନ୍ଦର ସହିତ ଉକ୍ତ ଅଭିନନ୍ଦନ-ପତ୍ରର ସମୁଚିତ ଉତ୍ତର ଦେଲେ ।

ସ୍ୱାମୀ ତୁରୀୟାନନ୍ଦ, ଅଭେଦାନନ୍ଦଙ୍କ ସହିତ ମିଶି ବେଦାନ୍ତ ସମିତିର କାର୍ଯ୍ୟଭାର ଗ୍ରହଣ କଲେ । ସ୍ୱଳ୍ପକାଳ ମଧ୍ୟରେ ତାଙ୍କ ସମୁନ୍ନତ ଓ ଉଦାର ଚରିତ୍ରର ପ୍ରଭାବ ଜନସାଧାରଣଙ୍କ ହୃଦୟକୁ ଆକର୍ଷଣ କଲା । କେତେ ସପ୍ତାହ ପରେ ସେ ଆହୂତ ହୋଇ ନିଉୟର୍କ ନିକଟବର୍ତ୍ତୀ ମଣ୍ଟ୍ କ୍ଲେୟାର ନାମକ ସ୍ଥାନକୁ ଗମନ

କଲେ । ଡିସେମ୍ବର ମାସରେ କେମ୍ବ୍ରିଜରେ ବେଦାନ୍ତ ପ୍ରଚାର କାର୍ଯ୍ୟ ଯୋଗୁଁ ସେ ସମଧିକ ଖ୍ୟାତି ଓ ପ୍ରତିପତ୍ତି ଲାଭ କଲେ । ଡିସେମ୍ବର ଦଶ ତାରିଖରେ କେମ୍ବ୍ରିଜ ସମ୍ମିଳନୀର ବନ୍ଦୋବସ୍ତ ଅନୁଯାୟୀ ସେ ଶଙ୍କରାଚାର୍ଯ୍ୟଙ୍କ ସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ପାଠ କଲେ । ହାର୍ଭାର୍ଡ଼ ବିଶ୍ୱବିଦ୍ୟାଳୟର ଅଧ୍ୟାପକବୃନ୍ଦ ଏବଂ ଅନ୍ୟାନ୍ୟ ବହୁ ଦାର୍ଶନିକ ଓ ଧର୍ମଯାଜକ ମନୋଯୋଗ ସହିତ ନବାଗତ ସ୍ୱାମୀଙ୍କ ପ୍ରବନ୍ଧ ଶ୍ରବଣ କରି ଶତମୁଖରେ ପ୍ରଶଂସା କଲେ । ଏହି ରୂପେ ସ୍ୱାମୀ ତୁରୀୟାନନ୍ଦ ମଧ୍ୟ ଆମେରିକାବାସୀ ହିନ୍ଦୁଧର୍ମ ଓ ଦର୍ଶନ ପ୍ରତି ଶ୍ରଦ୍ଧାସମ୍ପନ୍ନ ନରନାରୀଗଣଙ୍କଦ୍ୱାରା ଅନ୍ୟତମ ଆଚାର୍ଯ୍ୟ ରୂପେ ପରିଗୃହୀତ ହେଲେ ।

ବହୁ ଶିକ୍ଷିତ ନରନାରୀ, ଯେଉଁମାନେ ବିବେକାନନ୍ଦଙ୍କ ପୁସ୍ତକ ଓ ବକ୍ତୃତା ପାଠ କରି ତାଙ୍କପ୍ରତି ଶ୍ରଦ୍ଧାସମ୍ପନ୍ନ ହୋଇଥିଲେ, ଏବେ ସେ ଆମେରିକା ଆସିଛନ୍ତି ସମ୍ବାଦ ପାଇ ଦର୍ଶନାର୍ଥୀ ଭାବରେ ଦଳ ଦଳ ହୋଇ ନିଉୟର୍କ ଆସିଲେ । ସ୍ୱାମୀଜୀ ନିର୍ବିକାର ଚିତ୍ତରେ ପ୍ରତ୍ୟେକ ବ୍ୟକ୍ତିଙ୍କୁ ସାଦରେ ଗ୍ରହଣ କରି ତାଙ୍କର ଧର୍ମ ସମ୍ବନ୍ଧୀୟ ସମସ୍ୟାଗୁଡ଼ିକ ଭଞ୍ଜନ କରିଦେବାକୁ କେତେବେଳେ ହେଲେ ବିରକ୍ତ ହେଉ ନ ଥିଲେ । ପୁରାତନ ବନ୍ଧୁବାନ୍ଧବ ଓ ଶିଷ୍ୟଶିଷ୍ୟାଗଣଙ୍କ ସାଗ୍ରହ ଆହ୍ୱାନ ହେତୁ ସେ ନିଉୟର୍କର ନିକଟବର୍ତ୍ତୀ ବୋଷ୍ଟନ, ଡେଟ୍ରଏଟ, ବୃକ୍‌ଲୀନ ଇତ୍ୟାଦି କେତେକ ସ୍ଥାନକୁ ଯାଇଥିଲେ । ଏହିପରି ଭାବରେ ଅନ୍ତରଙ୍ଗ ଭକ୍ତ ଓ ବନ୍ଧୁମାନଙ୍କ ସହିତ ଦୁଇ ସପ୍ତାହ ଆନନ୍ଦରେ କଟାଇ ସ୍ୱାମୀଜୀ କାଲିଫର୍ଣ୍ଣିଆ ଅଭିମୁଖେ ଯାତ୍ରା କଲେ ।

## କାଲିଫର୍ଣ୍ଣିଆ

ପ୍ରଚାରକାର୍ଯ୍ୟର ଦାୟିତ୍ୱ ସେ ଆଗରୁ ସୁଯୋଗ୍ୟ ଗୁରୁଭ୍ରାତାମାନଙ୍କ ହସ୍ତରେ ଦେଇ ସାରିଥିଲେ । ସନ୍ନ୍ୟାସୀର ସର୍ବତୋମୁଖୀ ସ୍ୱାଧୀନତା ତାଙ୍କ ଆଚାର ବ୍ୟବହାରରେ ସୁସ୍ପଷ୍ଟ ଭାବରେ ଫୁଟି ଉଠିଥିଲା; ତାଙ୍କୁ ଦେଖିଲେ ମନେ ହେଉଥିଲା ଯେପରି କି ସେ ବାହ୍ୟ ଜଗତ ସହିତ ସବୁ ପ୍ରକାର ଦାୟିତ୍ୱ ଓ କର୍ତ୍ତବ୍ୟମୂଳକ ବନ୍ଧନ ଛିନ୍ନ କରିବାକୁ ଉଦ୍ୟତ ହୋଇଥିଲେ । କାଲିଫର୍ଣ୍ଣିଆ ରାସ୍ତାରେ ସ୍ୱାମୀଜୀଙ୍କୁ ବାଧ୍ୟ ହୋଇ ଚିକାଗୋରେ ଅବତରଣ କରିବାକୁ ହେଲା । ବନ୍ଧୁ ଓ ଭକ୍ତମଣ୍ଡଳୀଙ୍କ ଶ୍ରଦ୍ଧାପୂର୍ଣ୍ଣ ନିମନ୍ତ୍ରଣ ସେ ଉପେକ୍ଷା କରିପାରିଲେ ନାହିଁ । ଚିକାଗୋ ଅଧିବାସୀମାନେ ସ୍ୱାମୀଜୀଙ୍କ ସମ୍ମାନାର୍ଥେ ଅଭ୍ୟର୍ଥନା ଆୟୋଜନରେ ତ୍ରୁଟି କରି ନ ଥିଲେ । ସ୍ୱାମୀଜୀ ଚିକାଗୋରେ କେତେଦିନ ଅବସ୍ଥାନ କରି ନୂତନ ଓ ପୁରାତନ ଭକ୍ତମାନଙ୍କ ମନୋବାସନା ପୂର୍ଣ୍ଣ କଲେ । ଅବଶେଷରେ ସେମାନଙ୍କ ନିକଟରୁ ବିଦାୟ ଗ୍ରହଣ କରି ଡିସେମ୍ବର ପ୍ରଥମ ସପ୍ତାହରେ କାଲିଫର୍ଣ୍ଣିଆଠାରେ ଉପସ୍ଥିତ ହେଲେ । ୧୯୦୦ ଖ୍ରୀଷ୍ଟାବ୍ଦ ଜୁନ୍‌ମାସ ପର୍ଯ୍ୟନ୍ତ କ୍ରମାଗତ ସାତମାସ କାଳ ସେ ଉକ୍ତପ୍ରଦେଶରେ ଅବସ୍ଥାନ କରିଥିଲେ ।

ସ୍ୱାମୀଜୀ କାଲିଫର୍ଣ୍ଣିଆର ପ୍ରଧାନ ନଗରୀ ଲସ୍ ଏଞ୍ଜେଲ୍‌ସରେ ପଦାର୍ପଣ କରିବା ମାତ୍ରକେ ଶ୍ରୀମତୀ ବୋଲ୍‌ଡ୍‌ଗେଟ୍ ତାଙ୍କୁ ନିଜ ଘରେ ଆତିଥ୍ୟ ଗ୍ରହଣ କରିବା ନିମିତ୍ତ ଆହ୍ୱାନ କଲେ । ତାଙ୍କ ଶିଷ୍ୟା କୁମାରୀ ମ୍ୟାକ୍‌ଲାଉଡ୍ ମଧ୍ୟ ସେଠାରେ ଆଗରୁ ଅବସ୍ଥାନ କରୁଥିଲେ । ସ୍ୱାମୀଜୀ ଆସିବାର ଅଳ୍ପଦିନ ପରେ ପ୍ରତ୍ୟହ ଦଳେ ଦଳେ ନରନାରୀ ତାଙ୍କ ଦର୍ଶନ ପାଇଁ ଆସୁଥିଲେ । ଅନେକେ ତାଙ୍କ ପୁସ୍ତକାବଳୀ ଅଧ୍ୟୟନ କରି ଏପରି ମୁଗ୍ଧ ହୋଇଥିଲେ ଯେ, ବିବେକାନନ୍ଦ ଲସ୍ ଏଞ୍ଜେଲ୍‌ସରେ ଅବସ୍ଥାନ କରୁଛନ୍ତି ଜାଣିପାରି ଦୂରଦୂରାନ୍ତରରୁ ତାଙ୍କ ନିକଟକୁ ଆସିଲେ । କାଲିଫର୍ଣ୍ଣିଆର ଅନ୍ୟାନ୍ୟ ନଗରରୁ ପ୍ରତ୍ୟହ ସାଗ୍ରହ ଆହ୍ୱାନ ଆସିଲା । ପ୍ରତ୍ୟହ ପ୍ରଭାତ ଓ ଅପରାହ୍ଣରେ ପ୍ରଶ୍ନୋତ୍ତର ସଭାର ଅନୁଷ୍ଠାନ ବିରାମହୀନ ଭାବରେ ଚାଲିଲା । ଅବଶେଷରେ ସର୍ବସାଧାରଣଙ୍କ ଏକାନ୍ତ ଅନୁରୋଧ ହେତୁ ସେ ପୁନରାୟ ବକ୍ତୃତା ଦେବାକୁ ସ୍ୱୀକୃତ ହେଲେ । ଡିସେମ୍ବର ଆଠ ତାରିଖରେ 'ବ୍ଲାଙ୍କାର୍ଡ଼ବୁକ୍' ନାମକ ସୁପ୍ରଶସ୍ତ ଭବନରେ ସହସ୍ରାଧିକ ଶ୍ରୋତାଙ୍କ ସମ୍ମୁଖରେ 'ବେଦାନ୍ତ ଦର୍ଶନ' ବିଷୟରେ ଗୋଟିଏ ବକ୍ତୃତା ଦେଲେ । ଏହିପରି ଭାବରେ ଫେବୃୟାରୀ ମାସର ମଧ୍ୟଭାଗ ପର୍ଯ୍ୟନ୍ତ ଲସ୍ ଏଞ୍ଜେଲ୍‌ସର ବିଭିନ୍ନ ସ୍ଥାନରେ ସେ ବକ୍ତୃତା ଦେଇଥିଲେ । ମୋଟ ଉପରେ ପ୍ରତିଦିନ ତାଙ୍କୁ ବକ୍ତୃତା ଦେବାକୁ ହେଉଥିଲା । ସୌଭାଗ୍ୟକ୍ରମେ ସ୍ଥାନୀୟ ଜଳବାୟୁ ସ୍ୱାମୀଜୀଙ୍କ ସ୍ୱାସ୍ଥ୍ୟ ପକ୍ଷରେ ଅନୁକୂଳ ଥିଲା । ଅତ୍ୟଧିକ କଠୋର ପରିଶ୍ରମ ସତ୍ତ୍ୱେ ସେ ପୂର୍ବପରି ଶ୍ରାନ୍ତ ହୋଇ ପଡୁ ନ ଥିଲେ । ବକ୍ତୃତା ଓ କଥୋପକଥନ ବ୍ୟତୀତ ପ୍ରତ୍ୟହ ପ୍ରଭାତ ଓ ସନ୍ଧ୍ୟାରେ କେତେଜଣ ଅନୁରାଗୀ ଶିଷ୍ୟ ଓ ଛାତ୍ରଙ୍କୁ ରାଜଯୋଗ ଶିକ୍ଷା ଦେବାକୁ ଲାଗିଲେ । ସ୍ଥାନୀୟ 'Home of Truth' ର ସଭ୍ୟମାନେ ସ୍ୱାମୀଜୀଙ୍କ ପ୍ରତି ଏତେ ବେଶୀ ଆକୃଷ୍ଟ ହୋଇ ପଡ଼ିଲେ ଯେ, ସେମାନେ ସ୍ୱାମୀଜୀଙ୍କୁ ତାଙ୍କ ଭବନକୁ ନେଇଗଲେ ଏବଂ ତାଙ୍କ ଦୈହିକ ଅଭାବ ପୂରଣ କରିବାର ଭାର ଗ୍ରହଣ କଲେ । ଉକ୍ତ ସମିତିର ସଭ୍ୟମାନଙ୍କ ଉତ୍ସାହ ଓ ଆଗ୍ରହ ଦେଖି ସ୍ୱାମୀଜୀ ଆନନ୍ଦ ସହକାରେ ସେମାନଙ୍କ ପାଖରେ ରହିଲେ । ଫଳରେ ସ୍ୱାମୀଜୀ ଦୁଇମାସ ମଧ୍ୟରେ କାଲିଫର୍ଣ୍ଣିଆରେ ପ୍ରଚାରକାର୍ଯ୍ୟରେ ଯଥେଷ୍ଟ ସଫଳତା ଲାଭ କଲେ । ସ୍ଥାନୀୟ ସମ୍ବାଦପତ୍ରଗୁଡ଼ିକ ଶତମୁଖରେ ତାଙ୍କର ପବିତ୍ର ଚରିତ୍ର ଓ ନିଃସ୍ୱାର୍ଥ ପ୍ରଚାରକାର୍ଯ୍ୟ ସମ୍ବନ୍ଧରେ ପ୍ରଶଂସା କରିଥିଲେ ।

ଏହାପରେ ଫେବୃୟାରୀ ମାସରେ ସ୍ୱାମୀଜୀ ଓକ୍‌ଲ୍ୟାଣ୍ଡର ସର୍ବପ୍ରଧାନ ଇଉନିଟେରିୟାନ୍ ଚର୍ଚ୍ଚର ଧର୍ମଯାଜକ ରେଭରେଣ୍ଡ ଡାକ୍ତର ବେଞ୍ଜାମିନ୍ କେ. ମିଲସ୍‌ଙ୍କଠାରୁ ନିମନ୍ତ୍ରଣ ପାଇ ସେଠାକୁ ଗଲେ । ଏହି ଚର୍ଚ୍ଚରେ ସ୍ୱାମୀଜୀ କ୍ରମାଗତ ଆଠଗୋଟି ବକ୍ତୃତା ଦେଇଥିଲେ । ପ୍ରତ୍ୟହ ପ୍ରାୟ ଦୁଇହଜାର ଶ୍ରୋତା ଆଗ୍ରହ ସହକାରେ ତାଙ୍କ ଉଦାର ଧର୍ମମତ ଶ୍ରବଣ କରିବାକୁ ସମବେତ ହେଲେ । ସ୍ଥାନୀୟ ସମ୍ବାଦପତ୍ରଗୁଡ଼ିକରେ ତାଙ୍କ ବକ୍ତୃତାର ସାରାଂଶ ଓ ଉଦ୍ଦେଶ୍ୟ ଇତ୍ୟାଦି ବିଷୟରେ

ପ୍ରତ୍ୟହ ଆଲୋଚନା ଚାଲିଲା । ଏହି ସମୟରେ ଡାକ୍ତର ମିଲସ୍ ଗୋଟିଏ ଧର୍ମସଭା ଆହ୍ୱାନ କଲେ । କାଲିଫର୍ଣ୍ଣିଆର ବିଭିନ୍ନ ସ୍ଥାନରୁ ସମବେତ ଶତ ଶତ ମିଶନାରୀ ଓ ଧର୍ମଯାଜକ ଏହି ସଭାରେ ଯୋଗଦାନ କରିଥିଲେ । ସମସ୍ତେ ଆଚାର୍ଯ୍ୟଦେବଙ୍କ ଉଦାର ଧର୍ମମତ ଓ ଧର୍ମସମନ୍ୱୟର ଅପୂର୍ବ ବାର୍ତ୍ତା ଆଗ୍ରହ ସହକାରେ ଶ୍ରବଣ କରି ଶତମୁଖରେ ପ୍ରଶଂସା କରିବାକୁ ଲାଗିଲେ । ଡାକ୍ତର ବେଞ୍ଜାମିନ୍ ସ୍ୱାମୀଜୀଙ୍କ ଉନ୍ନତ ପବିତ୍ର ଚରିତ୍ରର ମାଧୁର୍ଯ୍ୟ ଓ ଅସୀମ ଆଧ୍ୟାତ୍ମିକ ଅନ୍ତର୍ଦୃଷ୍ଟି ସହିତ ଘନିଷ୍ଠ ଭାବରେ ପରିଚିତ ହୋଇ ଏପରି ମୁଗ୍‌ଧ ହୋଇଥିଲେ ଯେ, ଦିନେ ଶ୍ରୋତୃବୃନ୍ଦଙ୍କ ସମ୍ମୁଖରେ ସ୍ୱାମୀଜୀଙ୍କ ପରିଚୟ ଦେବାକୁ ଯାଇ କହିଲେ—"A man of gigantic intellect indeed, one to whom our greatest university professors were as mere children."

ଶ୍ରୀମତୀ ଆନି ବେଶାନ୍ତଙ୍କ ଭାଷାରେ "ଏହି ଅପ୍ରତିଦ୍ୱନ୍ଦୀ ପ୍ରାଚ୍ୟ ପ୍ରଚାରକଙ୍କ ଅତୁଳନୀୟ ଆଧ୍ୟାତ୍ମିକ ବାର୍ତ୍ତାର ମହିମା" କାଲିଫର୍ଣ୍ଣିଆର ପ୍ରତ୍ୟେକ ଗ୍ରାମ ଓ ନଗରରେ ଆଲୋଚିତ ହେବାକୁ ଲାଗିଲା । ଓକ୍‌ଲ୍ୟାଣ୍ଡରୁ ଯାଇ ସ୍ୱାମୀଜୀ ଫେବୃଆରୀ ଶେଷ ଭାଗରେ କାଲିଫର୍ଣ୍ଣିଆର ରାଜଧାନୀ ସାନ୍‌ଫ୍ରାନ୍‌ସିସ୍କୋରେ ପଦାର୍ପଣ କଲେ । ସ୍ଥାନୀୟ ସମ୍ଭ୍ରାନ୍ତ ଓ ଶିକ୍ଷିତ ବ୍ୟକ୍ତିଗଣ ସମାଗତ ଦର୍ଶନାର୍ଥୀମାନଙ୍କର ଯେପରି କୌଣସି ଅସୁବିଧା ନ ହୁଏ, ତତ୍‌ପ୍ରତି ଲକ୍ଷ୍ୟ ରଖି ଟାକାର ଷ୍ଟ୍ରୀଟ୍‌ରେ ଗୋଟିଏ ସୁବୃହତ୍ ଅଟ୍ଟାଳିକା ତାଙ୍କ ଆବାସ ସ୍ଥଳରୂପେ ନିର୍ଦ୍ଦିଷ୍ଟ କଲେ । କେତେଦିନ ପରେ ସ୍ୱାମୀଜୀ ସ୍ଥାନୀୟ 'ଗୋଲ୍‌ଡେନ୍ ଗେଟ୍ ହଲ୍'ରେ ହଜାର ହଜାର ଶ୍ରୋତୃବୃନ୍ଦଙ୍କ ସମ୍ମୁଖରେ ତାଙ୍କ ପ୍ରଥମ ଓ ସୁପ୍ରସିଦ୍ଧ 'ସାର୍ବଜନୀନ ଧର୍ମର ଆଦର୍ଶ' ନାମକ ବକ୍ତୃତା ପ୍ରଦାନ କଲେ । ମନ୍ତ୍ରମୁଗ୍‌ଧ ଜନତା ଏକାଗ୍ର ଆଗ୍ରହରେ ପ୍ରାୟ ଦୁଇଘଣ୍ଟା କାଳ ସସମ୍ଭ୍ରମେ ଦଣ୍ଡାୟମାନ ହୋଇ ତାଙ୍କ ଶ୍ରୀମୁଖ ବିଗଳିତ ଅମୃତମଧୁର ସତ୍ୟର ବାଣୀ ଶ୍ରବଣ କଲେ । ବକ୍ତୃତା ପରେ ସ୍ୱାମୀଜୀ ଆସନ ପରିଗ୍ରହ କରନ୍ତେ, ସମ୍ମିଳିତ ଜନତା ଉଚ୍ଚ କଣ୍ଠରେ ତାଙ୍କୁ ସାଧୁବାଦ ପ୍ରଦାନ କରିବାରେ ଲାଗିଗଲେ । ସେହି ଶ୍ରେଷ୍ଠତମ ମୁହୂର୍ତ୍ତରେ ସମସ୍ତେ ଯେପରି କି ପ୍ରାଣେ ପ୍ରାଣେ ଅନୁଭବ କରିଥିଲେ, ଏହି ଜଗତ୍‌କଲ୍ୟାଣୈକସର୍ବସ୍ୱ ମହାପୁରୁଷ ବାସ୍ତବିକ୍ ଈଶ୍ୱରଙ୍କ ଦୂତରୂପେ ମୁକ୍ତିର ଅଭିନବ ବାର୍ତ୍ତା ବହନ କରିବା ନିମିତ୍ତ ଧରାତଳେ ଅବତୀର୍ଣ୍ଣ ହୋଇଛନ୍ତି ।

ମାର୍ଚ୍ଚ ମାସରେ ସ୍ୱାମୀଜୀ କୃଷ୍ଣ, ବୁଦ୍ଧ, ଖ୍ରୀଷ୍ଟ, ମହମ୍ମଦ ପ୍ରଭୃତି ମହାପୁରୁଷମାନଙ୍କ ସମ୍ବନ୍ଧରେ କେତେଗୁଡ଼ିଏ ଧାରାବାହିକ ବକ୍ତୃତା ଦେଲେ । ଏତଦ୍‌ବ୍ୟତୀତ ସାଧାରଣଙ୍କ ଆଗ୍ରହ ଯୋଗୁଁ ତାଙ୍କୁ ପ୍ରାୟ 'ରାଜଯୋଗ' ସମ୍ବନ୍ଧରେ ବକ୍ତୃତା ଦେବାକୁ ହେଉଥିଲା । ସ୍ୱାମୀଜୀ ଏହି ସମ୍ବନ୍ଧରେ ଦେଇଥିବା ବକ୍ତୃତାଗୁଡ଼ିକରୁ ଅଧିକାଂଶ ନଷ୍ଟ ହୋଇଯାଇଛି । ଯଦି ଗୁରୁଭକ୍ତ ଗୁଡ୍‌ଉଇନ୍ ଜୀବିତ ଥାଆନ୍ତେ,

ତାହା ହେଲେ ସ୍ୱାମୀଜୀଙ୍କ ଶ୍ରୀମୁଖୋଚ୍ଚାରିତ ସାମାନ୍ୟ କଥା ମଧ୍ୟ ଲିପିବଦ୍ଧ ହୋଇ ରହିଥାଆନ୍ତା ।

ପ୍ରଭାତରେ ଯୋଗଶିକ୍ଷାର୍ଥୀ ଛାତ୍ରବୃନ୍ଦଙ୍କୁ ଶିକ୍ଷାପ୍ରଦାନ, ଧର୍ମାଲୋଚନା ଅପରାହ୍ନରେ ବକ୍ତୃତା ପ୍ରଦାନ ଇତ୍ୟାଦି ମଧ୍ୟରେ ସ୍ୱାମୀଜୀ ତିଳେମାତ୍ର ବିଶ୍ରାମ ପାଇଁ ଅବସର ପାଉ ନଥିଲେ; କିନ୍ତୁ କର୍ମର ଏହି ଉଚ୍ଛଳ କୋଳାହଳ ଭିତରେ ମଧ୍ୟ ସମୟେ ସମୟେ ତାଙ୍କ ସମାଧିପୂତ ମନ ଗୋଟିଏ 'ଅଜ୍ଞାତ' 'ଅବ୍ୟକ୍ତ' ଭାବରାଜ୍ୟରେ ବୁଡ଼ି ଯାଉଥିଲା । ଏହିପରି ଉଚ୍ଚଭାବରେ ଅଭିଭୂତ ହୋଇ ସ୍ୱାମୀଜୀ ତାଙ୍କ ଶିଷ୍ୟା କୁମାରୀ ମ୍ୟାକ୍‌ଲାଉଡଙ୍କୁ ୧୯୦୦ ଖ୍ରୀଷ୍ଟାବ୍ଦ ଅପ୍ରେଲ ଅଠର ତାରିଖରେ ଲେଖିଥିଲେ, ''କାମ କରିବା ସବୁବେଳେ କଠିନ । ମୋ' ପାଇଁ ପ୍ରାର୍ଥନା କର, ଯେପରି ଚିରଦିନ ପାଇଁ ମୋର କାମ କରିବା ବନ୍ଦ ହୋଇଯାଏ ଏବଂ ମୋର ସମୁଦାୟ ମନ-ପ୍ରାଣ ଯେପରି ମା'ଙ୍କ ସତ୍ତାରେ ମିଳି ସମ୍ପୂର୍ଣ୍ଣ ତନ୍ମୟ ହୋଇଯାଏ । ତାଙ୍କ କାମ ସେ ଜାଣନ୍ତି ।''

''ମୁଁ ଭଲ ଅଛି—ମୋ ମନ ଖୁବ୍ ଭଲ ଅଛି । ମୁଁ ଶରୀରଠାରୁ ମନର ଶାନ୍ତି-ସ୍ୱଚ୍ଛନ୍ଦତା ଖୁବ୍ ବେଶୀ ଅନୁଭବ କରୁଛି । ଲଢ଼ାଇରେ ହାର୍ ଜିତ୍ ଉଭୟ ହେଲା—ବର୍ତ୍ତମାନ ପୁଟୁଳି ବାନ୍ଧି ସେହି ମହାନ୍ ମୁକ୍ତିଦାତାଙ୍କ ଅପେକ୍ଷାରେ ବସିଛି । 'ହେ ଶିବ ! ପାର କର ମୋର ନଉକା'—ହେ ଶିବ, ହେ ଶିବ ! ମୋ ତରୀକୁ ପାର କରାଇ କୂଳକୁ ନେଇଯାଅ !''

''ଯେତେ ଯାହା ହେଉ, ମୁଁ ଏବେ ବି ପୂର୍ବର ସେହି ବାଳକ ଛଡ଼ା ଅନ୍ୟ କିଛି ନୁହେଁ, ଯେ ଦକ୍ଷିଣେଶ୍ୱରର ପଞ୍ଚବଟୀ ତଳେ ରାମକୃଷ୍ଣଙ୍କ ଅପୂର୍ବ ବାଣୀ ଅବାକ୍ ହୋଇ ଶୁଣି ବିଭୋର ହୋଇଯାଉଥିଲା । ଏହି ବାଳକ ଭାବଟି ହେଉଛି, ମୋର ଅସଲ ପ୍ରକୃତି—ଆଉ କାର୍ଯ୍ୟକର୍ମ, ପରୋପକାର ଇତ୍ୟାଦି ଯାହା କିଛି କରାଯାଉଛି, ତାହା ଏହି ପ୍ରକୃତି ଉପରେ କିଛି ସମୟ ପାଇଁ ଆରୋପିତ ଗୋଟିଏ ଉପାଧି ମାତ୍ର ! ଆହା, ପୁଣି ସେହି ମଧୁର ବାଣୀ ଶୁଣିପାରୁଛି—ସେହି ଚିରପରିଚିତ କଣ୍ଠସ୍ୱର ! ତାହା ମୋ ପ୍ରାଣକୁ କଣ୍ଟକିତ କରି ପକାଉଛି । ବନ୍ଧନ ଖସି ଯାଉଛି, ମଣିଷର ମାୟା ଉଡ଼ିଯାଉଛି, କାର୍ଯ୍ୟକର୍ମ ବିସ୍ୱାଦ ବୋଧ ହେଉଛି । ଜୀବନ ପ୍ରତି ଆକର୍ଷଣ ମଧ୍ୟ ପ୍ରାଣଠାରୁ ଦୂରେଇ ଯାଉଛି । ତା' ସ୍ଥାନରେ ରହିଛି, କେବଳ ପ୍ରଭୁଙ୍କର ସେହି ମଧୁର ଗମ୍ଭୀର ଆହ୍ୱାନ ! ଯାଉଛି ପ୍ରଭୁ ଯାଉଛି ! ହେଇଟି ସେ କହୁଛନ୍ତି, 'ମୃତର ସତ୍‌କାର ମୃତଲୋକ ହିଁ କରନ୍ତୁ । ତୁ ଏସବୁ ଛାଡ଼ିଦେଇ ମୋ ପଛେ ପଛେ ଚାଲି ଆ !'—ଯାଉଛି ପ୍ରଭୁ ! ଯାଉଛି !!''

''ହଁ, ଏଥର ମୁଁ ଠିକ୍ ଯାଉଛି ! ମୋ ଆଗରେ ଅପାର ନିର୍ବାଣ-ସମୁଦ୍ର ଦେଖି ପାରୁଛି । ସମୟ ସମୟରେ ଏହା ସ୍ପଷ୍ଟ ଦେଖୁଛି—ସେହି ଅନନ୍ତ ଶାନ୍ତି-ସମୁଦ୍ର । ମାୟାର ଏତେ ଟିକିଏ ପବନ ବା ଢେଉ ତାହାର ଶାନ୍ତିଭଙ୍ଗ କରୁ ନାହିଁ ।''

''ମୁଁ ଯେ ଜନ୍ମ ନେଇଥିଲି, ସେଥିପାଇଁ ମୁଁ ଖୁସି । ଏତେ ଯେ ଦୁଃଖ ଭୋଗିଛି, ସେଥିପାଇଁ ବି ଖୁସି । ଜୀବନରେ ବେଳେ ବେଳେ ବଡ଼ ବଡ଼ ଭୁଲ କରିଛି, ସେଥିରେ ମଧ୍ୟ ଖୁସି । ପୁଣି ଏବେ ଯେ ନିର୍ବାଣର ଶାନ୍ତି-ସମୁଦ୍ରରେ ବୁଡ଼ ପକାଇବାକୁ ଯାଉଛି, ସେଥିରେ ବି ଖୁସି ! ମୋ ପାଇଁ ସଂସାରକୁ ଫେରି ଆସିବାକୁ ପଡ଼ିବ, ଏଭଳି ବନ୍ଧନରେ ମୁଁ କାହାକୁ ଆବଦ୍ଧ କରିଦେଇ ଯାଉ ନାହିଁ—ଅଥବା ଏପରି ବନ୍ଧନ ମୁଁ ମଧ୍ୟ କାହାପାଖରୁ ନେଇ ଯାଉ ନାହିଁ । ଦେହଟି ଚାଲିଯାଇ ମୋତେ ମୁକ୍ତି ଦେଉ, ଅଥବା ଦେହ ଥାଉ ଥାଉ ମୁକ୍ତ ହୁଏ; ସେହି ପୁରୁଣା ବିବେକାନନ୍ଦ କିନ୍ତୁ ଚାଲିଯାଇଛି, ଚିରଦିନ ପାଇଁ ଚାଲିଯାଇଛି, ଆଉ ଫେରୁ ନାହିଁ । ଶିକ୍ଷାଦାତା, ଗୁରୁ, ନେତା, ଆଚାର୍ଯ୍ୟ ଚାଲି ଯାଇଛନ୍ତି—ପଡ଼ି ରହିଛି କେବଳ ପୂର୍ବର ସେହି ବାଳକ, ପ୍ରଭୁଙ୍କର ସେହି ଚିର-ଶିଷ୍ୟ, ଚିର-ପଦାଶ୍ରିତ ଦାସ !''

''ଅନେକ ଦିନ ହେଲା ମୁଁ ନେତୃତ୍ୱ ଛାଡ଼ିଦେଇଛି । କୌଣସି ବିଷୟରେ 'ଏଇଟା ମୋ ଇଚ୍ଛା' ବୋଲି କହିବା ଅଧିକାର ମୋର ଆଉ ନାହିଁ । ତାଙ୍କର ଇଚ୍ଛାସ୍ରୋତରେ ମୁଁ ଯେତେବେଳେ ସମ୍ପୂର୍ଣ୍ଣ ରୂପେ ଶରୀରକୁ ଭସାଇ ଦେଇ ରହୁଥିଲି, ସେହି ସମୟଟା ହିଁ ଜୀବନ ମଧ୍ୟରେ ମୋର ପରମ ମଧୁମୟ ମୁହୂର୍ତ୍ତ ପରି ମନେହୁଏ । ଏବେ ପୁଣି ସେହିପରି ଶରୀରକୁ ଭସାଇ ଦେଇଛି । ଉପରୁ ଦିବାକର ନିର୍ମଳ କିରଣ ବିସ୍ତାର କରୁଛନ୍ତି—ପୃଥିବୀ ଚତୁର୍ଦ୍ଦିଗରେ ଶସ୍ୟସଂପଦ-ଶାଳିନୀ ହୋଇ ଶୋଭା ପାଉଛି—ଦିବସର ଉତ୍ତାପରେ ସକଳ ପ୍ରାଣୀ ଓ ପଦାର୍ଥ ବର୍ତ୍ତମାନ ନିସ୍ତବ୍ଧ, ସ୍ଥିର, ଶାନ୍ତ ! ଆଉ ମୁଁ ମଧ୍ୟ ସେଥି ସହିତ ଏବେ ଧୀର-ସ୍ଥିର ଭାବରେ ନିଜ ଇଚ୍ଛାକୁ ବିନ୍ଦୁ ମାତ୍ର ନ ରଖି ପ୍ରଭୁଙ୍କ ଇଚ୍ଛାରୂପୀ ପ୍ରବାହିନୀର ସୁଶୀତଳ ବକ୍ଷରେ ଭସାଇ ଭସାଇ ଚାଲିଛି । ଏତେ ଟିକିଏ ବି ଗୋଡ଼-ହାତ ହଲାଇ ଏହି ପ୍ରବାହର ଗତି ରୋଧିବାକୁ ମୋର ପ୍ରବୃତ୍ତି ଓ ସାହସ ହେଉ ନାହିଁ—କାଳେ ପ୍ରାଣର ଏ ଅଦ୍ଭୁତ ନିସ୍ତବ୍ଧତା ଓ ଶାନ୍ତି ପୁଣି ଭାଙ୍ଗିଯିବ ? ପ୍ରାଣର ଏହି ଶାନ୍ତ ନିସ୍ତବ୍ଧତା ହିଁ ଜଗତଟା ମାୟା ବୋଲି ସ୍ପଷ୍ଟ ବୁଝାଇ ଦିଏ । ଇତିପୂର୍ବରୁ ମୋ କର୍ମ ଭିତରେ ଯଶମାନର ଭାବନା ଉଠିଥିଲା, ମୋ ଭଲପାଇବା ମଧ୍ୟରେ ବ୍ୟକ୍ତି-ବିଚାର ଆସୁଥିଲା, ମୋ ପବିତ୍ରତା ପଛରେ ଫଳଭୋଗର ଆକାଙ୍କ୍ଷା ଥିଲା, ମୋ ନେତୃତ୍ୱ ମଧ୍ୟରେ ପ୍ରଭୁତ୍ୱର ସ୍ପୃହା ଆସୁଥିଲା । ଏବେ ସେହି ସବୁ ଉଡ଼ିଯାଇଛି; ମୁଁ ସକଳ ବିଷୟରେ ଉଦାସୀନ ହୋଇ ତାଙ୍କ ଇଚ୍ଛାରେ ଠିକ୍ ଠିକ୍ ଶରୀର ଭସାଇ ଦେଇ ଚାଲିଛି ! ଯାଉଛି ! ମା ଯାଉଛି ! ତୁମ ସ୍ନେହମୟ ବକ୍ଷରେ ଧାରଣ କରି—ଯେଉଁଆଡ଼େ ତୁମେ ନେଇ ଯିବାକୁ ଚାହୁଁଛ, ସେହି 'ଅଶବ୍ଦ ଅସ୍ପର୍ଶ' ଅଜ୍ଞାତ ଅଦ୍ଭୁତ ରାଜ୍ୟକୁ—ଅଭିନେତାର ଭାବକୁ ସମ୍ପୂର୍ଣ୍ଣ ବିସର୍ଜନ କରି କେବଳ ମାତ୍ର ଦ୍ରଷ୍ଟା ବା ସାକ୍ଷୀ ପରି ବୁଡ଼ି ଯିବାକୁ ମୋର ଦ୍ୱିଧା ନାହିଁ ।''

ପତ୍ରଖଣ୍ଡିକ ପାଠ କଲେ ପାଞ୍ଚଜନ୍ୟ-ନିର୍ଘୋଷରେ କର୍ମଯୋଗ ପ୍ରଚାରକାରୀ ବିବେକାନନ୍ଦଙ୍କ ପରିବର୍ତ୍ତେ ଷୋଡ଼ଶ ବର୍ଷ ପୂର୍ବର ପାଗଳ ପୂଜାରୀଙ୍କ ପଦପ୍ରାନ୍ତରେ

ଉପବିଷ୍ଟ ବାଳକ ନରେନ୍ଦ୍ରନାଥଙ୍କର କଥା ହିଁ ଆମମାନଙ୍କ ସ୍ମୃତିପଟରେ ଉଜ୍ଜ୍ୱଳ ହୋଇଉଠେ । ମନେପଡ଼େ, ସେହି ଆକୁଳ ସମାଧିତୃଷ୍ଣା, ସେହି ତୀବ୍ର ବୈରାଗ୍ୟର ପ୍ରେରଣାରେ 'ଜଗଦ୍ଧିତାୟ' କର୍ମରେ ଅଗ୍ରସର ହେବାକୁ ଅନିଚ୍ଛା, ଶ୍ରୀରାମକୃଷ୍ଣଙ୍କ ସ୍ନେହପୂର୍ଣ୍ଣ ଭର୍ତ୍ସନା, ମୌନ-ମିନତି, ଅସୀମ ଅନୁକମ୍ପା ! ଏହି ମହାପୁରୁଷଙ୍କ ପବିତ୍ର ଜୀବନ କାହାଣୀ ଆଲୋଚନା କରି ଆମେମାନେ ଅନେକ ଥର ଆଚାର୍ଯ୍ୟ, ଶିକ୍ଷାଦାତା, ଗୁରୁ, ନେତା ବିବେକାନନ୍ଦଙ୍କ ଭିତରେ ସେହି ସମାଧିକାମୀ ସନ୍ନ୍ୟାସୀ ଶ୍ରୀନରେନ୍ଦ୍ରନାଥଙ୍କର ସମ୍ୟକ୍ ପରିଚୟ ପାଇଛୁ । ଆମେ ଦେଖିଛୁ କର୍ମର ଉଦ୍ଦାମ ପ୍ରେରଣା, ଜଗଦ୍‌ବ୍ୟାପୀ ଖ୍ୟାତି, ସମ୍ମାନ, ପ୍ରତିପତ୍ତି ମଧ୍ୟରେ ସୁଦ୍ଧା ତାଙ୍କ ଅନାସକ୍ତ ଅନ୍ତର-ପୁରୁଷ ଏକ ନିରୁଦ୍‌ବିଗ୍ନ ପ୍ରଶାନ୍ତି ମଧ୍ୟରେ ଆତ୍ମସ୍ଥ ହୋଇ ରହିଛି ! ଏହି ପତ୍ରର ବାଣୀ — ସେହି ଅନ୍ତର-ପୁରୁଷଙ୍କର ହିଁ ବାଣୀ ।

ଏପ୍ରିଲ ମଧ୍ୟଭାଗରେ ସ୍ୱାମୀଜୀଙ୍କ ଉତ୍ସାହୀ ଶିଷ୍ୟଗଣ କାଲିଫର୍ଣ୍ଣିଆର ସ୍ଥାନେ ସ୍ଥାନେ 'ବେଦାନ୍ତ ସମିତି' ଓ ପ୍ରଚାର-କେନ୍ଦ୍ର ସ୍ଥାପନ କରି ବେଦାନ୍ତ ପ୍ରଚାର କରିବାକୁ ଲାଗିଲେ । ଲସ୍‌ଏଞ୍ଜେଲ୍‌ସରୁ ଆହ୍ୱାନ ଆସିଲା, କିନ୍ତୁ ସାନ୍‌ଫ୍ରାନ୍‌ସିସ୍କୋ ଓ ତତ୍‌ସାନିଧ୍ୟବର୍ତ୍ତୀ ସ୍ଥାନମାନଙ୍କର ଆରବ୍‌ଧ କାର୍ଯ୍ୟ ସହସା ପରିତ୍ୟାଗ କରି ଚାଲିଯିବା ସ୍ୱାମୀଜୀଙ୍କ ମନଃପୂତ ହେଲା ନାହିଁ । ଅନ୍ୟତମା ଶିଷ୍ୟା ଶ୍ରୀମତୀ ହେଇନ୍‌ସବୋରା ଦୃଢ଼ ଉଦ୍ୟମ ସହିତ ଲସ୍‌ଏଞ୍ଜେଲ୍‌ସରେ ନିୟମିତରୂପେ ବେଦାନ୍ତ କ୍ଲାସ ଚଳାଇବାରେ ରହିଲେ । ଏଟୋ ସାନ୍‌ଫ୍ରାନ୍‌ସିସ୍‌କୋର ନବପ୍ରତିଷ୍ଠିତ ବେଦାନ୍ତ ସମିତିର ପ୍ରେସିଡେଣ୍ଟ ଡାକ୍ତର ଏମ୍. ଏଚ୍. ଲୋଗାନ୍ ଓ ସ୍ୱାମୀଜୀଙ୍କର ଅନ୍ୟାନ୍ୟ କେତେଜଣ ଶିଷ୍ୟଶିଷ୍ୟା ବୁଝିପାରିଲେ ଯେ, ଶୀଘ୍ର ସେ ଅନ୍ୟତ୍ର ଚାଲିଯିବେ, ତେଣୁ ଏହି ସମିତିକୁ ସୁପ୍ରତିଷ୍ଠିତ ରଖିବାକୁ ହେଲେ, ଜଣେ ଭାରତୀୟ ସନ୍ନ୍ୟାସୀ ଆଚାର୍ଯ୍ୟଙ୍କର ପ୍ରୟୋଜନ । ତଦନୁସାରେ ସେମାନେ ସ୍ୱାମୀଜୀଙ୍କୁ ଅନୁରୋଧ କରିବାରୁ ସେ ତତ୍‌କ୍ଷଣାତ ରାଜି ହୋଇ ସ୍ୱାମୀ ତୁରୀୟାନନ୍ଦଙ୍କୁ କାଲିଫର୍ଣ୍ଣିଆ ଆସିବା ନିମିତ୍ତ ପତ୍ର ଲେଖିଲେ । ନିଉୟର୍କ ବେଦାନ୍ତ ସମିତିର ଭାର ତୁରୀୟାନନ୍ଦଙ୍କ ହସ୍ତରେ ସମର୍ପଣ କରି ସ୍ୱାମୀ ଅଭେଦାନନ୍ଦ ଯୁକ୍ତରାଷ୍ଟ୍ରର ସ୍ଥାନେ ସ୍ଥାନେ ବକ୍ତୃତା ଦେଉଥିଲେ; ତେଣୁ ସେ ଫେରିଆସିବା ପର୍ଯ୍ୟନ୍ତ ସ୍ୱାମୀ ତୁରୀୟାନନ୍ଦଜୀ ସାନ୍‌ଫ୍ରାନ୍‌ସିସ୍କୋ ଯାଇପାରିଲେ ନାହିଁ ।

ସ୍ୱାମୀଜୀ କାଲିଫର୍ଣ୍ଣିଆ ଛାଡ଼ିବାର କେତେଦିନ ଆଗରୁ କୁମାରୀ ମିନି ସି ବୁକ୍ (Miss Minnie C. Boock) ନାମ୍ନୀ ତାଙ୍କର ଜଣେ ଭକ୍ତିମତୀ ଶିଷ୍ୟା ଗୋଟିଏ ସ୍ଥାୟୀ ମଠ ସ୍ଥାପନ ଉଦ୍ଦେଶ୍ୟରେ ତାଙ୍କୁ ୧୬୦ ଏକର ପରିମିତ ଖଣ୍ଡିଏ ବଡ଼ ଜମି ଦେଲେ । ସ୍ୱାମୀଜୀ ଆନନ୍ଦର ସହିତ ଏ ଦାନ ଗ୍ରହଣ କରିଥିଲେ — ପରେ ସ୍ୱାମୀ ତୁରୀୟାନନ୍ଦ ଯାଇ ସେଠାରେ ଆଶ୍ରମ ପ୍ରତିଷ୍ଠା କଲେ । ଯଦିଓ ସ୍ୱାମୀଜୀଙ୍କ ଜୀବଦ୍ଦଶାରେ ଏହି ସ୍ଥାନରେ 'ଶାନ୍ତି ଆଶ୍ରମ' ପ୍ରତିଷ୍ଠା ହୋଇଥିଲା, ସେ ଏହା ପରିଦର୍ଶନ କରିପାରି ନ ଥିଲେ ।

ବସନ୍ତ ଋତୁ ପ୍ରାରମ୍ଭରେ ସ୍ୱାମୀଜୀ ପ୍ରଚାର କାର୍ଯ୍ୟରୁ ଅବସର ଗ୍ରହଣ କରି 'କ୍ୟାମ୍ପ୍ ଟେଲର' ନାମକ ପଲ୍ଲୀରେ ବିଶ୍ରାମ ନେବାକୁ ଗଲେ । ତିନି ସପ୍ତାହ ପରେ ଯଦିବା ସେ ସାନ୍‌ଫ୍ରାନ୍‌ସିସ୍କୋ ଫେରି ଆସିଲେ, ତାଙ୍କ ଶାରୀରିକ ଅବସ୍ଥା ଦେଖି ଶିଷ୍ୟମାନେ ବକ୍ତୃତା ଦେବା ଲାଗି ତାଙ୍କୁ ଅନୁରୋଧ କଲେ ନାହିଁ । ସ୍ୱାମୀଜୀଙ୍କ ପ୍ରତି ପ୍ରଗାଢ଼ ଶ୍ରଦ୍ଧାସମ୍ପନ୍ନ ଡାକ୍ତର ଉଇଲିୟମ ଫଷ୍ଟର ନାମକ ସ୍ଥାନୀୟ ସୁବିଖ୍ୟାତ ଚିକିତ୍ସକ ସର୍ବଦା ତାହାଙ୍କ ତତ୍ତ୍ୱାବଧାନ କରୁଥିଲେ । ଅତ୍ୟଧିକ ଶାରୀରିକ ଅସୁସ୍ଥତା ସତ୍ତ୍ୱେ ମଇ ମାସ ଶେଷ ଭାଗରେ ସ୍ୱାମୀଜୀ ଶ୍ରୀମଦ୍‌ଭଗବତ୍‌ଗୀତା ସମ୍ବନ୍ଧରେ କ୍ରମାଗତ ଚାରିଗୋଟି ହୃଦୟଗ୍ରାହୀ ବକ୍ତୃତା ଦେଇଥିଲେ । ନିୟମିତ ବକ୍ତୃତା ଦେବା ପରିତ୍ୟାଗ କଲେ ମଧ୍ୟ ପ୍ରତ୍ୟହ ଲୋକସମାଗମର ବିରାମ ନ ଥିଲା । ବାଳକଙ୍କ ପରି ପରିହାସପ୍ରିୟ, ଚପଳଚଟୁଳ-ବାକ୍-ବିନ୍ୟାସ-ପଟୁ ବିବେକାନନ୍ଦଙ୍କ ମଧୁର ଚରିତ୍ରରେ ଆକୃଷ୍ଟ ନ ହୋଇ ରହିବା ସତରେ ଅସମ୍ଭବ ବ୍ୟାପାର ଥିଲା । ବନ୍ଧୁବତ୍ସଳ, ସରଳ, ଉଦାର, ମହାଜ୍ଞାନୀ ବିବେକାନନ୍ଦଙ୍କ ଚରିତ୍ରର ସମାଲୋଚନା ପ୍ରତ୍ୟହ ସମ୍ବାଦପତ୍ରଗୁଡ଼ିକରେ ପ୍ରକାଶିତ ହେଉଥିଲା । ସେଗୁଡ଼ିକୁ ଏକତ୍ର କଲେ ଖଣ୍ଡିଏ ସୁବୃହତ୍ ପୁସ୍ତକ ହୁଅନ୍ତା । ଏଠାରେ କେବଳ ମାତ୍ର 'ପ୍ୟାସିଫିକ୍ ବେଦାନ୍ତିକ' ସ୍ୱାମୀଜୀଙ୍କ ସମ୍ବନ୍ଧରେ ଯେଉଁ ମନ୍ତବ୍ୟ ଦେଇଥିଲେ, ତାହାର କିୟଦଂଶ ପ୍ରଦତ୍ତ ହେଲା —

"ସ୍ୱାମୀଜୀ ସୁଗଭୀର ଭାବଦ୍ୱାରା ସମଗ୍ର ପୃଥିବୀକୁ ସ୍ପନ୍ଦିତ କରିଛନ୍ତି, ତାଙ୍କର ଏହି ଭାବରାଜି ପ୍ରଳୟାନ୍ତକାଳ ପର୍ଯ୍ୟନ୍ତ ସତତ ପ୍ରତିଧ୍ୱନିତ ହେବ । ତାଙ୍କ ସଙ୍ଗରେ କି ଶିଶୁ, କି ଭିକ୍ଷୁକ, ରାଜା କିମ୍ବା କ୍ରୀତଦାସ ଅଥବା ବେଶ୍ୟା ସମସ୍ତେ ସମାନ ଅଧିକାର ସହିତ ଆଳାପ କରିପାରନ୍ତି । ସେ କହନ୍ତି, ଏମାନେ ସମସ୍ତେ ଗୋଟିଏ ପରିବାର ଅନ୍ତର୍ଭୁକ୍ତ । ମୁଁ ସେମାନଙ୍କ ପ୍ରତ୍ୟେକଙ୍କ ମଧ୍ୟରେ ମୋର ମୁହଁ ଦେଖିପାରେ ଏବଂ ମୋ ମଧ୍ୟରେ ମୁଁ ତାଙ୍କ ସ୍ୱରୂପ ଅନୁଭବ କରେ । ଏହି ପୃଥିବୀ ଗୋଟିଏ ପରିବାର ପରି, ଯୁଗାନ୍ତପୂର୍ବବ୍ୟାପୀ ସତ୍ୟସ୍ୱରୂପ ଅନନ୍ତ ବ୍ରହ୍ମ-ସମୁଦ୍ର ବିରାଜମାନ ।"

## ନିଉୟର୍କ ଓ ଡେଟ୍ରଏଟ

ମଇ ମାସ ଶେଷ ଭାଗରେ ସ୍ୱାମୀଜୀ ଲଣ୍ଡନରୁ ଲିଗେଟ ଦମ୍ପତିଙ୍କ ପତ୍ର ପାଇଲେ । ସେମାନେ ଜୁଲାଇ ମାସରେ ପ୍ୟାରିସ୍ ଯିବେ, ସ୍ୱାମୀଜୀ ଯେପରି ସେଠାକୁ ଯାଇ ସେମାନଙ୍କ ସହିତ ଯୋଗ ଦିଅନ୍ତି । ଏଣେ ପ୍ୟାରୀସ୍ ପ୍ରଦର୍ଶନୀର ଧର୍ମ-ଇତିହାସ ସଭାର ବୈଦେଶିକ ପ୍ରତିନିଧିମାନଙ୍କ ନିମିତ୍ତ ଗଠିତ ଅଭ୍ୟର୍ଥନା ସମିତି ପକ୍ଷରୁ ସ୍ୱାମୀଜୀ ଉକ୍ତ ସଭାରେ ବକ୍ତୃତା ଦେବା ନିମିତ୍ତ ନିମନ୍ତ୍ରଣ ପାଇଲେ । ଏହି ଦୁଇ କାରଣ ଯୋଗୁଁ ସେ କାଲିଫର୍ଣ୍ଣିଆର ଶିଷ୍ୟ ଓ ଭକ୍ତମଣ୍ଡଳୀ ନିକଟରୁ ବିଦାୟ ଗ୍ରହଣ କରି ନିଉୟର୍କ ଗଲେ । ପଥ ମଧ୍ୟରେ ଅବଶ୍ୟ ସେ ପୁରାତନ

ବନ୍ଧୁବାନ୍ଧବ ଓ ଶିଷ୍ୟମାନଙ୍କ ସହିତ ସାକ୍ଷାତ୍ କରିବା ନିମିତ୍ତ ଚିକାଗୋ ଓ ଡେଟ୍ରଏଟରେ ଅବତରଣ କରିଥିଲେ ।

ନିଉୟର୍କ ଆସି ସେ 'ବେଦାନ୍ତ-ସମିତି'ର ସ୍ଥାୟୀ ଭବନରେ ବାସ କଲେ । ବକ୍ତୃତା ପ୍ରଦାନ ଓ ଲୋକଶିକ୍ଷା ଇତ୍ୟାଦି କାର୍ଯ୍ୟରେ ତାଙ୍କର ତିଳେମାତ୍ର ଆଗ୍ରହ ପରିଲକ୍ଷିତ ହୋଇ ନ ଥିଲା; ସେ ସର୍ବଦା ବ୍ୟଗ୍ର ହୋଇ ପ୍ରାଚୀନ ବନ୍ଧୁ, ଶିଷ୍ୟ ଓ ଭକ୍ତମଣ୍ଡଳୀ ସହିତ ଦେଖା ସାକ୍ଷାତ୍ କରିବା ନିମିତ୍ତ ଆଗ୍ରହ ପ୍ରକାଶ କଲେ । ବେଦାନ୍ତ-ସମିତି କାର୍ଯ୍ୟ ଭଲରୂପେ ଚାଲିଥିଲା । ବେଦାନ୍ତ-ସମିତିର ସର୍ବପ୍ରଥମ ସଭାପତି ଶ୍ରୀଯୁକ୍ତ ଲିଗେଟ ଅନ୍ୟାନ୍ୟ କାର୍ଯ୍ୟଯୋଗୁଁ ବାଧ୍ୟ ହୋଇ ପଦତ୍ୟାଗ କରିଥିଲେ; ତାଙ୍କ ସ୍ଥାନରେ ସର୍ବସମ୍ମତିକ୍ରମେ କଲମ୍ବିଆ କଲେଜର ଡାକ୍ତର ହାର୍ଶେଲ ପାର୍କର ନିଯୁକ୍ତ ହେଲେ । ସ୍ୱାମୀ ତୁରୀୟାନନ୍ଦ ଏପ୍ରିଲ ମାସଠାରୁ ନିୟମିତ ରୂପେ ଏହି ସମିତିର ବକ୍ତୃତା ପ୍ରଦାନ ଓ ଯୋଗଶିକ୍ଷା ଦାନ କରୁଥିଲେ । ସ୍ୱାମୀଜୀ ମଧ୍ୟ ପ୍ରତ୍ୟେକ ରବିବାର ଦିନ ଗୀତା ସମ୍ବନ୍ଧରେ ବକ୍ତୃତା ଦେଲେ ଏବଂ ସ୍ୱାମୀ ତୁରୀୟାନନ୍ଦଙ୍କୁ ସତ୍ୱର କାଲିଫର୍ଣ୍ଣିଆ ଯିବାଲାଗି ଅନୁରୋଧ କଲେ ।

ଇତିମଧ୍ୟରେ ଭଗିନୀ ନିବେଦିତା ନିଉୟର୍କ ଆସିଲେ । ବେଦାନ୍ତ-ସମିତିର ସଭ୍ୟଗଣଙ୍କ ଆଗ୍ରହ ହେତୁ ସେ ଶନିବାର ଓ ରବିବାର ଅପରାହ୍ଣରେ ନିମୟିତ ରୂପେ ଭାରତବର୍ଷ ସମ୍ବନ୍ଧରେ କେତେଗୋଟି ବକ୍ତୃତା ଦେଲେ । ଜୁନ୍ ସତର ତାରିଖ ଦିନ ସେ 'ହିନ୍ଦୁରମଣୀର ଜୀବନାଦର୍ଶ' ସମ୍ବନ୍ଧରେ ଗୋଟିଏ ବିବିଧ ତଥ୍ୟପୂର୍ଣ୍ଣ ବକ୍ତୃତା ଦେଇଥିଲେ । ଉକ୍ତ ଦିବସ ସମିତିର ବକ୍ତୃତା-କକ୍ଷ ନିଉୟର୍କର ସମ୍ଭ୍ରାନ୍ତ ଓ ଶିକ୍ଷିତା ନାରୀମାନଙ୍କଦ୍ୱାରା ପୂର୍ଣ୍ଣ ହୋଇ ଯାଇଥିଲା । ସମସ୍ତେ ଆଗ୍ରହ ସହକାରେ ଭାରତୀୟ ରମଣୀମାନଙ୍କ ଦୈନନ୍ଦିନ ଜୀବନଯାପନ-ପ୍ରଣାଳୀ ଶ୍ରବଣ କରି ଆନନ୍ଦିତ ହୋଇଥିଲେ । ବକ୍ତୃତା ଶେଷରେ ସମସ୍ତଙ୍କ କୌତୂହଳ ଏତେ ବର୍ଦ୍ଧିତ ହୋଇଥିଲା ଯେ, ସେମାନେ ବହୁ ସମୟ ପର୍ଯ୍ୟନ୍ତ ଏହି ବିଷୟରେ ନିବେଦିତାଙ୍କୁ ନାନାବିଧ ପ୍ରଶ୍ନ ପଚାରିଥିଲେ । ପରବର୍ତ୍ତୀ ରବିବାର ଦିନ ନିବେଦିତା 'ପ୍ରାଚୀନ ଭାରତର ଶିଳ୍ପକଳା' ସମ୍ବନ୍ଧରେ ଗୋଟିଏ ସୁଚିନ୍ତିତ ବକ୍ତୃତା ଦେଇଥିଲେ ।

ଜୁଲାଇ ତିନି ତାରିଖରେ ସ୍ୱାମୀଜୀ ନିଉୟର୍କରୁ ଡେଟ୍ରଏଟ ଗଲେ । ଉକ୍ତ ଦିବସ ସ୍ୱାମୀ ତୁରୀୟାନନ୍ଦଜୀ ମଧ୍ୟ ଗୁରୁଭ୍ରାତାଙ୍କ ଇଚ୍ଛା ଓ ସମ୍ମତିକ୍ରମେ କାଲିଫର୍ଣ୍ଣିଆ ଗଲେ । ସ୍ୱାମୀଜୀ ଗୁରୁଭ୍ରାତାଙ୍କୁ ଆଶ୍ରମ ପ୍ରତିଷ୍ଠା ସଂକ୍ରାନ୍ତରେ ଉପଦେଶାଦି ପ୍ରଦାନ କରି ବିଦାୟ କାଳରେ ଗମ୍ଭୀର ସ୍ୱରରେ କହିଲେ, ''ଯାଅ ବୀର ! କାଲିଫର୍ଣ୍ଣିଆରେ ଆଶ୍ରମ ପ୍ରତିଷ୍ଠା କରି ବେଦାନ୍ତର ପତାକା ଉଡ଼ାଅ ! ଆଜିଠାରୁ ଭାରତର ଚିନ୍ତା ସ୍ମୃତିରୁ ପୋଛି ପକାଅ । ଆଦର୍ଶ ଜୀବନ ଯାପନ କର, ଜଗଜ୍ଜନନୀଙ୍କ କୃପାରୁ କୃତକାର୍ଯ୍ୟ ହେବ !''

ପ୍ରାୟ ସପ୍ତାହେକାଳ ଅନ୍ତରଙ୍ଗ ଭକ୍ତ ଓ ବନ୍ଧୁମଣ୍ଡଳୀଙ୍କ ମଧ୍ୟରେ ଯାପନ କରି ସ୍ୱାମୀଜୀ ଜୁଲାଇ ଦଶ ତାରିଖରେ ନିଉୟର୍କକୁ ଫେରିଆସିଲେ । ଅବଶେଷରେ

କେତେଦିନ ବିଶ୍ରାମ କରି ଜୁଲାଇ କୋଡ଼ିଏ ତାରିଖରେ ପ୍ୟାରୀସ୍ ଅଭିମୁଖେ ଯାତ୍ରା କଲେ ।

## ପ୍ୟାରୀସ୍ ପ୍ରଦର୍ଶନୀ ଓ ଧର୍ମ–ଇତିହାସ ସଭା

ପ୍ୟାରୀସ ନଗରୀରେ ପହଞ୍ଚି ସ୍ୱାମୀଜୀ ଲିଗେଟ୍–ଦମ୍ପତିଙ୍କ ଆତିଥ୍ୟ ଗ୍ରହଣ କଲେ । ଏହି ସମୟରେ ଶ୍ରୀମତୀ ଓଲିବୁଲ ବ୍ରିଟାନୀ ପ୍ରଦେଶର ଲାନିଓନ ନାମକ ସ୍ଥାନରେ ବାସ କରୁଥିଲେ; ତାଙ୍କ ସାଗ୍ରହ ଆହ୍ୱାନରେ ସ୍ୱାମୀଜୀ ଅଳ୍ପଦିନ ପାଇଁ ସେଠାକୁ ଗଲେ । ଶ୍ରୀମତୀ ବୁଲ୍‌ଙ୍କ ଗୃହରେ ଫ୍ରାନ୍‌ସର ପ୍ରସିଦ୍ଧ ଦାର୍ଶନିକ ଓ ଲେଖକ ଶ୍ରୀଯୁକ୍ତ ଜୁଲ ବୋୟାଙ୍କ ସହିତ ସ୍ୱାମୀଜୀଙ୍କର ପରିଚୟ ହେଲା । ଏହାଙ୍କ ସହିତ ସର୍ବଦା ଦର୍ଶନ, ସାହିତ୍ୟ ଓ ଐତିହାସିକ ଗବେଷଣା ସମ୍ବନ୍ଧରେ ଅଲୋଚନା ହେଉଥିଲା ବୋଲି ସ୍ୱାମୀଜୀ ଫରାସୀ ଭାଷା ଶିକ୍ଷା କରିବା ଲାଗି ସୁଯୋଗ ପାଇଥିଲେ ।

ଲିଗେଟ୍–ଦମ୍ପତି ତାଙ୍କ ଭକ୍ତିଭାଜନ ଅତିଥିଙ୍କର ସର୍ବବିଧ ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ଲକ୍ଷ୍ୟ ରଖି ମୁକ୍ତହସ୍ତରେ ଅର୍ଥବ୍ୟୟ କରୁଥିଲେ । ପ୍ରତ୍ୟହ ଖ୍ୟାତନାମା ଦାର୍ଶନିକ, ସାହିତ୍ୟିକ, ଚିତ୍ରକର, ଭାସ୍କର, ଧର୍ମଯାଜକ ଓ ବୈଜ୍ଞାନିକଗଣ ତାଙ୍କ ଘରକୁ ନିମନ୍ତ୍ରିତ ହେଉଥିଲେ । ପ୍ୟାରୀସ ବିରାଟ ପ୍ରଦର୍ଶନୀ ଓ ଧର୍ମ–ଇତିହାସ ସଭା ଉପଲକ୍ଷେ ବହୁ ପଣ୍ଡିତ ଜଗତର ଏହି ଶ୍ରେଷ୍ଠ ନଗରୀରେ ସମବେତ ହୋଇଥିଲେ ।

ସ୍ୱାମୀଜୀ ଲେଖିଛନ୍ତି, ''କବି, ଦାର୍ଶନିକ, ବୈଜ୍ଞାନିକ, ରାଜନୈତିକ, ସାମାଜିକ, ଗାୟକ, ଗାୟିକା, ଶିକ୍ଷକ, ଶିକ୍ଷୟତ୍ରୀ, ଚିତ୍ରକର, ଶିଳ୍ପୀ, ଭାସ୍କର, ବାଦକ ପ୍ରଭୃତି ନାନାଜାତିର ଗୁଣିଗଣଙ୍କ ସମାବେଶ ଶ୍ରୀଯୁକ୍ତ ଲିଗେଟଙ୍କ ଆତିଥ୍ୟ–ସମାଦର ଆକର୍ଷଣ ଯୋଗୁଁ ତାଙ୍କ ଗୃହରେ ହେଉଥିଲା । ତାଙ୍କ ପର୍ବତ–ନିର୍ଝର ପରି କଥାଛଟା, ଅଗ୍ନିସ୍ଫୁଲିଙ୍ଗ ପରି ଚତୁର୍ଦ୍ଦିଗ–ସମୁତ୍‌ଥିତ–ଭାବବିକାଶ, ମୋହିନୀ ସଙ୍ଗୀତ, ମନୀଷୀ–ମନଃ ସଂଘର୍ଷ–ସମୁତ୍‌ଥିତ ଚିନ୍ତା–ମନ୍ତ୍ର ପ୍ରବାହ ସମସ୍ତଙ୍କୁ ଦେଶକାଳପାତ୍ର ନିର୍ବିଶେଷରେ ମୁଗ୍‌ଧ କରି ରଖୁଥିଲା ।'' (ପରିବ୍ରାଜକ ସ୍ୱାମୀ ବିବେକାନନ୍ଦ)

ଉଦାର, ପରମତସହିଷ୍ଣୁ, ବନ୍ଧୁବତ୍ସଳ ବିବେକାନନ୍ଦ ସମସ୍ତଙ୍କ ସଙ୍ଗେ ସମଭାବରେ ମିଶୁଥିଲେ ଏବଂ ପରସ୍ପର ଭାବ ଓ ଚିନ୍ତାରାଶି ବିନିମୟ କରିବା ସଙ୍ଗେ ସଙ୍ଗେ ଜଗତରେ ଯେଉଁ ବାର୍ତ୍ତା ବହନ କରିବା ନିମିତ୍ତ ସେ ଶ୍ରୀଗୁରୁଙ୍କଦ୍ୱାରା ନିୟୋଜିତ ହୋଇଥିଲେ, ତାହା ନିଃସଙ୍କୋଚରେ ପ୍ରଚାର କରିଥିଲେ । ଜଗତର ବିଭିନ୍ନ ସ୍ଥାନରୁ ସମାଗତ ପ୍ରାଚ୍ୟବିଦ୍ୟା–ବିଶାରଦ, ଦାର୍ଶନିକ, କବି ଓ ସାହିତ୍ୟିକମାନଙ୍କୁ ଅଳ୍ପବିସ୍ତାର ବେଦାନ୍ତ ପ୍ରଭାବରେ ପ୍ରଭାବିତ ଦେଖି ସ୍ୱାମୀଜୀ ଆନନ୍ଦିତ ହେଲେ । ବିଗତ କେତେ ବର୍ଷ ଧରି ଅସୀମ ସାହସିକ ଉଦ୍ୟମ ସହକାରେ ସେ ବେଦାନ୍ତ–ପ୍ରଚାର କାର୍ଯ୍ୟରେ ଯେପରି ବିସ୍ମୟାବହ ପରିଶ୍ରମ କରିଥିଲେ, ଇତିମଧ୍ୟରେ

ତାହା ଧୀରେ ଧୀରେ ପ୍ରତିଭାଶାଳୀ ମସ୍ତିଷ୍କଗୁଡ଼ିକୁ ଅଭିଭୂତ କରିଛି ଓ କରୁଛି । ବିବେକାନନ୍ଦ ଦେଖିଲେ ଜଣେ ଦୁଇଜଣ ନିଜ ମୌଳିକତା ବଜାୟ ରଖିବା ନିମିତ୍ତ ବେଦାନ୍ତର ପ୍ରଭାବକୁ ଅସ୍ୱୀକାର କଲେ ହେଁ ଅଧିକାଂଶ ପଣ୍ଡିତମଣ୍ଡଳୀ, ପାଶ୍ଚାତ୍ୟ ଜଗତର ଆଧୁନିକ ସାହିତ୍ୟ ଓ ଦର୍ଶନ ଯେ କ୍ରମେ କ୍ରମେ ବେଦାନ୍ତଭାବରେ ଅନୁପ୍ରାଣିତ ହୋଇ ଉଠୁଛି—ଏହାସ୍ପଷ୍ଟ ଭାବରେ ସ୍ୱୀକାର କରୁଥିଲେ ।

ଚିକାଗୋ ମହାମେଳା ଅନୁକରଣରେ ପ୍ୟାରୀସ୍ ପ୍ରଦର୍ଶନୀ ଉପଲକ୍ଷେ ଗୋଟିଏ ଧର୍ମମହାସଭା ଅଧିବେଶନ ହେବାର କଥା ଥିଲା; କିନ୍ତୁ ରୋମାନ୍ କ୍ୟାଥଲିକ୍ ଖ୍ରୀଷ୍ଟିଆନ ସମ୍ପ୍ରଦାୟର ପ୍ରବଳ ଆପତ୍ତି ଯୋଗୁଁ ଏହା ହୋଇପାରିଲା ନାହିଁ । ଚିକାଗୋ ମହାମଣ୍ଡଳୀରେ କ୍ୟାଥଲିକ୍ ସମ୍ପ୍ରଦାୟ ଅତ୍ୟନ୍ତ ଉତ୍ସାହ ସହିତ ଯୋଗଦାନ କରିଥିଲେ । ସେମାନଙ୍କ ଧାରଣା ଓ ବିଶ୍ୱାସ ଥିଲା ଯେ, ସେମାନେ ଖ୍ରୀଷ୍ଟିଆନ ଧର୍ମ-ଜଗତରେ ନିଜ ଧର୍ମମତର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ସମର୍ଥ ହେବେ । ସେହି ଉଦ୍ଦେଶ୍ୟରେ ସେମାନେ କ୍ୟାଥଲିକ୍ ଧର୍ମର ମହିମା ଉଚ୍ଚ କଣ୍ଠରେ ଜଗତରେ ଘୋଷଣା କରିବା ନିମିତ୍ତ ସର୍ବଧର୍ମସମନ୍ୱୟ ଲାଗି ବଦ୍ଧପରିକର ହୋଇଥିଲେ; କିନ୍ତୁ ଈଶ୍ୱରଙ୍କ ଇଚ୍ଛାରେ ଫଳ ଅନ୍ୟରୂପ ହେବାରୁ ସେମାନେ ସର୍ବଜନୀନ ଧର୍ମସଭା ଆହ୍ୱାନ ବିଷୟରେ ଏକାନ୍ତ ଉତ୍ସାହହୀନ ଓ ପ୍ରତିବାଦୀ ହୋଇ ଠିଆ ହେଲେ । ଧର୍ମାନ୍ଧ ଖ୍ରୀଷ୍ଟିଆନ ଜଗତରେ ବିବେକାନନ୍ଦ ଓ ବେଦାନ୍ତ ଭୀତି ଏତେ ପ୍ରବଳ ହୋଇ ଠିଆ ହେଲା ଯେ, ଧର୍ମସଭା ପ୍ରସ୍ତାବ ଉତ୍‌ଥାପିତ ହେବାମାତ୍ରେ ସମସ୍ତେ ସମସ୍ୱରରେ ପ୍ରତିବାଦ କଲେ । ଫ୍ରାନସ୍‌ର ଅଧିକାଂଶ ଅଧିବାସୀ କ୍ୟାଥିଲିକ ସମ୍ପ୍ରଦାୟଭୁକ୍ତ ଏବଂ ଜନସାଧାରଣଙ୍କ ଉପରେ ପାଦ୍ରୀମାନଙ୍କ ପ୍ରଭୁତ୍ୱ ନିତାନ୍ତ କମ୍ ନ ଥିଲା । ଏମାନଙ୍କୁ ଉପେକ୍ଷା କରି ଧର୍ମସଭା ଆହ୍ୱାନ କରିବାକୁ ପ୍ରଦର୍ଶନୀ କର୍ତ୍ତୃପକ୍ଷ ସାହସ କଲେ ନାହିଁ । ଅବଶେଷରେ ଧର୍ମ-ଇତିହାସ ସଭା ଆହ୍ୱାନ କରିବା ପ୍ରସ୍ତାବ ଧାର୍ଯ୍ୟ ହେଲା । "ଉକ୍ତ ସଭାରେ ଆଧ୍ୟାତ୍ମିକ ଓ ମତାମତ ସମ୍ବନ୍ଧୀୟ ଆଲୋଚନା ହେଲା ନାହିଁ; କେବଳ ମାତ୍ର ବିଭିନ୍ନ ଧର୍ମର ଇତିହାସ ଅର୍ଥାତ୍ ତଦଙ୍ଗଗୁଡ଼ିକର ତଥ୍ୟାନୁସନ୍ଧାନ ହିଁ ସଭାର ଉଦ୍ଦେଶ୍ୟ ଥିଲା । ଏ ବିଷୟରେ ଏହି ସଭାର ବିଭିନ୍ନ ଧର୍ମପ୍ରଚାରକ ସମ୍ପ୍ରଦାୟର ପ୍ରତିନିଧିଙ୍କ ଏକାନ୍ତ ଅଭାବ ଥିଲା । ଏ ସଭାରେ କେତେଜଣ ପଣ୍ଡିତ, ଯେଉଁମାନେ ବିଭିନ୍ନ ଧର୍ମର ଉତ୍ପତ୍ତି ସମ୍ବନ୍ଧରେ ଚର୍ଚ୍ଚା କରନ୍ତି, ସେହିମାନେ ହିଁ ଥିଲେ ।" (ଭାବିବାର କଥା—ସ୍ୱାମୀ ବିବେକାନନ୍ଦ)

ସ୍ୱାମୀଜୀ ଉକ୍ତ ସଭାରେ ଯଥୋଚିତ ସମ୍ମାନ ସହକାରେ ପରିଗୃହୀତ ହେଲେ । ଏହି ଉପଲକ୍ଷେ ସେ ଯେଉଁ ବକ୍ତୃତା ଓ ସମାଲୋଚନା କରିଥିଲେ, ତାହାର ଗୋଟିଏ ସଂକ୍ଷିପ୍ତ ବିବରଣୀ ନିଜେ ଲେଖି 'ଉଦ୍‌ବୋଧନ'ରେ ପ୍ରକାଶ ଲାଗି ପଠାଇଥିଲେ । ତାହା ନିମ୍ନରେ ପ୍ରଦତ୍ତ ହେଲା ।

"ବୈଦିକ ଧର୍ମ—ଅଗ୍ନି, ସୂର୍ଯ୍ୟାଦି ପ୍ରାକୃତିକ ବିସ୍ମୟାବହ ଜଡ଼ ବସ୍ତୁର ଆରାଧନା-ସମୁଦ୍ଭୁତ ବୋଲି ଅନେକ ପାଶ୍ଚାତ୍ୟ ସଂସ୍କୃତଜ୍ଞଙ୍କ ମତ ।

"ସ୍ୱାମୀ ବିବେକାନନ୍ଦ, ଉକ୍ତ ମତ ଖଣ୍ଡନ କରିବା ନିମିତ୍ତ ପ୍ୟାରୀସ୍ ଧର୍ମ-ଇତିହାସ ସଭା କର୍ତ୍ତୃପକ୍ଷଙ୍କଦ୍ୱାରା ନିମନ୍ତିତ ହୋଇଥିଲେ ଏବଂ ସେ ଉକ୍ତ ବିଷୟରେ ଗୋଟିଏ ପ୍ରବନ୍ଧ ପାଠ କରିବେ ବୋଲି ପ୍ରତିଶ୍ରୁତ ଥିଲେ; କିନ୍ତୁ ଶାରୀରିକ ପ୍ରବଳ ଅସୁସ୍ଥତା ହେତୁ ତାଙ୍କ ପ୍ରବନ୍ଧ ଲେଖା ହୋଇପାରିଲା ନାହିଁ; ସେ କୌଣସି ମତେ ସଭାରେ ଉପସ୍ଥିତ ହୋଇ ପାରିଥିଲେ ମାତ୍ର । ଉପସ୍ଥିତ ହେବାରୁ ଇଉରୋପ ଅଞ୍ଚଳରେ ସବୁ ସଂସ୍କୃତଜ୍ଞ ପଣ୍ଡିତ ତାଙ୍କୁ ସାଦରେ ଅଭ୍ୟର୍ଥନା କରିଥିଲେ; କାରଣ ସେମାନେ ଇତିପୂର୍ବେ ସ୍ୱାମୀଜୀଙ୍କ ରଚିତ ପୁସ୍ତକାଦି ପାଠ କରିଥିଲେ ।

"ସେ ସମୟରେ ଉକ୍ତ ସଭାରେ ଓପର୍ଟ ନାମକ ଜଣେ ଜର୍ମାନ ପଣ୍ଡିତ ଶାଳଗ୍ରାମ ଶିଳାର ଉତ୍ପତ୍ତି ସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ପାଠ କଲେ । ସେଥିରେ ସେ ଶାଳଗ୍ରାମର ଉତ୍ପତ୍ତି 'ଯୋନି' ଚିହ୍ନ ବୋଲି ନିର୍ଦ୍ଧାରଣ କଲେ । ତାଙ୍କ ମତରେ ଶିବଲିଙ୍ଗ ପୁଂଲିଙ୍ଗର ଚିହ୍ନ ଏବଂ ତଦ୍‌ବତ୍ ଶାଳଗ୍ରାମ ଶିଳା ସ୍ତ୍ରୀଲିଙ୍ଗର ଚିହ୍ନ । ଶିବଲିଙ୍ଗ ଓ ଶାଳଗ୍ରାମ ଉଭୟ ହିଁ ଲିଙ୍ଗ-ଯୋନି-ପୂଜାର ଅଙ୍ଗ ।

"ସ୍ୱାମୀ ବିବେକାନନ୍ଦ ଉକ୍ତ ମତଦ୍ୱୟକୁ ଖଣ୍ଡନ କରି କହିଲେ ଯେ ଶିବଲିଙ୍ଗରେ ନରଲିଙ୍ଗ ସମ୍ବନ୍ଧରେ ଅବିବେକ ମତ ପ୍ରଚାରିତ ହୋଇଛି; କିନ୍ତୁ ଶାଳଗ୍ରାମ ସମ୍ବନ୍ଧରେ ଏହି ନବୀନ ମତ ଅତି ଆକସ୍ମିକ । ସ୍ୱାମୀଜୀ କହିଲେ ଯେ, ଶିବଲିଙ୍ଗ-ପୂଜାର ଉତ୍ପତ୍ତି ଅଥର୍ବବେଦସଂହିତାର ଯୂପ-ସ୍ତମ୍ଭର ପ୍ରସିଦ୍ଧ ସ୍ତୋତ୍ରରୁ ଉଦ୍‌ଭୂତ । ଉକ୍ତ ସ୍ତୋତ୍ରରେ ଅନାଦି ଅନନ୍ତ ସ୍ତମ୍ଭର ଅଥବା ସ୍କମ୍ଭର ବର୍ଣ୍ଣନା ଅଛି ଏବଂ ଉକ୍ତ ସ୍ତମ୍ଭ ହିଁ ଯେ ବ୍ରହ୍ମ, ତାହା ହିଁ ପ୍ରତିପାଦିତ ହୋଇଛି । ଯେଉଁ ପ୍ରକାରରେ ଯଜ୍ଞର ଅଗ୍ନିଶିଖା, ଧୂମ, ଭସ୍ମ, ସୋମଲତା ଓ ଯଜ୍ଞକାଷ୍ଠର ବାହକ ବୃଷ, ମହାଦେବଙ୍କର ପିଙ୍ଗଳ ଜଟା, ନୀଳକଣ୍ଠ, ଅଙ୍ଗକାନ୍ତି ଓ ବାହନାଦିରେ ପରିଣତ ହୋଇଛି, ସେହିପରି ଯୂପସ୍ତମ୍ଭ ମଧ୍ୟ ଶ୍ରୀଶଙ୍କରଙ୍କଠାରେ ଲୀନ ହୋଇ ମହିମାନ୍ୱିତ ହୋଇଛି । ଅଥର୍ବବେଦ ସଂହିତାରେ ତଦ୍‌ବତ୍ ଯଜ୍ଞୋଚ୍ଛିଷ୍ଟର ବ୍ରହ୍ମତ୍ୱମହିମା ମଧ୍ୟ ପ୍ରତିପାଦିତ ହୋଇଛି ।

"ଲିଙ୍ଗାଦି ପୁରାଣରେ ଉକ୍ତ ସ୍ତବକକୁ କଥା ଛଳରେ ବର୍ଣ୍ଣନା କରି ମହାସ୍ତମ୍ଭର ମହିମା ଓ ମହାଦେବଙ୍କ ପ୍ରାଧାନ୍ୟ ବ୍ୟାଖ୍ୟାତ ହୋଇଛି ।

x x x

"ବୌଦ୍ଧସ୍ତୂପର ଅପର ନାମ ଧାତୁଗର୍ଭ । ସ୍ତୂପମଧ୍ୟସ୍ଥ ଶିଳାଖଣ୍ଡମଧ୍ୟରେ ପ୍ରସିଦ୍ଧ ଭିକ୍ଷୁଗଣଙ୍କ ଭସ୍ମାଦି ରକ୍ଷିତ ହେଉଥିଲା । ତତ୍‌ସଙ୍ଗେ ସ୍ୱର୍ଣ୍ଣାଦି ଧାତୁ ମଧ୍ୟ ପ୍ରୋତ୍‌ଥିତ ହେଉଥିଲା । ଶାଳଗ୍ରାମ ଶିଳା ଉକ୍ତ ଅସ୍ଥିଭସ୍ମାଦି ରକ୍ଷଣଶିଳାର ପ୍ରାକୃତିକ ପ୍ରତିରୂପ । ଅତଏବ ଶାଳଗ୍ରାମ ପ୍ରଥମେ ବୌଦ୍ଧପୂଜିତ ହୋଇ ବୌଦ୍ଧମତର ଅନ୍ୟାନ୍ୟ ଅଙ୍ଗପରି ବୈଷ୍ଣବ ସମ୍ପ୍ରଦାୟରେ ପ୍ରବେଶଲାଭ କରିଛି ।

ତଥାପି ନର୍ମଦାକୂଳ ଓ ନେପାଳରେ ବୌଦ୍ଧପ୍ରାବଲ୍ୟ ଦୀର୍ଘସ୍ଥାୟୀ ଥିଲା । ପ୍ରାକୃତିକ ନର୍ମଦେଶ୍ୱର ଶିବଲିଙ୍ଗ ଓ ନେପାଳପ୍ରସୂତ ଶାଳଗ୍ରାମ ହିଁ ଯେ ବିଶେଷ ସମାଦୃତ ହେଉଛି, ଏହା ମଧ୍ୟ ବିବେଚ୍ୟ ।

''ଶାଳଗ୍ରାମ ସମ୍ବନ୍ଧରେ ଯୌନ ବ୍ୟାଖ୍ୟା ଅତି ଅଶ୍ରୁତପୂର୍ବ ଏବଂ ପ୍ରଥମରୁ ଅପ୍ରାସଙ୍ଗିକ; ଶିବଲିଙ୍ଗ ସମ୍ବନ୍ଧରେ ଯୌନବ୍ୟାଖ୍ୟା ଭାରତବର୍ଷରେ ଅତି ଅର୍ବାଚୀନ ଏବଂ ଏହା ଉକ୍ତ ବୌଦ୍ଧ-ସମ୍ପ୍ରଦାୟର ଘୋର ଅବନତି ସମୟରେ ସଂଘଟିତ ହୋଇଥିଲା । ଏହି ସମୟର ଘୋର ବୌଦ୍ଧତନ୍ତ୍ରଗୁଡ଼ିକ ଏବେ ମଧ୍ୟ ନେପାଳ ଓ ତିବ୍‌ବତରେ ଖୁବ୍ ପ୍ରଚଳିତ ।'' (ଭାବିବାର କଥା—ସ୍ୱାମୀ ବିବେକାନନ୍ଦ)

ଦ୍ୱିତୀୟ ବକ୍ତୃତାରେ ସ୍ୱାମୀଜୀ ଭାରତୀୟ ଧର୍ମମତ ବିସ୍ତାର ବିଷୟରେ ହିନ୍ଦୁ ଓ ବୌଦ୍ଧଧର୍ମର ପ୍ରାଚୀନ ଐତିହାସିକ ତତ୍ତ୍ୱଗୁଡ଼ିକର ଆଲୋଚନା କରିଥିଲେ । ବିଶେଷ ଭାବରେ ସେ ଭାରତୀୟ ସଭ୍ୟତା, ସାହିତ୍ୟ, ଦର୍ଶନ, ଜ୍ୟୋତିଷ ଇତ୍ୟାଦିରେ ଗ୍ରୀକ୍ ପ୍ରଭାବ ଥିବା ମତ ବିରୋଧରେ ପ୍ରତିବାଦ କରିଥିଲେ । କେତେଜଣ ପଣ୍ଡିତ ଭାରତୀୟ ସଭ୍ୟତା ଉପରେ ଗ୍ରୀକ୍ ପ୍ରଭାବ କଥା ବ୍ୟକ୍ତ କରିଥିଲେ; ସ୍ୱାମୀଜୀ ସେମାନଙ୍କୁ ଲକ୍ଷ୍ୟ କରି ଉପସଂହାରରେ କହିଲେ ଯେ, ସେମାନେ ଯଦି ଧୀର ଭାବରେ ସଂସ୍କୃତ ପ୍ରାଚୀନ ସାହିତ୍ୟ ଅଧ୍ୟୟନ କରନ୍ତି, ତାହାହେଲେ ବୁଝିପାରିବେ ଯେ, ଏଥିରେ ଆଦୌ ଗ୍ରୀକ୍ ପ୍ରଭାବର ଛାୟା ନାହିଁ; ବରଂ ଏହା ଅନେକାଂଶରେ ସତ୍ୟ ଯେ, ଗ୍ରୀକ୍‌ମାନେ ହିଁ ହିନ୍ଦୁମାନଙ୍କଠାରୁ ଅନେକ ବିଷୟ ଶିକ୍ଷା କରିଥିଲେ ।

ପ୍ୟାରୀସ୍ ପ୍ରଦର୍ଶନୀ ଉପଲକ୍ଷେ ସମାଗତ ବହୁ ପ୍ରତିଭାଶାଳୀ ବ୍ୟକ୍ତିଙ୍କ ସହିତ ସ୍ୱାମୀଜୀ ପରିଚିତ ହୋଇଥିଲେ ବୋଲି ଆଗରୁ ବର୍ଣ୍ଣିତ ହୋଇଛି । ଏମାନଙ୍କ ମଧ୍ୟରୁ ଯେଉଁମାନେ ସ୍ୱାମୀଜୀଙ୍କର ବିଶେଷ ବନ୍ଧୁ ରୂପେ ପରିଗଣିତ ହେଉଥିଲେ, ସେମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ଜୁଲ୍ ବୋଓ୍ୱା, ଏଡିନବରା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ପ୍ୟାଟ୍ରିକ ଗେଡିସ୍, ପିୟର ହିଆସାନ୍ଥ, ବିଖ୍ୟାତ କମାଣ-ନିର୍ମାତା ଶ୍ରୀଯୁକ୍ତ ହିରମ୍ ମାକ୍‌ସିମ୍, ଇଉରୋପର ସର୍ବଶ୍ରେଷ୍ଠ ଗାୟିକା ଶ୍ରୀମତୀ କାଲ୍‌ଭେ, ସୁପ୍ରସିଦ୍ଧା ଅଭିନେତ୍ରୀ-କୁଳ-ସାମ୍ରାଜ୍ଞୀ ସାର୍ ବାର୍ଣ୍ଣହାର୍ଡ, ରାଜକୁମାରୀ ଡେମିଡଫ୍ ଓ ତାଙ୍କର ସ୍ୱଦେଶବାସୀ ବୈଜ୍ଞାନିକ ଡକ୍ଟର ଜଗଦୀଶ ଚନ୍ଦ୍ର ବୋଷଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ଡକ୍ଟର ବୋଷଙ୍କ ସମ୍ବନ୍ଧରେ ସ୍ୱାମୀଜୀ ଗର୍ବର ସହିତ ତାଙ୍କ 'ପରିବ୍ରାଜକ' ନାମକ ପୁସ୍ତକରେ ଲେଖିଛନ୍ତି, ''ଆଜି ଅକ୍ଟୋବର ତେଇଶି ତାରିଖ ଓ କାଲି ସନ୍ଧ୍ୟାବେଳେ ପ୍ୟାରୀସରୁ ବିଦାୟ ! ଏ ବର୍ଷ ଏହି ପ୍ୟାରୀସ୍ ସଭ୍ୟ ଜଗତର ଗୋଟିଏ କେନ୍ଦ୍ର, ଏହି ବର୍ଷର ମହାପ୍ରଦର୍ଶନୀ ଯୋଗୁଁ । ନାନା ଦେଶ ବିଦେଶରୁ ସମାଗତ ସଜ୍ଜନ-ସଙ୍ଗମ । ଦେଶଦେଶାନ୍ତରର ମନୀଷୀଗଣ ନିଜ ନିଜ ପ୍ରତିଭା ପ୍ରକାଶ କରି ନିଜ ଦେଶର ମହିମା ବିସ୍ତାର କରିଛନ୍ତି ଆଜି ଏହି ପ୍ୟାରୀସ୍ ସହରରେ । ମହାକେନ୍ଦ୍ରର ଭେରୀଧ୍ୱନି ଆଜି ଯାହାଙ୍କ ନାମ ଉଚ୍ଚାରଣ କରିବ, ସେ ନାଦତରଙ୍ଗ ସଙ୍ଗେ ସଙ୍ଗେ ତାଙ୍କ ସ୍ୱଦେଶକୁ ସର୍ବଜନ ସମକ୍ଷରେ ଗୌରବାନ୍ୱିତ

କରିବ । ଆଉ ମୋ ଜନ୍ମଭୂମି—ଏହି ଜର୍ମାନ, ଫରାସୀ, ଇଂରାଜୀ, ଇଟାଲୀୟ ପ୍ରଭୃତି ବୁଧମଣ୍ଡଳୀ-ମଣ୍ଡିତ ମହାରାଜଧାନୀରେ ବଙ୍ଗଭୂମି କେଉଁଠି ? କିଏ ତୁମ ନାମ କହୁଛି ? କିଏ ତୁମ ଅସ୍ତିତ୍ୱ ଘୋଷଣା କରୁଛି ? ସେ ବହୁ ଗୌରବର୍ଣ୍ଣ ପ୍ରତିଭାମଣ୍ଡଳୀ ମଧ୍ୟରୁ ଜଣେ ଯୁବା, ଯଶସ୍ୱୀ ବୀର, ବଙ୍ଗଭୂମିର, ଆମ ମାତୃଭୂମିର ନାମ ଘୋଷଣା କଲେ—ସେ ବୀର ଜଗତ୍-ପ୍ରସିଦ୍ଧ ବୈଜ୍ଞାନିକ ଡକ୍ଟର ଜେ. ସି. ବୋଷ ! ଜଣେ ଯୁବକ ବଙ୍ଗାଳୀ ବୈଦ୍ୟୁତିକ, ଆଜି ବିଦ୍ୟୁତ୍ ବେଗରେ ପାଶ୍ଚାତ୍ୟ ଜଗତକୁ ନିଜ ପ୍ରତିଭାର ମହିମାରେ ମୁଗ୍ଧ କରିଦେଲେ । ସେ ବିଦ୍ୟୁତ୍-ସଞ୍ଚାର ମାଧ୍ୟମରେ ମାତୃଭୂମିର ମୃତପ୍ରାୟ ଶରୀରରେ ନବଜୀବନ-ତରଙ୍ଗ ସଞ୍ଚାର କଲେ ! ସମଗ୍ର ବୈଦ୍ୟୁତିକ-ମଣ୍ଡଳୀର ଶୀର୍ଷସ୍ଥାନୀୟ ଆଜି ଜଗଦୀଶ ବୋଷ—ଭାରତବାସୀ, ବଙ୍ଗବାସୀ ! ଧନ୍ୟ ବୀର ! ବୋଷ ବଂଶୋଦ୍ଭୂତ ଓ ତାଙ୍କ ସତୀ-ସାଧ୍ୱୀ, ସର୍ବଗୁଣସମ୍ପନ୍ନା ଗୃହିଣୀ ଯେଉଁ ଦେଶକୁ ଯାଉଛନ୍ତି, ସେଠାରେ ଭାରତର ମୁଖ ଉଜ୍ଜ୍ୱଳ କରୁଛନ୍ତି—ବଙ୍ଗାଳୀଙ୍କ ଗୌରବ ବର୍ଦ୍ଧନ କରୁଛନ୍ତି । ଧନ୍ୟ ଦମ୍ପତି !''

## ପୂର୍ବ-ଇଉରୋପ ଓ ମିଶର ଭ୍ରମଣ

ପ୍ରାୟ ତିନିମାସ କାଳ ପ୍ୟାରୀସ୍ ନଗରୀରେ ଯାପନ କରି ସ୍ୱାମୀଜୀ ଅକ୍ଟୋବର ଚବିଶ ତାରିଖ ରାତ୍ରିରେ ସଦଳବଳେ ଭିଏନା ଅଭିମୁଖେ ଯାତ୍ରା କଲେ । ଭିଏନା ନଗରୀର ପ୍ରସିଦ୍ଧ ଐତିହାସିକ ଦ୍ରଷ୍ଟବ୍ୟ ସ୍ଥାନଗୁଡ଼ିକ ପରିଦର୍ଶନ କରି ସେମାନେ ହଙ୍ଗେରୀ, ସର୍ବିୟା, ରୁମାନିଆ ଓ ବୁଲ୍‌ଗେରିଆ ବାଟେ କନଷ୍ଟାଣ୍ଟିନୋପ୍‌ଲରେ ପ୍ରବେଶ କଲେ । କନଷ୍ଟାଣ୍ଟିନୋପ୍‌ଲ ସହର ଅନେକ ପରିମାଣରେ ପ୍ରାଚ୍ୟଭାବାପନ୍ନ ହୋଇଥିବା ଦେଖି ସ୍ୱାମୀଜୀ ଆନନ୍ଦିତ ହେଲେ ଏବଂ ପରଦିନ, ଶିଷ୍ୟା କୁମାରୀ ମ୍ୟାକ୍‌ଲାଉଡଙ୍କ ସହିତ ନଗର ପରିଦର୍ଶନ କରିବାକୁ ବାହାରି ଗଲେ ।

କମାଣ-ନିର୍ମାତା ମ୍ୟାକ୍‌ସିମ ସାହେବଙ୍କଠାରୁ ଆଣିଥିବା ପରିଚୟ ପତ୍ରର ସାହାଯ୍ୟରେ ସ୍ୱାମୀଜୀ ସ୍ଥାନୀୟ ଅନେକ ବିଖ୍ୟାତ ବ୍ୟକ୍ତିଙ୍କ ସହିତ ପରିଚିତ ହେଲେ । ସ୍ୱାମୀଜୀଙ୍କ ସଙ୍ଗୀ ଅନ୍ୟତମ ପ୍ରସିଦ୍ଧ ବକ୍ତା ପାଦ୍ରୀ ଲୟସନ୍ ବକ୍ତୃତା କରିବା ଲାଗି ଅନୁମତି ପାଇ ନ ଥିଲେ; ସ୍ୱାମୀଜୀଙ୍କୁ ମଧ୍ୟ ପ୍ରକାଶ୍ୟ ବକ୍ତୃତା ଦେବାର ଅନୁମତି ମିଳିଲା ନାହିଁ । କେତେଜଣ ଉଚ୍ଚ ଶିକ୍ଷିତ ସମ୍ଭ୍ରାନ୍ତ ବ୍ୟକ୍ତି ସେମାନଙ୍କ ବୈଠକଖାନାରେ ସ୍ୱାମୀଜୀଙ୍କ ପାଇଁ ପ୍ରଶ୍ନୋତ୍ତର ସଭା ଆୟୋଜନ କରିଥିଲେ ଏବଂ ଆଗ୍ରହ ସହିତ ବେଦାନ୍ତ ଆଲୋଚନାରେ ଯୋଗ ଦେଇଥିଲେ । କେତେଦିନ ଆନନ୍ଦରେ ଅତିବାହିତ କରି ସ୍ୱାମୀଜୀ ପ୍ରାଚୀନ ଗ୍ରୀକ୍ ସଭ୍ୟତାର ସମାଧିଭୂମି ଏଥେନ୍‌ସରେ ପହଞ୍ଚିଲେ । ଏଥେନ୍‌ସ ନଗରୀ ପରିଦର୍ଶନ କରି ସେ ସଙ୍ଗୀ ଓ ସଙ୍ଗିନୀମାନଙ୍କ ସହିତ ମିଶର ଦେଶ ଅଭିମୁଖେ ଗଲେ । କାଏରୋ ନଗରୀରେ ପହଞ୍ଚି ସ୍ୱାମୀଜୀ ଯାଦୁଘରେ ରକ୍ଷିତ ପ୍ରାଚୀନ ଦ୍ରବ୍ୟ ସାମଗ୍ରୀ ଦର୍ଶନ କରି ଅଧିକ

ଆଗ୍ରହ ପ୍ରକାଶ କଲେ ଏବଂ ସଙ୍ଗୀମାନଙ୍କୁ ମିଶରର ଅତୀତ ଇତିହାସରୁ ଅଦ୍ଭୁତକର୍ମା ଫେରୋ-ରାଜବଂଶର ବିବରଣ ଶୁଣାଇଲେ । 'ପିରାମିଡ୍', 'ସ୍ଫିନକ୍ସ' ପ୍ରଭୃତି ଦୃଷ୍ଟିପଥରେ ପଡ଼ିବା ମାତ୍ରକେ ସ୍ୱାମୀଜୀ ଏଗୁଡ଼ିକ ସମ୍ବନ୍ଧରେ ଯାହା ଜ୍ଞାତବ୍ୟ, ସେସବୁ ସଙ୍ଗୀମାନଙ୍କ ନିକଟରେ ଅନର୍ଗଳ କହିଯାଉଥିଲେ । ସେମାନେ ଦେଖି ବିସ୍ମିତ ହେଲେ ଯେ, ସ୍ୱାମୀଜୀ ପ୍ରାଚୀନ ମିଶର ସମ୍ବନ୍ଧରେ ଏତେ ଅଧିକ ଜାଣିଛନ୍ତି, ସତେ ଯେପରି କି ସାରା ଜୀବନ ଧରି ସେ ମିଶରର ପ୍ରତ୍ନତତ୍ତ୍ୱ ହିଁ ଆଲୋଚନା କରିଛନ୍ତି ।

ପ୍ୟାରୀସ୍, ଭିଏନା, କନ୍‌ଷ୍ଟାଣ୍ଟିନୋପ୍‌ଲ, ଏଥେନ୍‌ସ, କାଏରୋ ପ୍ରଭୃତି ନଗର ଐଶ୍ୱର୍ଯ୍ୟ, ସୌନ୍ଦର୍ଯ୍ୟ, ବିଳାସ ପ୍ରଭୃତି ଦେଖି ସ୍ୱାମୀଜୀ ଯେପରି କି ଅନ୍ତରେ ଅନ୍ତରେ ବିରକ୍ତି-ତିକ୍ତ ହୋଇ ଉଠିଥିଲେ ! ପାର୍ଥିବ ସମ୍ପଦ-ଗର୍ବିତ ପାଶ୍ଚାତ୍ୟ ଜଗତର ଉଦ୍ଧତ ଅହଙ୍କାର ନିରନ୍ତର ତାଙ୍କ ଚିତ୍ତକୁ ପୀଡ଼ା ଦେଉଥିଲା । ଇନ୍ଦ୍ରିୟସୁଖୈକ ଲକ୍ଷ୍ୟ ବହିର୍ମୁଖ ଜାତିର ପ୍ରତିନିୟତ ନୂଆ ନୂଆ ଭୋଗ୍ୟବସ୍ତୁ ଆବିଷ୍କାରର ଉନ୍ମତ ଚେଷ୍ଟା, ତାହା ଲାଭ କରିବା କାମନାରେ ପ୍ରତି ପଦକ୍ଷେପରେ ନ୍ୟାୟ, ନୀତି, ଧର୍ମ ଉପରେ ଭୃକ୍ଷେପହୀନ ପଦାଘାତ—ଏହା ହେଲା ଇଉରୋପର ନିତ୍ୟନୈମିତ୍ତିକ ଘଟଣା । ନିର୍ଲିପ୍ତ ସନ୍ନ୍ୟାସୀ ଦ୍ରଷ୍ଟା ବା ସାକ୍ଷୀ ପରି ସର୍ବତ୍ର ବିଚରଣ କରୁଥିଲେ । ମିଶରରେ ପଦାର୍ପଣ କରିବା ପରଠାରୁ ଭାରତକୁ ପ୍ରତ୍ୟାବର୍ତ୍ତନ କରିବା ଲାଗି ତାଙ୍କ ମନ ଅତି ବ୍ୟାକୁଳ ହୋଇପଡ଼ିଲା । ଇତି ମଧ୍ୟରେ ସମ୍ବାଦ ଆସିଲା, ମାୟାବତୀ ମଠର ସଂସ୍ଥାପକ ଶ୍ରୀଯୁକ୍ତ ସେଭିୟରଙ୍କ ପରଲୋକ ହୋଇଯାଇଛି । ଏହି ଦାରୁଣ ସମ୍ବାଦ ପାଇବା ମାତ୍ରେ ସ୍ୱାମୀଜୀ ଭାରତ ପ୍ରତ୍ୟାବର୍ତ୍ତନ ସମ୍ବନ୍ଧରେ ଦୃଢ଼-ସଂକଳ୍ପ ହେଲେ ।

ଶ୍ରୀଯୁକ୍ତ ବୋଓୟା, ଶ୍ରୀମତୀ କାଲ୍‌ଭେ, କୁମାରୀ ମ୍ୟାକ୍‌ଲାଉଡ୍ ପ୍ରଭୃତି ଏକାନ୍ତ ଦୁଃଖିତ ଚିତ୍ତରେ ସ୍ୱାମୀଜୀଙ୍କୁ ବିଦାୟ ଦେବାକୁ ବାଧ୍ୟ ହେଲେ । ଜାହାଜରୁ ଭାରତ ଉପକୂଳ ଦେଖାଯିବା କ୍ଷଣି ସ୍ୱାମୀଜୀଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେ ବମ୍ବେ ବନ୍ଦରରେ ଅବତରଣ କରି କଲିକତା ଅଭିମୁଖେ ଯାତ୍ରା କଲେ । ଅଭିନନ୍ଦନ, ବକ୍ତୃତା, ଲୋକଶିକ୍ଷା, ପ୍ରଚାରକାର୍ଯ୍ୟ ଇତ୍ୟାଦିରେ ତାଙ୍କର ତିଳେ ମାତ୍ର ମନ ନ ଥିଲା ବୋଲି ସେ ଏକାନ୍ତ ଗୁପ୍ତ ଭାବରେ ଓ ସାବଧାନତା ସହକାରେ ଟ୍ରେନ୍ ଧରିଲେ ।

## ଶ୍ରୀମତୀ କାଲ୍‌ଭେଙ୍କ ଜୀବନ-ସ୍ମୃତି

ସ୍ୱାମୀଜୀଙ୍କ ପୂର୍ବ ଇଉରୋପ ଭ୍ରମଣର ଅନ୍ୟତମା ସଙ୍ଗିନୀ, ଇଉରୋପର ବିଶ୍ୱବିଶ୍ରୁତ ଗାୟିକା ଶ୍ରୀମତୀ କାଲ୍‌ଭେ ଅଳ୍ପଦିନ ହେଲା ପରଲୋକ ଗମନ କରିଥିଲେ । ତାଙ୍କ ଆତ୍ମ-ଜୀବନ-ଚରିତ ନିଉୟର୍କର 'ସଟରଡେ ଇଭିନିଙ୍ଗ୍ ପୋଷ୍ଟ' ନାମକ ସୁପ୍ରସିଦ୍ଧ ପତ୍ରିକାରେ ଧାରାବାହିକ ରୂପେ ପ୍ରକାଶିତ ହୋଇ ଅବଶେଷରେ

ପୁସ୍ତକାକାରରେ ମୁଦ୍ରିତ ହୋଇଛି । ସେଥିରୁ ସ୍ୱାମୀ ବିବେକାନନ୍ଦଙ୍କ ସମ୍ବନ୍ଧୀୟ ଅଂଶଟି ନିମ୍ନରେ ପ୍ରଦତ୍ତ ହେଲା —

''ଏହା ମୋର ଅତ୍ୟନ୍ତ ଆନନ୍ଦ ଓ ସୌଭାଗ୍ୟର ବିଷୟ ଯେ, ମୁଁ ଜଣେ 'ଈଶ୍ୱରଙ୍କୁ ଜାଣିଥିବା ବ୍ୟକ୍ତି'ଙ୍କ ସହିତ ପରିଚିତ ହେବାର ଗୌରବ ଲାଭ କରିଥିଲି । ସେ ଉନ୍ନତ ଓ ଉଦାରଚେତା, ସାଧୁ ପୁରୁଷ, ଦାର୍ଶନିକ ଏବଂ ଜଣେ ବିଶ୍ୱସ୍ତ ବନ୍ଧୁ । ମୋ ଧର୍ମ–ଜୀବନ ଉପରେ ତାଙ୍କର ପ୍ରଭାବ ଅତି ସୁଗଭୀର । ସେ ମୋତେ ଗୋଟିଏ ନୂତନ ଭାବ–ରାଜ୍ୟର ସନ୍ଧାନ ଦେଇଛନ୍ତି, ମୋ ଜୀବନର ଧର୍ମ ସମ୍ବନ୍ଧୀୟ ଧାରଣା ଓ ଆଦର୍ଶକୁ ନବପ୍ରେରଣାରେ ସଞ୍ଜୀବୀତ କରିଛନ୍ତି ଏବଂ ସତ୍ୟକୁ ଉପଲବ୍ଧି କରିବାର ଗୋଟିଏ ମହନୀୟ ଉପାୟର ସନ୍ଧାନ ଦେଇଛନ୍ତି । ମୋ ଆତ୍ମା ଚିରଦିନ ତାଙ୍କ ନିକଟରେ ଅନନ୍ତ କୃତଜ୍ଞତା–ପାଶରେ ଆବଦ୍ଧ । ଏହି ଅସାଧାରଣ ପୁରୁଷ ଜଣେ ବେଦାନ୍ତବାଦୀ ସନ୍ନ୍ୟାସୀ । ସାଧାରଣରେ ସେ ସ୍ୱାମୀ ବିବେକାନନ୍ଦ ନାମରେ ସୁପରିଚିତ । ଧର୍ମ–ପ୍ରଚାରକ ରୂପେ ଆମେରିକାରେ ସର୍ବତ୍ର ତାଙ୍କ ଯଶଃ ସୁପ୍ରତିଷ୍ଠିତ । ସେ ଯେଉଁ ତିନିବର୍ଷ କାଳ ଚିକାଗୋରେ ବକ୍ତୃତା ଦେଇଥିଲେ, ମୁଁ ସେତେବେଳେ ସେଠାରେ ଥିଲି ଏବଂ ନାନା କାରଣରୁ ମୁଁ ମାନସିକ ଅବସାଦଗ୍ରସ୍ତ ଓ ଦୁର୍ବଳ ହୋଇ ପଡ଼ିଥିଲି । ମୁଁ ସ୍ୱାମୀଜୀଙ୍କ ସହିତ ସାକ୍ଷାତ୍ କରିବା ଲାଗି ସ୍ଥିର କଲି । କୌତୂହଳ ହେଲା, ଥରେ ଦେଖି ଆସେ, କେଉଁ ଶକ୍ତି ବଳରେ ସେ ମୋର କେତେଜଣ ବନ୍ଧୁଙ୍କ ହୃଦୟରେ ଶାନ୍ତି ଦାନ କରିପାରିଛନ୍ତି ।

''ଆଗରୁ ଦେଖା କରିବା ସମୟ ସ୍ଥିର ହେଲା । ନିର୍ଦ୍ଦିଷ୍ଟ ସମୟରେ ମୁଁ ତାଙ୍କ ବାସସ୍ଥଳରେ ପହଞ୍ଚିଲି । ସେତେବେଳେ ମୋତେ ତାଙ୍କ ପଢ଼ା ଘରକୁ ନିଆଗଲା । ଯିବା ପୂର୍ବରୁ ମୋତେ କୁହାଗଲା, ସ୍ୱାମୀଜୀ ନପଚାରିବା ପର୍ଯ୍ୟନ୍ତ ମୁଁ ଯେପରି କଥା ନ କହେ । ତେଣୁ ମୁଁ ନୀରବରେ କକ୍ଷ ମଧ୍ୟକୁ ଯାଇ ଠିଆ ହୋଇ ରହିଲି । ସେ ଚଟାଣ ଉପରେ ଭାରତୀୟ ରୀତିରେ ବସିଥିଲେ । ତାଙ୍କ ଉଜ୍ଜ୍ୱଳ ଗୈରିକ ବସନ ମାଟିରେ ଲୋଟୁଥିଲା । ମୁଣ୍ଡରେ ଗୈରିକ ପଗଡ଼ି ମୁହଁ ଆଡ଼କୁ ସାମାନ୍ୟ ବଙ୍କେଇ ହୋଇଥିଲା, ସେ ମୁଣ୍ଡ ନୁଆଇଁ ସ୍ଥିର ହୋଇ ବସିଥିଲେ । କିଛି ସମୟ ପରେ ସେ ମୋ ଆଡ଼କୁ ନ ଚାହିଁ କହିଲେ, 'ବତ୍ସ ! ତୁମ ମନ ଅତ୍ୟନ୍ତ ଉତ୍କଣ୍ଠିତ ଓ ଚଞ୍ଚଳ । ଶାନ୍ତ ହୁଅ ! ମାନସିକ ପ୍ରଶାନ୍ତି ହିଁ ସର୍ବାଗ୍ରେ ପ୍ରୟୋଜନ !'

''ତା' ପରେ ଶାନ୍ତ ଗମ୍ଭୀର ସ୍ୱରରେ ଓ ଉଦାସ ଭାବରେ ସେ (ମୋ ନାମ ତାଙ୍କୁ ଜଣା ନ ଥିଲା) ମୋ ଜୀବନର ସବୁ ଗୁପ୍ତ ଅଭିପ୍ରାୟ ଓ ମୋ ଅଶାନ୍ତିର କାରଣ ସହଜ ଭାବରେ କହିଗଲେ, ଯାହାର ବିନ୍ଦୁ ବିସର୍ଗ ମୋର ଅନ୍ତରଙ୍ଗ ବନ୍ଧୁମାନେ ମଧ୍ୟ ଜାଣି ନ ଥିଲେ । ଏହା ମୋ ନିକଟରେ ରହସ୍ୟମୟ ଅନୈସର୍ଗିକ ବ୍ୟାପାର ରୂପେ ଅନୁମିତ ହେଲା । ମୁଁ କହି ଉଠିଲି, 'ଆପଣ ଏ ସମସ୍ତ ଜାଣିଲେ କିପରି ? ଆପଣଙ୍କୁ ମୋ କଥା କିଏ କହିଛି ?'

"ସେ କରୁଣ ହାସ୍ୟରେ ମୋ ଉପରେ ସ୍ନେହ ଦୃଷ୍ଟି ପକାଇଲେ, ଯେପରି ମୁଁ ଗୋଟିଏ ସରଳ ଅଜ୍ଞ ଶିଶୁପରି ପଚାରୁଛି । ପରେ ଧୀର ଭାବରେ କହିଲେ, 'ତୁମ ବିଷୟରେ ମୋତେ କେହି କିଛି କହି ନାହାନ୍ତି । କାହାଠାରୁ ଶୁଣିବା ଭଳି କଥା କ'ଣ ଏଥିରେ ଅଛି ? ମୁଁ ତୁମ ହୃଦୟକୁ ବହି ପରି ପଢ଼ି ପାରିଲି ।'

"ବିଦାୟ ନେବା ସମୟରେ ସେ ଉଠୁ ଉଠୁ କହିଲେ, 'ତୁମେ ଅତୀତ କଥା ସବୁ ଭୁଲିଯିବାକୁ ଚେଷ୍ଟା କର । ବିମର୍ଷ ଭାବ ଦୂର କରି ଚିତ୍ତକୁ ସର୍ବଦା ପ୍ରଫୁଲ୍ଲ ରଖ । ଯତ୍ନ କରି ସ୍ୱାସ୍ଥ୍ୟରକ୍ଷା କର । ନୀରବରେ ତୁମ ଦୁଃଖର କାରଣଗୁଡ଼ିକ ଛାତି ଭିତରେ ରଖ ନାହିଁ । ତୁମ ଅବରୁଦ୍ଧ ଭାବାବେଗ ଅନ୍ୟ ବାଟରେ ପ୍ରକାଶ କରି ପକାଅ । ଧର୍ମଜୀବନର ସ୍ୱାଭାବିକ-ସ୍ୱଚ୍ଛନ୍ଦତା ଲାଗି ଏହା ହିଁ ସର୍ବାଗ୍ରେ ଆବଶ୍ୟକ । ତୁମେ ସଙ୍ଗୀତ ଜାଣ, ସଙ୍ଗୀତ ପାଇଁ ମଧ୍ୟ ଏହା ପ୍ରୟୋଜନ ।'

"ମୁଁ ତାଙ୍କ ବାକ୍ୟ ଓ ପ୍ରଖର ବ୍ୟକ୍ତିତ୍ୱର ଅସାମାନ୍ୟ ପ୍ରଭାବରେ ଅଭିଭୂତ ହୋଇ ଫେରି ଆସିଲି । ମଁ ଅନୁଭବ କଲି, ଯେଉଁ ଜଟିଳ ସମସ୍ୟାଗୁଡ଼ିକ ଅସ୍ୱାଭାବିକ ଉତ୍ତେଜନା ଯୋଗୁଁ ମୋ ମସ୍ତିଷ୍କକୁ କ୍ଲାନ୍ତ ଓ ପୀଡ଼ିତ କରୁଥିଲା, ତାହା ପରିବର୍ତ୍ତେ ତାଙ୍କ ସରଳ, ଶାନ୍ତ ଭାବରାଶି ସେଠାରେ ବିରାଜିତ ହେଲା ।

"ମୁଁ ପୁଣି ନୂଆ ଭାବରେ ସଞ୍ଜୀବିତ ଓ ହର୍ଷୋତ୍‌ଫୁଲ୍ଲ ହୋଇ ଉଠିଲି । ଏହା ତାଙ୍କ ଅସୀମ ଇଚ୍ଛାଶକ୍ତିର ଫଳ । ସେ ତଥାକଥିତ ସମ୍ମୋହନ ବିଦ୍ୟା ବା ତଦନୁରୂପ କୌଣସି ପ୍ରକ୍ରିୟା ମୋ ଉପରେ ପ୍ରୟୋଗ କରି ନାହାନ୍ତି । ଏହା ତାଙ୍କ ସୁଦୃଢ଼ ଚରିତ୍ରବଳ, ତାଙ୍କ ପବିତ୍ର ଓ ଅଦମ୍ୟ ସୁସଂକଳ୍ପ—ଯାହା ମୋ ହୃଦୟରେ ବିଶ୍ୱାସ ଓ ଶ୍ରଦ୍ଧା ସଞ୍ଚାର କରିଥିଲା । ପରେ ତାଙ୍କ ସହିତ ଘନିଷ୍ଠ ପରିଚୟ ହୋଇ ଦେଖିଲି, ସେ ସହଜରେ ଉତ୍ତେଜିତ ଓ ଚିନ୍ତାକୁଳ ଭାବ ଦୂର କରି ଶ୍ରୋତାଙ୍କୁ ଶାନ୍ତ କରୁଥିଲେ, ତଦ୍ୱାରା ତାଙ୍କ କଥାଗୁଡ଼ିକ ସେମାନେ ଏକାଗ୍ରଚିତ୍ତରେ ଶ୍ରବଣ ଓ ଧାରଣ କରିପାରନ୍ତି ।

"ସ୍ୱାମୀଜୀ ମୋ ପ୍ରଶ୍ନର ଉତ୍ତରରେ ଛୋଟଗଳ୍ପ, କବିତା ଇତ୍ୟାଦି ସାହାଯ୍ୟରେ ତାଙ୍କ ବକ୍ତବ୍ୟ ବିଷୟକୁ ସହଜବୋଧ୍ୟ ଓ ମର୍ମସ୍ପର୍ଶୀ କରି ଦେଉଥିଲେ । ମୁଁ ଦିନେ ମୁକ୍ତି ଓ ବ୍ୟକ୍ତି ସ୍ୱାତନ୍ତ୍ର୍ୟ କଥା ଆଲୋଚନା କରୁଥିଲି । ସେ ତାଙ୍କ ଧର୍ମମତରୁ ଗୋଟିଏ ବିଶେଷ ମତ, ପୁନର୍ଜନ୍ମବାଦ ବ୍ୟାଖ୍ୟା କରି ବୁଝାଉଥିଲେ । ଏହି ସମୟରେ ମୁଁ ସହସା କହିଲି, ନା, ମୁଁ ଏହା ଭାବିପାରୁ ନାହିଁ । ମୁଁ ମୋର 'ମୁଁ ତ୍ୱ' ଚାହେଁ । ଏକ ଅନନ୍ତ ମଧ୍ୟରେ ଚିର ବିଲୟ ଲାଭ କରିବାକୁ ମୁଁ ପ୍ରାର୍ଥନା କରୁନାହିଁ । ଏପରି ଚିନ୍ତା ମଧ୍ୟ ମୋତେ ଆତଙ୍କିତ କରି ପକାଉଛି ।

"ସ୍ୱାମୀଜୀ ଉତ୍ତର ଦେଲେ, ଦିନେ ଏକବିନ୍ଦୁ ଜଳ ସମୁଦ୍ରରେ ପଡ଼ି ତୁମପରି କାନ୍ଦିବାକୁ ଲାଗିଲା ଏବଂ ଠିକ୍ ତୁମପରି ନିଜ ସ୍ୱାତନ୍ତ୍ର୍ୟ ରକ୍ଷା କରିବା ଲାଗି ଭାବି ଆକୁଳ ହେଲା । ମହାସମୁଦ୍ର ତାକୁ ଚାହିଁ ହସି ହସି କହିଲା, ତୁମେ କାନ୍ଦୁଚ କାହିଁକି ? ମୁଁ ତ କାରଣ ଖୋଜି ପାଉନାହିଁ । ମୋ ସହିତ ମିଳିତ ହୋଇ

ତୁମେ ଭାଇଭଉଣୀମାନଙ୍କ ସଙ୍ଗେ ମିଶିଯାଇଛି — ମୁଁ ତ ଏମାନଙ୍କ ସମଷ୍ଟି । ତୁମେ ତ ଏବେ ନିଜେ ସମୁଦ୍ର । ତୁମେ ଯଦି ମୋଠାରୁ ସ୍ୱତନ୍ତ୍ର ହେବାକୁ ଚାହଁ, ତାହା ହେଲେ ତୁମକୁ ସୂର୍ଯ୍ୟରଶ୍ମି ସାହାଯ୍ୟରେ ଉର୍ଦ୍ଧ୍ୱକୁ ଉଠି ମେଘର ଆଶ୍ରୟ ନେବାକୁ ହେବ । ସେଠାରୁ ତୁମେ କଲ୍ୟାଣ-ଆଶିଷ ରୂପେ ପୃଥିବୀର ତୃଷିତ ବକ୍ଷକୁ ଓହ୍ଲାଇ ଆସିପାର ।

''ସ୍ୱାମୀଜୀଙ୍କର କେତେଜଣ ଶିଷ୍ୟ ଓ ବନ୍ଧୁଙ୍କ ସଙ୍ଗରେ ତାଙ୍କୁ ନେଇ ଆମେ ତୁରସ୍କ, ଗ୍ରୀସ୍ ଓ ମିଶର ଦେଶକୁ ବୁଲିବାକୁ ଯାଇଥିଲୁ; ଆମ ଦଳରେ ପାଦ୍ରୀ ହୟସିନ୍ଥ ଲୟସନ୍ ଓ ତାଙ୍କ ସ୍ତ୍ରୀ, ସ୍ୱାମୀଜୀଙ୍କ ଅନୁରାଗିଣୀ ଓ ଶିଷ୍ୟା ଚିକାଗୋର କୁମାରୀ ମ୍ୟାକ୍‌ଲାଉଡ୍ — ଇଏ ଅତ୍ୟନ୍ତ ମଧୁର ସ୍ୱଭାବ ଓ ସଦା ଉତ୍ସାହୀ ଥିଲେ; ଆଉ ମୁଁ ଥିଲି ଏହି ଦଳର ଗାୟିକା ପକ୍ଷିଣୀ ! କି ସୁନ୍ଦର ଏହି ତୀର୍ଥଯାତ୍ରା ! ବିଜ୍ଞାନ, ଦର୍ଶନ, ଇତିହାସ ମଧ୍ୟରୁ ଯେପରି କି ସ୍ୱାମୀଜୀଙ୍କୁ କିଛି ଅଜଣା ନ ଥିଲା । ମୁଁ ସର୍ବଦା ଶ୍ରବଣମୟ ହୋଇ ତାଙ୍କ ଜ୍ଞାନଗର୍ଭ ବଚନାବଳୀ ଶ୍ରବଣ କରୁଥିଲି; କିନ୍ତୁ ସେମାନଙ୍କ ତର୍କରେ ଯୋଗ ଦେଉ ନ ଥିଲି । କେବଳ ଗୀତ ଗାଇବା ସମୟରେ ମୁଁ ସର୍ବଦା ହାଜର ଥିଲି । ସ୍ୱାମୀଜୀ ଧାର୍ମିକ ଓ ପଣ୍ଡିତ ପାଦ୍ରୀ ଲୟସନଙ୍କ ସହିତ ନାନା ବିଷୟରେ ଆଲୋଚନା କରୁଥିଲେ । ଖ୍ରୀଷ୍ଟଧର୍ମର ଇତିହାସ ସମ୍ବନ୍ଧରେ ତର୍କ ସମୟରେ ସ୍ୱାମୀଜୀ ଖଣ୍ଡେ ପ୍ରାଚୀନ ଦଲିଲକୁ ମୁହଁରେ କହିଗଲେ ଏବଂ ଗୋଟିଏ ଗୀର୍ଜା ପରିଷଦ ବୈଠକର ତାରିଖ କହିଦେଲେ । ଯେଉଁ କଥା ପାଦ୍ରୀ ଲୟସନ୍ ମଧ୍ୟ ନିର୍ଦ୍ଦିଷ୍ଟ ଭାବରେ କହିପାରି ନ ଥିଲେ ।

''ଆମେ ଗ୍ରୀସ୍‌ରେ ଇଉଲିସିସ୍ ଦର୍ଶନ କଲୁ । ସ୍ୱାମୀଜୀ ଏହାର ରହସ୍ୟ ବ୍ୟାଖ୍ୟା କଲେ, ଆମମାନଙ୍କୁ ବେଦୀ ଓ ମନ୍ଦିରଗୁଡ଼ିକ ଦେଖାଇଲେ, କେଉଁଠି କ'ଣ ହେଉଥିଲା ବୁଝାଇ ଦେଲେ, ପୁରୋହିତମାନଙ୍କ ଉପାସନା ଓ ପୂଜାର ବିଶେଷ ପ୍ରଣାଳୀ ବ୍ୟାଖ୍ୟା କଲେ ଏବଂ ପ୍ରାଚୀନ ମନ୍ତ୍ର ଓ ଗାଥା ଆବୃତ୍ତି କରି ଶୁଣାଇଲେ ।

''ଆଉ ଦିନେ ମିଶର ଦେଶରେ ଏକ ଚିରସ୍ମରଣୀୟ ରଜନୀରେ ସେ ଆମମାନଙ୍କୁ ସୁଦୂର ଅତୀତକୁ ନେଇଯାଇ ସ୍ଫିନକ୍ସ ଛାଇରେ ବସି ରହସ୍ୟମୟ ଭାଷାରେ କେତେ ଇତିହାସ କହିବାକୁ ଲାଗିଲେ ।

''ସ୍ୱାମୀଜୀ ସର୍ବଦା ଆମ କୌତୂହଳକୁ ଉଦ୍ଦୀପିତ କରି ରଖୁଥିଲେ; ଏପରି କି ସେ ଯେତେବେଳେ ସହଜ କଥା କହୁଥିଲେ, ସେତେବେଳେ ମଧ୍ୟ ତାଙ୍କୁ ଭଲ ଲାଗୁଥିଲା । ତାଙ୍କ କଣ୍ଠସ୍ୱରରେ ମୋହିନୀଶକ୍ତି ଥିଲା, ଯାହା ଶ୍ରୋତୃବୃନ୍ଦଙ୍କୁ ମନ୍ତ୍ରମୁଗ୍ଧ କରି ରଖୁଥିଲା । ଷ୍ଟେସନର ବିଶ୍ରାମ ଘରେ ଆମେ ସ୍ୱାମୀଜୀଙ୍କୁ ଘେରି ବସି, ଅପୂର୍ବ ଉପଦେଶମାନ ଶ୍ରବଣ କରୁ କରୁ କେତେଥର ଯେ ଟ୍ରେନ୍ ଧରିପାରି ନାହୁଁ, ତାହାର ଇୟତ୍ତା ନାହିଁ — ଏପରି କି ଦଳ ମଧ୍ୟରେ ସର୍ବାପେକ୍ଷା ଧୀରସ୍ଥିର କୁମାରୀ ମ୍ୟାକ୍‌ଲାଉଡ୍ ମଧ୍ୟ ଆତ୍ମହରା ହୋଇଯାଉଥିଲେ । ନିର୍ଦ୍ଦିଷ୍ଟ ସମୟରେ

ସେ ଆମମାନଙ୍କୁ ସତର୍କ କରିଦେବେ ବୋଲି କଥା ହେଉଥିଲା; କିନ୍ତୁ ତାଙ୍କର ମଧ ବେଳେ ବେଳେ ଭୁଲ ହୋଇଯାଉଥିଲା; ଫଳରେ ଆମେ ଅସମୟରେ ଅସ୍ଥାନରେ ପଡ଼ିରହି ନାନା ଅସୁବିଧା ଭୋଗ କରୁଥିଲୁ ।

"ଦିନେ ଆମେ କାଏରୋରେ ରାସ୍ତା ଭୁଲିଗଲୁ । ବୋଧହୁଏ ସେଦିନ ଆମେ ଅତି ଆତ୍ମମଗ୍ନ ହୋଇ ଆଳାପ କରୁଥିଲୁ । ଗୋଟିଏ ଅପରିଚ୍ଛିନ୍ନ ଦୁର୍ଗନ୍ଧମୟ ଗଳିରେ ପଶିଯାଇ ଦେଖିଲୁ, କେତେଜଣ ଅଧାଲଙ୍ଗଳା ସ୍ତ୍ରୀ ଝରକାରେ ଝୁଙ୍କି ପଡ଼ିଛନ୍ତି, କେହି କେହି ଝରକା ଆଗରେ ଠିଆ ହୋଇଛନ୍ତି । ସ୍ୱାମୀଜୀ ପ୍ରଥମେ କିଛି ଲକ୍ଷ୍ୟ କରିପାରି ନ ଥିଲେ । ଗୋଟିଏ ଭଙ୍ଗା ଘର ଆଗରେ ବେଞ୍ଚ ଉପରେ ବସିଥିବା କେତେଜଣ ସ୍ତ୍ରୀଲୋକ ଉଚ୍ଚହାସ୍ୟରେ ତାଙ୍କୁ ଡାକିବାରୁ ସଙ୍ଗେ ସଙ୍ଗେ ସେମାନଙ୍କ ଉପରେ ସ୍ୱାମୀଜୀଙ୍କ ଦୃଷ୍ଟି ପଡ଼ିଲା । ଆମ ଦଳରୁ ଜଣେ ମହିଳା ସତ୍ୱର ସେ ସ୍ଥାନ ଛାଡ଼ି ଚାଲିଯିବାକୁ ଉଦ୍ୟତ ହେଉଥିଲେ; ସ୍ୱାମୀଜୀ ସହସା ଆମମାନଙ୍କ ସାଙ୍ଗ ଛାଡ଼ି ସେମାନଙ୍କ ନିକଟକୁ ଚାଲିଗଲେ ।

"ସ୍ୱାମୀଜୀ କହିଲେ, ହାୟ ହତଭାଗ୍ୟ ସନ୍ତାନଗଣ ! ବିଚାରୀଗୁଡ଼ିକ ରୂପର ଉପାସନା ଯୋଗୁଁ ଭଗବାନଙ୍କୁ ଭୁଲି ଯାଇଛନ୍ତି ! ଏମାନଙ୍କୁ ଚାହିଁ ଦେଖ ! ପତିତା ନାରୀ ସମ୍ମୁଖରେ ଦଣ୍ଡାୟମାନ ଯୀଶୁଖ୍ରୀଷ୍ଟଙ୍କ ପରି ସ୍ୱାମୀଜୀଙ୍କ ଚକ୍ଷୁରୁ ଅଶ୍ରୁ ନିର୍ଗତ ହେଲା; ନାରୀମାନେ ନିର୍ବାକ ଓ ଲଜ୍ଜିତ ହୋଇ ପରସ୍ପର ଚାହାଁଚାହିଁ ହେଲେ । ଜଣେ ନାରୀ ଅଗ୍ରସର ହୋଇ ତାଙ୍କ ପରିଚ୍ଛଦ ପ୍ରାନ୍ତକୁ ଚୁମ୍ବନ କରି ଗଦ୍‌ଗଦ୍ କଣ୍ଠରେ ସ୍ପେନୀୟ ଭାଷାରେ ଚିତ୍କାର କଲେ—"Hombre de Dios —Hombre de Dios"—(ଈଶ୍ୱରଙ୍କୁ ଜାଣିଥିବା ଲୋକ) । ଆଉ ଜଣେ ନାରୀ ସହସା ବିସ୍ମିତ ସନ୍ତ୍ରମରେ ଦୁଇହାତରେ ମୁହଁକୁ ଘୋଡ଼ାଇ ପକାଇଲେ, ଯେପରି କି ତାଙ୍କ ସଙ୍କୁଚିତ ଆତ୍ମା ସ୍ୱାମୀଜୀଙ୍କ ପବିତ୍ର ଦୃଷ୍ଟିକୁ ସହିପାରୁ ନ ଥିଲା ।

"ଏହି ଅପୂର୍ବ ଭ୍ରମଣ ହିଁ ସ୍ୱାମୀଜୀଙ୍କ ସହିତ ମୋର ଶେଷ ଦେଖା । କେତେଦିନ ପରେ ସେ ସ୍ୱଦେଶକୁ ଫେରିଯିବା ଇଚ୍ଛା ଜଣାଇଲେ । ସେ ତାଙ୍କ ମୃତ୍ୟୁ ନିକଟବର୍ତ୍ତୀ ବୋଲି ଜାଣିପାରି ନିଜ ସ୍ୱଦେଶୀ ଶିଷ୍ୟ ଓ ଗୁରୁଭ୍ରାତାମାନଙ୍କ ସହିତ ମିଳିତ ହେବାକୁ ଚାହୁଁଥିଲେ ।

"ବର୍ଷକ ପରେ ଆମେ ଶୁଣିଲୁ, ସେ ଏକ ଅପୂର୍ବ ଜୀବନ-କାହାଣୀ ରଚନା କରି ତାହାର ପତ୍ରେ ପତ୍ରେ, ଛତ୍ରେ ଛତ୍ରେ ଅମର କାହାଣୀ ଲିପିବଦ୍ଧ କରି ଇହଲୋକରୁ ବିଦାୟ ନେଇଛନ୍ତି । ସେ ହିନ୍ଦୁଶାସ୍ତ୍ର-ବର୍ଣ୍ଣିତ ସମାଧି ଯୋଗରେ ଦେହ ତ୍ୟାଗ କରିଥିଲେ ଏବଂ ଦେହତ୍ୟାଗ ପୂର୍ବରୁ ନିର୍ଦ୍ଦିଷ୍ଟ ଦିନ ଠିକ୍ କରି କହିଥିଲେ ।

"କେତେବର୍ଷ ପରେ ମୁଁ ଯେତେବେଳେ ଭାରତବର୍ଷକୁ ଗଲି, ମୋର ଇଚ୍ଛା ହେଲା, ସ୍ୱାମୀଜୀ ଯେଉଁ ମଠରେ ତାଙ୍କ ଶେଷ ଦିନ କେତୋଟି କଟାଇଥିଲେ, ତାହା ଥରେ ଦେଖି ଆସେ । ମୁଁ ସ୍ୱାମୀଜୀଙ୍କ ମା'ଙ୍କ ସାଙ୍ଗରେ ସେଠାକୁ ଯାଇଥିଲି । ସ୍ୱାମୀଜୀଙ୍କ ଆମେରିକୀୟ ବନ୍ଧୁ (ସ୍ୱାମୀଜୀଙ୍କୁ ଯେ ସନ୍ତାନ ପରି ସ୍ନେହ

କରୁଥିଲେ ଏବଂ ଯାହାକୁ ସ୍ୱାମୀଜୀ 'ଜନନୀ' ବୋଲି ସମ୍ବୋଧନ କରୁଥିଲେ) ଶ୍ରୀମତୀ ଲିଗେଟ୍ ତାଙ୍କ ଚିତାଶଯ୍ୟା ଉପରେ ଯେଉଁ ମର୍ମର ସମାଧି ନିର୍ମାଣ କରି ଦେଇଛନ୍ତି, ତାହା ଦେଖିଲି । ମୁଁ ଦେଖିଲି ଯେ ସମାଧି ଉପରେ ସ୍ୱାମୀଜୀଙ୍କ ନାମ ଖୋଦିତ ହୋଇ ନାହିଁ । ସ୍ୱାମୀଜୀଙ୍କର ଜଣେ ଗୁରୁଭାଇଙ୍କୁ ଏହାର କାରଣ ପଚାରିଲି । ସେ ବିସ୍ମିତ ହୋଇ ମୋ ଆଡ଼କୁ ଚାହିଁଲେ ଏବଂ ସମ୍ଭ୍ରମ-ଉଦ୍ଦୀପକ ମନୋହର ଭଙ୍ଗୀରେ କହିଲେ (ସେ କଥା ମୋର ଏବେ ବି ମନେଅଛି) ସେ ଇହଲୋକ ତ୍ୟାଗ କରିଛନ୍ତି ! (ସ୍ୱାମୀଜୀ ବର୍ତ୍ତମାନ ନାମରୂପଠାରୁ ଦୂରରେ, ଏହା ହିଁ ବୋଧହୁଏ ତାଙ୍କର କଥାର ଅର୍ଥ) ।

"ବେଦାନ୍ତ ମଧ୍ୟରେ ହିନ୍ଦୁଧର୍ମର ସମସ୍ତ ସାର ମୌଳିକ ଆକାରରେ ବିଦ୍ୟମାନ । ବୈଦାନ୍ତିକମାନଙ୍କର କୌଣସି ମନ୍ଦିର ନାହିଁ । ସେମାନେ ସାଧାରଣ ଗୃହରେ ଉପାସନା କରନ୍ତି; ସେଠାରେ ଧର୍ମଭାବ ଉଦ୍ରେକ କରିବା ଲାଗି କୌଣସି ଚିତ୍ର ବା ଅନ୍ୟ କୌଣସି ପଦାର୍ଥର ଆବଶ୍ୟକତା ନ ଥାଏ । ସେମାନେ କେବଳ ସେହି ଅବ୍ୟକ୍ତ ଅନିର୍ବଚନୀୟ ପରମବ୍ରହ୍ମଙ୍କ ଉପାସନା କରନ୍ତି ।

"ସ୍ୱାମୀଜୀ ମୋତେ ପ୍ରାଣାୟାମ କରିବାକୁ ଶିକ୍ଷା ଦେଇଥିଲେ । ସେ କହିଥିଲେ ଯେ, ଐଶ୍ୱରିକ ଶକ୍ତି ସାରା ଜଗତରେ ଓତଃପ୍ରୋତ ଭାବରେ ବିଦ୍ୟମାନ ଅଛି, ସେଥିରୁ ତେଜ ବୀର୍ଯ୍ୟ ଆହରଣ କରିବାକୁ ହେବ ।

"ବେଲୁଡ଼ ମଠର ସନ୍ନ୍ୟାସୀମାନେ ନିରାଡ଼ମ୍ବର ଓ ସରଳ ଭାବରେ ଆମମାନଙ୍କୁ ଆତିଥ୍ୟ ଦେଖାଇ ସନ୍ତୁଷ୍ଟ କରିଥିଲେ । ସେମାନେ ଗଛତଳେ ଟେବୁଲ ଉପରେ ଲୁଗା ପକାଇ ଆମକୁ ଫଳମୂଳ ଖାଇବାକୁ ଦେଲେ ଏବଂ ପୁଷ୍ପଗୁଚ୍ଛ ଉପହାର ଦେଲେ । ଆମ ସମ୍ମୁଖରେ ଭାଗୀରଥି ବହି ଯାଉଥିଲା । ସନ୍ନ୍ୟାସୀମାନେ ଗୋଟିଏ ଅଜଣା ଯନ୍ତ୍ର ସାହାଯ୍ୟରେ ଅଭିନବ ସ୍ୱରରେ ସଙ୍ଗୀତ ଗାଉଥିଲେ; ଯଦିଓ ମୁଁ ତାହା ବୁଝିପାରିଲି ନାହିଁ, ତଥାପି ତାହା ମୋ ହୃଦୟକୁ ସ୍ପର୍ଶ କରିଥିଲା । ଜଣେ ତରୁଣ କବି କରୁଣ ସ୍ୱରରେ ସ୍ୱାମୀଜୀଙ୍କ ପରଲୋକ ଗମନ ଉପଲକ୍ଷେ ରଚିତ ଗୋଟିଏ କବିତା ଆବୃତ୍ତି କଲେ । ସେଦିନର ଅପରାହ୍ନ ମୁଁ ଶାନ୍ତଗମ୍ଭୀର ଭାବରେ ଏକ ଅପୂର୍ବ ପ୍ରଶାନ୍ତି ଭିତରେ କଟାଇଥିଲି ।

"ସେହିସବୁ ଶାନ୍ତ-ଧୀର-ପ୍ରକୃତି ସନ୍ନ୍ୟାସୀମାନଙ୍କ ସହିତ ଯେଉଁ କେତେ ଘଣ୍ଟା କଟାଇଥିଲି, ଏହି ଦୀର୍ଘକାଳ ବ୍ୟବଧାନ ପରେ ତାହା ମଧ୍ୟ ମୁଁ ଭୁଲିପାରି ନାହିଁ । ଏହି ମଣିଷଗୁଡ଼ିକ ଯେପରି କି ଏ ଜଗତର ନୁହଁନ୍ତି, ସେମାନେ ଗୋଟିଏ ଉଚ୍ଚତର ଜ୍ଞାନରାଜ୍ୟରେ ବାସ କରୁଛନ୍ତି ।"

## ବେଲୁଡ଼ ମଠକୁ ପ୍ରତ୍ୟାବର୍ତ୍ତନ ଓ ମାୟାବତୀ ଯାତ୍ରା

୧୯୦୦ ଖ୍ରୀଷ୍ଟାବ୍ଦ ଡିସେମ୍ବର ନଅ ତାରିଖ ରାତ୍ରିରେ ସେ ଅପ୍ରତ୍ୟାଶିତ ଭାବରେ ବେଲୁଡ଼ ମଠରେ ପହଞ୍ଚିଥିଲେ । ସେତେବେଳେ ରାତ୍ରି ହୋଇଯାଇଥାଏ —

ମଠର ସନ୍ନ୍ୟାସୀ ଓ ବ୍ରହ୍ମଚାରୀବୃନ୍ଦ ଭୋଜନ କରୁଥାନ୍ତି, ଏହି ସମୟରେ ମାଳୀ ଦଉଡ଼ି ଦଉଡ଼ି ଆସି ସମ୍ବାଦ ଦେଲା ଯେ, ଜଣେ ସାହେବ ଆସିଛନ୍ତି, ଫାଟକ ଖୋଲିବା ଲାଗି ଚାବି ଦରକାର । ଫାଟକ ଖୋଲା ହେବାପରେ ଦେଖାଗଲା ଯେ ଗାଡ଼ି ଖାଲି, ସାହେବ ସେଥିରେ ନାହାନ୍ତି । ଏଣେ ସାହେବ ମୁଣ୍ଡର ଟୋପିଟାକୁ ଟିକିଏ ଟାଣିଦେଇ ଖାଇବା ଘର ସମ୍ମୁଖରେ ଠିଆ ହୋଇଗଲେଣି—ସ୍ୱାମୀ ପ୍ରେମାନନ୍ଦ ଦୀପ ଆଣି ଦେଖିଲେ, ସାହେବ ଆଉ କେହି ନୁହନ୍ତି, ସେମାନଙ୍କ ପ୍ରିୟତମ ବିବେକାନନ୍ଦ । ସ୍ୱାମୀଜୀ ବାଳକଙ୍କ ପରି ଜୋର୍‌ରେ ହସି କହିଲେ, "ବାହାରୁ ଖାଇବା ଘଣ୍ଟା ଶୁଣି ଭାବିଲି, ଶୀଘ୍ର ନ ପହଞ୍ଚିଲେ ରାତ୍ରିରେ ଆଉ ଖାଇବାକୁ ମିଳିବ ନାହିଁ । ସେହି ହେତୁ ପାଚେରୀ ଡେଇଁ ଚାଲି ଆସିଲି । ଭାରୀ ଭୋକ କରୁଛି, ମୋତେ ଖାଇବାକୁ ଦିଅ ।" ସ୍ୱାମୀଜୀଙ୍କ କଥା ଶୁଣି ଓ ତାଙ୍କୁ ଫେରିପାଇ ରାମକୃଷ୍ଣ-ଶିଷ୍ୟମାନଙ୍କ ଭିତରେ ପ୍ରୀତିପୂର୍ଣ୍ଣ ଆନନ୍ଦର ସ୍ରୋତ ବହିଗଲା । ସ୍ୱାମୀଜୀ ଆଗ୍ରହ ଓ ଆନନ୍ଦ ସହିତ ବହୁଦିନ ପରେ ଖେଚେଡ଼ି ଖାଉ ଖାଉ ନାନାପ୍ରକାର ଗଳ୍ପ କହିବାରେ ଲାଗିଲେ । ସେଦିନ ରାତ୍ରିରେ ମଠରେ ଯେଉଁ ଆନନ୍ଦ ଓ ଯେପରି ଉତ୍ସାହରେ ସମସ୍ତଙ୍କ ହୃଦୟ ନାଚି ଯାଉଥିଲା, ତାହା ବର୍ଣ୍ଣନାତୀତ !

ବେଲୁଡ଼ ମଠରେ ପହଞ୍ଚିବା ମାତ୍ରେ ସ୍ୱାମୀଜୀ ମାୟାବତୀ ଯିବା ଲାଗି ପ୍ରସ୍ତୁତ ହେଲେ । ମାୟାବତୀ ମଠର ସଭାପତି ଶ୍ରୀଯୁକ୍ତ ସେଭିୟରଙ୍କ ମୃତ୍ୟୁ ପରେ ଆଶ୍ରମ କାର୍ଯ୍ୟ କିପରି ଚାଲିଛି, ତାହା ଦେଖିବା ଏବଂ ଶ୍ରୀମତୀ ସେଭିୟରଙ୍କୁ ସାନ୍ତ୍ୱନା ଦେବା ହିଁ ସ୍ୱାମୀଜୀଙ୍କ ଯାତ୍ରାର ଉଦ୍ଦେଶ୍ୟ ଥିଲା । ତଦନୁସାରେ ସେ ଡିସେମ୍ବର ସତେଇଶ ତାରିଖରେ କଲିକତାରୁ ମାୟାବତୀ ଅଭିମୁଖେ ଯାତ୍ରା କଲେ । କାଠଗୋଦାମଠାରୁ ମାୟାବତୀ ପର୍ଯ୍ୟନ୍ତ ରାସ୍ତାରେ ପଥର ଓ ବରଫ ବର୍ଷା ହୋଇଥିବା ହେତୁ ସ୍ୱାମୀଜୀଙ୍କୁ ଖୁବ୍ କଷ୍ଟ ହୋଇଥିଲା । ଏକେ ତ ଅସୁସ୍ଥ ଦେହ, ତା' ଉପରେ ପୁଣି ଶ୍ରମ-କ୍ଳାନ୍ତି; ଦିନେ କଥା ପ୍ରସଙ୍ଗରେ ଶ୍ରୀମତୀ ସେଭିୟରଙ୍କୁ କହିଲେ, "ସତରେ ମୋ ଦେହ ଭାଙ୍ଗି ପଡ଼ିଲାଣି, କିନ୍ତୁ ମୋ ମସ୍ତିଷ୍କ ଏବେ ବି ଆଗ ପରି ସବଳ ଓ କାର୍ଯ୍ୟକ୍ଷମ ।"

ଦିନେ ଶିଷ୍ୟ ସ୍ୱାମୀ ସ୍ୱରୂପାନନ୍ଦଙ୍କୁ ଡାକି ସ୍ୱାମୀଜୀ ଆଶ୍ରମରେ ପ୍ରଚାର କାର୍ଯ୍ୟ ଏବଂ 'ପ୍ରବୁଦ୍ଧ ଭାରତ' ପତ୍ରିକା ପରିଚାଳନା ବିଷୟରେ ବିବିଧ ଉପଦେଶ ପ୍ରଦାନ କଲେ । ସ୍ୱାମୀ ସ୍ୱରୂପାନନ୍ଦ ଶ୍ରୀଗୁରୁଙ୍କ ଆଶୀର୍ବାଦରୁ ଇତିମଧ୍ୟରେ ଆଶାତୀତ ସାଫଲ୍ୟ ଲାଭ କରିଥିଲେ । ଗୁରୁଙ୍କ ଅଭିପ୍ରାୟ ବୁଝି ସ୍ୱରୂପାନନ୍ଦ ପରହିତକର କାର୍ଯ୍ୟକୁ ସର୍ବଶ୍ରେଷ୍ଠ ସାଧନା ମନେ କରି କର୍ମ ପ୍ରବାହରେ ମନ-ପ୍ରାଣ ଢାଳି ଦେଇଥିଲେ । ଭଗ୍ନସ୍ୱାସ୍ଥ୍ୟ ନେଇ ପ୍ରଚାର କାର୍ଯ୍ୟରେ ଇତସ୍ତତଃ ପରିଭ୍ରମଣ କରିବା ଆଉ ସ୍ୱାମୀଜୀଙ୍କ ପକ୍ଷରେ ସମ୍ଭବପର ହେବ ନାହିଁ, ଏହା ବୁଝିପାରି ସେ ପ୍ରତ୍ୟେକ ଶିଷ୍ୟଙ୍କୁ ମହା ଉତ୍ସାହରେ 'ସେବାବ୍ରତ' ଓ କର୍ମଯୋଗ ପ୍ରଚାର ଲାଗି

ଉପଦେଶ ଦେବାରେ ରହିଲେ । ହିମାଳୟ ବକ୍ଷର ସ୍ତବ୍ଧ ଜନବିରଳ ମଠର ଉଦ୍‌ବେଗହୀନ ଜୀବନ ସ୍ୱାମୀଜୀଙ୍କୁ ଶାନ୍ତିପୂର୍ଣ୍ଣ ବୋଧ ହେଲା । ଦିନେ ଶିଷ୍ୟମାନଙ୍କ ସହିତ ଭ୍ରମଣ କରୁ କରୁ ସେ କହିଲେ, ''ସବୁପ୍ରକାର କାମ ଛାଡ଼ି ମୋ ଜୀବନର ଅବଶିଷ୍ଟାଂଶ ମୁଁ ଏହି ମଠରେ କଟାଇବି । ନିଶ୍ଚିନ୍ତରେ ଅଧ୍ୟୟନ କରିବି ଓ ବହି ଲେଖିବି । ବାଳକ ପରି ମୁକ୍ତ ହୋଇ ମନ ଆନନ୍ଦରେ ହ୍ରଦ କୂଳରେ ବୁଲିବି ।'' ହାୟ, ଶାନ୍ତି ଓ ବିଶ୍ରାମପ୍ରୟାସୀ ସନ୍ନ୍ୟାସୀ ! ଭଗବାନଙ୍କ ଚିହ୍ନିତ କର୍ମୀ ତୁମେ — ତୁମ ବିଶ୍ରାମସ୍ଥଳ ପୃଥିବୀର ଧୂଳିପୂର୍ଣ୍ଣ ବକ୍ଷ ନୁହେଁ — ଜଗନ୍ମାତାଙ୍କ ସ୍ନେହଶୀତଳ କୋଳ ଆଗରୁ ତୁମ ବିଶ୍ରାମ ପାଇଁ ଏକମାତ୍ର ସ୍ଥାନ ରୂପେ ନିର୍ଦ୍ଦିଷ୍ଟ ହୋଇଛି ! ଏଠାରେ ତୁମର ଅବସର କାହିଁ ?

ଆଶ୍ରମର କେତେଜଣ ସନ୍ନ୍ୟାସୀ ମିଶି ଗୋଟିଏ କକ୍ଷରେ ଶ୍ରୀରାମକୃଷ୍ଣଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠା କରିଥିଲେ — ସେଠାରେ ନିତ୍ୟପୂଜା ଓ ଭୋଗରାଗାଦି ହେଉଥିଲା । ଦୈବାତ୍ ଦିନେ ଏହା ସ୍ୱାମୀଜୀଙ୍କ ଆଖିରେ ପଡ଼ିଲା, ସେ ଏହି ବାହ୍ୟ ପୂଜା ବ୍ୟାପାର ଦେଖି ରାମ, କୃଷ୍ଣ କିଛି କହିଲେ ନାହିଁ; କିନ୍ତୁ ସନ୍ଧ୍ୟାବେଳେ ଅଗ୍ନିକୁଣ୍ଡ ସମ୍ମୁଖରେ ଯେତେବେଳେ ସମସ୍ତେ ଏକାଠି ହେଲେ, ସେତେବେଳେ ସେ ଜ୍ୱଳନ୍ତ ଭାବରେ ବାହ୍ୟପୂଜାର ଅସାରତା ପ୍ରତିପନ୍ନ କରିବାକୁ ଲାଗିଲେ । 'ଅଦ୍ୱୈତ ଆଶ୍ରମ'ରେ ଯେପରି କୌଣସି ବାହ୍ୟ ପୂଜାର ଆୟୋଜନ ନ ଥାଏ, ଏହି ଅଭିପ୍ରାୟ ସେ ବହୁଦିନ ଆଗରୁ ବ୍ୟକ୍ତ କରିଥିଲେ; କିନ୍ତୁ ଆଜି ତାହାର ବିପରୀତ ଭାବ ଦେଖି ସ୍ୱାମୀଜୀ ବ୍ୟଥିତ ହେଲେ । ସେ ଅଦ୍ୱୈତ ଆଶ୍ରମରେ ବାହ୍ୟ ପୂଜାର ଅନାବଶ୍ୟକତା ସମ୍ବନ୍ଧରେ ତୀବ୍ର ଭାଷାରେ ଅନେକ କଥା କହିଲେ ସତ; କିନ୍ତୁ ସହସା ଠାକୁର ଘରଟି ଉଠାଇ ଦେବା ଲାଗି ଆଦେଶ ଦେଲେ ନାହିଁ । କ୍ଷମତା ବ୍ୟବହାର କରିବା ଅଥବା କାହା ପ୍ରାଣରେ ଆଘାତ ଦେବାକୁ ସେ ସମୀଚୀନ ମନେ କଲେ ନାହିଁ । ଯେଉଁମାନେ ଠାକୁର ପ୍ରତିଷ୍ଠା କରିଛନ୍ତି, ସେମାନେ ନିଜ ଭୁଲ ବୁଝିପାରି ସଂଶୋଧନ କରିନେବେ, ଏହା ହିଁ ସ୍ୱାମୀଜୀଙ୍କର ମନୋଗତ ଅଭିପ୍ରାୟ ଥିଲା । ସ୍ୱାମୀ ସ୍ୱରୂପାନନ୍ଦ ଓ ଶ୍ରୀମତୀ ସେଭିୟର ସ୍ୱାମୀଜୀଙ୍କ ଉଦ୍ଦେଶ୍ୟ ସମ୍ୟକ୍ ରୂପେ ହୃଦୟଙ୍ଗମ କରି ଅଦ୍ୱୈତ ଆଶ୍ରମର ନିୟମାନୁଯାୟୀ ଠାକୁର ପୂଜା ବନ୍ଦ କରାଇ ଦେଲେ । ଯେଉଁମାନେ ଦ୍ୱୈତଭାବରେ ସାକାର ଉପାସନା କରିବାକୁ ଇଚ୍ଛୁକ, ସେମାନଙ୍କ ପକ୍ଷରେ ଅଦ୍ୱୈତ ଆଶ୍ରମ ଉପଯୁକ୍ତ ସ୍ଥାନ ନୁହେଁ ଏହି ସତ୍ୟଟି ପ୍ରତ୍ୟେକେ ମର୍ମେ ମର୍ମେ ଅନୁଭବ କରି କୌଣସି ପ୍ରକାର ଆପତ୍ତି କଲେ ନାହିଁ; କିନ୍ତୁ ଜଣକର ସାମାନ୍ୟ ସନ୍ଦେହ ରହିଗଲା । ସେ ସୁଯୋଗ ପାଇ ପରମାରାଧ୍ୟା ଶ୍ରୀଶ୍ରୀମାତାଠାକୁରାଣୀଙ୍କ ନିକଟରେ ଏହି ଘଟଣା ବର୍ଣ୍ଣନା କରି ତାଙ୍କ ଇଚ୍ଛା ଜାଣିବାକୁ ଚାହିଁଲେ । ଶ୍ରୀଶ୍ରୀମା ଉତ୍ତରରେ କହିଲେ, ''ଶ୍ରୀଗୁରୁଦେବ ଅଦ୍ୱୈତବାଦୀ ଥିଲେ ଏବଂ ଅଦ୍ୱୈତ ସାଧନା ପ୍ରଚାର କରିଥିଲେ । ତାଙ୍କ ଶିଷ୍ୟ ହୋଇ ତୁମେ ଅଦ୍ୱୈତ ସାଧନା ବିପକ୍ଷରେ ଯିବ କାହିଁକି ? ତାଙ୍କ ଶିଷ୍ୟମାନେ ପ୍ରତ୍ୟେକେ ହିଁ

ଅଦ୍ୱୈତବାଦୀ ।'' ଶ୍ରୀଶ୍ରୀମାଙ୍କ ମୀମାଂସା ଶୁଣି ତାଙ୍କର ସବୁ ସନ୍ଦେହ ତୁଟିଗଲା । ସ୍ୱାମୀଜୀ ବେଲୁଡ଼ ମଠକୁ ଫେରିଆସି ଏହି ଘଟଣା ପ୍ରସଙ୍ଗରେ କହିଥିଲେ, ''ମୋ ଇଚ୍ଛା ଥିଲା ଯେ ଅନ୍ତତଃ ଆମର ଗୋଟିଏ ମଠ ରହିବ, ଯେଉଁଠି କୌଣସି ପ୍ରକାର ବାହ୍ୟ ପୂଜା ଏବଂ ଶ୍ରୀରାମକୃଷ୍ଣଙ୍କ ମୂର୍ତ୍ତି ଇତ୍ୟାଦି ରହିବ ନାହିଁ; କିନ୍ତୁ ମାୟାବତୀ ଯାଇ ଦେଖିଲି ଯେ, ସେ ବୃଦ୍ଧ ସେଠାରେ ବି ଆସନ ମାଡ଼ି ବସିଛନ୍ତି; ଭଲ, ଭଲ !''

ମଣିଷର ପ୍ରକୃତ ମହତ୍ତ୍ୱ ବିଚାର କରିବାକୁ ହେଲେ ବଡ଼ ବଡ଼ କାର୍ଯ୍ୟଗୁଡ଼ିକ ନ ଦେଖି ତାଙ୍କ କ୍ଷୁଦ୍ର କ୍ଷୁଦ୍ର କାର୍ଯ୍ୟଗୁଡ଼ିକୁ ପର୍ଯ୍ୟବେକ୍ଷଣ କରିବାକୁ ହୁଏ । ସ୍ୱାମୀଜୀଙ୍କ ମାୟାବତୀ ଅବସ୍ଥାନ କାଳରେ ପ୍ରତ୍ୟହ ଏପରି ଘଟଣା ଘଟୁଥିଲା, ଯେଉଁଥିରୁ ତାଙ୍କ ହୃଦୟର ନମ୍ରତା, ସରଳତା, ଗଭୀର ମାନବପ୍ରୀତି ଓ ଅସୀମ ଶିଷ୍ୟ-ସ୍ନେହର ପରିଚୟ ମିଳୁଥିଲା । ଦିନେ ମଧ୍ୟାହ୍ନ ଭୋଜନରେ ବିଳମ୍ବ ଦେଖି ସ୍ୱାମୀଜୀ ବିରକ୍ତ ହୋଇପଡ଼ିଲେ ଏବଂ ଅସହିଷ୍ଣୁ ଭାବରେ ସମସ୍ତଙ୍କୁ ଗାଳି ଦେବାକୁ ଲାଗିଲେ । ଅବଶେଷରେ ସ୍ୱାମୀ ବିରଜାନନ୍ଦଙ୍କୁ ଶାସନ କରିବା ନିମିତ୍ତ ନିଜେ ରୋଷେଇ ଘରକୁ ଗଲେ । ଏଣେ ସ୍ୱାମୀ ବିରଜାନନ୍ଦ ରୋଷେଇ ଶେଷ କରିବାକୁ ପ୍ରାଣପଣେ ଚେଷ୍ଟା କରୁଥିଲେ; କିନ୍ତୁ ଓଦା କାଠ ଭଲ ଜଳୁ ନ ଥିଲା ଓ ରୋଷେଇ ଘର ଧୂଆଁରେ ଅନ୍ଧାର ହୋଇଯାଇଥିଲା । ସ୍ୱାମୀଜୀ ବିରଜାନନ୍ଦଙ୍କ ଅବସ୍ଥା ଦେଖି ଆଉ କିଛି କହିଲେ ନାହିଁ—ନୀରବରେ ନିଜ କକ୍ଷକୁ ଫେରି ଆସିଲେ । ବହୁ ସମୟ ପରେ ଯେତେବେଳେ ତାଙ୍କ ନିକଟକୁ ଖାଦ୍ୟ ଆସିଲା, ସେ ବାଳସୁଲଭ ଅଭିମାନରେ କହିଲେ, ''ଏସବୁ ନେଇ ଯାଅ, ମୁଁ ଖାଇବି ନାହିଁ ।'' ଗୁରୁଙ୍କ ପ୍ରକୃତି ସମ୍ବନ୍ଧରେ ଶିଷ୍ୟଙ୍କର ଅଭିଜ୍ଞତା ଥିଲା । ସେ ସ୍ୱାମୀଜୀଙ୍କ ସମ୍ମୁଖରେ ଆହାର୍ଯ୍ୟ ପାତ୍ର ରଖି ନୀରବରେ ଅପେକ୍ଷା କରି ରହିଲେ । କିଛି ସମୟ ପରେ ସ୍ୱାମୀଜୀ ଅଭିମାନୀ ବାଳକ ପରି ଭାବଭଙ୍ଗୀ ସହକାରେ ଧୀରେ ଧୀରେ ଆହାର କରି ବସିଲେ । ଖାଦ୍ୟଦ୍ରବ୍ୟ ମୁହଁରେ ଦେବା ମାତ୍ରକେ ତାଙ୍କ ମୁଖମଣ୍ଡଳରୁ କ୍ରୋଧଦୀପ୍ତ ଗାମ୍ଭୀର୍ଯ୍ୟ ଦୂରେଇ ଗଲା । କିଛି ସମୟ ପରେ ସେ ଶିଷ୍ୟଙ୍କୁ ଲକ୍ଷ୍ୟ କରି ହସି ହସି କହିଲେ, ''ମୁଁ କାହିଁକି ରାଗିଥିଲି ଜାଣୁ ? ଖୁବ୍ ଭୋକ ହେଉଥିଲା ବୋଲି ।''

ମାୟାବତୀ ମଠରେ ସ୍ୱାମୀଜୀ ଆଳସ୍ୟରେ ସମୟ କଟାଉ ନ ଥିଲେ । ପ୍ରତ୍ୟହ ତାଙ୍କୁ ଅସଂଖ୍ୟ ଚିଠିର ଉତ୍ତର ଦେବାକୁ ପଡୁଥିଲା । ଏହାପରେ ଶାସ୍ତ୍ର ଆଲୋଚନା ତ ପ୍ରାୟ ସବୁବେଳେ ଲାଗି ରହିଥିଲା । ଏତଦ୍‌ବ୍ୟତୀତ ଏହି ସମୟରେ ସେ 'ପ୍ରବୁଦ୍ଧ ଭାରତ' ପତ୍ରିକା ପାଇଁ 'ଆର୍ଯ୍ୟ ଓ ତାମିଲ' 'ସାମାଜିକ ସଭାରେ ଶ୍ରୀଯୁକ୍ତ ରାଣାଡେଙ୍କ ଅଭିଭାଷଣର ସମାଲୋଚନା' ଓ 'ବ୍ରହ୍ମବିଦ୍ୟା ସମ୍ବନ୍ଧରେ ମନ୍ତବ୍ୟ' ଏହି ତିନୋଟି ସୁଚିନ୍ତିତ ପ୍ରବନ୍ଧ ଲେଖିଥିଲେ ।

## ସନ୍ନ୍ୟାସ ବିରୋଧରେ ଶ୍ରୀଯୁକ୍ତ ରାଣାଡେଙ୍କ ଯୁକ୍ତି ଖଣ୍ଡନ

୧୯୦୦ ଖ୍ରୀଷ୍ଟାବ୍ଦ ଲାହୋର ସମ୍ମିଳନୀର ସଭାପତି ରୂପେ ବିଚାରପତି ଶ୍ରୀଯୁକ୍ତ ରାଣାଡେ ଯେଉଁ ଅଭିଭାଷଣ ପାଠ କରିଥିଲେ, ଏହା ସ୍ୱାମୀଜୀଙ୍କଦ୍ୱାରା ଆପତ୍ତିଜନକ ମନେ ହେବାରୁ ସେ ଏହାର ନିର୍ଭୀକ ପ୍ରତିପାଦ ଓ ସମାଲୋଚନା କରିଥିଲେ । ବଙ୍ଗଳାର ବ୍ରାହ୍ମ ସଂସ୍କାରକଗଣଙ୍କ ପରି ଶ୍ରୀଯୁକ୍ତ ରାଣାଡେ ସନ୍ନ୍ୟାସାଶ୍ରମର ବିରୋଧୀ ଥିଲେ ଏବଂ ସମୟ, ସୁଯୋଗ ପାଇଲେ ସନ୍ନ୍ୟାସୀମାନଙ୍କ ପ୍ରତି କଟାକ୍ଷପାତ କରୁଥିଲେ । ବକ୍ତୃତା ଆରମ୍ଭରେ ଶ୍ରୀଯୁକ୍ତ ରାଣାଡେ କହିଥିଲେ ଯେ, ''ବୈଦିକ ଯୁଗରେ ଜାତିଭେଦ ପ୍ରଥା ନ ଥିଲା । ବିବାହିତ ଋଷିଗଣ ସମାଜର ନେତା, ଧର୍ମାଚାର୍ଯ୍ୟ ଥିଲେ, ସନ୍ନ୍ୟାସୀ-ସମ୍ପ୍ରଦାୟ ନ ଥିଲା, ନରନାରୀମାନେ ସମଭାବରେ ସର୍ବୋତୋମୁଖୀ ସ୍ୱାଧୀନତା(?) ଉପଭୋଗ କରୁଥିଲେ ଏବଂ Asceticism has not overshadowed the land, and life and its sweets were enjoyed in a spirit of joyous satisfaction.'' ଅର୍ଥାତ୍ କଠୋର ସଂଯମ ଭାବ (ଯାହାକୁ ଯୋଗୀମାନେ ଧର୍ମସାଧନାର ଅଙ୍ଗରୂପେ ମନେ କରୁଥିଲେ) ନ ଥିଲା; ତେଣୁ ମାନବ-ଜୀବନର ମାଧୁରୀ ସମସ୍ତେ ପରିପୂର୍ଣ୍ଣ ତୃପ୍ତି ସହକାରେ ଉପଭୋଗ କରିପାରୁଥିଲେ । ରାଣାଡେଙ୍କ ମତରେ—

(୧) ପ୍ରାଚୀନ ଯୁଗରେ ଜାତିଭେଦ ନ ଥିଲା ଏବଂ ଋଷିମାନେ ବିବାହ କରୁଥିଲେ । ତାହାର ପ୍ରମାଣ ସ୍ୱରୂପ ସେ କ୍ଷତ୍ରିୟ ରାଜକୁମାରୀମାନଙ୍କ ସହିତ ଋଷିମାନଙ୍କ ବିବାହ ଅର୍ଥାତ୍ ଅସବର୍ଣ୍ଣ ବିବାହର ଗୋଟିଏ ସୁଦୀର୍ଘ ତାଲିକା ଦେଇଥିଲେ ।

(୨) ଶିଖ ଧର୍ମର ପ୍ରବର୍ତ୍ତକ ଗୁରୁମାନେ ବିବାହିତ ଥିଲେ । ତେଣୁ ଆମକୁ ଦଳେ ବିବାହିତ ଆଚାର୍ଯ୍ୟ ତିଆରି କରିବାକୁ ହେବ । ଅସଂପୂର୍ଣ୍ଣ-ଜୀବନ, ସନ୍ନ୍ୟାସୀ-ଆଚାର୍ଯ୍ୟ ବୈଦିକ ଯୁଗରେ ନ ଥିଲେ; ଏବେ ବି ରହିବା ଉଚିତ ନୁହେଁ ।[୧]

---

୧. ରାଣାଡେ କହିଥିଲେ, ''ନିକଟରେ ପଞ୍ଜାବରେ ଆରମ୍ଭ ହୋଇଥିବା ଗୋଟିଏ ଆନ୍ଦୋଳନରୁ ସୂଚିତ ହୁଏ ଯେ, ପ୍ରାଚୀନ ଗୁରୁମାନଙ୍କ ସ୍ଥାନ ପୂରଣ କରିବା ଲାଗି ଦଳେ ଶିକ୍ଷାଦାତା ତିଆରି କରିବାର ପୂର୍ଣ୍ଣ ଗୁରୁତ୍ୱ ତୁମେମାନେ ଉପଲବ୍ଧି କରିବାକୁ ଆରମ୍ଭ କରିଛ ।

ଆର୍ଯ୍ୟ ସମାଜର ପ୍ରତିଷ୍ଠାତା ସ୍ୱାମୀ ଦୟାନନ୍ଦ ସନ୍ନ୍ୟାସୀ ଥିଲେ । ସେଥିପାଇଁ ରାଣାଡେ ମହାଶୟ ପ୍ରକାରାନ୍ତରରେ ଉକ୍ତ ସମାଜକୁ ସନ୍ନ୍ୟାସୀ ଆଚାର୍ଯ୍ୟ ଅପେକ୍ଷା ଗୃହସ୍ଥ ଆଚାର୍ଯ୍ୟ ଗଠନ କରିବାକୁ ଅନୁରୋଧ କରିଥିଲେ, କାରଣ ତାଙ୍କ ମତରେ—

''ଆମ ଆଚାର୍ଯ୍ୟମାନେ ସେମାନଙ୍କ ଛାତ୍ରମାନଙ୍କୁ ଏପରି ଶିକ୍ଷାଦେବା ଉଚିତ, ଯେପରି ସେମାନେ ମଣିଷର ମର୍ଯ୍ୟାଦା ମଣିଷ ଭଳି ଉପଲବ୍ଧି କରିବେ ଏବଂ ଯୁଗ ଯୁଗ ଧରି ଆମ ଭିତର ଯେଉଁ ଏକଦର୍ଶିତା ବିକଶି ଉଠୁଛି, ତାହାକୁ ସଂଶୋଧନ କରିପାରିବେ । * * * ଏହି ଆଚାର୍ଯ୍ୟମାନେ ଯେପରି ଗୋଟିଏ ନୂଆ ସନ୍ନ୍ୟାସୀଦଳ ନ ଗଢ଼ନ୍ତି, ସେ ବିଷୟରେ ଆମକୁ ସାବଧାନ ହେବାକୁ ପଡ଼ିବ । ଯେଉଁମାନେ ଆଜୀବନ ଅବିବାହିତ ରହିବାକୁ ସଂକଳ୍ପ କରି ମାନବ-ସେବାରେ ଏବଂ ଭଗବତ୍-ଆରାଧନାରେ ନିଜକୁ ନିୟୋଜିତ କରନ୍ତି, ସେଭଳି

ଶ୍ରୀଯୁକ୍ତ ରାଣାଡେଙ୍କ ବିରୋଧରେ ପ୍ରତିବାଦ ଜଣାଇ ସ୍ୱାମୀଜୀ ଲେଖିଥିଲେ—

(୧) ସନ୍ନ୍ୟାସୀ ଗୁରୁ ଓ ଗୃହସ୍ଥ ଗୁରୁ—କୁମାର ବ୍ରହ୍ମଚାରୀ ଓ ବିବାହିତ ଧର୍ମାଚାର୍ଯ୍ୟ ଉଭୟ ପ୍ରକାର ଆଚାର୍ଯ୍ୟ—ବେଦ ଯେତେ ପ୍ରାଚୀନ—ସେତେ ପ୍ରାଚୀନ । ଅତଏବ ତଥାକଥିତ ପାଶ୍ଚାତ୍ୟ ସଂସ୍କୃତଜ୍ଞ ପଣ୍ଡିତମାନଙ୍କ ସୂକ୍ଷ୍ମ କଳ୍ପନାର ସାହାଯ୍ୟ ନ ନେଇ ସ୍ୱାଧୀନ ଭାବରେ ଏହି ସମସ୍ୟାର ମୀମାଂସା କରିବା ପ୍ରୟୋଜନ । ସନ୍ନ୍ୟାସୀ ଆଚାର୍ଯ୍ୟଗଣ, ଗୃହସ୍ଥଗଣଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍; ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ରୂପକ ଭିତ୍ତି ଉପରେ ଦଣ୍ଡାୟମାନ ହୋଇଥିଲେ ବୋଲି ସେମାନେ ଉପନିଷଦ୍-ବକ୍ତା—ବ୍ରହ୍ମଜ୍ଞାନର ଅଧିକାରୀ ।

(କ) "ଗୋଟିଏ ଦିଗରେ ବିବାହିତ ଗୃହସ୍ଥ ଋଷି—କେତେଗୁଡ଼ିଏ ଅର୍ଥହୀନ କିମ୍ଭୂତକିମାକାର—କେବଳ ତାହା ନୁହେଁ, ଭୟାନକ ଅନୁଷ୍ଠାନ ନେଇ ରହିଛନ୍ତି—ଖୁବ୍ କମ୍ କରି କହିଲେ କହିବାକୁ ହେବ, ସେମାନଙ୍କ ନୀତିଜ୍ଞାନ ଅତି ଅଦ୍ଭୁତ ଧରଣର; ଆଉ ଅନ୍ୟ ଦିଗରେ ଅବିବାହିତ ବ୍ରହ୍ମଚର୍ଯ୍ୟପରାୟଣ ସନ୍ନ୍ୟାସୀ ଋଷିଗଣ, ଯେଉଁମାନେ ମାନବୋଚିତ ଅଭିଜ୍ଞତାର ଅଭାବ ସତ୍ତ୍ୱେ, ଏପରି ଉଚ୍ଚ ଧର୍ମନୀତି ଓ ଆଧ୍ୟାତ୍ମିକତାର ପ୍ରସ୍ରବଣ ଖୋଲିଦେଇ ଯାଇଛନ୍ତି—ଯାହାର ଅମୃତବାରି, ସନ୍ନ୍ୟାସର ବିଶେଷ ପକ୍ଷପାତୀ ଜୈନ ଓ ବୌଦ୍ଧ ଏବଂ ପରେ ଶଙ୍କର, ରାମାନୁଜ, କବୀର, ଚୈତନ୍ୟ ପର୍ଯ୍ୟନ୍ତ ପ୍ରାଣଭରି ପାନ କରି ସେମାନଙ୍କ ଅଦ୍ଭୁତ ଆଧ୍ୟାତ୍ମିକ ଓ ସାମାଜିକ ସଂସ୍କାରଗୁଡ଼ିକୁ ଚଳାଇବାର ଶକ୍ତିଲାଭ କରିଥିଲେ ଏବଂ ଯାହା ପାଶ୍ଚାତ୍ୟ ଦେଶକୁ ଯାଇ ତିନିଚାରି ହାତ ଘୂରି ଆସିବା ପରେ ଆମ ସମାଜ-ସଂସ୍କାରକମାନଙ୍କୁ, ସନ୍ନ୍ୟାସୀମାନଙ୍କୁ ସମାଲୋଚନା କରିବା ଲାଗି ଶକ୍ତି ପର୍ଯ୍ୟନ୍ତ ଦାନ କରିଛି ।"

(ଖ) "ହିନ୍ଦୁଜାତି ଅନାଦି କାଳରୁ ଜଡ଼ ପରିବର୍ତ୍ତେ ଚୈତନ୍ୟ, ଭୋଗ ପରିବର୍ତ୍ତେ ତ୍ୟାଗକୁ ହିଁ ଶାନ୍ତିପ୍ରଦ ଓ ମୁକ୍ତିପ୍ରଦ କହି ସ୍ୱୀକାର କରି ନେଇଛନ୍ତି ।

---

ଲୋକେ ଆମ ଦେଶର ଓ ଅନ୍ୟାନ୍ୟ ଦେଶର ଅନେକ ଉପକାର କରିଛନ୍ତି ଓ କରୁଛନ୍ତି ବୋଲି ମୁଁ ସ୍ୱୀକାର କରୁଛି; କିନ୍ତୁ ଏମାନେ ଜୀବନର ପରିପୂର୍ଣ୍ଣତା ଓ ବୈଶିଷ୍ଟ୍ୟ ଉପଲବ୍ଧି କରିଛନ୍ତି କି ନାହିଁ, ସେ ସମ୍ବନ୍ଧରେ ସନ୍ଦେହର ଯଥେଷ୍ଟ ଅବକାଶ ରହିଛି । ଅଗସ୍ତ୍ୟ ଓ ତାଙ୍କ ସ୍ତ୍ରୀ ଲୋପାମୁଦ୍ରା, ଅତ୍ରୀ ଓ ତାଙ୍କ ସ୍ତ୍ରୀ ଅନୁସୂୟା ଏବଂ ବଶିଷ୍ଠ ଓ ତାଙ୍କ ସ୍ତ୍ରୀ ଅରୁନ୍ଧତୀ ପ୍ରଚୀନ ଗୃହସ୍ଥ ଋଷିମାନଙ୍କର ଜ୍ୱଳନ୍ତ ଦୃଷ୍ଟାନ୍ତ । ଆଧୁନିକ ଯୁଗର ଗୃହସ୍ଥ ଆଚାର୍ଯ୍ୟମାନଙ୍କ ମଧ୍ୟରୁ ମାନ୍ଦ୍ରାଜର ଦେୱାନ ବାହାଦୂର ରଘୁନାଥ ରାଓ, ବଙ୍ଗଳାର ମହର୍ଷି ଦେବେନ୍ଦ୍ରନାଥ ଠାକୁର, କେଶବଚନ୍ଦ୍ର ସେନ, ପ୍ରତାପଚନ୍ଦ୍ର ମଜୁମଦାର ଓ ଶିବନାଥ ଶାସ୍ତ୍ରୀ ଏବଂ ପଞ୍ଜାବର ଲାଲା ହଂସରାଜ ଓ ଲାଲା ମୁନ୍‌ସୀରାମଙ୍କ ନାମ ଉଲ୍ଲେଖଯୋଗ୍ୟ । ଯେଉଁ ଜାତି ଏହି ଆଚାର୍ଯ୍ୟଙ୍କ ପରଂପରା ଉଜ୍ଜୀବିତ ରଖିପାରେ, ସେ ଜାତି ମୋ ମତରେ କେବେ ହେଁ ଧ୍ୱଂସ ପାଇବ ନାହିଁ; ଏହିମାନେ ଆମକୁ ନିର୍ଦ୍ଦେଶ ଓ ଶିକ୍ଷା ଦେଇ ଅନୁପ୍ରାଣିତ କରିବେ । ଏମାନଙ୍କ ଯୋଗୁଁ ସ୍ୱର୍ଗରାଜ୍ୟର ଦୃଶ୍ୟ ଆମେ ଶୀଘ୍ର ଦେଖିପାରିବା ବୋଲି ମୋର ବିଶ୍ୱାସ ।"

ତେଣୁ ଯେତେଦିନ ସମଗ୍ର ହିନ୍ଦୁଜାତିର ମନର ଭାବ ଏହିପରି ଚାଲିବ, ଆଉ ଆମେ ଭଗବାନଙ୍କୁ ପ୍ରାର୍ଥନା କରୁଛୁ, ଚିରକାଳ ଏହି ଭାବ ଚାଲିଥାଉ — ସେତେଦିନ ଆମ ପାଶ୍ଚାତ୍ୟ ଭାବାପନ୍ନ ସ୍ୱଦେଶବାସୀବୃନ୍ଦ ଭାରତୀୟ ନରନାରୀଙ୍କର 'ଆତ୍ମନୋ ମୋକ୍ଷାର୍ଥଂ ଜଗଦ୍ଧିତାୟ ଚ' ସର୍ବତ୍ୟାଗ କରିବା ପ୍ରବୃତ୍ତିକୁ ବାଧା ଦେବା ଆଶା କରିପାରନ୍ତି କି ?''

(ଗ) ''ଆଉ ସନ୍ନ୍ୟାସୀଙ୍କ ବିରୋଧରେ ସେହି ମାନ୍ଧାତା ଅମଳର ପଚାସଢ଼ା ଆପତ୍ତିଟା ଇଉରୋପରେ ପ୍ରୋଟେଷ୍ଟାଣ୍ଟ-ସମ୍ପ୍ରଦାୟଦ୍ୱାରା ପ୍ରଥମ ବ୍ୟବହୃତ, ପରେ ବଙ୍ଗାଳୀ ସଂସ୍କାରକଗଣ ତାଙ୍କଠାରୁ ଏଇଟା ଧାର କରି ନେଇଛନ୍ତି — ଆଉ ଏବେ ପୁଣି ଆମ ବମ୍ବେବାସୀ ଭାଇମାନେ ଏହାକୁ ଟାଣି ଧରିଛନ୍ତି — ସନ୍ନ୍ୟାସୀମାନେ ଅବିବାହିତ ରହିବାରୁ ଜୀବନକୁ ପୂର୍ଣ୍ଣଭାବରେ ଓ ଏହାର ନାନା ପ୍ରକାର ଅଭିଜ୍ଞତା ସହିତ ସମ୍ଭୋଗ କରିବାରୁ ବଞ୍ଚିତ । x x x ତା'ପରେ ଅବଶ୍ୟ ସନ୍ନ୍ୟାସାଶ୍ରମର ବିରୁଦ୍ଧବାଦୀମାନଙ୍କ ମୁହଁରେ ଏକଥା ଲାଗି ରହିଛି ଯେ ଈଶ୍ୱର ଆମ୍ଭମାନଙ୍କୁ ପ୍ରତ୍ୟେକ ବୃତ୍ତି ଦେଇଛନ୍ତି, କୌଣସି ନା କୌଣସି ବ୍ୟବହାର ପାଇଁ; ସୁତରାଂ ସନ୍ନ୍ୟାସୀ ଯେତେବେଳେ ବଂଶବୃଦ୍ଧି କରୁନାହାନ୍ତି ସେ ଅନ୍ୟାୟ କାର୍ଯ୍ୟ କରୁଛନ୍ତି — ସେ ପାପୀ । ବେଶ୍, ତା'ହେଲେ ତ କାମ, କ୍ରୋଧ, ଚୋରି, ଡକାୟତି, ପ୍ରବଞ୍ଚନା ପ୍ରଭୃତି ସବୁ ପ୍ରବୃତ୍ତିକୁ ମଧ୍ୟ ଈଶ୍ୱର ଆମ୍ଭମାନଙ୍କୁ ଦେଇଛନ୍ତି — ଆଉ ଏଗୁଡ଼ିକ ମଧ୍ୟରୁ ପ୍ରତ୍ୟେକଟି ସଂସ୍କୃତ ବା ଅସଂସ୍କୃତ ସାମାଜିକ ଜୀବନ ରକ୍ଷା ଲାଗି ଆବଶ୍ୟକ । ଏଗୁଡ଼ିକ ସମ୍ବନ୍ଧରେ ବିରୁଦ୍ଧବାଦୀମାନେ କ'ଣ କହୁଛନ୍ତି ? ଜୀବନରେ ସବୁ ଅଭିଜ୍ଞତା ସଞ୍ଚୟ କରିବା ଉଚିତ୍, ଏହି ମତ ଅବଲମ୍ବନ କରି ଏହି ପ୍ରବୃତ୍ତିଗୁଡ଼ିକର ପୂର୍ଣ୍ଣ ବ୍ୟବହାର କରିବାକୁ ହେବ ନା କ'ଣ ? ଅବଶ୍ୟ ସମାଜସଂସ୍କାରକ ଦଳଙ୍କ ସଙ୍ଗେ ଯେତେବେଳେ ସର୍ବଶକ୍ତିମାନ୍ ପରମେଶ୍ୱରଙ୍କର ବିଶେଷ ଘନିଷ୍ଠତା ଏବଂ ସେମାନେ ଯେତେବେଳେ ତାଙ୍କର କ'ଣ ଇଚ୍ଛା, ତା ବି ଭଲ ଭାବରେ ଜାଣନ୍ତି, ସେତେବେଳେ ସେମାନଙ୍କ ଏ' ପ୍ରଶ୍ନର ଜବାବରେ 'ହଁ' କହିବାକୁ ହିଁ ପଡ଼ିବ ।''

(୨) ସ୍ମରଣାତୀତ କାଳରୁ ଜଗତର ପ୍ରତ୍ୟେକ ଧର୍ମସମ୍ପ୍ରଦାୟରେ ସର୍ବତ୍ୟାଗୀ ସନ୍ନ୍ୟାସୀଗଣ ସମାଜର ଶୀର୍ଷସ୍ଥାନରେ ରହି ଜାତିକୁ ଉନ୍ନତି ପଥରେ ଚାଳିତ କରୁଛନ୍ତି । ସନ୍ନ୍ୟାସୀଙ୍କ କଠୋର ସଂଯତ ଜୀବନ, ଭୋଗ-ବିତୃଷ୍ଣା, ଯୁଗେ ଯୁଗେ କେତେ କେତେ ମାନବଙ୍କୁ ଉଚ୍ଛୃଙ୍ଖଳ ଲାଳସା ସଂଯତ କରିବାକୁ ଶିଖାଇଛି । ଏହି ଭାରତରେ ଯାହା କିଛି ଉଦାରଭାବ, ପ୍ରାଣପ୍ରଦ, ବୀର୍ଯ୍ୟପ୍ରଦ, ଉଚ୍ଚ ଚିନ୍ତା, ତାହାର ଅଧିକାଂଶ ହିଁ ସନ୍ନ୍ୟାସୀଙ୍କ ବ୍ରହ୍ମଚର୍ଯ୍ୟ-ପୁଷ୍ଟ-ମସ୍ତିଷ୍କରୁ ଉଦ୍ଭୁତ । ସମାଜ-ତରଣୀର କର୍ଣ୍ଣଧାର ଆସନରେ ଭାରତ ପ୍ରାଚୀନ କାଳରୁ ସସମ୍ଭ୍ରମରେ ସନ୍ନ୍ୟାସୀଙ୍କୁ ସ୍ଥାପନ କରିଛି, ଆଉ ସନ୍ନ୍ୟାସୀମାନେ ଆଜି ମଧ୍ୟ ଜାତୀୟ ଜୀବନ-ତରଣୀର ଆହୁଲା ଧରି ବସିଛନ୍ତି ବୋଲି ସହସ୍ର ଝଞ୍ଜା ସତ୍ତ୍ୱେ ଏହାକୁ ଧ୍ୱଂସ ହେବାକୁ ଦେଇ ନାହାନ୍ତି ।

ଭାରତର ପ୍ରାଚୀନ ଓ ଆଧୁନିକ ଇତିହାସର ପ୍ରତ୍ୟେକ ପୃଷ୍ଠାରେ ସନ୍ନ୍ୟାସୀଙ୍କର ଏହି ନିଃସ୍ୱାର୍ଥ ଚେଷ୍ଟାର ମହିମମୟ କାହାଣୀ ସ୍ୱର୍ଣ୍ଣାକ୍ଷରରେ ଖୋଦିତ । ସମାଜ ଉପରେ, ଜାତିର ଚିନ୍ତା ଉପରେ ସେମାନଙ୍କର ଅମୋଘ ପ୍ରଭାବ ଶ୍ରୀଯୁକ୍ତ ରାଣାଡେ ଅସ୍ୱୀକାର କରିପାରି ନାହାନ୍ତି; ତଥାପି ସେ କହିଛନ୍ତି, 'ଆମ୍ଭମାନଙ୍କ ଆଚାର୍ଯ୍ୟମାନେ ଯେପରି ନୂତନ କୌଣସି ସନ୍ନ୍ୟାସୀ ସମ୍ପ୍ରଦାୟ ଗଠନ ନ କରନ୍ତି, କାରଣ ସେମାନେ ଜୀବନର ନାନାବିଧ ରସ ଅସ୍ୱାଦନ କରିବାରୁ ବଞ୍ଚିତ ।' ଭବିଷ୍ୟତ ଭାରତ ଗଠନ ଲାଗି ସେ ସନ୍ନ୍ୟାସୀଙ୍କ ପ୍ରୟୋଜନ ଏକାବେଳକେ ଅସ୍ୱୀକାର କରିଛନ୍ତି ଏବଂ ସେ ଆଶା କରିଛନ୍ତି ଯେ, ଭାରତ ଯେତେବେଳେ ଆଚାର୍ଯ୍ୟରୂପେ ପ୍ରାଚୀନ କାଳର ଅଗସ୍ତ୍ୟ, ଅତ୍ରି, ବଶିଷ୍ଠ ପ୍ରଭୃତି ଋଷିମାନଙ୍କ ପରି ବର୍ତ୍ତମାନ କାଳରେ ବି ଡାକ୍ତର ଭଣ୍ଡାରକର, ଦେଓ୍ୱାନ ବାହାଦୂର ରଘୁନାଥ ରାଓ, ମହର୍ଷି ଦେବେନ୍ଦ୍ରନାଥ ଠାକୁର, ସ୍ୱର୍ଗୀୟ କେଶବଚନ୍ଦ୍ର ସେନ, ବାବୁ ପ୍ରତାପଚନ୍ଦ୍ର ମଜୁମଦାର ଏବଂ ପଣ୍ଡିତ ଶିବନାଥ ଶାସ୍ତ୍ରୀ, ଲାଲା ହଂସରାଜ, ଲାଲା ମୁନ୍‌ସୀରାମ ପ୍ରଭୃତି ଋଷିଗଣଙ୍କୁ ଲାଭ କରିଛି, ସେତେବେଳେ ଏମାନଙ୍କ ଉପଦେଶ ଓ ଆଦର୍ଶ ଜୀବନ ଅନୁକରଣ କରି ଚଳିଲେ ଭାରତର ଉନ୍ନତି ଅବଶ୍ୟମ୍ଭାବୀ ।

(କ) ଅନ୍ୟ ଦିଗରେ ସ୍ୱାମୀଜୀ କିନ୍ତୁ ଏହି ସମସ୍ତ ଆଧୁନିକ ପାଶ୍ଚାତ୍ୟଭାବର ସପୁଷ୍ଟ ଋଷିମାନଙ୍କଦ୍ୱାରା ଭାରତର କୌଣସି ସ୍ଥାୟୀ ଉନ୍ନତି ହୋଇଛି ବା ହେବ, ଏହା କଦାପି ବିଶ୍ୱାସ କରୁ ନ ଥିଲେ । ସେଥିପାଇଁ ଅନ୍ତତଃ ଏକହଜାର ଶକ୍ତିମାନ, ଚରିତ୍ରବାନ୍ ଓ ବୁଦ୍ଧିମାନ୍ ସନ୍ନ୍ୟାସୀ ପ୍ରଚାରକ ତିଆରି କରିବା ଲାଗି ସଂକଳ୍ପ କରିଥିଲେ । ଏହି ପ୍ରକାର ଆଚାର୍ଯ୍ୟଗଣ ସମଗ୍ର ଭାରତ ଭ୍ରମଣ କରି ମୁକ୍ତି ଓ ସେବାଭଳି ସାମାଜିକ ଜୀବନର ଉନ୍ନତତର ଆଦର୍ଶ ଓ ସାମ୍ୟ-ବାର୍ତ୍ତା ଦ୍ୱାରେ ଦ୍ୱାରେ ପ୍ରଚାର କରିବେ; ଲୌକିକ ଓ ଅର୍ଥକାରୀ ବିଦ୍ୟା ଶିକ୍ଷା ଦେବେ । ତାଙ୍କ ମତରେ ସନ୍ନ୍ୟାସୀ ଆଚାର୍ଯ୍ୟମାନଙ୍କ ଅବନତି ସହିତ ଭାରତର ଦୁର୍ଦ୍ଦଶାର ଇତିହାସ ଅଙ୍ଗାଙ୍ଗୀ ଭାବେ ଜଡ଼ିତ; ତେଣୁ ଭବିଷ୍ୟତ ଭାରତର ଉଦ୍‌ବୋଧନ ନିମିତ୍ତ ପ୍ରଥମେ ହିଁ ସମାଜର ନିୟନ୍ତା, ଜାତିର ଚାଳକ ରୂପେ ଦଳେ ଶକ୍ତିମାନ୍ ଆଚାର୍ଯ୍ୟ ପ୍ରୟୋଜନ ଏବଂ ଏମାନେ ପ୍ରତ୍ୟେକେ ସର୍ବତ୍ୟାଗୀ ସନ୍ନ୍ୟାସୀ ହେବେ ।

(ଗ) ସନ୍ନ୍ୟାସର ଉଚ୍ଚତମ ଆଦର୍ଶକୁ ଧାରଣା କରିବା ଲାଗି ଅକ୍ଷମ ହୋଇ କେହି କେହି ତ୍ୟାଗପୂତ ଗୈରିକ ବସନକୁ କଳୁଷିତ କରିଛନ୍ତି—ଏ' ଭଳି ଦୃଷ୍ଟାନ୍ତ ବିରଳ ନୁହେଁ; କିନ୍ତୁ ଦୁଃଖର ବିଷୟ, ଦୁର୍ବଳ ଓ ଅସତ୍‌ପ୍ରକୃତି ସନ୍ନ୍ୟାସୀଗଣଙ୍କ ଦୃଷ୍ଟାନ୍ତ ଦେଇ ସଂସ୍କାରକମାନେ ସବୁ ସନ୍ନ୍ୟାସୀ ଓ ଏପରି କି ସନ୍ନ୍ୟାସାଶ୍ରମକୁ ମଧ୍ୟ ଅଯଥା ଆକ୍ରମଣ କରିବାକୁ କୁଣ୍ଠିତ ହୋଇ ନାହାନ୍ତି । ସନ୍ନ୍ୟାସର କ୍ଷୁରଧାର ଦୁର୍ଗମ ପଥରେ ଗତି କରିବା ବେଳେ ଯଦି କାହାର ପଦସ୍ଖଳନ ହୁଏ, ତେବେ ବି ସେ ଜଣେ ସାଧାରଣ ଗୃହସ୍ଥ ଅପେକ୍ଷା ଶତଗୁଣରେ ଉଚ୍ଚ ଓ ଶ୍ରେଷ୍ଠ; କାରଣ ପ୍ରଚଳିତ କଥା ଅଛି ଯେ, 'ଭଲପାଇ ନ ପାରିବା, ଭଲ ନ ପାଇବା ଅପେକ୍ଷା

ଭଲ ।' କେବେ ହେଲେ ଯେ ଉନ୍ନତ ଜୀବନ ଲାଭ କରିବାର ଚେଷ୍ଟା ହିଁ କରି ନାହିଁ, କାପୁରୁଷ ସଙ୍ଗେ ତୁଳନା କଲେ ସେ ତ ବୀର !

"ଆମ ସଂସ୍କାରକ ଦଳର ଭିତରର ବ୍ୟାପାର ଯଦି ଭଲ ଭାବରେ ଅନୁସନ୍ଧାନ କରାଯାଏ, ତେବେ ସନ୍ନ୍ୟାସୀ ଓ ଗୃହସ୍ଥଙ୍କ ଭିତରେ ଥିବା ଭ୍ରଷ୍ଟ ଲୋକଙ୍କ ସଂଖ୍ୟା ଶତକଡ଼ା କେତେ, ଦେବତାମାନଙ୍କୁ ମଧ୍ୟ ସେ କଥା ଭଲ କରି ଗଣି ବାହାର କରିବାକୁ ପଡ଼ିବ ଏବଂ ଆମ୍ଭମାନଙ୍କ ସମସ୍ତ କାର୍ଯ୍ୟାବଳୀର ଏଭଳି ସମ୍ପୂର୍ଣ୍ଣ ପୁଙ୍ଖାନୁପୁଙ୍ଖ ହିସାବ ଯେଉଁ ଦେବତା ରଖୁଛନ୍ତି—ସେ ତ ଆମ ଅନ୍ତର ଭିତରେ ଅଛନ୍ତି ! କିନ୍ତୁ ଏଣେ ଦେଖ, ଏହା ଏକ ଅଦ୍ଭୁତ ଅଭିଜ୍ଞତା । ଏକାକୀ ଠିଆ ହୋଇ ରହିଛି; କାହାର କିଛି ସାହାଯ୍ୟ ଚାହୁଁ ନାହିଁ; ଜୀବନରେ ଶତ ଝଡ଼ଝଞ୍ଜା ଆସୁଛି, ଛାତି ପତେଇ ସବୁ ସହି ନେଉଛି; କୌଣସି ପୁରସ୍କାରର ଆଶା ନ ରଖି କାମ କରିଯାଉଛି; ଏପରି କି, କର୍ତ୍ତବ୍ୟ ବୋଲି ଲମ୍ବା ନାଁରେ ସାଧାରଣରେ ପରିଚିତ ସେହି ଅହଂଭାବ ମଧ୍ୟ ନାହିଁ । ସାରା ଜୀବନ କାମ ଚାଲିଛି; ଆନନ୍ଦର ସହିତ ସ୍ୱାଧୀନ ଭାବରେ କାମ ଚାଲିଛି; କାରଣ, କ୍ରୀତଦାସ ପରି ଜୋତା ଠୋକର ମାରି କାମ କରାଇବାକୁ ପଦ୍ଧୁ ନାହିଁ; ଅଥବା ମିଛ ମାନବୀୟ ପ୍ରେମ ବା ଉଚ୍ଚ ଆକାଙ୍କ୍ଷା ମଧ୍ୟ ସେ କାର୍ଯ୍ୟମୂଳରେ ନାହିଁ ।

"ଏହା କେବଳ ସନ୍ନ୍ୟାସୀମାନଙ୍କ ପକ୍ଷରେ ସମ୍ଭବ ! ଧର୍ମ କଥା କ'ଣ କହୁଛ ? ଏହା ରହିବା ଉଚିତ୍, ନା ସମ୍ପୂର୍ଣ୍ଣ ଅନ୍ତର୍ହିତ ହୋଇଯିବ ? ଧର୍ମ ଯଦି ଥାଏ, ତେବେ ଧର୍ମସାଧନାରେ ବିଶେଷ ଅଭିଜ୍ଞ ଦଳେ ଲୋକ ଆବଶ୍ୟକ—ଧର୍ମଯୁଦ୍ଧ ପାଇଁ ଯୋଦ୍ଧାର ପ୍ରୟୋଜନ । ସନ୍ନ୍ୟାସୀ ହିଁ ଧର୍ମରେ ବିଶେଷ ଅଭିଜ୍ଞ ବ୍ୟକ୍ତି; କାରଣ ସେ ଧର୍ମକୁ ହିଁ ତାଙ୍କ ଜୀବନର ମୂଳ ଲକ୍ଷ୍ୟ କରିଛନ୍ତି । ସେ ଈଶ୍ୱରଙ୍କ ସୈନିକ ପରି । ଯେତେଦିନ ଦଳେ ଏକନିଷ୍ଠ ସନ୍ନ୍ୟାସୀ ଅଛନ୍ତି, ସେତେଦିନ କୌଣସି ଧର୍ମର ବିନାଶ ଆଶଙ୍କା ଯଥାର୍ଥ କି ?

"ପ୍ରୋଟେଷ୍ଟାଣ୍ଟ ଇଂଲଣ୍ଡ ଓ ଆମେରିକା, କ୍ୟାଥଲିକ୍ ସନ୍ନ୍ୟାସୀମାନଙ୍କ ପ୍ରବଳ ପ୍ଲାବନରେ କମ୍ପିତ ହେଉଛି କାହିଁକି ?

"ରାଣାଡେ ଓ ସଂସ୍କାରକଗଣ, ଦୀର୍ଘଜୀବୀ ହୁଅ ! କିନ୍ତୁ ହେ ଭାରତ, ହେ ପାଶ୍ଚାତ୍ୟ ଭାବରେ ଅନୁପ୍ରାଣିତ ଭାରତ ! ବସ, ଭୁଲି ଯାଅ ନାହିଁ, ଏହି ସମାଜରେ ଏପରି ସମସ୍ୟା ସବୁ ଅଛି, ଯାହାର ଅର୍ଥ ଏବେ ମଧ୍ୟ ତୁମେ ବା ତୁମ ପାଶ୍ଚାତ୍ୟ ଗୁରୁ ବୁଝିପାରି ନାହାନ୍ତି, ମୀମାଂସା କରିବା ତ ଦୂରର କଥା ।"

## କଲିକତାକୁ ପ୍ରତ୍ୟାବର୍ତ୍ତନ ଓ ପୂର୍ବବଙ୍ଗ ଯାତ୍ରା

ପ୍ରବଳ ତୁଷାରପାତ ଯୋଗୁଁ ସ୍ୱାମୀଜୀଙ୍କୁ ଘର ଭିତରେ ଅଧିକାଂଶ ସମୟ ବନ୍ଦୀ ପରି ରହିବାକୁ ହେଉଥିଲା; ବିଶେଷରେ ହିମାଳୟର ପ୍ରଖର ଶୀତ ତାଙ୍କୁ ଅସହ୍ୟ ବୋଧ ହେଲା । ଶେଷରେ ୧୯୦୧ ଜାନୁଆରୀ ଚବିଶ ତାରିଖରେ

ସ୍ୱାମୀଜୀ ବେଲୁଡ଼ ମଠକୁ ଫେରିଆସିଲେ । ମଠର କାର୍ଯ୍ୟ ଭଲରୂପେ ଚାଲିଥିଲା । ପ୍ରତ୍ୟହ ବ୍ରହ୍ମଚାରୀମାନେ ବ୍ୟାୟାମ, ବିବିଧ ଶାସ୍ତ୍ରାଲୋଚନା, ଧ୍ୟାନ, ସାଧନା ଆଦି ନିୟମିତ ରୂପେ କରୁଥିଲେ । ସ୍ୱାମୀଜୀ ଆସିବାରୁ ତାଙ୍କ କର୍ମୋତ୍ସାହ ଶତଗୁଣରେ ବଢ଼ିଗଲା । ସ୍ୱାମୀଜୀ ଏହି ନବୀନ ସନ୍ନ୍ୟାସୀ-ସମ୍ପ୍ରଦାୟର ତ୍ୟାଗ, ବିବେକ, ବୈରାଗ୍ୟ, ଇତ୍ୟାଦି ଲକ୍ଷ୍ୟ କରି ପରମ ପରିତୁଷ୍ଟ ହେଲେ । କେବେ କେବେ ଅବସର ଅନୁସାରେ ଆଲୋଚନା-ସଭାରେ ସ୍ୱୟଂ ଉପସ୍ଥିତ ରହି ଶିକ୍ଷାଦାନ ସଙ୍ଗେ ସଙ୍ଗେ ଭବିଷ୍ୟତ କାର୍ଯ୍ୟପ୍ରଣାଳୀ ସମ୍ବନ୍ଧରେ ଅନେକ ଅଭିମତ ବ୍ୟକ୍ତ କରିଥିଲେ । ଇତି ମଧ୍ୟରେ ଢାକାରୁ ସ୍ୱାମୀଜୀଙ୍କ ନିକଟକୁ ପ୍ରତ୍ୟହ ଆହ୍ୱାନସୂଚକ ପତ୍ର ଆସିବାକୁ ଲାଗିଲା । ସ୍ୱାମୀଜୀଙ୍କ ମାତାଠାକୁରାଣୀ ପୂର୍ବରୁ ପୂର୍ବବଙ୍ଗ ଓ ଆସାମର ତୀର୍ଥଗୁଡ଼ିକ ଦର୍ଶନ କରିବା ଲାଗି ଇଚ୍ଛା ପ୍ରକାଶ କରିଥିଲେ । ଏହା ସ୍ମରଣ କରି ଜନନୀ ଓ ତାଙ୍କ ସଙ୍ଗିନୀଗଣଙ୍କୁ ସାଙ୍ଗରେ ନେଇ ସ୍ୱାମୀଜୀ ଢାକା ଯିବା ଲାଗି ପ୍ରସ୍ତୁତ ହେଲେ । ସ୍ୱାମୀଜୀଙ୍କ ଦୈହିକ ଅବସ୍ଥା ଦିନକୁ ଦିନ ଖରାପ ହେଉଥିଲା; କିନ୍ତୁ ସେଆଡ଼କୁ ଦୃଷ୍ଟି ନ ଦେଇ ମାର୍ଚ୍ଚ ଅଠର ତାରିଖରେ କେତେଜଣ ସନ୍ନ୍ୟାସୀ-ଶିଷ୍ୟଙ୍କ ଗହଣରେ ସେ ଢାକା ଯାତ୍ରା କଲେ । ଜାହାଜ ଗୋଆଲନ୍ଦରୁ ଯାଇ ନାରାୟଣଗଞ୍ଜରେ ପହଞ୍ଚିବା ମାତ୍ରକେ ଢାକା ଅଭ୍ୟର୍ଥନା ସମିତିର କେତେଜଣ ଭଦ୍ରଲୋକ ତାଙ୍କୁ ଅଭ୍ୟର୍ଥନା କଲେ । ଅବଶେଷରେ ଯେତେବେଳେ ଅପରାହ୍ଣରେ ଟ୍ରେନ୍ ଢାକା ଷ୍ଟେସନରେ ପହଞ୍ଚିଲା, ସ୍ଥାନୀୟ ଓକିଲବାବୁ ଈଶ୍ୱରଚନ୍ଦ୍ର ଘୋଷ ଓ ବାବୁ ଗଗନଚନ୍ଦ୍ର ଘୋଷ ଜନସାଧାରଣଙ୍କ ପକ୍ଷରୁ ସ୍ୱାମୀଜୀଙ୍କୁ ଅଭ୍ୟର୍ଥନା କଲେ । ହଜାର ହଜାର ଲୋକ ବିବେକାନନ୍ଦଙ୍କ ଦର୍ଶନ କାମନାରେ ଷ୍ଟେସନରେ ସମବେତ ହୋଇଥିଲେ; ସେମାନେ ସ୍ୱାମୀଜୀଙ୍କୁ ଦେଖିବା ମାତ୍ରକେ 'ଜୟ ରାମକୃଷ୍ଣ' ଧ୍ୱନିରେ ଷ୍ଟେସନକୁ ମୁଖରିତ କରିଦେଲେ । ଘୋଡ଼ାଗାଡ଼ିରେ ବସି ବିରାଟ ଶୋଭାଯାତ୍ରାରେ ସ୍ୱାମୀଜୀ ସ୍ଥାନୀୟ ପ୍ରସିଦ୍ଧ ଜମିଦାର ଶ୍ରୀ ମୋହିନୀମୋହନ ଦାସଙ୍କ ପ୍ରାସାଦୋପମ ଭବନକୁ ଗଲେ ।

କେତେଦିନ ପରେ ବୁଧ ଅଷ୍ଟମୀ ଉପଲକ୍ଷେ ବ୍ରହ୍ମପୁତ୍ର ସ୍ନାନ ନିମିତ୍ତ ସ୍ୱାମୀଜୀ ଢାକାରୁ ନୌକା ସାହାଯ୍ୟରେ ଲାଙ୍ଗଲବନ୍ଧ ଅଭିମୁଖେ ଯାତ୍ରା କଲେ । ମାର୍ଚ୍ଚ ପଚିଶ ତାରିଖରେ ଜନନୀ ଓ ଅନ୍ୟାନ୍ୟ ମହିଳାବୃନ୍ଦ ନାରାୟଣଗଞ୍ଜ ଆସି ସ୍ୱାମୀଜୀଙ୍କ ସହିତ ଯୋଗଦେଲେ । ସଦଳବଳେ ଲାଙ୍ଗଲବନ୍ଧରେ ପହଞ୍ଚି ବ୍ରହ୍ମପୁତ୍ରର ପବିତ୍ର ଜଳରେ ଅବଗାହନ କରି ସ୍ୱାମୀଜୀ ଆନନ୍ଦିତ ହେଲେ । ସେହି ଦିନ ରାତିରେ ସ୍ୱାମୀଜୀଙ୍କୁ ସାମାନ୍ୟ ଜ୍ୱର ହେଲା । ଯାହାହେଉ, ସେ ନିର୍ବିଘ୍ନରେ ଢାକାକୁ ଫେରି ଆସିଲେ ।

ଢାକାରେ ଥିବା ବେଳେ ପ୍ରତ୍ୟହ ବହୁବ୍ୟକ୍ତି ତାଙ୍କଠାରୁ ଆଶୀର୍ବାଦ ଓ ଉପଦେଶ ନେବାକୁ ଆସୁଥିଲେ । ସ୍ୱାମୀଜୀ ପ୍ରାୟ ସର୍ବଦା ସେମାନଙ୍କୁ ସାଦର ଅଭ୍ୟର୍ଥନା କରି ଆଳାପ ଆଲୋଚନାରେ ସନ୍ତୁଷ୍ଟ କରୁଥିଲେ । ଅପରାହ୍ଣରେ ପ୍ରାୟ

ଦୁଇତିନି ଘଣ୍ଟା ତ୍ୟାଗ, ବୈରାଗ୍ୟ, କର୍ମଯୋଗ, ଭକ୍ତି, ଜ୍ଞାନ ଇତ୍ୟାଦି ନାନା ବିଷୟ ଆଲୋଚନା କରୁଥିଲେ । ସ୍ୱାମୀଜୀଙ୍କ ମଧୁର ବ୍ୟବହାର, ବିନମ୍ର ବଚନ ସମସ୍ତଙ୍କୁ ମୁଗ୍ଧ କରୁଥିଲା ।

ସ୍ଥାନୀୟ ଶିକ୍ଷିତ ସମ୍ପ୍ରଦାୟର ଆଗ୍ରହ ଓ ଅନୁରୋଧ ଯୋଗୁଁ ସ୍ୱାମୀଜୀ ଢାକାରେ ଦୁଇଟି ବକ୍ତୃତା ଦେଇଥିଲେ । ମାର୍ଚ୍ଚ ତିରିଶ ତାରିଖରେ ସ୍ଥାନୀୟ ଓକିଲ ଶ୍ରୀ ରମାକାନ୍ତ ନନ୍ଦୀଙ୍କ ସଭାପତିତ୍ୱରେ ଜଗନ୍ନାଥ କଲେଜରେ ଗୋଟିଏ ସଭା ଆହୂତ ହୋଇଥିଲା । ସ୍ୱାମୀଜୀ ପ୍ରାୟ ଦୁଇହଜାର ଶ୍ରୋତାଙ୍କ ସମ୍ମୁଖରେ ଇଂରେଜୀ ଭାଷାରେ 'ମୁଁ କ'ଣ ଶିଖିଛି ?' ଏହି ବିଷୟରେ ଘଣ୍ଟାଏ କାଳ ବକ୍ତୃତା ଦେଲେ । ତା'ପରଦିନ ପୋଗଜ୍ ବିଦ୍ୟାଳୟର ସୁବିସ୍ତୃତ ପ୍ରାଙ୍ଗଣରେ ପ୍ରାୟ ତିନିହଜାର ଶ୍ରୋତାଙ୍କ ସମ୍ମୁଖରେ 'ମୋର ଜନ୍ମପ୍ରାପ୍ତ ଧର୍ମ' ସମ୍ବନ୍ଧରେ ଦୁଇଘଣ୍ଟା କାଳ ବକ୍ତୃତା ଦେଇଥିଲେ । ଶ୍ରୋତୃଗଣ ସ୍ୱାମୀଜୀଙ୍କ ବକ୍ତୃତାର ସମ୍ମୋହିନୀ ଶକ୍ତିରେ ଆକୃଷ୍ଟ ହୋଇ ମନ୍ତ୍ରମୁଗ୍ଧବତ୍ ନିସ୍ତବ୍ଧ ଥିଲେ । ଉଭୟ ବକ୍ତୃତାରେ ସ୍ୱାମୀଜୀ ବ୍ରାହ୍ମ ସଂସ୍କାରକମାନଙ୍କ ଅବଲମ୍ବିତ କାର୍ଯ୍ୟପ୍ରଣାଳୀର ତୀବ୍ର ସମାଲୋଚନା କରିଥିଲେ । ଏହି ସଂସ୍କାରକ ସମ୍ପ୍ରଦାୟ ଯେ ଆମ ଧର୍ମରେ ବୈଦେଶିକ ଭାବ ଚଳାଇବାର ବିଶେଷ ପକ୍ଷପାତୀ ଏବଂ ମୂର୍ତ୍ତିପୂଜାକୁ ଏକାନ୍ତ ଦୋଷାବହ ବୋଲି ମନେକରନ୍ତି, ତାହାର କାରଣ ଏମାନେ ମୂର୍ତ୍ତିପୂଜାର ଭଲମନ୍ଦ କୌଣସି ଦିଗ ଉତ୍ତମ ରୂପେ ଅନୁସନ୍ଧାନ ନ କରି ଏକାବେଳକେ ହିନ୍ଦୁଧର୍ମକୁ ଭ୍ରମପ୍ରମାଦର ଗୋଟିଏ ସମଷ୍ଟି ବୋଲି ସ୍ଥିର କରିନେଇଛନ୍ତି । ମୂର୍ତ୍ତିପୂଜାକୁ ସମର୍ଥନ କରି ସ୍ୱାମୀଜୀ ତାଙ୍କର ବହୁ ବକ୍ତୃତାରେ ଦାର୍ଶନିକ ସୂକ୍ଷ୍ମ ଯୁକ୍ତି ଦର୍ଶାଇବାରେ ତ୍ରୁଟି କରି ନ ଥିଲେ— ଧର୍ମଜୀବନର ଅବସ୍ଥା ବିଶେଷରେ ଏହାର ପ୍ରୟୋଜନୀୟତା ସେ ଅକାଟ୍ୟ ଯୁକ୍ତିବଳରେ ପ୍ରମାଣ କରିଥିଲେ; କିନ୍ତୁ ଶେଷୋକ୍ତ ବକ୍ତୃତାଟିର ଉପସଂହାରରେ ସେ ମର୍ମସ୍ପର୍ଶୀ ଭାଷାରେ ଯାହା କହିଥିଲେ, ତାହା ହିନ୍ଦୁ ଓ ବ୍ରାହ୍ମ ସମସ୍ତଙ୍କର ବିଶେଷ ପ୍ରଣିଧାନଯୋଗ୍ୟ । ସ୍ୱାମୀଜୀ କହିଥିଲେ, ''ଏହି ମୂର୍ତ୍ତି ପୂଜାରେ ନାନାବିଧ କୁତ୍ସିତ ଭାବ ପ୍ରବେଶ କରିଥିଲେ ବି ମୁଁ ଏହାର ନିନ୍ଦା କରେ ନାହିଁ । ଯଦି ସେହି ମୂର୍ତ୍ତିପୂଜକ ବ୍ରାହ୍ମଣର ପଦଧୂଳି ମୁଁ ପାଇ ନ ଥାନ୍ତି, ତେବେ ମୁଁ କେଉଁଠି ଥାଆନ୍ତି ? ଯେଉଁ ସଂସ୍କାରକମାନେ ମୂର୍ତ୍ତିପୂଜାର ନିନ୍ଦା କରନ୍ତି, ସେମାନଙ୍କୁ ମୁଁ କହେ, ''ଭାଇ, ତୁମେ ଯଦି ନିରାକାର ଉପାସନା ଲାଗି ଯୋଗ୍ୟ ହୋଇଥାଅ, ତାହା କର; କିନ୍ତୁ ଅନ୍ୟଙ୍କୁ ଗାଳି ଦେଉଛ କାହିଁକି ? ସଂସ୍କାର ଅର୍ଥ, ପୁରାତନ ଗୃହର ଜୀର୍ଣ୍ଣସଂସ୍କାର ମାତ୍ର ! ଜୀର୍ଣ୍ଣସଂସ୍କାର ହୋଇଗଲେ ଆଉ ଏହାର ପ୍ରୟୋଜନ କ'ଣ ? ସଂସ୍କାରକ ଦଳ ଗୋଟିଏ ସ୍ୱତନ୍ତ୍ର ସମ୍ପ୍ରଦାୟ ଗଠନ କରିବାକୁ ଚାହାଁନ୍ତି । ସେମାନେ ମହତ୍ କାର୍ଯ୍ୟ କରିଛନ୍ତି ! ସେମାନଙ୍କ ମୁଣ୍ଡରେ ଭଗବାନଙ୍କ ଆଶୀର୍ବାଦ ବର୍ଷୁ; କିନ୍ତୁ ତୁମେ ନିଜକୁ ପୃଥକ୍ କରିବାକୁ ଚାହଁ କାହିଁକି ? ହିନ୍ଦୁର ନାମ ନେବାକୁ ଲଜ୍ଜିତ ହୁଅ କାହିଁକି ?''

ବଙ୍ଗଳାର ସଂସ୍କାରକମାନଙ୍କ ସ୍ୱଜାତି ଓ ସ୍ୱଧର୍ମ ପ୍ରତି ବିଦ୍ୱେଷ ଦେଖି ବିଶ୍ୱପ୍ରେମିକ ସନ୍ନ୍ୟାସୀ ଅନେକ ଥର କ୍ଷୁବ୍ଧ ହୋଇ କହିଛନ୍ତି, ''ଆମେ ତ ଏମାନଙ୍କୁ କୋଳେଇ ନେବାକୁ ହାତ କାଢ଼ି ବସିଛୁ; ଏମାନେ ନ ଆସିଲେ ଆମେ କ'ଣ କରିବୁ ?'' କିନ୍ତୁ ପରିତାପର ବିଷୟ ଯେ ସେମାନେ ଆସିବା ଦୂରେ ଥାଉ, ବରଂ କୌଣସି କୌଣସି ବ୍ରାହ୍ମନେତା ତାଙ୍କ ପ୍ରଭାବ ଓ ପ୍ରତିପତ୍ତିଦ୍ୱାରା ପ୍ରତିହତ ହୋଇ ଈର୍ଷା-ବିଷତିକ୍ତ ଚିତ୍ତରେ ଶୁକ୍ଳକର୍ମା ସନ୍ନ୍ୟାସୀଙ୍କ ଅମଳ ଧବଳ ଚରିତ୍ରରେ କଳଙ୍କ ଆରୋପ କରିବାକୁ ମଧ୍ୟ ବିନ୍ଦୁମାତ୍ର ଲଜ୍ଜିତ ହେଉ ନ ଥିଲେ । ଯେଉଁମାନେ ନିଜ ଭିତରେ ପରସ୍ପର ବିବାଦ କରି ଗୋଟିଏ ଅତି ଲଜ୍ଜାକର ସାହିତ୍ୟ ସୃଷ୍ଟି କରିଛନ୍ତି, ସ୍ୱାମୀ ବିବେକାନନ୍ଦଙ୍କ ପ୍ରତି ଯେ ସେମାନେ ଅସୂୟାପରବଶ ହେବେ, ଏହା ତ ସ୍ୱାଭାବିକ; କିନ୍ତୁ ଯାହା ସ୍ୱାଭାବିକ, ତାହା ଯେ ସଙ୍ଗତ ନୁହେଁ; କିନ୍ତୁ ଈର୍ଷା ପ୍ରକାଶ ଭିନ୍ନ ଅକ୍ଷମ ଲୋକ ଆଉ କ'ଣ ଅବା କରିପାରେ ?

ଅପର ଦିଗରେ ସ୍ୱାମୀଜୀ, ଯେଉଁ ବ୍ୟକ୍ତିମାନେ ଆମର ପ୍ରତ୍ୟେକ କୁସଂସ୍କାର ଓ ଗ୍ରାମ୍ୟ ଆଚାର ଇତ୍ୟାଦିର ବୈଜ୍ଞାନିକ ବ୍ୟାଖ୍ୟା କରି ଏଗୁଡ଼ିକୁ ସମର୍ଥନ କରିବାକୁ ଚେଷ୍ଟା କରନ୍ତି, ସେମାନଙ୍କ ସହିତ ମଧ୍ୟ ଏକମତ ହୋଇପାରି ନ ଥିଲେ । ସ୍ୱାମୀଜୀ କହିଥିଲେ, ''ଏମାନଙ୍କୁ ପ୍ରାଚୀନ ସମ୍ପ୍ରଦାୟ ବୋଲି ଯେଉଁମାନେ କହନ୍ତି, ମୁଁ ସେମାନଙ୍କ କଥା ବୁଝେ ନାହିଁ, କିମ୍ବା ବୁଝିବାକୁ ଚାହେଁନା; ମୁଁ ଚାହେଁ ଈଶ୍ୱରଙ୍କୁ, ମୁଁ ଚାହେଁ ଆତ୍ମାକୁ ! ମୁଁ ଜଗତକୁ ଛାଡ଼ି, ଜଗତର ସୁଖ-ଦୁଃଖକୁ ଛାଡ଼ି, ଏହାର ପରବର୍ତ୍ତୀ ରାଜ୍ୟକୁ ଯିବାକୁ ଚାହେଁ । ଯେଉଁମାନେ କହନ୍ତି, ବିଶ୍ୱାସ ସହକାରେ ଗଙ୍ଗାସ୍ନାନ କଲେ, ମୁକ୍ତି ହୁଏ; ଯେଉଁମାନେ କହନ୍ତି ଶିବ, ରାମ ପ୍ରଭୃତି ଯାହାଙ୍କୁ ହେଉ, ଈଶ୍ୱର ମନେକରି ଉପାସନା କଲେ ମୁକ୍ତି ହୁଏ, ମୁଁ ସେହି ପ୍ରାଚୀନ ସମ୍ପ୍ରଦାୟଭୁକ୍ତ ।''

ଢାକାରେ ତାଙ୍କ ଅବସ୍ଥାନ କାଳରେ ଦିନେ ଜଣେ ବେଶ୍ୟା ନାନାବି ଅଳଙ୍କାରରେ ସୁସଜ୍ଜିତା ହୋଇ ତାଙ୍କ ମା'ଙ୍କ ସହିତ ସ୍ୱାମୀଜୀଙ୍କୁ ଦର୍ଶନ କରିବା ଆଶାରେ ଆସିଲେ । ସେମାନେ ଘୋଡ଼ାଗାଡ଼ିରୁ ଓହ୍ଲାଇ ନିଜ ଅଭିପ୍ରାୟ ବ୍ୟକ୍ତ କରନ୍ତେ, ଉପସ୍ଥିତ ଭକ୍ତବୃନ୍ଦ ଇତସ୍ତତଃ ହେଲେ । ସ୍ୱାମୀଜୀ ଏହି ସମ୍ବାଦ ପାଇ ତତ୍‌କ୍ଷଣାତ୍ ସେମାନଙ୍କୁ ତାଙ୍କ କକ୍ଷକୁ ଘେନିଯିବାକୁ ଆଦେଶ ଦେଲେ । ସେମାନେ ସ୍ୱାମୀଜୀଙ୍କୁ ପ୍ରଣାମ କରି ଠିଆ ହେବାରୁ ସ୍ୱାମୀଜୀ ସ୍ନେହପୂର୍ଣ୍ଣ ସ୍ୱରରେ ସେମାନଙ୍କୁ ଆସନ ଗ୍ରହଣ କରିବା ଲାଗି ଆଦେଶ ଦେଲେ । ଏହାପରେ ସେ ନର୍ତ୍ତକୀର ଜନନୀ, ତାହାର କନ୍ୟା ଶ୍ୱାସରୋଗଗ୍ରସ୍ତା ବୋଲି କହି ସ୍ୱାମୀଜୀଙ୍କଠାରୁ ଔଷଧ ଓ ଆଶୀର୍ବାଦ ଭିକ୍ଷା କଲେ । ସ୍ୱାମୀଜୀ ସହାନୁଭୂତି-ମିଶ୍ରିତ ବ୍ୟଥିତ କରୁଣାର୍ଦ୍ର ସ୍ୱରରେ କହିଲେ, ''ମା ଦେଖ, ମୁଁ ନିଜେ ଶ୍ୱାସରୋଗୀ, ନିଜ ରୋଗକୁ ଆରୋଗ୍ୟ କରିପାରୁ ନାହିଁ ! ମୋ ଇଚ୍ଛା ହେଉଛି, ତୁମ ବ୍ୟାଧି ଆରୋଗ୍ୟ ହେଉ; ଯଦି କ୍ଷମତା ଥାଆନ୍ତା, ତାହା ହେଲେ ଆରୋଗ୍ୟ କରି ଦିଅନ୍ତି ।'' ସ୍ୱାମୀଜୀଙ୍କ ବାଳସୁଲଭ ସରଳ

ସ୍ନେହପୂର୍ଣ୍ଣ ବଚନରେ ରାମଣୀଦ୍ୱୟ ଓ ଉପସ୍ଥିତ ଦର୍ଶକବୃନ୍ଦ ମୁଗ୍ଧ ହୋଇଗଲେ । ସେମାନେ ଅବଶେଷରେ ସ୍ୱାମୀଜୀଙ୍କ ଆଶୀର୍ବାଦ ଗ୍ରହଣ କରି ବିଦାୟ ନେଲେ ।

ସ୍ୱାମୀଜୀ ଅସ୍ପୃଶ୍ୟତାର ବିରୋଧୀ ଥିଲେ ଏବଂ ସମସ୍ତଙ୍କ ହାତରୁ ଖାଦ୍ୟଦ୍ରବ୍ୟ ଗ୍ରହଣ କରୁଥିଲେ ବୋଲି ଢାକାରେ ଅନେକ ରକ୍ଷଣଶୀଳ ହିନ୍ଦୁ ଆପତ୍ତି କରିଥିଲେ । ସ୍ୱାମୀଜୀ ଦିନେ ଜଣକୁ ସମ୍ବୋଧନ କରି କହିଥିଲେ, "ବାବୁ ! ମୁଁ ଫକୀର ସନ୍ନ୍ୟାସୀ—ମୋର ପୁଣି ଜାତି-ବିଚାର ଓ ଆଚାର-ନିୟମ କ'ଣ ? ଶାସ୍ତ୍ର କହୁଛି, ସନ୍ନ୍ୟାସୀ ମାଧୁକରୀ ଭିକ୍ଷା ଗ୍ରହଣ କରି ଜୀବନ ଧାରଣ କରିବ—ଏପରିକି ଭିନ୍ନଧର୍ମାବଲମ୍ବୀ ଲୋକର ଗୃହରୁ ଖାଦ୍ୟଦ୍ରବ୍ୟ ଭିକ୍ଷା କରିବା ସନ୍ନ୍ୟାସୀଙ୍କ ପକ୍ଷରେ ନିଷିଦ୍ଧ ନୁହେଁ ।"

## ଦେଓଭୋଗରେ

ଢାକାରୁ ସ୍ୱାମୀଜୀ ସାଧୁ ନାଗ ମହାଶୟଙ୍କ ଜନ୍ମଭୂମି ଦେଓଭୋଗ ଦର୍ଶନ କରିବାକୁ ଗଲେ । ନାଗ ମହାଶୟ ୧୮୯୯ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ପରଲୋକ ଗମନ କରିଥିଲେ । ଏଥିପୂର୍ବରୁ ସ୍ୱାମୀଜୀ ଦେଓଭୋଗ ଆସିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଏତେଦିନେ ତାଙ୍କର ସେ ସଙ୍କଳ୍ପ ପୂର୍ଣ୍ଣ ହେଲା; କିନ୍ତୁ ଆଜି ନାଗମହାଶୟ ନାହାନ୍ତି ! ଯଦି ସେ ଜୀବିତ ଥାଆନ୍ତେ, ତାହା ହେଲେ ଆଜି ସେ କେତେ ଆନନ୍ଦିତ ହୋଇଥାନ୍ତେ ! ଦେଓଭୋଗରେ ପହଞ୍ଚି ସ୍ୱାମୀଜୀଙ୍କର ସେହି ତପସ୍ୱୀ ଜନକତୁଲ୍ୟ ସାଧୁଙ୍କ ବିଷୟରେ କେତେ ପୁଣ୍ୟସ୍ମୃତି ମନେ ନ ପଡ଼ିଲା ! ପୁଣ୍ୟଚରିତ ଋଷିଙ୍କ ସାଧନକୁଟୀରରେ ପହଞ୍ଚି ବିବେକାନନ୍ଦଙ୍କ ହୃଦୟ ଶ୍ରଦ୍ଧାସମ୍ଭ୍ରମରେ ପୂରିଗଲା; ଆଉ ସତୀ ସାଧ୍ୱୀ ନାଗ ମହାଶୟଙ୍କ ସହଧର୍ମିଣୀ—ଆଜି ତାଙ୍କର ଆନନ୍ଦର ସୀମା ନାହିଁ ! ତାଙ୍କ ଇଷ୍ଟଦେବଙ୍କ ଦ୍ୱିତୀୟ ବିଗ୍ରହସ୍ୱରୂପ ସ୍ୱାମୀଜୀ ତାଙ୍କ କୁଟୀରରେ ଅତିଥି ! କିପରି ତାଙ୍କୁ ଅଭ୍ୟର୍ଥନା କରିବେ, କ'ଣ ଦେଇ ତାଙ୍କୁ ପରିତୃପ୍ତ କରିବେ, ଯେପରି କି ବୁଝିପାରୁ ନ ଥିଲେ । ଶ୍ରୀଶ୍ରୀଠାକୁରଙ୍କ ପ୍ରିୟତମ ପାଖଲୋକଙ୍କ ସେବା ନିମିତ୍ତ ଭକ୍ତି ଓ ଆନନ୍ଦରେ ଗଦ୍ ଗଦ୍ ହୋଇ ବିଭିନ୍ନ ପ୍ରକାର ଅନ୍ନ ବ୍ୟଞ୍ଜନ ପ୍ରସ୍ତୁତ କରିବାକୁ ବାହାରିଲେ । ଇତ୍ୟବସରରେ ସ୍ୱାମୀଜୀ ସଦଳବଳେ ପୁଷ୍କରିଣୀରେ ସ୍ନାନ କରିବାକୁ ଗଲେ; ସେ ଜଣେ ବାଳକ ପରି ଡେଇଁ ପହଁରିବା ଆରମ୍ଭ କରିଦେଲେ, ପାଣି ଫୋପାଡ଼ି ଖେଳ-କୌତୁକ ଆରମ୍ଭ କରିଦେଲେ । ଏ ଦୃଶ୍ୟ ଦେଖି କିଏ ମନେକରିବ ଯେ, ଏ ସେହି ବେଦାନ୍ତ-ଦୁନ୍ଦୁଭିନାଦରେ ଜଗତ୍-କମ୍ପନକାରୀ କୀର୍ତ୍ତିମାନ ସନ୍ନ୍ୟାସୀ ବିବେକାନନ୍ଦ—ଏ ଯେ ସେହି ଶ୍ରୀରାମକୃଷ୍ଣଙ୍କ ବଡ଼ ଆଦରର କିଶୋର-ବୟସ୍କ ଚପଳ ବାଳକ ! ସ୍ନାନପରେ ସ୍ୱାମୀଜୀ ଶୋଇପଡ଼ିଲେ । ନିଦ୍ରା—ଗଭୀର ନିଦ୍ରା; ବହୁଦିନ ପରେ ପଲ୍ଲୀର ନିଭୃତ କକ୍ଷକୁ ଆସି ଆଜି ବିବେକାନନ୍ଦଙ୍କୁ ବେଶ୍ ନିଦ ଲାଗିଗଲା । ଅନେକ ଦିନ ହେଲା ତାଙ୍କୁ ଭଲ ନିଦ ହୋଇ ନ ଥିଲା । କିପରି ବା ହେବ ? ଦିବସର କର୍ମ-କୋଳାହଳ

ଅବସାନ ହେବାପରେ ଯେତେବେଳେ ଶଯ୍ୟା ଗ୍ରହଣ କରୁଥିଲେ, ସେତେବେଳେ ମନରେ କେତେ ଚିନ୍ତା ଜାଗି ଉଠୁଥିଲା । ସମଗ୍ର ଭାରତର ଦୁଃଖ, ଦୈନ୍ୟ, ଅଧଃପତନର ଶୋଚନୀୟ ଚିତ୍ରଗୁଡ଼ିକ ଗୋଟି ଗୋଟି ହୋଇ ତାଙ୍କ ମାନସପଟରେ ଉଦିତ ହେଉଥିଲା । ବିଶ୍ୱବ୍ୟାପୀ ବିଶ୍ରାମର ସେହି ଶାନ୍ତ-ସ୍ତବ୍ଧ ମୁହୂର୍ତ୍ତରେ ତାଙ୍କ ବ୍ୟଥିତ ଚିତ୍ତରେ କି ବେଦନାବହ ଆଲୋଡ଼ନ ! ବିନିଦ୍ର ନୟନରେ ବିବେକାନନ୍ଦ ଭାବୁଥିଲେ, ''ତୁମ ଦୁଃଖ ମୋଚନ ପାଇଁ କ'ଣ କରିବି ମା ! ହାୟ ଆତ୍ମବିସ୍ମୃତ ଭାରତସନ୍ତାନ, ଏତେ ଡାକିଲେ ମଧ କୌଣସି ଜବାବ ମିଳୁନାହିଁ । ମା ! ପଞ୍ଜାବ, ବଙ୍ଗଳା, ବମ୍ବେ, ମାନ୍ଦ୍ରାଜ, ଯେଉଁ ଆଡ଼କୁ ଚାହୁଁଛି, ସେ ଆଡ଼େ ଯେ ଜରାଜୀର୍ଣ୍ଣ ସ୍ଥବିର ଅବସ୍ଥା । ଜାତିର ଏହି ଜଡ଼ତ୍ୱ ଭାଙ୍ଗିବ, ଏହି ଚେଷ୍ଟାରେ ପ୍ରାଣ ଦେବି; ସମସ୍ତଙ୍କୁ ଉତ୍ତିଷ୍ଠତ, ଜାଗ୍ରତ ଅଭୟବାଣୀ ଶୁଣାଇବି; ନୈରାଶ୍ୟର ଘନାନ୍ଧକାର ମଧ୍ୟରେ ବି ଆଶାର ଆଲୋକ ଆଣିବାକୁ ଚେଷ୍ଟା କରିବି; ଚେଷ୍ଟା ଓ ଉଦ୍ୟମ ବ୍ୟର୍ଥ ହେଉ, ଶତବାର ବିଫଳ ହେଉ, ଉଦ୍ଦେଶ୍ୟ ଛାଡ଼ିବି ନାହିଁ ।'' ଏହି ଚିନ୍ତାଭାର ଯାହାଙ୍କ ମସ୍ତିଷ୍କରେ, ତାଙ୍କର କିପରି ଭଲ ନିଦ ହେବ ?

ସାଢ଼େ ଦୁଇଟା ସମୟରେ ସୁପ୍ତୋତ୍‌ଥିତ ବିବେକାନନ୍ଦ ଜାଗ୍ରତ ହୋଇ ଖାଇବେ ବୋଲି କହିଲେ । ସବୁ ପ୍ରସ୍ତୁତ — କେବଳ ତାଙ୍କ ବିଶ୍ରାମରେ ବ୍ୟାଘାତ ନ ହେଉ, ସେଥିପାଇଁ ସମସ୍ତେ ଅପେକ୍ଷା କରିଥିଲେ । ବହୁଦିନ ପରେ ତାଙ୍କୁ ଭଲ ନିଦ ହୋଇଛି ବୋଲି ଆନନ୍ଦ ପ୍ରକାଶ କରି କରି ବିବେକାନନ୍ଦ ଖାଇ ବସିଲେ । କ୍ଷୁଧିତ ବାଳକ ପରି ଆଗ୍ରହରେ ଭୋଜନ କରି ସେ ପରମ ତୃପ୍ତି ଲାଭ କଲେ । ଏହାପରେ ନାଗମହାଶୟଙ୍କ ସହଧର୍ମିଣୀ ଦେଇଥିବା ଲୁଗାଖଣ୍ଡିକ ସମ୍ମାନ ସହକାରେ ମୁଣ୍ଡରେ ଗୁଡ଼ାଇ ଢାକାକୁ ଫେରିଆସିଲେ । ବେଲୁଡ଼ ମଠକୁ ଫେରିଆସି ସ୍ୱାମୀଜୀ ବହୁବାର ସନ୍ନ୍ୟାସୀ ଓ ବ୍ରହ୍ମଚାରୀମାନଙ୍କୁ ଦେଓଭୋଗ ଗଳ୍ପ ଶୁଣାଇ ଆନନ୍ଦ ଅନୁଭବ କରିଥିଲେ ।

ଦିନେ ଧର୍ମୋନ୍ମତ୍ତତା ସମ୍ବନ୍ଧରେ ଆଲୋଚନା କରୁକରୁ ସ୍ୱାମୀଜୀ କହିଥିଲେ, ''ଢାକା ମୋହିନୀବାବୁଙ୍କ ଘରକୁ ଦିନେ ଗୋଟିଏ ପିଲା କାହାର ଜଣଙ୍କ ଫଟୋ ଆଣି ମୋତେ ଦେଖାଇ କହିଲା, 'ମହାଶୟ, କହନ୍ତୁ ଏ କିଏ, ଅବତାର କି ନୁହେଁ ?' ମୁଁ ତାକୁ ଅନେକ ବୁଝାଇ କହିଲି, 'ମୁଁ କ'ଣ ଜାଣେ, ବାବା ?' ତିନିଚାରିଥର କହିବା ପରେ ବି ସେ ପିଲାଟି କୌଣସି ମତେ ନିଜ ଜିଦ୍ ଛାଡ଼ିଲା ନାହିଁ । ଅବଶେଷରେ ମୋତେ ବାଧ୍ୟ ହୋଇ କହିବାକୁ ହେଲା, 'ଏବେଠାରୁ ଭଲ କରି ଖିଆପିଆ କର, ତେବେ ଯାଇ ମସ୍ତିଷ୍କର ବିକାଶ ହେବ — ପୁଷ୍ଟିକର ଖାଦ୍ୟ ଅଭାବରୁ ତୋ ମସ୍ତିଷ୍କ ଶୁଖି ଯାଇଛି ।' ଏକଥା ଶୁଣି ବୋଧହୁଏ ପିଲାଟି ଅସନ୍ତୁଷ୍ଟ ହୋଇଥିବ । କ'ଣ କରିବି, ପିଲାଙ୍କୁ ଏପରି ନ କହିଲେ ସେମାନେ ଯେ କ୍ରମେ ପାଗଳ ହୋଇଯିବେ ! ଗୁରୁଙ୍କୁ ଲୋକେ ଅବତାର କହିପାରନ୍ତି; ଯାହା ଇଚ୍ଛା ତାହା ଧାରଣା କରିବା ଲାଗି ଚେଷ୍ଟା କରିପାରନ୍ତି; କିନ୍ତୁ ଭଗବାନଙ୍କ ଅବତାର

ଯେତେବେଳେ ଇଚ୍ଛା ସେତେବେଳେ, ଯେଉଁଠାରେ ଇଚ୍ଛା ସେଠାରେ ହୋଇପାରିବ ନାହିଁ । ଢାକାରେ ଶୁଣିଲି, ତିନି ଚାରିଗୋଟି ଅବତାର ଦେଖାଗଲେଣି ।''

## ଆସାମ ପ୍ରଦେଶରେ ଭ୍ରମଣ

ଢାକାରୁ ସ୍ୱାମୀଜୀ କାମାକ୍ଷା ପୀଠ ଓ ଚନ୍ଦ୍ରନାଥ ଦର୍ଶନ କରିବାକୁ ଗଲେ । ବାଟରେ ଗୋଆଲ୍‌ପଡ଼ା ଓ ଗୌହାଟୀରେ କେତେଦିନ ବିଶ୍ରାମ ନେଲେ । ଗୌହାଟୀଠାରେ ସ୍ୱାମୀଜୀ ତିନିଗୋଟି ବକ୍ତୃତା ଦେଇଥିଲେ; କିନ୍ତୁ ଦୁଃଖର ବିଷୟ, ଯୋଗ୍ୟ ବ୍ୟକ୍ତିଙ୍କ ଅଭାବରୁ ଏହାର ବିବରଣୀ ଲିଖିତ ଭାବରେ ନାହିଁ ।

ଢାକାରେ ବି ସ୍ୱାମୀଜୀଙ୍କ ଶରୀର ଭଲ ନ ଥିଲା । ରୋଗ କ୍ରମେ ବଢ଼ିଲା । କାମାକ୍ଷାରୁ ସ୍ୱାମୀଜୀ ଯେତେବେଳେ ଗୌହାଟୀକୁ ଫେରିଆସିଲେ, ସେତେବେଳେ ତାଙ୍କ ଅବସ୍ଥା ଏତେ ଖରାପ ଥିଲା ଯେ, ଭକ୍ତ ଓ ଶିଷ୍ୟମଣ୍ଡଳୀ ସମଧିକ ଚିନ୍ତିତ ହୋଇ ପଡ଼ିଲେ । ଶିଲଂର ଜଳବାୟୁ ସ୍ୱାମୀଜୀଙ୍କ ସ୍ୱାସ୍ଥ୍ୟ ପକ୍ଷରେ ଅନୁକୂଳ ହେବ ବୋଲି ବିବେଚନା କରି ସମସ୍ତେ ତାଙ୍କୁ ଶିଲଂ ଯିବା ଲାଗି ଅନୁରୋଧ କଲେ । ସ୍ୱାମୀଜୀ ରାଜି ହୋଇ ସଦଳବଳେ ଗୌହାଟିରୁ ଶିଲଂ ଅଭିମୁଖେ ଯାତ୍ରା କଲେ ।

ଆସାମର ତଦାନୀନ୍ତନ ଚିଫ୍ କମିଶନର ଭାରତହିତୈଷୀ ସାର ହେନ୍‌ରୀ କଟନ୍ ସ୍ୱାମୀଜୀଙ୍କ ଆଗମନ ସମ୍ବାଦ ପାଇ ତାଙ୍କ ଦର୍ଶନ ଲାଗି ବ୍ୟାକୁଳ ହୋଇ ପଡ଼ିଲେ । କଟନ୍ ସାହେବଙ୍କ ଅନୁରୋଧରେ ସ୍ୱାମୀଜୀ ଦିନେ ଗୋଟିଏ ବକ୍ତୃତା ଦେଲେ । ସ୍ଥାନୀୟ ଇଉରୋପୀୟ ବ୍ୟକ୍ତିବୃନ୍ଦ ସମସ୍ତେ ସଭାରେ ସମବେତ ହୋଇଥିଲେ ଏବଂ ଦେଶୀୟ ଶିକ୍ଷିତ ସମାଜର ପ୍ରତ୍ୟେକେ ଆଗ୍ରହ ସହକାରେ ସଭାରେ ଯୋଗଦାନ କରିଥିଲେ । ବକ୍ତୃତା ପରେ କଟନ୍ ସାହେବ ସ୍ୱାମୀଜୀଙ୍କୁ କୃତଜ୍ଞତାର ସହିତ ଧନ୍ୟବାଦ ଦେଇଥିଲେ । ସାହେବମାନେ ସମସ୍ୱରରେ କହିଲେ, ଭାରତୀୟ ଶିକ୍ଷା ଓ ସଭ୍ୟତାର ଏପରି ସୁନ୍ଦର ଓ ଯୁକ୍ତିପୂର୍ଣ୍ଣ ବ୍ୟାଖ୍ୟା ସେମାନେ କେଉଁଠି ହେଲେ ଶୁଣି ନ ଥିଲେ ।

ସାର୍ ହେନ୍‌ରୀ କଟନ୍ ଆଗରୁ ସ୍ୱାମୀଜୀଙ୍କ ସମ୍ବନ୍ଧରେ ଅନେକ ସମ୍ବାଦ ଶୁଣିଥିଲେ ଏବଂ ସ୍ୱଦେଶପ୍ରେମିକ ସନ୍ନ୍ୟାସୀଙ୍କ ବକ୍ତୃତାଦି ପାଠ କରି ଯଥେଷ୍ଟ ଶ୍ରଦ୍ଧାସମ୍ପନ୍ନ ହୋଇଥିଲେ । ଦିନେ ସେ ସ୍ୱାମୀଜୀଙ୍କ ବାସସ୍ଥଳରେ ତାଙ୍କ ସହିତ ଦେଖା କରିବାକୁ ଆସିଲେ ଏବଂ କଥାପ୍ରସଙ୍ଗରେ କହିଲେ, ''ସ୍ୱାମୀଜୀ ! ଇଉରୋପ ଓ ଆମେରିକାର ପ୍ରସିଦ୍ଧ ସ୍ଥାନଗୁଡ଼ିକ ପରିଦର୍ଶନ କରିବା ପରେ ଆପଣ ଏ ଜଙ୍ଗଲରେ କ'ଣ ଦେଖିବାକୁ ଆସିଛନ୍ତି ?'' ସ୍ୱାମୀଜୀ ଉଚ୍ଚହାସ୍ୟ କରି ତାଙ୍କୁ କୁଣ୍ଢାଇ ପକାଇ କହିଲେ, ''ଆପଣଙ୍କ ପରି ଋଷି ଯେଉଁଠାରେ ରହନ୍ତି, ତାହା ତୀର୍ଥସ୍ଥାନ—ମୁଁ ତୀର୍ଥ ଦର୍ଶନ କରିବାକୁ ଆସିଛି ।'' ସ୍ୱାମୀଜୀ ଓ କଟନ୍ ସାହେବଙ୍କ ହାସ-ପରିହାସ ଓ ସରଳ କଥୋପକଥନ ଶୁଣି ଉପସ୍ଥିତ ସମସ୍ତେ ମନେକଲେ, ଉଭୟଙ୍କର ଯେପରି କି ବହୁକାଳ ଧରି ପରସ୍ପର ସହ ପରିଚୟ;

ସଙ୍କୋଚ ଓ ସମ୍ଭ୍ରବ ଭାବ ନାହିଁ; ଯେପରି ଦୁଇଜଣ ବାଲ୍ୟବନ୍ଧୁ ବହୁକାଳ ପରେ ଏକାଠି ହୋଇଛନ୍ତି । ସ୍ୱାମୀଜୀଙ୍କ ଦୈହିକ ଅବସ୍ଥା ଦେଖି କଟନ୍ ସାହେବ ସ୍ଥାନୀୟ ସିଭିଲ୍ ସର୍ଜନ୍‌ଙ୍କୁ ତାଙ୍କ ଚିକିତ୍ସା ଲାଗି ନିର୍ଦ୍ଦେଶ ଦେଲେ । ସେ ପ୍ରତ୍ୟହ ଦୁଇଓଳି ସ୍ୱାମୀଜୀଙ୍କ ତତ୍ତ୍ୱାବଧାନ କରିବାକୁ ଲାଗିଲେ ।

ଶିଲଂ ସ୍ୱାସ୍ଥ୍ୟକର ସ୍ଥାନ ହେଲେ ହେଁ ସ୍ୱାମୀଜୀଙ୍କ ସ୍ୱାସ୍ଥ୍ୟୋନ୍ନତିର କୌଣସି ଲକ୍ଷଣ ଦେଖାଗଲା ନାହିଁ, ବରଂ ଅବସ୍ଥା ବେଶୀ ବେଶୀ ଖରାପ ହେବାକୁ ଲାଗିଲା । ଦିନେ ରାତ୍ରିରେ ଏତେ ଦୂର ଶ୍ୱାସ-କଷ୍ଟ ହେଲା ଯେ, ତାଙ୍କ ଶିଷ୍ୟବୃନ୍ଦ ଭଗ୍ନ ହୃଦୟରେ ପ୍ରତିମୂହୂର୍ତ୍ତରେ ତାଙ୍କ ଦେହତ୍ୟାଗ-ଆଶଙ୍କାରେ ଶଙ୍କିତ ହୋଇପଡ଼ିଲେ । ସ୍ୱାମୀଜୀ ମଧ୍ୟ ଯେପରି କି ଜୀବନର ଆଶା ତ୍ୟାଗ କରି ଅତି କଷ୍ଟରେ ତକିଆ ଉପରେ ଭରାଦେଇ ଶେଷ ନିଃଶ୍ୱାସ ତ୍ୟାଗ କରିବାକୁ ଅପେକ୍ଷା କରି ରହିଲେ । କିଛିକ୍ଷଣ ପରେ ନିଜ ମନକୁ ମନ କହି ଉଠିଲେ, ‘‘ଯଦି ମରିଯାଏ, ତେବେ ଯାଏ ଆସେ କ’ଣ ? ମୁଁ ଜଗତକୁ ବହୁବର୍ଷ ପର୍ଯ୍ୟନ୍ତ ଚିନ୍ତା କରିବା ଲାଗି ଉପାଦାନ ଦେଇଯାଇଛି ।’’

କ୍ରମେ ରାତ୍ରି—ଗଭୀର ରାତ୍ରି ହେଲା, କିନ୍ତୁ ଯନ୍ତ୍ରଣାର କିଛିମାତ୍ର ଉପଶମ ହେଲା ନାହିଁ । ଜଣେ ବାଳବ୍ରହ୍ମଚାରୀ ଉଭୟ ହସ୍ତରେ ତାଙ୍କ ମୁଣ୍ଡ ଧରି ସିଧା ଠିଆ ହୋଇ ରହିଲେ । ମହାପୁରୁଷଙ୍କର ଏହି ରୋଗ-ଯନ୍ତ୍ରଣା ଦେଖି ତାଙ୍କ ହୃଦୟ ଶତଧା ବିଦୀର୍ଣ୍ଣ ହୋଇଗଲା; କେବଳ ମନରେ ଆସୁଥିଲା, କ’ଣ କଲେ ଏ ଯନ୍ତ୍ରଣାର ଉପଶମ ହେବ ? ସରଳ, ଭକ୍ତିମାନ ବାଳକ କାତର ହୋଇ ଶ୍ରୀଭଗବାନଙ୍କ ଚରଣରେ ପ୍ରାର୍ଥନା କଲେ, ‘‘ହେ ଭଗବାନ, ଦୟା କରି ଏହି ରୋଗଭାର ମୋତେ ଦେଇ ଦିଅ; ସ୍ୱାମୀଜୀ ସୁସ୍ଥ ହୋଇ ଉଠନ୍ତୁ ।’’ ସହସା ସ୍ୱାମୀଜୀଙ୍କ ପଦ୍ମପଲାଶ-ଲୋଚନଦ୍ୱୟ ଖୋଲିଗଲା । କରୁଣାର୍ଦ୍ର ଦୃଷ୍ଟିରେ ବାଳକକୁ ଚାହିଁ କହିଲେ, ‘‘ବତ୍ସ ! ମୁଁ ଦୁଃଖ-କଷ୍ଟ ଭୋଗ କରିବା ଲାଗି ଦେହ ଧାରଣ କରିଛି, ତୁମେ ଅଧୀର ହୁଅ ନାହିଁ ।’’ ବାଳକର ସକରୁଣ ମୌନ-ମିନତି ଶ୍ରୀଭଗବାନ ଶ୍ରବଣ କଲେ । ପରିପୂର୍ଣ୍ଣ ପ୍ରାଣଢ଼ଳା ଗୁରୁଭକ୍ତିର ଆବେଗ କ’ଣ ବ୍ୟର୍ଥ ହୋଇପାରେ ? ପ୍ରଭାତ ହେବା ସଙ୍ଗେ ସଙ୍ଗେ ସ୍ୱାମୀଜୀ ଅପେକ୍ଷାକୃତ ସୁସ୍ଥ ହେଲେ—ଶ୍ୱାସକଷ୍ଟ ଦୂର ହୋଇଗଲା । ଉତ୍କଣ୍ଠିତ ଶିଷ୍ୟଗଣ ବିପଦରୁ ଉଦ୍ଧାର ପାଇ କିଞ୍ଚିତ୍ ନିଶ୍ଚିନ୍ତ ହେଲେ ।

## ବେଲୁଡ଼ ପ୍ରତ୍ୟାବର୍ତ୍ତନ—ବହୁମୂତ୍ର ରୋଗ—ଲୋକ ଶିକ୍ଷା

ପୂର୍ବବଙ୍ଗ ଓ ଆସାମ ଭ୍ରମଣ ସମାପ୍ତ କରି ସ୍ୱାମୀଜୀ ବେଲୁଡ଼ ମଠକୁ ଫେରି ଆସିଲେ । ସ୍ୱାମୀଜୀ ଆଗରୁ ବହୁମୂତ୍ର ରୋଗ ଭୋଗୁଥିଲେ, ଏବେ ତାର ଫଳ ସ୍ୱରୂପ ଶୋଥ ରୋଗ ଦେଖାଗଲା । ଶଙ୍କିତ ଗୁରୁଭ୍ରାତାମାନେ ସତ୍ୱର ସୁଚିକିତ୍ସାର ବନ୍ଦୋବସ୍ତ କଲେ ଏବଂ ସର୍ବପ୍ରକାର କାର୍ଯ୍ୟରୁ ତାଙ୍କୁ ଅବସର ଗ୍ରହଣ କରିବା ନିମିତ୍ତ ଅନୁରୋଧ କଲେ । ସେମାନଙ୍କ ଆଗ୍ରହାତିଶଯ୍ୟ ହେତୁ ସ୍ୱାମୀଜୀ

ପ୍ରଚାରକାର୍ଯ୍ୟ ପରିତ୍ୟାଗ କରି ମଠରେ ଅବସ୍ଥାନ କଲେ—କବିରାଜ ଚିକିତ୍ସା ଚାଲିଲା । କବିରାଜୀ ଔଷଧ ବ୍ୟବହାର ଫଳରେ ଅଳ୍ପ ଉପକାର ହେଲା ସତ; କିନ୍ତୁ ସାମାନ୍ୟ ଜଡ଼ଦେହ ନିମିତ୍ତ ଚିକିତ୍ସକଙ୍କ ଆଜ୍ଞାନୁବର୍ତ୍ତୀ ହୋଇ କଠୋର ନିୟମ ପ୍ରତିପାଳନ କରିବା ତାଙ୍କ ପକ୍ଷରେ ଅତି କଷ୍ଟକର ବିଷୟ ହୋଇଗଲା । କେହି ତାଙ୍କୁ ଔଷଧଦ୍ୱାରା ରୋଗ କମୁଛି କି ନାହିଁ ପଚାରିଲେ ଉତ୍ତର ପାଉଥିଲେ, ''ଉପକାର କି ଅପକାର ଜାଣେ ନାହିଁ । ଗୁରୁଭାଇମାନଙ୍କ ଆଜ୍ଞା ପାଳନ କରିଯାଉଛି ।'' ତାଙ୍କ ଶାରୀରିକ ଅସୁସ୍ଥତା ଯୋଗୁଁ ସମସ୍ତେ ବିମର୍ଷ ଏହି ଦୃଶ୍ୟ ଦେଖି ସ୍ୱାମୀଜୀ ବେଳେ ବେଳେ ବିଚଳିତ ହୋଇଯାଉଥିଲେ । ହାସ୍ୟକୌତୁକାଳାପରେ ସର୍ବଦା ପ୍ରମାଣ କରିବାକୁ ଚେଷ୍ଟା କରୁଥିଲେ ଯେ, ତାଙ୍କ ବ୍ୟାଧିକୁ ସମସ୍ତେ ଯେପରି ଭାବୁଛନ୍ତି, ସେପରି ସାଂଘାତିକ ନୁହେଁ । ତାଙ୍କ ପାଇଁ ଅନ୍ୟମାନେ କଷ୍ଟ ପାଆନ୍ତୁ, ଏ କଥା ସେ କେବେ ଚାହୁଁ ନ ଥିଲେ ।

ଏହି ସମୟରେ ଅନେକ ଲୋକ ତାଙ୍କ ଦର୍ଶନାର୍ଥୀ ଓ ଆଶୀର୍ବାଦାକାଙ୍‌କ୍ଷୀ ହୋଇ ମଠକୁ ଆସୁଥିଲେ । ସ୍ୱାମୀଜୀ ପ୍ରତ୍ୟେକଙ୍କ ସହିତ ଆଳାପ କରି ଧର୍ମୋପଦେଶ ଦେଉଥିଲେ । ଦେଶର କଲ୍ୟାଣ-କାମନାରେ ସେବାବ୍ରତ ଗ୍ରହଣ କରିବା ନିମିତ୍ତ ଯୁବକମାନଙ୍କୁ ଉତ୍ସାହିତ କରୁଥିଲେ । ବିଶ୍ୱବିଦ୍ୟାଳୟର ଛାତ୍ରମାନେ ଆସିଲେ ତ କଥା ନ ଥିଲା—ସ୍ୱାମୀଜୀ ପ୍ରବଳ ଆଗ୍ରହ ସହକାରେ ସେମାନଙ୍କ ସମ୍ମୁଖରେ ଓଜସ୍ୱିନୀ ଭାଷାରେ ବ୍ରହ୍ମଚର୍ଯ୍ୟର ମହିମା କୀର୍ତ୍ତନ କରୁଥିଲେ । ସବଳ, ଶକ୍ତିମାନ, ଜିତେନ୍ଦ୍ରିୟ ହେବା ନିମିତ୍ତ ପ୍ରତ୍ୟେକଙ୍କୁ ବ୍ୟକ୍ତିଗତ ଭାବେ ଉପଦେଶ ଦେଉଥିଲେ । କେତେବେଳେ ଅବା ଘଣ୍ଟା ଘଣ୍ଟା ଧରି ସେ ଦେଶର ଦୁର୍ଦ୍ଦଶା ଓ ତାହାର ପ୍ରତିକାରର ଉପାୟ ସମ୍ବନ୍ଧରେ ଶିକ୍ଷିତ ଯୁବକମାନଙ୍କ ସହିତ ଆଲୋଚନା କରୁଥିଲେ । ଏଭଳି ଆଲୋଚନା ସ୍ୱାସ୍ଥ୍ୟ ପକ୍ଷରେ ଅନିଷ୍ଟକର ଜାଣି ଅନେକ ସମୟରେ ତାଙ୍କ ଗୁରୁଭ୍ରାତାମାନେ ଏଥିରୁ ତାଙ୍କୁ ନିବୃତ୍ତ କରିବା ଲାଗି ଚେଷ୍ଟା କରୁଥିଲେ । କୌଣସି ଦିନ ସ୍ୱାମୀଜୀ ସେମାନଙ୍କ ଅନୁରୋଧରେ ନିରସ୍ତ ହେଉଥିଲେ, କେବେ ଅବା ବିରକ୍ତି ସହକାରେ କହୁଥିଲେ, ''ତୋ ନିୟମ ଫିୟମ ରଖ୍ ଦେ ! ଏମାନଙ୍କ ଭିତରୁ ଯଦି ଜଣେ ମାତ୍ର ଠିକ୍ ଆଦର୍ଶ ଜୀବନଯାପନ କରିବା ଲାଗି ପ୍ରସ୍ତୁତ ହୋଇଯାଏ, ତାହାହେଲେ ମୋର ସମସ୍ତ ଶ୍ରମ ସାର୍ଥକ ! ପରର କଲ୍ୟାଣ ଲାଗି ହେଲା ଅବା ଦେହପତନ, ସେଥିରେ ଯାଏ ଆସେ କେତେ ! ଚୁପ୍ କରି ଘରର ଦ୍ୱାର ବନ୍ଦ କରି ବଞ୍ଚି ରହିଲେ ଫଳ କ'ଣ ? ଏମାନେ କେତେଦୂରରୁ କେତେକଷ୍ଟ କରି ମୋଠାରୁ ଦିପଦ କଥା ଶୁଣିବାକୁ ଆସିଛନ୍ତି, ଆଉ ଏପରି ଭାବରେ ଫେରିଯିବେ ? ତୁମେ ଯାହା ପାରୁଛ କର, ମୁଁ ଜଡ଼ପରି ଚୁପ୍ ହୋଇ ବସି ରହିପାରିବି ନାହିଁ ।'' ଏବେ ମଧ୍ୟ ଏହି ସବୁ ସୌଭାଗ୍ୟବାନ ଯୁବକମାନଙ୍କ ମଧ୍ୟରୁ ଅନେକେ ସ୍ୱାମୀଜୀଙ୍କ ଅପାର ଦୟା, ସସ୍ନେହ ବ୍ୟବହାର କଥା କୃତଜ୍ଞ ଚିତ୍ତରେ କହିଥାନ୍ତି ! ପତିତ, ଅଧମ, ଦୁର୍ବଳ ବୋଲି ସ୍ୱାମୀଜୀ କାହାକୁ ଉପହାସ

ବା ଅବଜ୍ଞା କରୁ ନ ଥିଲେ । ତାଙ୍କ ଦୃଷ୍ଟିରେ କେହି ଅନଧିକାରୀ ବିବେଚିତ ହେଉ ନ ଥିଲା । କେହି କେହି ଅତୀତର ଦୁଷ୍କୃତ ବ୍ୟକ୍ତ କରି ଅନୁତାପ କଲେ ସ୍ୱାମୀଜୀ ଭର୍ତ୍ସନା କରି କହୁଥିଲେ, ''ଛିଃ, ତୁମେ ନିଜକୁ ଦୁର୍ବଳ ବା ଦୋଷୀ ମନେ କରୁଛ କାହିଁକି ? ଯାହା କରିଛ, ଭଲ କରିଛ; ଏବେ ଆହରି ଭଲ ହୁଅ ।'' ଯେଉଁମାନେ ଜୀବନରେ ଅନ୍ତତଃ ଥରେ ଏହି ମହାପୁରୁଷଙ୍କୁ ଦେଖିଛନ୍ତି, କ୍ଷଣେ ମାତ୍ର ତାଙ୍କ ଶ୍ରୀମୁଖବିଗଳିତ ଆଶା ଓ ଭରସାର ବାଣୀ ଶୁଣିଛନ୍ତି, ସେମାନେ କହୁଥିବାର ଶୁଣାଅଛି, ''କେତେ ବଡ଼ ବଡ଼ ସାଧୁ–ସନ୍ନ୍ୟାସୀ, ପଣ୍ଡିତ ଓ ବକ୍ତା ଦେଖିଲୁ; କିନ୍ତୁ ବିବେକନନ୍ଦଙ୍କ ପରି ସହୃଦୟ, ବ୍ୟଥାରେ ବ୍ୟଥିତ, ଦରିଦ୍ର ପତିତ କାଙ୍ଗାଳର ବନ୍ଧୁ ଆଉ ଜଣକୁ ଏ ଆଖି ଦେଖି ନାହିଁ ।''

## ଅଦ୍ଭୁତ ସ୍ମୃତିଶକ୍ତିର ଆଉ ଗୋଟିଏ ଦୃଷ୍ଟାନ୍ତ

ବିବେକାନନ୍ଦଙ୍କ ପରି ବ୍ୟକ୍ତିଙ୍କୁ ସବୁପ୍ରକାର ପରିଶ୍ରମରୁ ବିରତ ରଖିବା ବାସ୍ତବିକ୍ ଅସାଧ ବ୍ୟାପାର ଥିଲା । ଅନ୍ୟ କୌଣସି କଥା ଦୂରେ ଥାଉ, ଏହି ସମୟରେ ସେ ଖଣ୍ଡିଏ ପୁସ୍ତକ ଅଧ୍ୟୟନ କରିବା ଲାଗି କି କଠୋର ପରିଶ୍ରମ କରୁଥିଲେ, ତାହା ଭାବିଲେ ଅବାକ୍ ହେବାକୁ ପଡ଼େ । 'ସ୍ୱାମୀଜୀ–ଶିଷ୍ୟ ସମ୍ବାଦର' ସଂକଳକ ପୂଜନୀୟ ଶ୍ରୀଯୁକ୍ତ ଶରତ୍‌ଚନ୍ଦ୍ର ଚକ୍ରବର୍ତ୍ତୀ ଏହି ପୁସ୍ତକରେ ଲେଖିଛନ୍ତି, ''କବିରାଜୀ ଔଷଧର କଠୋର ନିୟମ ପାଳନ କରିବାକୁ ଯାଇ ସ୍ୱାମୀଜୀଙ୍କର ବର୍ତ୍ତମାନ ଆହାର ନିଦ୍ରା ନାହିଁ ଏବଂ ନିଦ୍ରାଦେବୀ ତାଙ୍କୁ ବହୁକାଳ ହେଲା ଏକପ୍ରକାର ତ୍ୟାଗ କରିଛନ୍ତି; କିନ୍ତୁ ଏହି ଅନାହାର ଅନିଦ୍ରାରେ ମଧ୍ୟ ସ୍ୱାମୀଜୀଙ୍କ ପରିଶ୍ରମର ବିରାମ ନ ଥିଲା । କେତେଦିନ ହେଲା, ମଠରେ ନୂଆ 'Encyclopedia Britanica' କିଣା ହୋଇଥାଏ; ନୂଆ ଚକ୍ ଚକ୍ ବହିଗୁଡ଼ିକ ଦେଖି ଶିଷ୍ୟ ସ୍ୱାମୀଜୀଙ୍କୁ କହିଲେ, 'ଏତେ ବହି ଗୋଟିଏ ଜୀବନ କାଳ ମଧ୍ୟରେ ପଢ଼ିବା ଅସମ୍ଭବ ।' ଶିଷ୍ୟ ସେତେବେଳେ ବି ଜାଣି ନାହାନ୍ତି ଯେ, ସ୍ୱାମୀଜୀ ଏହି ବହିଗୁଡ଼ିକ ମଧ୍ୟରୁ ଇତିମଧ୍ୟରେ ଦଶଖଣ୍ଡ ଶେଷ କରି ଏକାଦଶ ଖଣ୍ଡ ପଢ଼ିବାକୁ ଆରମ୍ଭ କରିଛନ୍ତି ।

ସ୍ୱାମୀଜୀ—କ'ଣ କହିଲ ? ଏହି ଦଶଖଣ୍ଡ ବହିରୁ ମୋତେ ଯାହା ଇଚ୍ଛା ପଚାର ସବୁ କହିଦେବି ! ଶିଷ୍ୟ ଅବାକ୍ ହୋଇ ପଚାରିଲେ, 'ଆପଣ କ'ଣ ଏହି ବହିଗୁଡ଼ିକ ପଢ଼ି ସାରିଲେଣି ?'

ସ୍ୱାମୀଜୀ—ନ ପଢ଼ି କହୁଛି ନା କ'ଣ ?

ଏହାପରେ ସ୍ୱାମୀଜୀଙ୍କ ଆଦେଶାନୁସାରେ ଶିଷ୍ୟ ଏହି ବହିଗୁଡ଼ିକରୁ ବାଛି ବାଛି କଠିନ ବିଷୟରେ ପଚାରିବାକୁ ଆରମ୍ଭ କଲେ । ଆଶ୍ଚର୍ଯ୍ୟର କଥା, ସ୍ୱାମୀଜୀ ଏହି ବିଷୟଗୁଡ଼ିକର ପୁସ୍ତକ ଲିଖିତ ମର୍ମ ତ କହିଦେଲେ, ତାହା ଉପରେ ସ୍ଥାନେ ସ୍ଥାନେ ଏହି ବହିର ଭାଷା ପର୍ଯ୍ୟନ୍ତ କହିଗଲେ । ଶିଷ୍ୟ ଏହି ବଡ଼ ବଡ଼ ଦଶଖଣ୍ଡ

ବହି ମଧ୍ୟରୁ ପ୍ରତ୍ୟେକରୁ ଗୋଟିଏ ଦୁଇଟି ବିଷୟ ପଚାରିଲେ ଏବଂ ସ୍ୱାମୀଜୀଙ୍କ ଅସାଧାରଣ ଧୀ ଓ ସ୍ମୃତିଶକ୍ତି ଦେଖି ଅବାକ୍ ହୋଇ ବହିଗୁଡ଼ିକ ରଖିଦେଲେ ଓ କହିଲେ, 'ଏହା ମଣିଷର ଶକ୍ତି ନୁହେଁ ।'

ସ୍ୱାମୀଜୀ—ଦେଖିଲ, କେବଳ ବ୍ରହ୍ମଚର୍ଯ୍ୟ ଠିକ୍ ଠିକ୍ ପାଳନ କରିପାରିଲେ, ସମସ୍ତ ବିଦ୍ୟା ମୁହୂର୍ତ୍ତକରେ ଆୟତ୍ତ ହୋଇଯାଏ—ମଣିଷ ଶ୍ରୁତିଧର, ସ୍ମୃତିଧର ହୋଇଯାଏ । ଏହି ବ୍ରହ୍ମଚର୍ଯ୍ୟର ଅଭାବରୁ ଆମ ଦେଶ ଧ୍ୱଂସ ହୋଇଗଲା ।''

## ରକ୍ଷଣଶୀଳ ହିନ୍ଦୁ ସମାଜର ନିନ୍ଦା ଓ ବିବେକାନନ୍ଦଙ୍କ ଉପେକ୍ଷା

କ୍ରମେ ଜୁଲାଇ ଓ ଅଗଷ୍ଟ ମାସ ବିତିଗଲା । ସ୍ୱାମୀଜୀଙ୍କ ସ୍ୱାସ୍ଥ୍ୟ ଏହି ସମୟରେ ପୂର୍ବାପେକ୍ଷା ବିଶେଷ ଉନ୍ନତି କରିଥିଲା । ସେ ପ୍ରତ୍ୟହ ସକାଳ ଓ ସନ୍ଧ୍ୟାରେ ମଠରୁ ଯାଇ ବଡ଼ ରାସ୍ତାରେ ବୁଲୁଥିଲେ । ଏହିପରି ଭ୍ରମଣ ସମୟରେ କେତେବେଳେ ଅବା ତାଙ୍କ ଗୁରୁଭ୍ରାତା ବା ଶିଷ୍ୟଗଣ ସଙ୍ଗୀ ହେଉଥିଲେ । ସ୍ୱାମୀଜୀ ସେମାନଙ୍କ ସହିତ ନାନା ପ୍ରକାର ଆଲୋଚନା କରୁଥିଲେ, କେବେ କେବେ ଗଭୀର ଚିନ୍ତାମଗ୍ନ ହୋଇ ସଙ୍ଗୀମାନଙ୍କ ସହିତ ଉଦାସୀନ ପରି ବ୍ୟବହାର କରୁଥିଲେ । ମଠର ସନ୍ନ୍ୟାସୀ ଓ ବ୍ରହ୍ମଚାରୀମାନଙ୍କ ପକ୍ଷରେ ସ୍ୱାମୀଜୀଙ୍କ ନିରନ୍ତର ଉପସ୍ଥିତି ହିଁ ଏକାଧାରରେ ପ୍ରଚୁର ଶିକ୍ଷାଲାଭ ଓ ନିରବଚ୍ଛିନ୍ନ ଆନନ୍ଦର ବିଷୟ ଥିଲା । ସେ କେବେ ଅବା ମଠର ଗୃହସ୍ଥଳୀ ସମ୍ବନ୍ଧୀୟ କୌଣସି କୌଣସି କର୍ମ ସ୍ୱହସ୍ତରେ ସମ୍ପାଦନ କରୁଥିଲେ, ଘର ଓଳାଇ ଦେଉଥିଲେ, ମାଟି ହାଣି ଫଳମୂଳ ମଞ୍ଜି ବୁଣୁଥିଲେ ଏବଂ ଅନେକ ସମୟରେ ଉତ୍ସାହ ସହକାରେ ରନ୍ଧନ କରି ସନ୍ନ୍ୟାସୀମାନଙ୍କୁ ଭୋଜନ କରାଇ ଆନନ୍ଦ ଅନୁଭବ କରୁଥିଲେ । ମଠରେ ସ୍ୱାମୀଜୀଙ୍କ ଆଡ଼ମ୍ବରହୀନ ଜୀବନଯାପନ-ପ୍ରଣାଳୀ ଓ ଏହି ସମସ୍ତ କ୍ଷୁଦ୍ର କ୍ଷୁଦ୍ର କାର୍ଯ୍ୟାନୁଷ୍ଠାନ ତରୁଣ ସନ୍ନ୍ୟାସୀଗଣ ପରମଶିକ୍ଷା ଦୃଷ୍ଟିରୁ ଗ୍ରହଣ କରିଥିଲେ ।

ବେଲୁଡ଼ ମଠର ପ୍ରତିଷ୍ଠା ସଙ୍ଗେ ସଙ୍ଗେ ହିନ୍ଦୁ ସମାଜର ଦୃଷ୍ଟି ମଧ୍ୟ ଏହି ଅନୁଷ୍ଠାନ ଉପରେ ପଡ଼ିଲା । ସନ୍ନ୍ୟାସୀମାନଙ୍କ ଉଦାର ଭାବ, ଦେଶାଚାର ଓ ଲୋକାଚାର ସମ୍ମତ କେତେଗୋଟି ଆଚାର ନିୟମ ପ୍ରତି ଉଦାସୀନତା—ବିଶେଷତଃ ଆହାର ସମ୍ବନ୍ଧରେ ଜନ୍ମଗତ ଓ ଜାତିଗତ ଭେଦବୁଦ୍ଧି ସଂପୂର୍ଣ୍ଣ ପରିବର୍ଜନ—ଏହି ସମସ୍ତ ବିଷୟ ନେଇ ନାନା ସ୍ଥାନରେ ଆଲୋଚନା ହେଲା । ବିଲାତ-ଫେରନ୍ତା ବିବେକାନନ୍ଦ ଓ ତାଙ୍କ ସଙ୍ଗୀମାନଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ ନାନାପ୍ରକାର ଅଳୀକ କାହାଣୀର ସୃଷ୍ଟି ହୋଇ ଜନସାଧାରଣଙ୍କ ମଧ୍ୟରେ ପ୍ରଚାରିତ ହେଲା । ଏହିସବୁ କୁତ୍ସାକୁ ବିଶ୍ୱାସ କରି ଶାସ୍ତ୍ରାନଭିଜ୍ଞ, ଆଚାରସର୍ବସ୍ୱ ଅନେକେ ସ୍ୱାମୀଜୀଙ୍କ ମହତ୍ ଉଦ୍ଦେଶ୍ୟ ହୃଦୟଙ୍ଗମ କରିବାକୁ ଅସମର୍ଥ ହୋଇ ଅଯଥା ନିନ୍ଦାବାଦ କରିଥିଲେ । ''ଚଳନ୍ତି ନୌକାର ଆରୋହୀମାନେ ବେଲୁଡ଼ ମଠ ଦେଖିବା ମାତ୍ରେ ନାନାପ୍ରକାର ଥଟ୍ଟା-ତାମସା କରିବାକୁ ଏବଂ ଏପରି କି ବେଳେ ବେଳେ ଅଳୀକ ଅଶ୍ଳୀଳ କୁତ୍ସାର

ଅବତାରଣା କରି ନିଷ୍କଳଙ୍କ ସ୍ୱାମୀଜୀଙ୍କ ଅମଳ-ଧବଳ-ଚରିତ୍ରକୁ ସମାଲୋଚନା କରିବାକୁ କୁଣ୍ଠିତ ହେଉ ନ ଥିଲେ ।'' ଭକ୍ତମାନଙ୍କ ମଧ୍ୟରୁ ଅନେକେ ମଠକୁ ଆସିବାବେଳେ ଏହି ସମାଲୋଚନା ଶୁଣିବାକୁ ପାଉଥିଲେ । କେହି କେହି ବ୍ୟଥିତ ହୃଦୟରେ ଏହି କଥା ସ୍ୱାମୀଜୀଙ୍କୁ ଜଣାଉଥିଲେ । ସ୍ୱାମୀଜୀ ଉପେକ୍ଷା କରି ଉତ୍ତର ଦେଉଥିଲେ, ''ହାତୀ ଚଲେ ବଜାର ମେ, କୁତ୍ତା ଭୁକେ ହଜାର । ସାଧୁଓଁକା ଦୁର୍ଭାବ ନେହିଁ, ଯବ ନିନ୍ଦେ ସଂସାର ।'' କେତେବେଳେ ବା କହୁଥିଲେ, ''ଦେଶରେ କୌଣସି ନୂତନ ଭାବ ପ୍ରଚାରିତ ହେବାବେଳେ ତାହା ବିରୋଧରେ ପ୍ରାଚୀନ ପନ୍ଥାବଲମ୍ବୀମାନଙ୍କ ଆନ୍ଦୋଳନ ପ୍ରକୃତିର ନିୟମ । ଜଗତର ଧର୍ମ-ସଂସ୍ଥାପକ ମାତ୍ରକେ ଏହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି । Persecution (ଅନ୍ୟାୟ ଅତ୍ୟାଚାର) ନ ହେଲେ ଜଗତର ହିତକର ଭାବଗୁଡ଼ିକ ସମାଜର ଅନ୍ତଃସ୍ଥଳରେ ସହଜ ଭାବରେ ପ୍ରବେଶ କରିପାରେ ନାହିଁ ।'' ସୁତରାଂ ଇତର ସାଧାରଣଙ୍କ ତୀବ୍ର ସମାଲୋଚନା ଓ କୁତ୍ସାରଟନାରେ ସ୍ୱାମୀଜୀ ତିଳେମାତ୍ର ବିଚଳିତ ହେଲେ ନାହିଁ ଏବଂ ଏଗୁଡ଼ିକୁ ସେ ତାଙ୍କ ନବଭାବ ପ୍ରଚାରର ସହାୟକ ବୋଲି ମନେକରି ଏହା ବିରୋଧରେ କୌଣସି ପ୍ରତିବାଦ ପର୍ଯ୍ୟନ୍ତ କଲେ ନାହିଁ, ଏପରି କି ତାଙ୍କ ପଦାଶ୍ରିତ ସନ୍ନ୍ୟାସୀ ଓ ଗୃହୀମାନଙ୍କୁ ମଧ୍ୟ ତାହା ବିରୋଧରେ କୌଣସି ପ୍ରକାର ପ୍ରତିବାଦ କରିବାକୁ ନିଷେଧ କରିଥିଲେ । ସେ କେବଳ କହୁଥିଲେ, ''ଫଳାଭିସନ୍ଧିହୀନ ହୋଇ କାମ କରିଯାଅ, ଦିନେ ଏହାର ଫଳ ନିଶ୍ଚୟ ମିଳିବ । ନ ହି କଲ୍ୟାଣକୃତ୍ କଶ୍ଚିତ୍ ଦୁର୍ଗତିଂ ତାତ ଗଚ୍ଛତି ।''

## ବେଲୁଡ଼ ମଠରେ ଦୁର୍ଗାପୂଜା

ସ୍ୱାମୀଜୀଙ୍କ ମୃତ୍ୟୁ ପୂର୍ବରୁ ହିନ୍ଦୁ ସମାଜର ଏହି ଭ୍ରମ ଅନ୍ତର୍ହିତ ହୋଇଥିଲା ଏବଂ ଏହି ବର୍ଷ ସ୍ୱାମୀଜୀ ମଠରେ ଶାସ୍ତ୍ରମତେ ଶ୍ରୀଶ୍ରୀଦୁର୍ଗାପୂଜା କରିବାରୁ ଅନେକ ଅଜ୍ଞ ଲୋକ ନିଜ ନିଜର ଭ୍ରମ ବୁଝିପାରି ଅନୁତପ୍ତ ହୋଇଥିଲେ ।

ସ୍ୱାମୀଜୀ ବର୍ତ୍ତମାନ ସମାଜର ସଂକୀର୍ଣ୍ଣତା-ପ୍ରସୂତ ଶାସ୍ତ୍ରବିରୁଦ୍ଧ କେତେଗୁଡ଼ିଏ ଆଚାର-ନିୟମର ତୀବ୍ର ସମାଲୋଚନା କରୁଥିଲେ ଏବଂ ଏହିସବୁ ଆଚାର-ନିୟମର ଗଣ୍ଡି ଭାଙ୍ଗି ଉଦାର ଓ ପ୍ରଶସ୍ତତର ଭିତ୍ତି ଉପରେ ସାମାଜିକ ଜୀବନକୁ ପ୍ରତିଷ୍ଠା କରିବା ନିମିତ୍ତ ଶିଷ୍ୟମାନଙ୍କୁ ଉପଦେଶ ଦେଉଥିଲେ । ଅର୍ଥହୀନ ଅସ୍ପୃଶ୍ୟତା ଉପରେ ତାଙ୍କର କିଛିମାତ୍ର ଆସ୍ଥା ନ ଥିଲା । ସାମାଜିକ ଆଚାର ବ୍ୟବହାର ସମ୍ବନ୍ଧରେ ସେ ଉଦାର ମତାବଲମ୍ବୀ ହେଲେ ମଧ୍ୟ ଧର୍ମସମ୍ବନ୍ଧୀୟ ଅନୁଷ୍ଠାନଗୁଡ଼ିକୁ ଶାସ୍ତ୍ରର ନିର୍ଦ୍ଦେଶାନୁଯାୟୀ କରିବା ବିଷୟରେ ବିଶେଷ ଦୃଷ୍ଟି ଦେଉଥିଲେ । ୧୯୦୧ ମସିହାରେ ସ୍ୱାମୀଜୀଙ୍କ ଇଚ୍ଛାନୁସାରେ ମଠରେ ଶ୍ରୀଶ୍ରୀଦୁର୍ଗାପୂଜା ହେବାପରେ ନାନାବିଧ ପୂଜା ଆରମ୍ଭ ହେଲା । ସେହି ଉଦ୍ଦେଶ୍ୟରେ ସ୍ୱାମୀଜୀ ଶିଷ୍ୟ ଶରତ୍‌ଚନ୍ଦ୍ରଙ୍କଦ୍ୱାରା ରଘୁନନ୍ଦନଙ୍କର ଖଣ୍ଡିଏ 'ଅଷ୍ଟାବିଂଶତିତତ୍ତ୍ୱ' ସଂଗ୍ରହ କରି

ଅଣାଇଲେ । ସ୍ମୃତିକଥିତ ବିଧାନାନୁୟାୟୀ ପୂଜା କରିବା ଲାଗି ଏହି ବହିଟି ଅଣା ହୋଇଥିଲା ।

ସ୍ୱାମୀଜୀଙ୍କ ସଂକଳ୍ପ ବିଷୟ ଅବଗତ ହୋଇ ସ୍ୱାମୀ ବ୍ରହ୍ମାନନ୍ଦ ପ୍ରମୁଖ ତାଙ୍କ ଗୁରୁଭାଇ ଓ ଶିଷ୍ୟମାନେ ଉତ୍ସାହ ସହକାରେ ପୂଜାପୋକରଣ ସଂଗ୍ରହ କରିବାରେ ଲାଗିଲେ । ସନ୍ନ୍ୟାସୀମାନେ ସଙ୍କଳ୍ପ କରି କୌଣସି ପୂଜା ବା କ୍ରିୟା କରିପାରିବେ ନାହିଁ ବୋଲି ସ୍ୱାମୀଜୀ ଶ୍ରୀଶ୍ରୀମାଙ୍କ ଅନୁମତି ଲୋଡ଼ିଲେ । ତାଙ୍କ ନାଁରେ ସଙ୍କଳ୍ପ ହେବ ବୋଲି ସେ ଅନୁମତି ଦେବା ପରେ ସ୍ୱାମୀଜୀଙ୍କ ଆନନ୍ଦର ସୀମା ରହିଲା ନାହିଁ । ଯଥା ସମୟରେ କୁମାରଟୁଲୀରୁ ମଠକୁ ଗୋଟିଏ ପ୍ରତିମା ଅଣା ହେଲା । ପୂଜା ଆଗଦିନ ଶ୍ରୀଶ୍ରୀମା ତାଙ୍କ ବାଗ୍‌ବଜାର ଘର ଛାଡ଼ି ମଠକୁ ଆସିଥିଲେ । ତାଙ୍କ ଅନୁମତି ନେଇ ବ୍ରହ୍ମଚାରୀ କୃଷ୍ଣଲାଲ ମହାରାଜ ସପ୍ତମୀ ଦିନ ପୂଜା କରିବାକୁ ବସିଲେ । କୌଳାଗ୍ରଣୀ ତନ୍ତ୍ରମନ୍ତ୍ରକୋବିଦ ଈଶ୍ୱରଚନ୍ଦ୍ର ଭଟ୍ଟାଚାର୍ଯ୍ୟ ମଧ୍ୟ ଶ୍ରୀଶ୍ରୀମାଙ୍କ ଆଦେଶ ଅନୁସାରେ ସୁରଗୁରୁ ବୃହସ୍ପତିଙ୍କ ପରି ତନ୍ତ୍ରଧାରକଙ୍କ ଆସନ ଗ୍ରହଣ କଲେ । ଶାସ୍ତ୍ରମତେ ମା'ଙ୍କ ପୂଜା ହେଲା; କେବଳ ଶ୍ରୀଶ୍ରୀମା'ଙ୍କ ମତ ନ ଥିଲା ବୋଲି ମଠରେ ପଶୁବଳି ଦିଆହେଲା ନାହିଁ । ବଳି ବଦଳରେ ଚିନିର ନୈବେଦ୍ୟ ଓ ଗଦା ଗଦା ମିଷ୍ଟାନ୍ନ ପ୍ରତିମାର ଦୁଇପାଖରେ ଶୋଭା ପାଉଥିଲା ।

"ଗରିବ, ଦୁଃଖୀ, କାଙ୍ଗାଳୀମାନଙ୍କୁ ଦେହଧାରୀ ଈଶ୍ୱର ବୋଲି ବିଚାର କରି ସେମାନଙ୍କୁ ଭୂରି-ଭୋଜନ ଦେଇ ସନ୍ତୁଷ୍ଟ କରିବା ଏହି ପୂଜାର ପ୍ରଧାନ ଅଙ୍ଗରୂପେ ପରିଗଣିତ ହୋଇଥିଲା । ଏହାଛଡ଼ା ବେଲୁଡ଼, ବାଲି ଓ ଉତ୍ତରପଡ଼ାର ପରିଚିତ ଓ ଅପରିଚିତ ଅନେକ ବ୍ରାହ୍ମଣ ପଣ୍ଡିତମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା ଏବଂ ସେମାନେ ମଧ୍ୟ ଆନନ୍ଦରେ ଯୋଗ ଦେଇଥିଲେ । ସେହିଦିନଠାରୁ ମଠ ପ୍ରତି ସେମାନଙ୍କ ପୂର୍ବ ବିଦ୍ୱେଷ ଦୂରୀଭୂତ ହୋଇ ଧାରଣା ହେଲା ଯେ, ମଠର ସନ୍ନ୍ୟାସୀମାନେ ଯଥାର୍ଥ ହିନ୍ଦୁ-ସନ୍ନ୍ୟାସୀ ।" (ସ୍ୱାମୀଜୀ-ଶିଷ୍ୟ-ସମ୍ବାଦ)

ଦୁର୍ଗୋତ୍ସବ ପରେ ସ୍ୱାମୀଜୀଙ୍କ ଇଚ୍ଛାନୁସାରେ ମଠରେ ପ୍ରତିମା ପ୍ରତିଷ୍ଠା ହୋଇ ଲକ୍ଷ୍ମୀପୂଜା ଓ ଶ୍ୟାମା ପୂଜା ଶାସ୍ତ୍ରବିଧି ଅନୁସାରେ ଅନୁଷ୍ଠିତ ହେଲା । ଶ୍ୟାମାପୂଜା ପରେ ସ୍ୱାମୀଜୀ ନିଜ ଜନନୀଙ୍କ ସଙ୍ଗେ କାଳୀଘାଟ ଗଲେ । ବାଲ୍ୟକାଳରେ ଥରେ ସ୍ୱାମୀଜୀଙ୍କର କଠିନ ରୋଗ ହୋଇଥିଲା; ସେତେବେଳେ ତାଙ୍କ ଜନନୀ ମାନସିକ କରିଥିଲେ ଯେ, ପୁତ୍ର ଆରୋଗ୍ୟ ଲାଭ କଲେ ସେ କାଳୀଘାଟରେ ବିଶେଷ ପୂଜା କରିବେ ଏବଂ ପୁଅକୁ କାଳୀମନ୍ଦିରରେ ଗଡ଼ାଇ ଆଣିବେ; ପରେ ଏ କଥା ଆଉ ତାଙ୍କର ମନେ ନ ଥିଲା । ଏବେ ସ୍ୱାମୀଜୀଙ୍କ ଅସୁସ୍ଥତା କଥା ଶ୍ରବଣ କରି ସେ ନିଜ ମନୋଭାବ ବ୍ୟକ୍ତ କରି ପୁତ୍ରକୁ ଖବର ଦେଲେ । ଜନନୀଙ୍କ ଆଦେଶ ଅନୁସାରେ ସ୍ୱାମୀଜୀ କାଳୀଘାଟର ଆଦିଗଙ୍ଗାରେ ସ୍ନାନ କରି ଓଦାଲୁଗା ପିନ୍ଧି ମନ୍ଦିରରେ ପଶିଲେ ଏବଂ ଭକ୍ତିଭରେ ଶ୍ରୀଶ୍ରୀକାଳୀମାତାଙ୍କ ପାଦପଦ୍ମରେ ତିନିଥର ଗଡ଼ିଲେ । ଏହାପରେ ସାତଥର ମନ୍ଦିର ପ୍ରଦକ୍ଷିଣ

କରିସାରି ସେ ନାଟମନ୍ଦିରର ପଶ୍ଚିମ ପାଖରେ ଥିବା ଚଉତରା ଉପରେ ବସି ହୋମ ଆରମ୍ଭ କଲେ । ଯଜ୍ଞର ପବିତ୍ର ଅଗ୍ନି ପ୍ରଜ୍ୱଳିତ ହେଲା । ହୋମକୁଣ୍ଡରେ ଘୃତାହୁତି ଦେଉଥିବାବେଳେ କନ୍ଦର୍ପକାନ୍ତି ସନ୍ନ୍ୟାସୀ ଦ୍ୱିତୀୟ ବ୍ରହ୍ମାଙ୍କ ପରି ଦେଖା ଯାଉଥିଲେ । ବହୁଲୋକ ସ୍ୱାମୀଜୀଙ୍କୁ ଘେରି ତାଙ୍କ ଯଜ୍ଞକାର୍ଯ୍ୟ ଦର୍ଶନ କରୁଥିଲେ । ସ୍ୱାମୀଜୀ ମଠକୁ ଫେରିଆସି ଆନନ୍ଦରେ କହିଲେ, ''କାଳୀଘାଟରେ ଏଥର କିପରି ଉଦାର ଭାବ ଦେଖିଲି । ମୋତେ ବିଲାତ ଫେରନ୍ତା 'ବିବେକାନନ୍ଦ' ବୋଲି ଜାଣି ମଧ୍ୟ ମନ୍ଦିରାଧ୍ୟକ୍ଷମାନେ ମନ୍ଦିରରେ ପ୍ରବେଶ କରିବା ବିଷୟରେ କୌଣସି ବାଧା ଦେଇ ନ ଥିଲେ; ବରଂ ପରମ ଆନନ୍ଦ ଆଦର ସହକାରେ ମନ୍ଦିରକୁ ନେଇ ମନଇଚ୍ଛା ପୂଜା କରବା ଲାଗି ସାହାଯ୍ୟ କଲେ ।''

ଅଦ୍ୱୈତବାଦୀ ସନ୍ନ୍ୟାସୀ ହୋଇ ମଧ୍ୟ ସ୍ୱାମୀଜୀ ଏହିପରି ଶାସ୍ତ୍ରନିର୍ଦ୍ଦିଷ୍ଟ ପନ୍ଥାନୁସାରେ ମୂର୍ତ୍ତିପୂଜା ଓ ଦେବଦେବୀ ଆରାଧନା କରି ଦେଖାଇ ଦେଲେ ଯେ, ଏଥିରେ ମଧ୍ୟ ଗଭୀର ସତ୍ୟ ନିହିତ ଅଛି । ହିନ୍ଦୁଧର୍ମ ଓ ଶାସ୍ତ୍ରକୁ କଟାକଟି କରି ନିଜ ଇଚ୍ଛା ଅନୁସାରେ ଗଢ଼ିବାର ଚେଷ୍ଟା ସେ କେବେ କରି ନାହାନ୍ତି, ବରଂ ସେ ଦୃଢ଼ତାର ସହ କହୁଥିଲେ ''ମୁଁ ଶାସ୍ତ୍ର-ମର୍ଯ୍ୟାଦା ନଷ୍ଟ କରିବାକୁ ଆସି ନାହିଁ—ପୂର୍ଣ୍ଣ କରିବାକୁ ଆସିଛି''—''I have come to fulfil, not to destroy.''—ଏହି ଉକ୍ତି ସହିତ ତାଙ୍କ କର୍ମର ଐକ୍ୟ ତାଙ୍କ ଜୀବନରେ ବହୁବାର ଦେଖାଯାଇଛି ।

## ନବ୍ୟ ବଙ୍ଗାଳୀ ଯୁବକଙ୍କ ପାଇଁ ନବୀନ ଆଦର୍ଶ

ଅକ୍ଟୋବର ମାସରେ ପୁଣି ରୋଗ ବଢ଼ିଲା—ସ୍ୱାମୀଜୀ ଶଯ୍ୟାଶାୟୀ ହେବାକୁ ବାଧ୍ୟ ହେଲେ । କଲିକତାର ତଦାନୀନ୍ତନ ପ୍ରସିଦ୍ଧ ଡାକ୍ତର ଶ୍ରୀଯୁକ୍ତ ସ୍ୟାଣ୍ଡର୍ସ ଚିକିତ୍ସା କରୁଥିଲେ । ସବୁପ୍ରକାର ମାନସିକ ଓ ଦୈହିକ ପରିଶ୍ରମ ନିଷିଦ୍ଧ ହୋଇଥିଲା । ସ୍ୱାମୀଜୀ ଯେପରି କୌଣସି ଗଭୀର ଓ ଜଟିଳ ତତ୍ତ୍ୱ ଆଲୋଚନା କରି ନ ପାରନ୍ତି, ସେ ସମ୍ବନ୍ଧରେ ମଠର ସନ୍ନ୍ୟାସୀମାନେ ସାବଧାନ ରହିଲେ । କିଛିଦିନ ପରେ ଅପେକ୍ଷାକୃତ ସୁସ୍ଥ ହେଲେ ମଧ୍ୟ ସ୍ୱାମୀଜୀ ଗୁରୁଭାଇମାନଙ୍କଠାରୁ ବାଧା ପାଇ ଇଚ୍ଛାମତେ କାର୍ଯ୍ୟ କରିପାରୁ ନ ଥିଲେ । ସେମାନେ ଆଗନ୍ତୁକ ଭଦ୍ରଲୋକମାନଙ୍କ ସହିତ ସ୍ୱାମୀଜୀଙ୍କୁ ଅଧିକ ସମୟ ବାକ୍ୟାଳାପ କରିବାକୁ ଦେଉ ନ ଥିଲେ । ସ୍ୱାମୀଜୀ ବଞ୍ଚିରହିଲେ ଉତ୍ତରକାଳରେ ଜଗତର ପ୍ରଭୂତ କଲ୍ୟାଣ ହେବ ଏହି ବିଶ୍ୱାସରେ ସେମାନେ ଯଥେଷ୍ଟ ସାବଧାନତା ଅବଲମ୍ବନ କରିଥିଲେ; କିନ୍ତୁ ବିବେକାନନ୍ଦ ନିଶ୍ଚେଷ୍ଟ ହୋଇ ବସି ରହିବାର ଲୋକ ନୁହନ୍ତି; ଅବସର ଓ ସୁବିଧା ପାଇଲେ ମଠର ଗୃହସ୍ଥଳୀ ସମ୍ବନ୍ଧୀୟ କ୍ଷୁଦ୍ର କ୍ଷୁଦ୍ର କାର୍ଯ୍ୟାବଳୀ ସ୍ୱହସ୍ତରେ ସମ୍ପାଦନ କରି ଆନନ୍ଦବୋଧ କରୁଥିଲେ । କେବେ ଅବା ମଧୁର କଣ୍ଠରେ ଆଧ୍ୟାତ୍ମିକ ସଙ୍ଗୀତ ଗାଇ ଶ୍ରୋତୃବୃନ୍ଦଙ୍କ ହୃଦୟରେ ଭଗବଦ୍-ପ୍ରେମ ଉଦ୍ଦୀପିତ କରୁଥଲେ । ସକାଳେ ଓ ସନ୍ଧ୍ୟାରେ ଗମ୍ଭୀର ମନ୍ତ୍ରରେ ଅତୀତ ଯୁଗର ଋଷିମାନଙ୍କ ପରି ପବିତ୍ର

ବେଦମନ୍ତ୍ରଗୁଡ଼ିକ ଆବୃତ୍ତି କରୁଥିଲେ; କେତେବେଳେ ଅବା ବାଳକଙ୍କ ପରି ଚପଳତା ସହକାରେ ହାସ୍ୟକୌତୁକ କରୁଥିଲେ ଏବଂ କେତେବେଳେ ଅବା ବହୁ ସମୟ ପର୍ଯ୍ୟନ୍ତ ପଦ୍ମାସନରେ ବସି ଧ୍ୟାନମଗ୍ନ ହୋଇ ରହୁଥିଲେ ।

ଶାରୀରିକ ଅସୁସ୍ଥତା ଯୋଗୁଁ ପୂର୍ଣ୍ଣ ଉଦ୍ୟମରେ ନବଯୁଗ ବାର୍ତ୍ତା ପ୍ରଚାର କରି ପାରୁ ନ ଥିଲେ ବୋଲି ସମୟେ ସମୟେ ସେ ଗଭୀର କ୍ଷୋଭ ସହିତ ବିମନା ହୋଇ ବସୁଥିଲେ । ସେ ଚାହୁଁଥିଲେ — A band of young Bengal (ଦଳେ ବଙ୍ଗଳୀ ଯୁବକ) — ସେ ବିଶ୍ୱାସ କରୁଥିଲେ, କେତେଜଣ ଚରିତ୍ରବାନ୍, ବୁଦ୍ଧିମାନ, ପର ପାଇଁ ସର୍ବତ୍ୟାଗୀ ଓ ଆଜ୍ଞାନୁବର୍ତ୍ତୀ ଯୁବକ ପାଇଲେ ସେ ଦେଶର ଚିନ୍ତା ଓ ଚେଷ୍ଟାକୁ ନୂତନ ପଥରେ ଚଳାଇପାରିବେ । ମୁହଁର ଭାବ ତମୋପୂର୍ଣ୍ଣ, ହୃଦୟ ଉଦ୍ୟମଶୂନ୍ୟ, ଶରୀର ଅପଟୁ, ମନ ସାହସଶୂନ୍ୟ — ବଙ୍ଗାଳୀ ଯୁବକମାନଙ୍କ ମଧ୍ୟରୁ ଅଧିକାଂଶର ଶୋଚନୀୟ ଅବସ୍ଥା ଦେଖି ସେ ଆକ୍ଷେପ କରି କଥା କଥାକେ କହୁଥିଲେ — ବିଶେଷତଃ ବର୍ତ୍ତମାନର ଶିକ୍ଷାପ୍ରଣାଳୀରେ ଯୁବକମାନଙ୍କ ଉର୍ବର ମସ୍ତିଷ୍କଗୁଡ଼ିକ ଏପରି ଗଠିତ ହୋଇଛି ଯେ, ଉଚ୍ଚ ଉଚ୍ଚ ଭାବ ଧାରଣ ପାଇଁ ସେଗୁଡ଼ିକ ଏକାନ୍ତ ଅନୁପଯୁକ୍ତ ହୋଇଯାଇଛି । କେହି କେହି ଉଚ୍ଚ ଧାରଣା କରିବାକୁ କ୍ଷମ ହେଲେ ହେଁ ମଜ୍ଜାଗତ ଦୁର୍ବଳତା ହେତୁ କାର୍ଯ୍ୟକ୍ଷେତ୍ରରେ ଏଗୁଡ଼ିକର ବିକାଶ କରିପାରନ୍ତି ନାହିଁ । 'ବୀରତ୍ୱର କଠୋର ମହାପ୍ରାଣତାର ଆଦର୍ଶ' ଦେଶର ଯୁବକବୃନ୍ଦଙ୍କ ସମ୍ମୁଖରେ ଧରି ସେମାନଙ୍କୁ ନୂଆ ଭାବରେ ଗଢ଼ିବାକୁ ହେବ; ଅତ୍ୟଧିକ କଳ୍ପନାପ୍ରିୟ, ବିଳାସଲୋଲୁପ, ବିକୃତବୁଦ୍ଧିସମ୍ପନ୍ନ, ଦୁର୍ବଳ ମସ୍ତିଷ୍କଗୁଡ଼ିକୁ ସତେଜ ଓ ସବଳ କରିବାକୁ ହେବ । ବ୍ୟାୟାମାଦି ଶାରୀରିକ ପରିଶ୍ରମଦ୍ୱାରା ଦେହକୁ ସବଳ, ସୁସ୍ଥ, ଲୌହଦୃଢ଼ପେଶୀ-ବିଶିଷ୍ଟ କରିବାକୁ ହେବ । ପୁରୁଷ ପୁରୁଷପରି ହେବ, ଚେଷ୍ଟା କରି ସ୍ତ୍ରୀ-ଲୋକ ହେବ କାହିଁକି ? ମର୍ମାନ୍ତିକ ଦୁଃଖରେ ବିବେକାନନ୍ଦ ଏହା ହିଁ ଭାବୁଥିଲେ । ବୀରତ୍ୱର ପ୍ରତିଷ୍ଠା ନିମିତ୍ତ ସେ ବଙ୍ଗପ୍ରଦେଶରେ ମହାବୀର ହନୁମାନଙ୍କର ପୂଜା ଚଳାଇବାକୁ ଚାହୁଁଥିଲେ । ସ୍ୱାମୀଜୀ କହୁଥିଲେ, "ମହାବୀରଙ୍କ ଚରିତ୍ରକୁ ବର୍ତ୍ତମାନ ତୁମମାନଙ୍କ ଆଦର୍ଶ କରିବାକୁ ହେବ । ଦେଖୁନାହଁ, ରାମଙ୍କ ଆଜ୍ଞାରେ ସେ ସମୁଦ୍ର ଡେଇଁ ଚାଲିଗଲେ ! ଜୀବନମରଣ ପ୍ରତି ଦୃଷ୍ଟି ନାହିଁ, ମହାଜିତେନ୍ଦ୍ରିୟ, ମହାବୁଦ୍ଧିମାନ ! ଦାସ୍ୟଭାବର ଏହି ମହାନ୍ ଆଦର୍ଶରେ ତୁମ ଜୀବନ ଗଠନ କରିବାକୁ ହେବ । ଏହି ପରି ହେଲେ ଅନ୍ୟ ଭାବର ସ୍ଫୁରଣ ମଧ୍ୟ ଆପଣା ଛାଏଁ ହୋଇଯିବ । ଦ୍ୱିଧାଶୂନ୍ୟ ହୃଦୟରେ ଗୁରୁଙ୍କ ଆଜ୍ଞା ପାଳନ ଓ ବ୍ରହ୍ମଚର୍ଯ୍ୟ ରକ୍ଷା — ଏହା ହେଉଛି secret of success (ସଫଳତାର ଏକମାତ୍ର ଗୂଢ଼ୋପାୟ); ନାନ୍ୟ ପନ୍ଥା ବିଦ୍ୟତେଽୟନାୟ (ଅବଲମ୍ବନ କରିବାର ଦ୍ୱିତୀୟ ପନ୍ଥା ନାହିଁ) । ହନୁମାନଙ୍କ ଏକପକ୍ଷରେ ଯେପରି ସେବାଭାବ — ଅନ୍ୟ ଦିଗରେ ସେହିପରି ତ୍ରିଲୋକ-ସନ୍ତ୍ରାସୀ ସିଂହବିକ୍ରମ । ରାମଙ୍କ ମଙ୍ଗଳ ଲାଗି ଜୀବନ ଦାନ କରିବାକୁ ଦ୍ୱିଧା ନ ଥିଲା ! ରାମସେବା

ଭିନ୍ନ ଅନ୍ୟ ସବୁ ବିଷୟ ପ୍ରତି ଉପେକ୍ଷା ! କେବଳ ରଘୁନାଥଙ୍କ ଆଦେଶପାଳନ ହିଁ ଜୀବନର ଏକମାତ୍ର ବ୍ରତ ! ଏହିପରି ଏକାଗ୍ରନିଷ୍ଠ ହେବା ଉଚିତ ! ଖୋଳ କରତାଳ ବଜାଇ ଲମ୍ଫ ଦେଇ ଦେଇ ଦେଶଟା ଉଚ୍ଛନ୍ନ ହୋଇଗଲା । ଏକେ ତ ଏମାନେ dyspeptic (ପେଟରୋଗୀ)ର ଦଳ—ସେଥିରେ ଏତେ ଡିଆଁ ଡେଇଁ କଲେ ଚଳିବ କିପରି ? କାମଗନ୍ଧହୀନ ଉଚ୍ଚ ସାଧନାକୁ ଅନୁକରଣ କରିବାକୁ ଯାଇ ଦେଶଟା ଘୋର ତମସାଚ୍ଛନ୍ନ ହୋଇଯାଇଛି । ଦେଶେ ଦେଶେ ଗ୍ରାମେ ଗ୍ରାମେ—ଯୁଆଡ଼େ ଯିବ, ଦେଖିବ ଖୋଳ କରତାଳ ହିଁ ବାଜୁଛି ! ଏ ଦେଶରେ କ'ଣ ଢକ୍‌କା, ଢୋଲ ତିଆରି ହୁଏ ନାହିଁ ? ତୁରୀ, ଭେରୀ କ'ଣ ଭାରତରେ ମିଳେ ନାହିଁ ? ଏହିସବୁ ଗୁରୁ ଗମ୍ଭୀର ଶବ୍ଦ ପିଲାମାନଙ୍କୁ ଶୁଣାଅ, ପିଲାଦିନରୁ ମାଇଚିଆ ବାଜା ଶୁଣି ଶୁଣି ଦେଶଟା ମାଇଚିଆ ହୋଇଗଲା ଯେ ! ଏହାଠାରୁ ଆଉ ଅଧଃପତନ କ'ଣ ଅଛି ? କବିକଳ୍ପନା ମଧ୍ୟ ଏହି ଛବି ଆଙ୍କିପାରିବ ନାହିଁ ! ଡମ୍ବରୁ ଶିଙ୍ଗା ବଜାଇବାକୁ ହେବ, ଢକ୍‌କା ବଜାଇ ବ୍ରହ୍ମରୁଦ୍ର-ତାଳରେ ଦୁନ୍ଦୁଭିନାଦ କରିବାକୁ ହେବ; 'ମହାବୀର ମହାବୀର' ଧ୍ୱନିରେ ଓ 'ହର ହର ବମ୍, ବମ୍' ଶବ୍ଦରେ ଦିଗ ବିଦିଗ କମ୍ପାଇବାକୁ ପଡ଼ିବ । ଯେଉଁସବୁ music (ଗୀତବାଦ୍ୟ) ମଣିଷର soft feelings (ହୃଦୟର କୋମଳ ଭାବଗୁଡ଼ିକୁ) ଉଦ୍ଦୀପିତ କରେ, ସେସବୁକୁ କିଛି ଦିନ ପାଇଁ ଏବେ ବନ୍ଦ ରଖିବାକୁ ପଡ଼ିବ । ଖେୟାଲ୍ ଟପ୍‌ପା ବନ୍ଦ କରି ଧ୍ରୁପଦ ଗାନ ଶୁଣିବା ଲାଗି ଲୋକଙ୍କୁ ଅଭ୍ୟସ୍ତ କରାଇବାକୁ ହେବ । ବୈଦିକ ଛାନ୍ଦର ମେଘମନ୍ଦ୍ରରେ ଦେଶରେ ପ୍ରାଣ ସଞ୍ଚାର କରିବାକୁ ହେବ । ସବୁ ବିଷୟରେ ବୀରତ୍ୱର କଠୋର ମହାପ୍ରାଣତା ଆଣିବାକୁ ହେବ ।''

## କଲିକତାରେ କଂଗ୍ରେସ-ପ୍ରତିନିଧିମାନଙ୍କ ବେଲୁଡ଼ ଆଗମନ

୧୯୦୧ ସାଲ ଡିସେମ୍ବର ମାସ ଶେଷଭାଗରେ କଲିକତାରେ ଜାତୀୟ କଂଗ୍ରେସର ଅଧିବେଶନ ହେଲା । ସେହି ଉପଲକ୍ଷେ ଭାରତର ବିଭିନ୍ନ ସ୍ଥାନରୁ ପ୍ରତିନିଧିବର୍ଗ ସେଠାକୁ ଆସିଥିଲେ । ସ୍ୱାମୀଜୀ ବେଲୁଡ଼ ମଠରେ ଅବସ୍ଥାନ କରୁଛନ୍ତି ବୋଲି ଜାଣିପାରି ପ୍ରତ୍ୟହ ସେମାନେ ଦଳ ଦଳ ହୋଇ ମଠକୁ ଆସୁଥିଲେ । କଂଗ୍ରେସର ବିଶିଷ୍ଟ ପ୍ରତିନିଧିବର୍ଗ ତାଙ୍କୁ ନବଭାରତର ଅନ୍ୟତମ ନେତା ରୂପେ ଶ୍ରଦ୍ଧା କରୁଥିଲେ । ଏହି ନେତୃବୃନ୍ଦଙ୍କ ସହିତ ସ୍ୱାମୀଜୀ ଇଂରେଜୀ ପରିବର୍ତ୍ତେ ହିନ୍ଦୀ ଭାଷାରେ କଥୋପକଥନ କରିଥିଲେ । ଦେଶର ବର୍ତ୍ତମାନ ଦୁରବସ୍ଥା ଓ ଅଭାବ ଏବଂ ତାହାର ପ୍ରତିକାରର ଉପାୟ ସମ୍ବନ୍ଧରେ ସ୍ୱାମୀଜୀଙ୍କ ସିଦ୍ଧାନ୍ତଗୁଡ଼ିକ ଅନେକଙ୍କ ହୃଦୟକୁ ସ୍ପର୍ଶ କରିଥିଲା; ସମସ୍ତେ ଜାଣନ୍ତି, ତତ୍‌କାଳୀନ ରାଜନୈତିକ ଆନ୍ଦୋଳନରେ ଶକ୍ତିର ଅପଚୟ ବ୍ୟତୀତ ବିଶେଷ କିଛି ଲାଭ ହେବ ନାହିଁ—ଏହା ମଧ୍ୟ ସ୍ୱାମୀଜୀଙ୍କର ଦୃଢ଼ ବିଶ୍ୱାସ ଥିଲା । ଏହି ସମୟରେ ଜଣେ ପଚାରିଥିଲେ ''ସ୍ୱାମୀଜୀ ! କଂଗ୍ରେସ ସମ୍ବନ୍ଧରେ ଆପଣଙ୍କର ମତ କ'ଣ ?'' ସେ ଉତ୍ତର

ଦେଲେ, ''ହଁ, ଯେଉଁଥିରେ ସମଗ୍ର ଭାରତରେ ଏକତା ପ୍ରତିଷ୍ଠିତ ହୁଏ, ଏଭଳି ଗୋଟିଏ ଅନୁଷ୍ଠାନ ମନ୍ଦ ନୁହେଁ ।''

ସ୍ୱାମୀଜୀ ଦେହ ରକ୍ଷା କରିବା ପରେ ଏହି ସମୟର କଥା ଆଲୋଚନା କରି ଲକ୍ଷ୍ନୌର 'ଆଡଭୋକେଟ' ପତ୍ରିକାର ସମ୍ପାଦକ ଲେଖିଥିଲେ —

''ଗତ କଂଗ୍ରେସ ଅଧିବେଶନ ସମୟରେ ଶେଷ ଥର ପାଇଁ ମୁଁ ତାଙ୍କୁ କଲିକତାରେ ଦେଖିଥିଲି । ବିଶୁଦ୍ଧ ଓ ସାଧୁ ହିନ୍ଦୀ ଭାଷାରେ ସେ ଅନର୍ଗଳ ଆଳାପ କରିଥିଲେ । ତାଙ୍କ କଥିତ ହିନ୍ଦୀ ଭାଷା ଯେ କୌଣସି ଉତ୍ତର-ପଶ୍ଚିମାଞ୍ଚଳବାସୀଙ୍କୁ ଗୌରବାନ୍ୱିତ କରିପାରିଥାନ୍ତା । ସେ ଯେତେବେଳେ ଭାରତର ପୁନରୁତ୍‌ଥାନ ପାଇଁ ତାଙ୍କ ସଙ୍କଳ୍ପ ବିଷୟରେ କହୁଥିଲେ, ସେତେବେଳେ ତାଙ୍କ ମୁଖମଣ୍ଡଳ ଉତ୍ସାହରେ ଉଦ୍ଦୀପ୍ତ ହୋଇଯାଉଥିଲା ।''

ସ୍ୱାମୀଜୀ ପ୍ରଧାନତଃ କଂଗ୍ରେସ ପ୍ରତିନିଧିମାନଙ୍କ ସହିତ ଗୋଟିଏ ବେଦ ବିଦ୍ୟାଳୟ ପ୍ରତିଷ୍ଠା କରିବା ବିଷୟ ଆଲୋଚନା କରିଥିଲେ । ଏହି ବିଦ୍ୟାଳୟରେ ପ୍ରାଚୀନ ଆର୍ଯ୍ୟମାନଙ୍କ ଆଦର୍ଶାନୁଯାୟୀ ଆଚାର୍ଯ୍ୟ ଓ ପ୍ରଚାରକ ସନ୍ନ୍ୟାସୀ ଦଳ ଗଢ଼ିବାକୁ ହେବ; ସଂସ୍କୃତ, ସାହିତ୍ୟ, ଦର୍ଶନ, ବେଦ, ଉପନିଷଦ ଇତ୍ୟାଦି ଶିକ୍ଷା ଦେବାକୁ ହେବ । ସ୍ୱାମୀଜୀଙ୍କ ପ୍ରସ୍ତାବିତ ବେଦ-ବିଦ୍ୟାଳୟ ପ୍ରତିଷ୍ଠା ପ୍ରତି ଅନେକେ ସହାନୁଭୂତି ପ୍ରକାଶ କରିଥିଲେ ଏବଂ ସାଧ୍ୟମତେ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଏହି ବିଷୟ ଉଲ୍ଲେଖ କରି ଆଉ ଜଣେ କଂଗ୍ରେସ ପ୍ରତିନିଧି ଲେଖିଛନ୍ତି —

''କଲିକତାରେ ଗୋଟିଏ ବେଦ-ବିଦ୍ୟାଳୟ ପ୍ରତିଷ୍ଠା କରିବା ଲାଗି ସ୍ୱାମୀଜୀଙ୍କ ଶେଷ ଆଶା ଅସଂପୂର୍ଣ୍ଣ ରହିଯାଇଛି । ତାଙ୍କ ଦେହାବସାନର କେତେ ମାସ ଆଗରୁ ଖ୍ରୀଷ୍ଟମାସ୍-ପର୍ବଦିନ କଲିକତାରେ ଜାତୀୟ କଂଗ୍ରେସର ଅଧିବେଶନ ହୋଇଥିଲା । ସେହି ଉପଲକ୍ଷେ ପ୍ରତିନିଧିବର୍ଗ, ସଂସ୍କାରକଗଣ, ଅଧ୍ୟାପକବୃନ୍ଦ ଏବଂ ବିଭିନ୍ନ ବିଭାଗର ମହତ୍‌ବ୍ୟକ୍ତିଗଣ ଭାରତର ବିଭିନ୍ନ ପ୍ରଦେଶରୁ ଆସିଥିଲେ । ସେମାନଙ୍କ ମଧ୍ୟରୁ ଅନେକେ କଲିକତାରେ ଅବସ୍ଥାନ କରୁଥିବା ବେଳେ ସ୍ୱାମୀଜୀଙ୍କ ପ୍ରତି ଶ୍ରଦ୍ଧା ପ୍ରଦର୍ଶନ ଲାଗି ପ୍ରତ୍ୟହ ଅପରାହ୍ଣରେ ବେଲୁଡ଼ ମଠକୁ ଯାଉଥିଲେ । ସ୍ୱାମୀଜୀ ସମାଜନୀତି, ରାଜନୀତି ପ୍ରଭୃତି ବିଭିନ୍ନ ବିଷୟରେ ସେମାନଙ୍କୁ ପ୍ରଚୁର ଶିକ୍ଷା ଦେଉଥିଲେ । ପ୍ରକୃତ ପ୍ରସ୍ତାବରେ ଏହି ସଭାଗୁଡ଼ିକ ଗୋଟିଏ କଂଗ୍ରେସ ଆକାର ଧାରଣ କରିଥିଲା — ଏପରିକି ଆଦର୍ଶ ଦୃଷ୍ଟିରୁ ତାହା ଅପେକ୍ଷାକୃତ ଅଧିକତର ଉନ୍ନତ ଓ ହିତକର ହୋଇଥିଲା । କଲିକତାରେ ବେଦ-ବିଦ୍ୟାଳୟ ସ୍ଥାପନ କରିବା ପ୍ରସ୍ତାବ ଗ୍ରହଣ କରି ଉପସ୍ଥିତ ବ୍ୟକ୍ତିମାନଙ୍କ ମଧ୍ୟରୁ ପ୍ରତ୍ୟେକେ ଏହାକୁ କାର୍ଯ୍ୟରେ ପରିଣତ କରିବା ନିମିତ୍ତ ଯଥାଶକ୍ତି ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଲେ; କିନ୍ତୁ ସଙ୍କଳ୍ପଟି କାର୍ଯ୍ୟରେ ପରିଣତ ହେବା ଆଗରୁ ସେ ଇହଧାମ-ତ୍ୟାଗ କଲେ ।''

## ବେଦ-ବିଦ୍ୟାଳୟ ସ୍ଥାପନର ସଙ୍କଳ୍ପ

ଗୋଟିଏ ବେଦ-ବିଦ୍ୟାଳୟ ସ୍ଥାପନ କରିବାର ସଙ୍କଳ୍ପ ତାଙ୍କର ବହୁଦିନରୁ ଥିଲା । ଏହି କାର୍ଯ୍ୟରେ ପ୍ରଚୁର ଅର୍ଥ ଏବଂ କେତେଜଣ ଚରିତ୍ରବାନ୍ ଧାର୍ମିକ ଓ ବେଦଜ୍ଞ ଅଧ୍ୟାପକଙ୍କ ପ୍ରୟୋଜନ, ଏହା ବୁଝି ସ୍ୱାମୀଜୀ ସହସା ଏହି କଲେଜ ପ୍ରତିଷ୍ଠା ଦିଗରେ ଅଗ୍ରସର ହୋଇ ନ ଥିଲେ; କିନ୍ତୁ ଜୀବନର ଶେଷ ଭାଗରେ ଏହି ବିଷୟରେ ତାଙ୍କ ଆଗ୍ରହ ବିଶେଷ ବଢ଼ିଯାଇଥିଲା । ଗୁରୁଭ୍ରାତାଗଣଙ୍କ ସହିତ ଯୁକ୍ତି କରି କିଛି ଟଙ୍କା ସଂଗ୍ରହ କଲେ ଏବଂ ମଠରେ ଗୋଟିଏ କ୍ଷୁଦ୍ର ଧରଣର ଶିକ୍ଷାଳୟ ଜଣେ ଉପଯୁକ୍ତ ପଣ୍ଡିତଙ୍କ ତତ୍ତ୍ୱାବଧାନରେ ସ୍ଥାପନ କରିବାକୁ କୃତସଙ୍କଳ୍ପ ହେଲେ; ଏପରିକି, ସ୍ୱାମୀ ତ୍ରିଗୁଣାତୀତାନନ୍ଦଙ୍କୁ 'ଉଦ୍‌ବୋଧନ ପ୍ରେସ'ଟିକୁ ବିକ୍ରୟ କରିଦେବା ଲାଗି ଉପଦେଶ ଦେଲେ । ପ୍ରେସ ବିକ୍ରୟ କରି ଯେଉଁ ଟଙ୍କା ମିଳିଲା, ତାହା ଏହି ବିଦ୍ୟାଳୟ ସ୍ଥାପନ ଉଦ୍ଦେଶ୍ୟରେ ଜମା ହୋଇ ରହିଲା । ଦେହ ଅପେକ୍ଷାକୃତ ସୁସ୍ଥ ହେଲେ ଏହି ସଙ୍କଳ୍ପ ନେଇ ସେ ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥିତ ହେବେ ବୋଲି ସ୍ଥିର କଲେ; କିନ୍ତୁ କେତେମାସ ପରେ ତାଙ୍କ ଦେହ ତ୍ୟାଗ ହେବାରୁ ସମସ୍ତ ବ୍ୟବସ୍ଥା ଓଲଟପାଲଟ ହୋଇଗଲା । ଯାହା ହେଉ, କେତେବର୍ଷ ହେଲା ବେଲୁଡ଼ ମଠର ଭୂତପୂର୍ବ ସହକାରୀ ଅଧ୍ୟକ୍ଷ ସ୍ୱାମୀ ପ୍ରେମାନନ୍ଦଜୀଙ୍କ ଚେଷ୍ଟା ଓ ଯତ୍ନରେ ଜଣେ ସଂସ୍କୃତଜ୍ଞ ପଣ୍ଡିତଙ୍କୁ ମଠରେ ରଖା ହୋଇଛି । ଏହାଙ୍କଠାରୁ ବ୍ରହ୍ମଚାରୀଗଣ ନିୟମିତ ରୂପେ ସଂସ୍କୃତ ଭାଷା ଓ ଶାସ୍ତ୍ରାଦି ଅଧ୍ୟୟନ କରୁଛନ୍ତି । ସ୍ୱାମୀଜୀଙ୍କ ସଙ୍କଳ୍ପ ତୁଳନାରେ ଏହି ଅନୁଷ୍ଠାନଟି କ୍ଷୁଦ୍ର ହେଲେ ହେଁ ତୁଚ୍ଛ ନୁହେଁ ଏବଂ ଆମର ବିଶ୍ୱାସ, ମହାପୁରୁଷଙ୍କ ସଙ୍କଳ୍ପ କେବେହେଲେ ବିଫଳ ହେବ ନାହିଁ ।

## ଜାପାନୀ ପଣ୍ଡିତ ଦୁଇଜଣଙ୍କର ମଠକୁ ଆଗମନ

ଏହି ବର୍ଷ ଶେଷଭାଗରେ ଜାପାନରୁ ଦୁଇଜଣ ସୁବିଖ୍ୟାତ ପଣ୍ଡିତ ବେଲୁଡ଼ ମଠକୁ ଆସିଥିଲେ । ଜାପାନରେ ଗୋଟିଏ ଧର୍ମମହାସଭା ଆହ୍ୱାନ କରିବାର ସଙ୍କଳ୍ପ ନେଇ ଏମାନେ ବିଶେଷ ଭାବରେ ସ୍ୱାମୀଜୀଙ୍କ ସହିତ ସାକ୍ଷାତ୍ କରିବାକୁ ଆସିଥିଲେ । ଜାପାନର ଗୋଟିଏ ବୌଦ୍ଧ ମଠର ଅନ୍ୟତମ ନାୟକ ରେଭରେଣ୍ଡ ଓଡ଼ା ସ୍ୱାମୀଜୀଙ୍କୁ କହିଲେ, ଆପଣଙ୍କ ପରି ଖ୍ୟାତନାମା ବ୍ୟକ୍ତି ଯଦି ଏହି କାର୍ଯ୍ୟରେ ସହାୟକ ହୁଅନ୍ତି, ତାହାହେଲେ ଆମ ଉଦ୍ଦେଶ୍ୟ ନିଶ୍ଚୟ ସଫଳ ହେବ । ଜାପାନରେ ଧର୍ମସଂସ୍କାର ବର୍ତ୍ତମାନ ସମୟରେ ଅତ୍ୟାବଶ୍ୟକ ହୋଇପଡ଼ିଛି । ଆପଣଙ୍କ ପରି ଶକ୍ତିମାନ ଆଚାର୍ଯ୍ୟଙ୍କ ବ୍ୟତୀତ ଉକ୍ତ କାର୍ଯ୍ୟ ଆଉ କାହାଦ୍ୱାରା ସୁସମ୍ପନ୍ନ ହେବ ?'' ଏହି ମହୋଦୟଙ୍କ ସଙ୍ଗୀ ଡାକ୍ତର ଓକାକୁରା ମଧ୍ୟ ଜାପାନର ବର୍ତ୍ତମାନ ଅବସ୍ଥା ବର୍ଣ୍ଣନା କରି ସ୍ୱାମୀଜୀଙ୍କୁ ଜାପାନ ଯିବା ଲାଗି ଅନୁରୋଧ କଲେ । ଜଡ଼ ସଭ୍ୟତା ଦୃଷ୍ଟିରୁ କ୍ଷିପ୍ର ଉନ୍ନତିଶୀଳ ଜାପାନରେ ଧର୍ମସଭାର ଅଭାବ

କଥା ଶୁଣି ସ୍ୱାମୀଜୀଙ୍କ ହୃଦୟ ଉଦ୍ଦୀପିତ ହୋଇ ଉଠିଲା । ଦୈହିକ ଅସୁସ୍ଥତା ବିଷୟ ଭୁଲି ସେ ଜାପାନ ଯିବା ଲାଗି ପ୍ରସ୍ତୁତ ହେଲେ ।

ସ୍ୱାମୀଜୀଙ୍କ ଅଲୌକିକ ଚରିତ୍ର ଓ ଉଦାରତାରେ ମୁଗ୍ଧ ହୋଇ ଏମାନେ ମଠରେ ଅବସ୍ଥାନ କଲେ । ସ୍ୱାମୀଜୀ ପ୍ରତ୍ୟହ ଭଗବାନ୍ ବୁଦ୍ଧଦେବ ଓ ବୌଦ୍ଧଧର୍ମ ସମ୍ବନ୍ଧରେ ଏମାନଙ୍କ ସହିତ ଆଲୋଚନା କରୁଥିଲେ । ପାଶ୍ଚାତ୍ୟ ପଣ୍ଡିତମାନେ ବୌଦ୍ଧ ଦର୍ଶନକୁ ହିନ୍ଦୁ ଦର୍ଶନର ସମ୍ପୂର୍ଣ୍ଣ ବିପରୀତ ବୋଲି ଯେଉଁ ମନ୍ତବ୍ୟ ପ୍ରକାଶ କରିଥିଲେ, ସ୍ୱାମୀଜୀ ସେଗୁଡ଼ିକୁ ଖଣ୍ଡନ କରି ଦେଖାଇଥିଲେ ଯେ, ବୌଦ୍ଧଧର୍ମ ହିନ୍ଦୁଧର୍ମର ବିଦ୍ରୋହୀ ସନ୍ତାନ ହେଲେ ସୁଦ୍ଧା ବୁଦ୍ଧଦେବଙ୍କ ଉପଦେଶଗୁଡ଼ିକର ଅଧିକାଂଶ ସହିତ ଉପନିଷଦର ଯଥେଷ୍ଟ ସୌସାଦୃଶ୍ୟ ଅଛି । ଫଳତଃ ଉପନିଷଦର ଜ୍ଞାନକାଣ୍ଡ ଉପରେ ହିଁ ବୌଦ୍ଧଦର୍ଶନ ପ୍ରତିଷ୍ଠିତ । ଜାପାନୀ ପଣ୍ଡିତମାନେ ସ୍ୱାମୀଜୀଙ୍କ ବୌଦ୍ଧଧର୍ମ ସମ୍ବନ୍ଧୀୟ ସିଦ୍ଧାନ୍ତଗୁଡ଼ିକ ଶ୍ରବଣ କରି ବିସ୍ମିତ ହେଲେ । ସେମାନେ ଦେଖିଲେ, ଏହି ସର୍ବୋତୋମୁଖୀ ପ୍ରତିଭାଶାଳୀ ସନ୍ନ୍ୟାସୀ ବୌଦ୍ଧଧର୍ମ ସମ୍ବନ୍ଧୀୟ ଅଧିକାଂଶ ଗ୍ରନ୍ଥ ଯତ୍ନ ସହକାରେ ଅଧ୍ୟୟନ କରିଛନ୍ତି । ସେମାନେ ସ୍ୱାମୀଜୀଙ୍କୁ ବୌଦ୍ଧ ଶ୍ରମଣ କହିବେ ନା ହିନ୍ଦୁ ସନ୍ନ୍ୟାସୀ କହିବେ, ଏହା ବେଳେ ବେଳେ ବୁଝିପାରୁ ନ ଥିଲେ ।

## ବୁଦ୍ଧଗୟା ଓ କାଶୀଧାମ

କିଛିଦିନ ପରେ ୧୯୦୨ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ ସ୍ୱାମୀଜୀ ଡାକ୍ତର ଓକାକୁରାଙ୍କ ନିମନ୍ତ୍ରଣ ଗ୍ରହଣ କରି ତାଙ୍କ ସହିତ ବୁଦ୍ଧଗୟା ଯିବାକୁ ପ୍ରସ୍ତୁତ ହେଲେ । ସେଠାରୁ କାଶୀଧାମ ଯାଇ କିଛି ଦିନ ବିଶ୍ରାମ କରିବେ ବୋଲି ସ୍ଥିର ହୋଇଥିଲା । ସ୍ୱାମୀଜୀଙ୍କ ପରିବ୍ରାଜକ ଜୀବନର ଏହା ହିଁ ସର୍ବଶେଷ ଭ୍ରମଣ ।

ବହୁଦିନ ପରେ ବିବେକାନନ୍ଦ ପୁଣି ସେହି ପବିତ୍ର ବୋଧିଦ୍ରୁମ ତଳେ ପଦ୍ମାସନରେ ଧ୍ୟାନସ୍ଥ ! ତୀବ୍ର ବୈରାଗ୍ୟର ତାଡ଼ନାରେ ବାଳକ ନରେନ୍ଦ୍ରନାଥ ଦିନେ ଏହି ବୋଧିଦ୍ରୁମ ମୂଳରେ ସତ୍ୟଲାଭ କାମନାରେ ଧ୍ୟାନସ୍ଥ ହୋଇଥିଲେ । ତାଙ୍କର ସେ ସାଧନା ସିଦ୍ଧ ହୋଇଥିଲା । ସେ ବୁଝିଥିଲେ, ପାଗଳ ପରି ଦଉଡ଼ା ଦଉଡ଼ି କଲେ କିଛି ହେବ ନାହିଁ । ଯେଉଁ ମହାପୁରୁଷଙ୍କ ସଙ୍ଗ ପରିତ୍ୟାଗ କରି ସେ ଏତେ ଦୂର ଦଉଡ଼ି ଆସିଛନ୍ତି, ସେହି ପାଗଳ ପୂଜାରୀର ପଦପ୍ରାନ୍ତକୁ ପୁଣି ଫେରିଯିବାକୁ ହେବ । ତାଙ୍କ ବିଶ୍ୱଶୋଷୀ ପିପାସାର ଅମୃତ-ବାରି ଏକମାତ୍ର ସେହିଠାରେ ଅଛି । ସେ ଗୋଟିଏ ଦିନ—ଯେଉଁ ଦିନ ତାଙ୍କ ଜୀବନର ପ୍ରଥମ ଉଷାର ଅସ୍ପଷ୍ଟ ଆଲୋକରେ ଯେଉଁ ସତ୍ୟ ଉପଲବ୍‌ଧି କରିଥିଲେ, ଆଜି ଏହି ଶାନ୍ତ ସ୍ତବ୍‌ଧ ମହିମାମୟ ଜୀବନସନ୍ଧ୍ୟାରେ ତାହା କ'ଣ ତାଙ୍କର ମନେପଡ଼େ ନାହିଁ ? ତାଙ୍କ ଜୀବନର ଯାହା ଉଦ୍ଦେଶ୍ୟ ଥିଲା, ତାହା ତ ପୂର୍ଣ୍ଣମାତ୍ରାରେ ସିଦ୍ଧ ହୋଇଛି, ତେବେ ଆଜି ସେ ସମ୍ପୂର୍ଣ୍ଣ ଉଦାସୀନ ହୋଇପାରୁ ନାହାନ୍ତି କାହିଁକି ?

ପାଠକ, ଥରେ କଳ୍ପନା-ନେତ୍ରରେ ଭଗବାନ ବୁଦ୍ଧଦେବଙ୍କ ପବିତ୍ର ସାଧନା-ପୀଠରେ ଉପବିଷ୍ଟ ସନ୍ନ୍ୟାସୀଙ୍କ କରୁଣା-କାତର ମୁଖମଣ୍ଡଳ ପ୍ରତି ଦୃଷ୍ଟିପାତ କର । ବୁଝିପାରିବ, ଏ ଧ୍ୟାନ, ଏ ସାଧନା, ନିଜର ମୁକ୍ତି-କାମନା ପାଇଁ ନୁହେଁ । ଗୋଟିଏ ଉତ୍ପୀଡ଼ିତ, ଉପେକ୍ଷିତ, ଦରିଦ୍ର, ପତିତ ଜାତିର ପ୍ରତିନିଧି ରୂପେ ତିରିଶ କୋଟି ଲୋକଙ୍କ କାତର ଆର୍ତ୍ତନାଦର ଅସୀମ ପ୍ରତିଧ୍ୱନି ବକ୍ଷରେ ଧାରଣ କରି ସେ ବୋଧିଦ୍ରୁମ ମୂଳରେ ଧ୍ୟାନାସୀନ ! ଏହି ସିଦ୍ଧାସନରେ ବହୁଦିନ ପୂର୍ବେ ଆଉଜଣେ ମହାପୁରୁଷ ବିଶ୍ୱର ଦୁଃଖ ଦୂରୀକରଣ ଲାଗି ଧ୍ୟାନସ୍ଥ ହୋଇଥିଲେ—ଭାରତର ଅତୀତ ଇତିହାସରେ ସେ ବି ଏକ ସ୍ମରଣୀୟ ଦିବସ ! ଆଉ ଗୋଟିଏ ଦିନ ଆସିବ ଯେଉଁଦିନ ଭବିଷ୍ୟତ ବଂଶଧରଗଣ ସେମାନଙ୍କ ମହିମାସମୁଜ୍ଜ୍ୱଳ ଅତୀତ ଇତିହାସରେ ଏହି ଦିନଟିକୁ ସ୍ୱର୍ଣ୍ଣାକ୍ଷରରେ ଲେଖି ରଖିବେ ।

ବୁଦ୍ଧଗୟା ମଠର ମହନ୍ତ ମହାରାଜ ସ୍ୱାମୀଜୀଙ୍କ ଖ୍ୟାତିର କଥା ବହୁଦିନରୁ ଶ୍ରବଣ କରି ଆସିଥିଲେ । ଆଜି ତାଙ୍କୁ ଅପ୍ରତ୍ୟାଶିତ ଭାବରେ ଅତିଥିରୂପେ ପାଇ ମହନ୍ତଙ୍କ ଆନନ୍ଦର ସୀମା ରହିଲା ନାହିଁ । ଯେଉଁଥିରେ ସ୍ୱାମୀଜୀଙ୍କର କୌଣସି ଅସୁବିଧା ହେବ ନାହିଁ, ସେସବୁର ସୁବନ୍ଦୋବସ୍ତ କରିଦେଲେ । ସ୍ୱାମୀଜୀ କେତେଦିନ ଧ୍ୟାନାନନ୍ଦରେ ଅତିବାହିତ କରି ବାରାଣସୀ ଅଭିମୁଖେ ଯାତ୍ରା କଲେ ।

## କାଶୀରେ ଶ୍ରୀରାମକୃଷ୍ଣ-ସେବାଶ୍ରମ ପ୍ରତିଷ୍ଠା

ସ୍ୱାମୀଜୀଙ୍କ ଜ୍ୱଳନ୍ତ ଉପଦେଶ ଓ ଶିକ୍ଷାରେ ଉତ୍ସାହିତ ହୋଇ କେତେଜଣ ବଙ୍ଗାଳୀ ଯୁବକ ଏକତ୍ର ହୋଇ ଅନାଥ, ରୋଗଗ୍ରସ୍ତ, ସମ୍ବଳହୀନ ତୀର୍ଥଯାତ୍ରୀମାନଙ୍କ ସେବା କରିବାକୁ ଅଗ୍ରସର ହେଲେ । ଖଣ୍ଡିଏ ଛୋଟ ଘର ଭଡ଼ା ନେଇ ସେମାନେ ରାଜପଥ ଓ ଗଙ୍ଗାଘାଟରୁ ସ୍ଥବିର, ରୁଗ୍ଣ ନରନାରୀଙ୍କୁ ବହନ କରି ସେଠାକୁ ନେଇଯାଉଥିଲେ ଏବଂ ସାଧ୍ୟମତେ ଔଷଧ, ପଥ୍ୟ, ସେବା ଶୁଶ୍ରୂଷା କରି ସେମାନଙ୍କ କଷ୍ଟ ଲାଘବ କରିବାକୁ ଚେଷ୍ଟା କରୁଥିଲେ । ଶ୍ରଦ୍ଧା ଓ ନିଷ୍ଠାର ସହିତ ନାରାୟଣଜ୍ଞାନରେ ଦରିଦ୍ରଙ୍କ ସେବାରେ ଆତ୍ମୋତ୍ସର୍ଗକାରୀ ଯୁବକବୃନ୍ଦଙ୍କ ଅବିଚଳିତ ଦୃଢ଼ତା ଦେଖି ସ୍ୱାମୀଜୀ ଆନନ୍ଦିତ ହେଲେ । ବେଲୁଡ଼ ମଠରେ ବସି ତାଙ୍କ ଆଦର୍ଶ କାର୍ଯ୍ୟରେ ପରିଣତ କରିବାକୁ ଏ ପର୍ଯ୍ୟନ୍ତ କେହି ଆସୁନାହାନ୍ତି ବୋଲି ସମୟ ସମୟରେ ସେ ଯେଉଁ ଦୁଃଖ ପ୍ରକାଶ କରୁଥିଲେ; ଏହି ମୁଷ୍ଟିମେୟ ଯୁବକଙ୍କ କାର୍ଯ୍ୟ ଦେଖି ତାଙ୍କର ସେ ଦୁଃଖ ଦୂର ହେଲା । ସେ ଗର୍ବ ଓ ଆନନ୍ଦର ସହିତ ତାଙ୍କ ମାନସପୁତ୍ରମାନଙ୍କ କାର୍ଯ୍ୟପ୍ରଣାଳୀ ପର୍ଯ୍ୟବେକ୍ଷଣ କରିବାକୁ ଲାଗିଲେ । ଉତ୍ସାହ ଦେଇ କହିଲେ, ''ବତ୍ସଗଣ ! ତୁମେମାନେ ପ୍ରକୃତ ପନ୍ଥା ବୁଝିଛ । ମୋ ସ୍ନେହ ଓ ଆଶୀର୍ବାଦ ସର୍ବଦା ତୁମମାନଙ୍କ ମଙ୍ଗଳ କରୁ । ସାହସ ସହିତ ଅଗ୍ରସର ହୁଅ । ତୁମେ ଗରିବ ବୋଲି ହତାଶ ହୁଅ ନାହିଁ—ଟଙ୍କା ମିଳିବ । ତୁମର ଏହି କ୍ଷୁଦ୍ର ଅନୁଷ୍ଠାନର ଭିତ୍ତି ଉପରେ ଭବିଷ୍ୟତରେ ଯାହା ହେବ,

ତାହା ତୁମର ବର୍ତ୍ତମାନ ପ୍ରିୟତମ କଳ୍ପନାଠାରୁ ଢେର୍ ବେଶୀ ହେବ ।'' ସ୍ୱାମୀଜୀ ଏହି ଅଭିନବ 'ରାମକୃଷ୍ଣ ସେବାଶ୍ରମ' ର ପ୍ରଥମ ବିବରଣୀ ସହ ସାଧାରଣଙ୍କ ନିକଟରୁ ଅର୍ଥସାହାଯ୍ୟ ପ୍ରାର୍ଥନା କରି ଗୋଟିଏ ଆବେଦନ-ପତ୍ର ଲେଖିଲେ । ସ୍ୱାମୀଜୀଙ୍କଠାରୁ ଉତ୍ସାହ ଓ ଆଶୀର୍ବାଦ ଲାଭ କରି ଯୁବକମାନଙ୍କ କର୍ମୋତ୍ସାହ ଶତଗୁଣ ବର୍ଦ୍ଧିତ ହେଲା । କାଶୀଧାମରେ ସେବା-ଧର୍ମର ସ୍ୱର୍ଣ୍ଣ-ସୌଧର ଭିତ୍ତି ଚିରଦିନ ପାଇଁ ପ୍ରତିଷ୍ଠିତ ହୋଇଗଲା ! ତା'ପରେ କେତେ ବାଧା ବିପତ୍ତି ଓ ଅସୁବିଧା ସହିତ ଯୁଦ୍ଧ କରି ସେବାଶ୍ରମ ବର୍ତ୍ତମାନ ଅବସ୍ଥାରେ ପହଞ୍ଚିଛି— ଆତ୍ମୋତ୍ସର୍ଗର ସେହି ସୁଦୀର୍ଘ ଇତିହାସ ଲିପିବଦ୍ଧ କରିବାର ସ୍ଥାନ ଏ ନୁହେଁ । ସ୍ୱାମୀଜୀଙ୍କ ଭବିଷ୍ୟତ୍-ବାଣୀ ଆଜି ସଫଳ ହୋଇଛି । ପରେ ପରେ ଭାରତର ନାନାସ୍ଥାନରେ ସେବାଶ୍ରମ ପ୍ରତିଷ୍ଠିତ ହୋଇଛି । ତ୍ୟାଗୀ, ବ୍ରହ୍ମଚାରୀ ଓ ସନ୍ନ୍ୟାସୀଗଣ ପର୍ଯ୍ୟାୟକ୍ରମେ ନୀରବରେ ନାରାୟଣ-ଜ୍ଞାନରେ ରୋଗୀଙ୍କର ସେବା କରି ନିଜେ ଧନ୍ୟ ହୋଇଛନ୍ତି — ଦେଶକୁ ମଧ୍ୟ ଧନ୍ୟ କରିଛନ୍ତି । କାଶୀ ରାମକୃଷ୍ଣ ସେବାଶ୍ରମର ପ୍ରତିଷ୍ଠାତାମାନଙ୍କ ମଧ୍ୟରୁ ଅନ୍ୟତମ ଶ୍ରୀଯୁକ୍ତ ଚାରୁଚନ୍ଦ୍ର ଦାସ, ଯେ ଆଜୀବନ ସମାନ ଉତ୍ସାହ ସହକାରେ ପ୍ରତିଷ୍ଠାନର ସେବା କରି ନିକଟରେ ପରଲୋକ ଗମନ କରିଛନ୍ତି; ସେହି ବିବେକାନନ୍ଦ ଗତପ୍ରାଣ, ଖ୍ୟାତିହୀନ ସ୍ୱଦେଶ-ସେବକ ନୀରବ କର୍ମୀ ବଙ୍ଗୀୟ ଯୁବକ ଯେ କୌଣସି ପରିସ୍ଥିତିରେ ଗର୍ବର ପାତ୍ର ।

ନବପ୍ରତିଷ୍ଠିତ ରାମକୃଷ୍ଣ ମଠର ଯେଉଁ ସନ୍ନ୍ୟାସୀମାନେ ସେବାବ୍ରତକୁ ମୁକ୍ତିର ଅନ୍ୟତମ ପନ୍ଥା ଜାଣି ନାରାୟଣ-ସେବାରେ ପ୍ରଥମେ ଅଗ୍ରସର ହୋଇଥିଲେ, କେବଳ ମାତ୍ର ସ୍ୱାମୀଜୀଙ୍କ ଓଜସ୍ୱୀ ଉପଦେଶ ଯୋଗୁଁ ସେମାନେ ଜାତିର କଲ୍ୟାଣ ଲାଗି ଆତ୍ମୋତ୍ସର୍ଗ କରିବାର ଦିବ୍ୟ ପ୍ରେରଣା ଲାଭ କରି ନ ଥିଲେ ! ସେମାନେ ବିବେକାନନ୍ଦଙ୍କ ଜୀବନକୁ ଆଦର୍ଶରୂପେ ପାଇଥିଲେ — ଯାହାଙ୍କର ଦୈନନ୍ଦିନ କ୍ଷୁଦ୍ର କ୍ଷୁଦ୍ର କର୍ମଗୁଡ଼ିକ ମଧ୍ୟରେ ବି ଏହି ସେବାଭାବ ଓତଃପ୍ରୋତଃ ଭାବରେ ଜଡ଼ିତ ଥିଲା । କିପରି ଭାବରେ ଦରିଦ୍ର, ପତିତ, କାଙ୍ଗାଳଙ୍କ ହୃଦୟରେ ହୃଦୟ ମିଶାଇ ଦେଇ ସେମାନଙ୍କ ଦୁଃଖଦୈନ୍ୟ ବ୍ୟଥା ଅନୁଭବ କରିବାକୁ ହୁଏ — ତା'ପରେ କୃତଜ୍ଞ ଚିତ୍ତରେ ଅସୀମ ନିଷ୍ଠାର ସହିତ ତାହାର ପ୍ରତିକାରର ଉପାୟ ଅବଲମ୍ବନ କରିବାକୁ ହୁଏ, ତାହା ସେମାନେ ଅନେକଥର ସ୍ୱାମୀଜୀଙ୍କ ଜୀବନରେ ଦେଖିଥିଲେ ।

## ଦୀନ-ଦରିଦ୍ର ପ୍ରତି ଅପାର ପ୍ରେମ

୧୯୦୧ର ଶେଷ ଭାଗରେ ସ୍ୱାମୀଜୀଙ୍କ ବୁଦ୍ଧଗୟା ଯାତ୍ରାର କିଛି ଦିନ ପୂର୍ବରୁ ବେଲୁଡ଼ ମଠରେ ଗୋଟିଏ ମର୍ମସ୍ପର୍ଶୀ ଘଟଣାରେ ଦୀନ-ଦରିଦ୍ରଙ୍କ ପ୍ରତି ତାଙ୍କ ଅପାର କରୁଣାର ସ୍ମୃତି ସେବାବ୍ରତୀ କର୍ମୀମାନଙ୍କ ହୃଦୟରେ ଚିରଜାଗ୍ରତ ରହିବ ।

''ମଠର ଜମି ସଫା କରିବାକୁ ପ୍ରତିବର୍ଷ କେତେଜଣ ସାନ୍ତାଳୀ ସ୍ତ୍ରୀ ଓ ପୁରୁଷ ଆସୁଥିଲେ । ସ୍ୱାମୀଜୀ ସେମାନଙ୍କୁ ନେଇ କେତେ ରଙ୍ଗ-ପରିହାସ କରୁଥିଲେ ଏବଂ ସେମାନଙ୍କ ସୁଖ-ଦୁଃଖ କଥା ଶୁଣିବାକୁ କେତେ ଭଲପାଉଥିଲେ । ଦିନେ କଲିକତାରୁ କେତେଜଣ ବିଶିଷ୍ଟ ଭଦ୍ରଲୋକ ମଠରେ ସ୍ୱାମୀଜୀଙ୍କୁ ଦେଖାକରିବାକୁ ଆସିଲେ । ସ୍ୱାମୀଜୀ ତମାଖୁ ଖାଇ ଖାଇ ସେଦିନ ସାନ୍ତାଳିମାନଙ୍କ ସଙ୍ଗେ ଏପରି ଗଳ୍ପ ଯୋଡ଼ି ଦେଇଥିଲେ ଯେ, ସ୍ୱାମୀ ସୁବୋଧାନନ୍ଦ ଆସି ତାଙ୍କୁ ଏହିସବୁ ଲୋକଙ୍କ ଆଗମନ ସମ୍ବାଦ ଦେବାରେ ସେ କହିଲେ, 'ମୁଁ ବର୍ତ୍ତମାନ ଦେଖା କରିପାରିବି ନାହିଁ; ଏମାନଙ୍କ ସଙ୍ଗରେ ବେଶ୍ ଅଛି ।' ବାସ୍ତବିକ୍ ସ୍ୱାମୀଜୀ ସେଦିନ ଏହିସବୁ ଦୀନ-ଦୁଃଖୀ ସାନ୍ତାଳମାନଙ୍କୁ ଛାଡ଼ି ଆଗନ୍ତୁକ ଭଦ୍ର ବ୍ୟକ୍ତିମାନଙ୍କ ସଙ୍ଗେ ଦେଖା କରିବାକୁ ଗଲେ ନାହିଁ । ସାନ୍ତାଳମାନଙ୍କ ମଧ୍ୟରେ ଜଣକର ନାମ ଥିଲା କେଷ୍ଟା । ସ୍ୱାମାଜୀ କେଷ୍ଟାକୁ ଭାରୀ ଭଲ ପାଉଥିଲେ । କଥା କହିବାକୁ ଆସିଲେ କେଷ୍ଟା ବେଳେ ବେଳେ ସ୍ୱାମୀଜୀଙ୍କୁ କହୁଥିଲା, 'ସ୍ୱାମୀବାବା, ତୁ ଆମ କାମବେଳେ ଏଠାକୁ ଆସିବୁ ନାହିଁ; ତୋ ସଙ୍ଗେ କଥାବାର୍ତ୍ତା ହେଲେ ଆମ କାମ ବନ୍ଦ ହୋଇଯାଉଛି ଓ ବୁଢ଼ାବାବା ଆସି ଗାଳିଦେଉଛନ୍ତି ।' ଏପରି କଥା ଶୁଣିଲେ ସ୍ୱାମୀଜୀଙ୍କ ଆଖି ଛଳ ଛଳ ହୋଇଯାଉଥିଲା । ସେ କହୁଥିଲେ, 'ନାହିଁ, ବୁଢ଼ାବାବା (ସ୍ୱାମୀ ଅଦ୍ୱୈତାନନ୍ଦ) ଗାଳି ଦେବେ ନାହିଁ; ତୁ ତୋ ଗାଉଁଲୀ କଥା ଦିପଦ କହ ।' ଏହା କହି ସ୍ୱାମୀଜୀ ତାଙ୍କ ସଙ୍ଗେ ଦୁଃଖ-ସୁଖ ଆରମ୍ଭ କରି ଦେଉଥିଲେ ।''

ଦିନେ ସ୍ୱାମୀଜୀ କେଷ୍ଟାକୁ କହିଲେ, ''ତୁ ଏଠି ଖାଇବୁ କିରେ ?'' କେଷ୍ଟା କହିଲା, ''ଆମେ ତୁମ ଛୁଆଁ-ଜିନିଷ ଖାଇବୁ ନାହିଁ । ମୁଁ ବିଭା ହୋଇ ସାରିଛି । ଏବେ ତୁମ ଛୁଆଁ-ଲୁଣ ଖାଇଲେ ଜାତି ଯିବରେ ବାବା ।'' ସ୍ୱାମୀଜୀ କହିଲେ, ''ଲୁଣ ଖାଇବୁ କାହିଁକି ? ଲୁଣ ନ ଦେଇ ତରକାରୀ ରାନ୍ଧିଲେ ଖାଇବୁ ତ ?'' କେଷ୍ଟା ଏଥିରେ ରାଜି ହେଲା । ଏହାପରେ ସ୍ୱାମୀଜୀଙ୍କ ଆଦେଶରେ ମଠରେ ସେଦିନ ସାନ୍ତାଳମାନଙ୍କ ପାଇଁ ଲୁଚି, ତରକାରୀ, ମିଠାଇ, ମଣ୍ଡା, ଦହି ଇତ୍ୟାଦି ଯୋଗାଡ଼ ହେଲା ଏବଂ ସେ ସେମାନଙ୍କୁ ବସାଇ ଖୁଆଇଲେ । ଖାଇବା ବେଳେ କେଷ୍ଟା କହିଲା, ''ହେ ସ୍ୱାମୀବାବା, ତୁମେ ଏସବୁ ଜିନିଷ ପାଇଲ କେଉଁଠୁ ? ଆମେ ତ ଏପରି ଜିନିଷ କେବେ ଖାଇ ନ ଥିଲୁ ?'' ସ୍ୱାମୀଜୀ ସେମାନଙ୍କୁ ପେଟପୁରା ଖାଇବାକୁ ଦେଇସାରି କହିଲେ, ''ତୁମେ ସବୁ ପରା ନାରାୟଣ, ଆଜି ଆମେ ନାରାୟଣଙ୍କୁ ଭୋଗ ଦେଲୁ ।'' ସ୍ୱାମୀଜୀ ଯେଉଁ ନାରାୟଣଙ୍କ ସେବା କଥା କହୁଥିଲେ, ତାହା ସେ ନିଜେ ଏହି ଅନୁଷ୍ଠାନ କରି ଦେଖାଇଦେଲେ ।

ଆହାର ପରେ ସାନ୍ତାଳମାନେ ବିଶ୍ରାମ କରିବାକୁ ଯିବାରୁ ସ୍ୱାମୀଜୀ ଶିଷ୍ୟକୁ କହିଲେ, ''ଏମାନଙ୍କୁ ଦେଖିଲ, ଯେପରି ସାକ୍ଷାତ୍ ନାରାୟଣ । ଏପରି ସରଳ-ଚିତ୍ତ, ଏପରି ଅକପଟ, ଅକୃତ୍ରିମ ସ୍ନେହ ଆଉ ଦେଖି ନାହିଁ ।'' ଏହାପରେ ମଠର ସନ୍ନ୍ୟାସୀମାନଙ୍କୁ ଲକ୍ଷ୍ୟ କରି କହିଲେ, ''ଦେଖ, ଏମାନେ କିପରି ସରଳ ।

ଏମାନଙ୍କର କିଛି ଦୁଃଖ ଦୂର କରିପାରିବ ? ନଚେତ୍ ଗେରୁଆ ଲୁଗା ପିନ୍ଧି ଲାଭ କ'ଣ ? ପରର ମଙ୍ଗଳ ପାଇଁ ସର୍ବସ୍ୱ ଅର୍ପଣ—ଏହାରି ନାମ ଯଥାର୍ଥ ସନ୍ନ୍ୟାସ । ଏମାନେ କେବେ ଭଲ ଜିନିଷ ଦେଖି ନାହାନ୍ତି । ଇଚ୍ଛା ହୁଏ, ମଠ ଫଠ ସବୁ ବିକ୍ରି କରିଦେବି; ଏହିସବୁ ଗରିବ-ଦୁଃଖୀ, ଦରିଦ୍ର-ନାରାୟଣଙ୍କୁ ବାଣ୍ଟି ଦେବି । ଆମେ ତ ଗଛତଳକୁ ଆଶ୍ରା କରିଛେ । ଆହା, ଦେଶରେ ଲୋକେ ଖାଇବା-ପିନ୍ଧିବାକୁ ପାଉ ନାହାନ୍ତି—ଆମେ କେଉଁ ହୃଦୟରେ ମୁହଁରେ ଅନ୍ନ ଦେଉଛେ ? x x x ଦେଶରେ ଲୋକେ ଦୁଇଓଳି ଦୁଇମୁଠା ଖାଇବାକୁ ପାଉ ନାହାନ୍ତି ଦେଖି ସମୟ ସମୟରେ ମନେହୁଏ—ତୁମ ଶଙ୍ଖଫୁଙ୍କା, ଘଣ୍ଟାବଜା ସବୁ ଫୋପାଡ଼ି ଦେବି; ତୁମ ଲେଖାପଢ଼ା ଓ ମୁକ୍ତ ହେବା ଚେଷ୍ଟାକୁ ବନ୍ଦ କରିଦେବି—ସମସ୍ତେ ମିଶି ଗାଁ ଗାଁ ବୁଲି ଚରିତ୍ର ଓ ସାଧନା ବଳରେ ବଡ଼ ଲୋକଙ୍କୁ ବୁଝାଇ କାନି ପତେଇ ଟଙ୍କା ଯୋଗାଡ଼ କରିବା ଓ ଦରିଦ୍ର-ନାରାୟଣଙ୍କ ସେବା କରି ଜୀବନ କଟାଇ ଦେବା ।''

''ଆହା, ଗରିବ ଦୁଃଖୀଙ୍କ ପାଇଁ କେହି ଭାବୁନାହାନ୍ତି ରେ ! ଯେଉଁମାନେ ଜାତିର ମେରୁଦଣ୍ଡ, ଯାହାଙ୍କ ପରିଶ୍ରମ ଯୋଗୁଁ ଅନ୍ନ ମିଳୁଛି, ଯେଉଁ ମେହେନ୍ତର, ଚଣ୍ଡାଳମାନେ ଦିନେ କାମ ବନ୍ଦ କରିଦେଲେ ସହରରେ ହାହାକାର ପଡ଼ିଯିବ; ସେମାନଙ୍କୁ ସହାନୁଭୂତି ଦେଖାଇବା, ସେମାନଙ୍କ ସୁଖ-ଦୁଃଖରେ ସାନ୍ତ୍ୱନା ଦେବା ଲାଗି ଦେଶରେ କେହି ନାହିଁ । ଏହି ଦେଖ୍ ନା, ହିନ୍ଦୁମାନଙ୍କ ସହାନୁଭୂତି ନ ପାଇ ମାନ୍ଦ୍ରାଜ ଅଞ୍ଚଳରେ ହଜାର ହଜାର ଅଛୁଆଁ ଜାତିର ଲୋକ ଖ୍ରିସ୍ତାନ୍ ହୋଇ ଯାଇଛନ୍ତି । ମନେ କର ନାହିଁ, କେବଳ ପେଟ ଦାଉରୁ ଖ୍ରିସ୍ତାନ୍ ହୋଇଯାଉଛନ୍ତି; ଆମ ସହାନୁଭୂତି ପାଉ ନାହାନ୍ତି ବୋଲି ଧର୍ମ ଛାଡ଼ି ଦେଉଛନ୍ତି । ଆମେ କେବଳ ଦିନରାତି ସେମାନଙ୍କୁ କହୁଛୁ, 'ଛୁଅଁନା, ଛୁଅଁନା', ଦେଶରେ କଣ ଆଉ ଦୟା-ଧର୍ମ ଅଛି ? କେବଳ ଅସ୍ପୃଶ୍ୟତା ମାନୁଥିବା ଦଳ ! ଏଭଳି ଆଚାର ମୁହଁରେ ଛେପ ପକାଅ, ଗୋଇଠା ମାର । ଇଚ୍ଛା ହୁଏ, ତୋ ଅସ୍ପୃଶ୍ୟତା-ଗଣ୍ଡି ଚୂର୍ଣ୍ଣ କରି ପକାଇବି; ସଙ୍ଗେ ସଙ୍ଗେ ଯାଇ ଯେ ଯେଉଁଠି ପତିତ, କାଙ୍ଗାଳ, ଦୀନ, ଦରିଦ୍ର ଅଛନ୍ତି, ସେମାନଙ୍କୁ ସମସ୍ତଙ୍କୁ ଠାକୁରଙ୍କ ନାଁରେ ଡାକି ଆଣିବି । ଏମାନେ ନ ଉଠିଲେ ମା ଜାଗିବେ ନାହିଁ । ଆମେ ଏମାନଙ୍କ ଲାଗି ଅନ୍ନ-ବସ୍ତ୍ରର ସୁବିଧା କରିପାରିଲୁ ନାହିଁ । ଆଉ କ'ଣ ହେଲା ? ହାୟ ! ଏମାନେ ଦୁନିଆଦାରିର କିଛି ଜାଣନ୍ତି ନାହିଁ, ତେଣୁ ଦିନରାତି ଖଟି ଖଟି ଭାତ-ଲୁଗା ଯୋଗାଡ଼ କରିପାରୁ ନାହାନ୍ତି । ଦିଅ, ସମସ୍ତେ ମିଶି ଏମାନଙ୍କ ଆଖି ଖୋଲି ଦିଅ; ମୁଁ ଦିବ୍ୟ ଚକ୍ଷୁରେ ଦେଖୁଛି, ଏମାନଙ୍କ ଭିତରେ ଓ ଆମ ଭିତରେ ଏକ ବ୍ରହ୍ମ ଅଛି, ଏକା ଶକ୍ତି ରହିଛି । କେବଳ ବିକାଶରେ ଯାହା ତଫାତ୍ ଅଛି । ସର୍ବାଙ୍ଗରେ ରକ୍ତସଞ୍ଚାର ନ ହେଲେ କୌଣସି ଦେଶ କୌଣସି ସମୟରେ କେଉଁଠି ଉଠିଛି ଦେଖିଛ ? ଗୋଟିଏ ଅଙ୍ଗ ପଡ଼ିଗଲେ ଅନ୍ୟ ଅଙ୍ଗ ସବଳ ଥିଲେ ମଧ୍ୟ ଏହି ଦେହ କୌଣସି ବଡ଼ କାମ କରିପାରିବ ନାହିଁ ଏହା ନିଶ୍ଚିତ ବୋଲି ଜାଣିବ ।''

ସ୍ୱାମୀଜୀ ନିଜ କର୍ମ-ଜୀବନରେ ଏହି କ୍ଳାନ୍ତିହୀନ ସେବାବ୍ରତ ପ୍ରକଟିତ କରି ପାରିଛନ୍ତି ବୋଲି ଆଜି ତାଙ୍କ ଆବେଗାକୁଳ ଆହ୍ୱାନରେ ଜାତି ଉଦ୍‌ବୁଦ୍ଧ ହୋଇଛି । ସେହିହେତୁ ଭୀରୁ ବଙ୍ଗାଳୀ ତାଙ୍କର ବହୁ ଶତାବ୍ଦୀର ଦୌର୍ବଲ୍ୟ ଝାଡ଼ି ଫୋପାଡ଼ି ଦେଇ ଦୁର୍ଭିକ୍ଷ, ବନ୍ୟା, ପ୍ଳେଗ୍, ମହାମାରୀ ସହିତ ସଂଗ୍ରାମ ଚଳାଇଛି, ଭବିଷ୍ୟତ ଯୁଗର ବକ୍ଷରେ ଯେଉଁଦିନ ଏହି ମହାପୁରୁଷଙ୍କ ଈପ୍‌ସିତ ସେବାବ୍ରତୀ ଶୂରବୀରଗଣ ଆବିର୍ଭୂତ ହୋଇ ସ୍ୱଦେଶର ମୁଖ ଉଜ୍ଜ୍ୱଳ କରିବେ, ସେଦିନ ଆଉ ଦୂରବର୍ତ୍ତୀ ଥିବାପରି ମନେ ହେଉ ନାହିଁ । କବିଙ୍କ ଭବିଷ୍ୟତ୍-ବାଣୀ—

''ବୀର ସନ୍ନ୍ୟାସୀ ବିବେକର ବାଣୀ ଛୁଟିଛି ଜଗତ୍‌ମୟ,
ବଙ୍ଗାଳୀ ସନ୍ତାନ, ବାଘ ବଳଦରେ ଘଟାଇବେ ସମନ୍ୱୟ ।''

ଯେ ନିଶ୍ଚୟ ସାର୍ଥକ ହେବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

## ବେଲୁଡ଼ ମଠକୁ ପ୍ରତ୍ୟାବର୍ତ୍ତନ ଓ ଶ୍ରୀଶ୍ରୀରାମକୃଷ୍ଣୋତ୍ସବ

ଶ୍ରୀରାମକୃଷ୍ଣଙ୍କ ଜନ୍ମୋତ୍ସବ ନିକଟବର୍ତ୍ତୀ ହୋଇଥିଲା ବୋଲି ସ୍ୱାମୀଜୀ କାଶୀରୁ ବେଲୁଡ଼ ମଠକୁ ଫେରି ଆସିଲେ । କାଶୀର ଜଳବାୟୁ ପ୍ରଭାବରେ ସ୍ୱାମୀଜୀ କିଞ୍ଚିତ୍ ସୁସ୍ଥତା ଲାଭ କରିଥିଲେ; କିନ୍ତୁ ମଠକୁ ଆସି ରୋଗ ଏତେ ବୃଦ୍ଧି ପାଇଲା ଯେ, ସେ ଶଯ୍ୟାଶାୟୀ ହେବାକୁ ବାଧ୍ୟ ହେଲେ । ଶ୍ରୀଶ୍ରୀରାମକୃଷ୍ଣୋତ୍ସବ ଦିନ ସମସ୍ତ ଆନନ୍ଦ-କୋଳାହଳ ଉପରେ ଗୋଟିଏ ବିଷାଦର ଛାୟା ପରିଲକ୍ଷିତ ହୋଇଥିଲା । ଅନେକେ ସ୍ୱାମୀଜୀଙ୍କ ଦର୍ଶନ କାମନାରେ ଆସିଥିଲେ, ସଂକଳ୍ପ ସିଦ୍ଧିର କୌଣସି ଉପାୟ ନ ଦେଖି ସେମାନେ ହତାଶ ହେଲେ । ସ୍ୱାମୀଜୀ ସର୍ବସାଧାରଣଙ୍କ ଆଗକୁ ଆସିବେ ବୋଲି ସ୍ଥିର କରିଥିଲେ; କିନ୍ତୁ ସକାଳେ ଦୁଇ ଚାରିଜଣ ଆଗନ୍ତୁକଙ୍କ ସଙ୍ଗେ ଆଲୋଚନା କରିବା ପରେ ଏପରି କ୍ଳାନ୍ତ ହୋଇ ପଡ଼ିଲେ ଯେ, ଆଉ ବାହାରକୁ ଆସିବା ଲାଗି ସାହସ କଲେ ନାହିଁ ।

ମଠର ବିଶାଳ ପ୍ରାଙ୍ଗଣ ଜନପୂର୍ଣ୍ଣ । କେଉଁଠାରେ କୀର୍ତ୍ତନ ହେଉଛି କେଉଁଠାରେ ଅବା ପ୍ରସାଦ ବଣ୍ଟା ଚାଲିଛି । ଏହି ଆନନ୍ଦୋତ୍ସବରେ ସ୍ୱାମୀଜୀ ଯୋଗ ଦେଇପାରିଲେ ନାହିଁ ଭାବି ଅନେକ ବିଷଣ୍ଣ ହେଲେ । ଶ୍ରୀଯୁକ୍ତ ଶରତ୍‌ଚନ୍ଦ୍ର ଚକ୍ରବର୍ତ୍ତୀ ସେଦିନ ସ୍ୱାମୀଜୀଙ୍କ ନିକଟରେ ବସିଥିଲେ । ସ୍ୱାମୀଜୀଙ୍କ କ୍ରମବର୍ଦ୍ଧମାନ ରୋଗଯନ୍ତ୍ରଣା ଓ ଦେହର ଅବସ୍ଥା ଦେଖି ତାଙ୍କ ମୁହଁ ମଳିନ ହୋଇଗଲା; ଛାତି ଫଟେଇ କୋହ ଆସିଲା । ସ୍ୱାମୀଜୀ ଶିଷ୍ୟଙ୍କ ମନୋଭାବ ବୁଝିପାରି କହିଲେ, ''କ'ଣ ଭାବୁଛ ? ଶରୀର ଜନ୍ମ ହୋଇଥିଲା, ମରିଯିବ । ତୁମ୍ଭମାନଙ୍କ ହୃଦୟରେ ଯଦି ଟିକିଏ ଭାବ ପୂରାଇ ପାରିଥିବି, ତେବେ ଜାଣିବି ଦେହ ଧାରଣ ସାର୍ଥକ ହୋଇଛି ।''

କିଛି ସମୟ ପରେ ଭଗିନୀ ନିବେଦିତା କେତେଜଣ ଇଂରେଜ ମହିଳାଙ୍କ ସହିତ ଆସି ଗୁରୁଦର୍ଶନ କଲେ ଓ ଅଳ୍ପ ସମୟ ପରେ ଚାଲିଗଲେ । ସ୍ୱାମୀଜୀଙ୍କୁ

କଷ୍ଟ ହୋଇପାରେ ଭାବି ସେ ତାଙ୍କ ପାଖରେ ବେଶୀ ସମୟ ରହିଲେ ନାହିଁ । ସାଢ଼େ ଦୁଇଟା ପରେ ଶରତ୍ ବାବୁ ଥରେ ଉତ୍ସବ ପ୍ରାଙ୍ଗଣରେ ବୁଲିଆସି ଉତ୍ସବ କଥା ସ୍ୱାମୀଜୀଙ୍କ ପାଖରେ ବର୍ଣ୍ଣନା କଲେ । ପଚାଶହଜାର ଲୋକ ଆସିଛନ୍ତି ବୋଲି ଶିଷ୍ୟଙ୍କ ମୁହଁରୁ ଶୁଣି ସେ ବହୁ କଷ୍ଟରେ ଝରକା କାଠ ଧରି ଠିଆ ହୋଇ ସେହି ଜନତା ପ୍ରତି ଦୃଷ୍ଟି ପକାଇଲେ; କହିଲେ, ''ଖୁବ୍ ବେଶୀ ହେଲେ ତିରିଶ ହଜାର ଲୋକ ହେବେ ।'' ବେଶୀ ସମୟ ଠିଆ ହୋଇ ରହିବା ତାଙ୍କ ପକ୍ଷରେ ଅସମ୍ଭବ ହେଲା ବୋଲି କିଛି କ୍ଷଣ ପରେ ସେ ଶେଯକୁ ଫେରି ଆସିଲେ ।

ଏହି ଦିନର ଉତ୍ସବ ଆଲୋଚନା କରିବାକୁ ଯାଇ ସେ କହିଥିଲେ ଯେ, ବର୍ତ୍ତମାନ ଯେଉଁ ପ୍ରଣାଳୀରେ ଉତ୍ସବ ଚାଲିଛି, ଏପରି ନ କରି ଚାରି ପାଞ୍ଚଦିନ ପର୍ଯ୍ୟନ୍ତ ଉତ୍ସବ କଲେ ଭଲ ହେବ । ପ୍ରଥମ ଦିନ ଶାସ୍ତ୍ର ପାଠ ଓ ବ୍ୟାଖ୍ୟା, ଦ୍ୱିତୀୟ ଦିନ ବେଦବେଦାନ୍ତର ବିଚାର ଓ ମୀମାଂସା, ତୃତୀୟ ଦିନ ପ୍ରଶ୍ନୋତ୍ତର ସଭା, ଚତୁର୍ଥ ଦିନ ଶ୍ରୀରାମକୃଷ୍ଣଙ୍କ ଜୀବନୀ ଏବଂ ତାଙ୍କ ପ୍ରଦର୍ଶିତ ଆଦର୍ଶ ଓ ପନ୍ଥା ସମ୍ବନ୍ଧରେ ବକ୍ତୃତା ଓ ଆଲୋଚନା ଏବଂ ଶେଷ ଦିନ ପ୍ରସାଦ ବିତରଣ ଓ ଦରିଦ୍ର-ନାରାୟଣ ସେବା । ଉତ୍ସବ ଉପଲକ୍ଷେ ଯେଉଁ ଉପାୟରେ ଠାକୁରଙ୍କ ଜୀବନ ଗଠନୋପଯୋଗୀ ଭାବ ସବୁ ଶିକ୍ଷିତ ବ୍ୟକ୍ତିମାନଙ୍କ ହୃଦୟରେ ପ୍ରବେଶ କରେ, ତାହାର ବ୍ୟବସ୍ଥା କରିବାକୁ ହେବ । ମହୋତ୍ସବର ଅନୁଷ୍ଠାନ ଯଦି ତାଙ୍କ ଭାବପ୍ରଚାରର କେନ୍ଦ୍ରରୂପେ ପରିବର୍ତ୍ତିତ ନ ହୁଏ, ତାହା ହେଲେ କେତେଗୁଡ଼ିଏ ଲୋକ ମିଶି ହୋ ହା କଲେ ଠାକୁରଙ୍କ ଭାବପ୍ରଚାର ହେଲା ବୋଲି ମନେକରିବା ବିଡ଼ମ୍ବନା ମାତ୍ର । ସାମୟିକ ଧର୍ମଭାବର ଉତ୍ତେଜନାରେ କୀର୍ତ୍ତନ-ନାଚ ଆଦିଦ୍ୱାରା କିଛି ହେବ ନାହିଁ ।

## ବେଲୁଡ଼ ମଠରେ ଶେଷ କେତୋଟି ଦିନ

କ୍ରମାଗତ ଔଷଧ ସେବନ ଏବଂ କାନୁନ୍ ଭିତରେ ରହି ସ୍ୱାମୀଜୀ ବିରକ୍ତ ହୋଇଗଲେ । ସେ ଶୁଣିପାରିଲେ ଯେ, ଗଭୀର ଦାର୍ଶନିକ ତତ୍ତ୍ୱାଦି ଆଲୋଚନା ହେବା ଆଶଙ୍କାରେ ତାଙ୍କ ଗୁରୁଭ୍ରାତାଗଣ ବହୁ ଜିଜ୍ଞାସୁ ବ୍ୟକ୍ତିଙ୍କୁ ତାଙ୍କ ସହିତ ଦେଖା କରିବା ଲାଗି ଅନୁମତି ଦେଉ ନ ଥିଲେ,—ଅନେକେ ମଧ୍ୟ ପ୍ରତ୍ୟହ ବ୍ୟର୍ଥକାମ ହୋଇ ବିଷଣ୍ଣ ମନରେ ମଠରୁ ଫେରି ଯାଉଥିଲେ । ଦିନେ ସେ ଗୁରୁଭ୍ରାତାମାନଙ୍କୁ ଡକାଇ କହିଲେ, ''ଦେଖ, ଏହି ଦେହ ରଖି ଆଉ କ'ଣ ହେବ ? ପର କଲ୍ୟାଣ ଲାଗି ପତନ ହୋଇଯାଉ । ଠାକୁର ଅସହ୍ୟ ରୋଗ-ଯନ୍ତ୍ରଣା ଭୋଗ କରି ମଧ୍ୟ ଜୀବନର ଶେଷ ଦିନ ପର୍ଯ୍ୟନ୍ତ ପରର ମଙ୍ଗଳ ବିଷୟରେ ଉପଦେଶ ଦେଇଥିଲେ, ମୋର କ'ଣ ତାହା କରିବା ଉଚିତ୍ ନୁହେଁ ? ତୃଣ ପରି ଅକିଞ୍ଚିତ୍କର ଏହି ଦେହ ଥାଉ ବା ଯାଉ, ମୁଁ ଖାତିର୍ କରେ ନାହିଁ । ସତ୍ୟାନ୍ୱେଷୀ ବ୍ୟକ୍ତିମାନଙ୍କ ସହିତ ଅଲୋଚନା କଲେ ମୁଁ କେତେ ଆନନ୍ଦ ଅନୁଭବ କରେ, ତାହା ତୁମେ କଳ୍ପନା ବି

କରିପାରିବ ନାହିଁ । ଆମ ନିଜ ଦେଶର ଭାଇମାନଙ୍କ ଆତ୍ମାର ଅନ୍ତର୍ନିହିତ ଶକ୍ତି ଜାଗ୍ରତ କରିବାରେ ସାହାଯ୍ୟ କରିବା ନିମିତ୍ତ ମୁଁ ପୁନଃ ପୁନଃ ଜନ୍ମଗ୍ରହଣ କରିବାକୁ କୁଣ୍ଠିତ ନୁହେଁ ।''

ଏହା ପୂର୍ବରୁ ସ୍ୱାମୀଜୀ ଯେତେବେଳେ ଟିକିଏ ଭଲ ବୋଧ କରୁଥିଲେ, ସେତେବେଳେ କୌଣସି ନା କୌଣସି କାର୍ଯ୍ୟରେ ଲାଗି ଯାଉଥିଲେ । ଅଳସୁଆ ହୋଇ ବସି ରହିବା ତାଙ୍କ ପକ୍ଷରେ ଅସମ୍ଭବ ଥିଲା । ମାର୍ଚ୍ଚ ମାସ ଆରମ୍ଭରୁ ଜୀବନର ଶେଷ ଦିନ ପର୍ଯ୍ୟନ୍ତ ଚାରିମାସ କାଳ ଦୈହିକ ଅସୁସ୍ଥତା ପ୍ରତି ଦୃଷ୍ଟି ନ ଦେଇ ସେ ନାନାଭାବରେ ଯେଉଁ ଅସାଧାରଣ ପରିଶ୍ରମ କରୁଥିଲେ, ତାହା ବାସ୍ତବିକ ବିସ୍ମୟାବହ । ଯେତେବେଳେ ସେ ଏକାଗ୍ର ମନରେ କୌଣସି କାର୍ଯ୍ୟରେ ନିଯୁକ୍ତ ରହୁଥିଲେ, ସେତେବେଳେ ସେ ରୁଗ୍ଣ, ଏ କଥା ସମ୍ପୂର୍ଣ୍ଣ ରୂପେ ଭୁଲି ଯାଉଥିଲେ । ଏହି ସମୟରେ ସେ କେତେଖଣ୍ଡ ବହି ଲେଖିବାକୁ ସ୍ଥିର କରିଥିଲେ; କିନ୍ତୁ ଦୁଃଖର ବିଷୟ, କାର୍ଯ୍ୟ ଆରମ୍ଭ କରିଥିଲେ ମାତ୍ର, ଖଣ୍ଡିଏ ହେଲେ ସମ୍ପୂର୍ଣ୍ଣ କରିପାରି ନାହାନ୍ତି ।

ସ୍ୱାମୀଜୀ ଆଡ଼ମ୍ବରପୂର୍ଣ୍ଣ କାର୍ଯ୍ୟକଳାପର ସମ୍ପୂର୍ଣ୍ଣ ବିରୋଧୀ ଥିଲେ । ମଠର ନିତ୍ୟ–ନୈମିତ୍ତିକ ଠାକୁରପୂଜା ଯଥାସମ୍ଭବ ସାଦାସିଧା ଭାବରେ ଅନୁଷ୍ଠାନ କରି ସେ ବ୍ରହ୍ମଚାରୀ ଓ ସନ୍ନ୍ୟାସୀମାନଙ୍କୁ ଅଧିକାଂଶ ସମୟ ସାଧନା, ଶାସ୍ତ୍ରାଳାପ, ବେଦାଦିପାଠ କରିବା ଲାଗି ଯଥେଷ୍ଟ ସମୟ ଦେବାପାଇଁ କହୁଥିଲେ । ମଠର ଦୈନନ୍ଦିନ କାର୍ଯ୍ୟାବଳୀର ଶୃଙ୍ଖଳା–ରକ୍ଷା କରିବା ଲାଗି ସେ ପ୍ରତ୍ୟହ କାର୍ଯ୍ୟ ପାଇଁ ସମୟ ନିର୍ଦ୍ଦିଷ୍ଟ କରିଦେଇଥିଲେ । ମଠର ପ୍ରତ୍ୟେକଙ୍କ ପ୍ରତି ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଥିଲା, କେହି ଇଚ୍ଛା କରି କୌଣସି ନିୟମ ଲଂଘନ କଲେ ସେ ଭାରୀ ବିରକ୍ତ ହେଉଥିଲେ ଏବଂ କଠୋର ଭାଷାରେ ତାଙ୍କୁ ଭର୍ତ୍ସନା କରୁଥିଲେ ।'

ରାତ୍ରି ତିନିଟା ବେଳେ ଉଠି ସ୍ୱାମୀଜୀ ଧ୍ୟାନରେ ବସୁଥିଲେ । ଧ୍ୟାନ–କକ୍ଷରେ ତାଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ଆସନ ନିର୍ଦ୍ଦିଷ୍ଟ ଥିଲା । ଅନ୍ୟ ସନ୍ନ୍ୟାସୀ ଓ ବ୍ରହ୍ମଚାରୀଗଣ ତାଙ୍କୁ ଘେରି ବସୁଥିଲେ । ସ୍ୱାମୀଜୀ ଆସନ ଛାଡ଼ିବା ପର୍ଯ୍ୟନ୍ତ କେହି ଉଠୁ ନ ଥିଲେ କିମ୍ବା ଉଠିବା ଦରକାର ନ ଥିଲା । ମହାପୁରୁଷମାନଙ୍କ ପବିତ୍ର ଚିନ୍ତା–ପ୍ରବାହର ପ୍ରଭାବରେ ପ୍ରତ୍ୟେକଙ୍କ ମନ ବାହ୍ୟ ବିଷୟରୁ ନିବୃତ୍ତ ହୋଇ ଅନ୍ତର୍ମୁଖୀ ହେଉଥିଲା । ଗୋଟିଏ ଅଭୁତପୂର୍ବ ଆନନ୍ଦ ଅନୁଭୂତିରେ ଚିତ୍ତ ଭରି ଉଠୁଥିଲା । ସ୍ୱାମୀ ବ୍ରହ୍ମାନନ୍ଦ ଦିନେ କହିଥିଲେ, ''ନରେନ୍ ସାଙ୍ଗରେ ଧ୍ୟାନ କରି ବସିଲେ ଯେପରି ଜମେ, ମୁଁ ଏକା ବସିଲେ ସେପରି ହୁଏ ନାହିଁ ।'' କେବେ କେବେ ସ୍ୱାମୀଜୀ ଦୁଇଘଣ୍ଟାରୁ ବେଶି ସମୟ ପର୍ଯ୍ୟନ୍ତ ଧ୍ୟାନରେ ବସୁଥଲେ । ତା'ପରେ 'ଶିବ, ଶିବ' କହି କହି ଆସନ ଛାଡ଼ି ଠାକୁରଙ୍କୁ ପ୍ରଣାମ କରୁଥିଲେ ଏବଂ ଶ୍ୟାମା–ସଙ୍ଗୀତ ବା ଶିବ–ସଙ୍ଗୀତ ଗାଇ ଗାଇ ତଳକୁ ଆସି ହତାରେ ବୁଲୁଥିଲେ । ମୁହଁରେ ଧ୍ୟାନସମ୍ଭୂତ ଅପୂର୍ବ ପ୍ରଶାନ୍ତି, ବିଶାଳ ଆୟତ ଲୋଚନଦ୍ୱୟ ଭାବାବେଗରେ ଛଳଛଳ୍

ଲୋହିତ—ଅର୍ଦ୍ଧ-ବାହ୍ୟଦଶାରେ ଭ୍ରୂକ୍ଷେପହୀନ ଗମନଭଙ୍ଗୀ ପ୍ରଭୃତି ଦର୍ଶନ କରି ମନେ ହେଉଥିଲା, ଯେପରି କି ସେ ଏ ପୃଥିବୀର ମଣିଷ ନୁହଁନ୍ତି ।

ତା'ପରେ ଶାସ୍ତ୍ରପାଠ ହେଉଥିଲା । ସ୍ୱାମୀଜୀ ନିଜେ ଉପସ୍ଥିତ ରହି ଶିଷ୍ୟମାନଙ୍କ ଆଲୋଚନା ଶୁଣୁଥିଲେ ଏବଂ ଜଟିଳ ସ୍ଥାନଗୁଡ଼ିକର ନିଜେ ମୀମାଂସା କରି ଦେଉଥିଲେ । ସକାଳେ ଉପନିଷଦ, ବ୍ରହ୍ମସୂତ୍ର ଇତ୍ୟାଦି ବେଦାନ୍ତ ଶାସ୍ତ୍ର ଅଧ୍ୟୟନ ଓ ଅଧ୍ୟାପନା ଚାଲୁଥିଲା । ସ୍ୱାମୀଜୀ ନିଜେ ଶିଷ୍ୟମାନଙ୍କୁ କେତେଦିନ ହେଲା ପାଣିନି ଓ ଲଘୁକୌମୁଦୀ ପଢ଼ାଇବା ଆରମ୍ଭ କରିଥିଲେ । ମଧ୍ୟାହ୍ନ ଭୋଜନ ପରେ ପୁନରାୟ ଅଧ୍ୟାପନା ଚାଲୁଥିଲା । ଅପରାହ୍ନରେ ବ୍ରହ୍ମଚାରୀ ଓ ସନ୍ନ୍ୟାସୀଗଣ କିଛି ସମୟ ବିଶ୍ରାମ କରିବା ପରେ କେହି ବୁଲି ଯାଉଥିଲେ, କିଏ ବା ଆଶ୍ରମ ସମ୍ବନ୍ଧୀୟ କାର୍ଯ୍ୟରେ ବ୍ୟାପୃତ ରହୁଥିଲେ । ସନ୍ଧ୍ୟା ଆରତି ଘଣ୍ଟା ବାଜିଲେ ସମସ୍ତେ ଧ୍ୟାନଘରେ ଏକତ୍ର ହେଉଥିଲେ । କେହି ଧ୍ୟାନ ସମୟରେ ଅନୁପସ୍ଥିତ ରହିଲେ ସ୍ୱାମୀଜୀ ତାଙ୍କୁ ଭର୍ତ୍ସନା କରୁଥିଲେ । କୌଣସି ବ୍ରହ୍ମଚାରୀ ଶାରୀରିକ ଅସୁସ୍ଥତା ବ୍ୟତୀତ ଅନ୍ୟ କୌଣସି କାରଣରୁ ମଠର ଦୈନନ୍ଦିନ ନିୟମାବଳୀ ଲଂଘନ କଲେ ସେଦିନ ମଠରୁ ଆହାର ପାଉ ନ ଥିଲେ । ପାର୍ଶ୍ୱବର୍ତ୍ତୀ ଗ୍ରାମରୁ ଭିକ୍ଷା କରି ସେଦିନ ଖାଦ୍ୟ ସଂଗ୍ରହ କରିବାକୁ ହେଉଥିଲା । ସ୍ୱାମୀଜୀ ଗୋଟିଏ ପକ୍ଷରେ ଯେପରି ଉଦାର, ଦୟାଳୁ ଓ ସ୍ନେହପରାୟଣ ଥିଲେ, ଅନ୍ୟ ଦିଗରେ ସେପରି ନିର୍ମମ ଓ କଠୋର ନ୍ୟାୟପରାୟଣ ଥିଲେ । ବ୍ୟକ୍ତିବିଶେଷ ଯେତେ ପ୍ରିୟ ଲୋକ ହେଲେ ସୁଦ୍ଧା ତା'ର କ୍ଷୁଦ୍ରତମ ତ୍ରୁଟିକୁ ସେ କ୍ଷମା କରୁ ନ ଥିଲେ । ସେ ଜାଣିଥିଲେ, ଉଦାରତା ଓ କ୍ଷମାର ବେଶୀ ବ୍ୟବହାର ହେଲେ ମଠର ଆଦର୍ଶ ଭବିଷ୍ୟତରେ ରକ୍ଷା କରି ହେବ ନାହିଁ । ବସ୍ତୁତଃ ଏହି ସମୟରୁ ସେ ବହିର୍ଜଗତର ଯଶ-ସମ୍ମାନ, ପ୍ରତିପତ୍ତି ଇତ୍ୟାଦି ବିଷୟ ସମ୍ପୂର୍ଣ୍ଣ ଭୁଲି ତାଙ୍କର ସମସ୍ତ ଶକ୍ତି 'ମଣିଷ ତିଆରି' ଲାଗି ନିୟୋଜିତ କରିଥିଲେ । ଏହିପରି ଭାବରେ ଏପ୍ରିଲ୍ ଓ ମଇମାସ କଟିଗଲା । ଭାରତ ଓ ଭାରତ ବାହାରେ ରାମକୃଷ୍ଣ ମିଶନର ପ୍ରଚାରକ ସନ୍ନ୍ୟାସୀଗଣ ଉତ୍ସାହ ସହିତ ପ୍ରଚାରକାର୍ଯ୍ୟରେ ନିଯୁକ୍ତ ଥିଲେ । ସ୍ୱାମୀଜୀଙ୍କ ନବୀନ କର୍ମୋତ୍ସାହ ଓ ଭାବଭଙ୍ଗୀ ପ୍ରଭୃତି ଦର୍ଶନ କରି କେହି ବୁଝିପାରି ନ ଥିଲେ ଯେ, ସେ ମହାଯାତ୍ରା ପାଇଁ ପ୍ରସ୍ତୁତ ହେଉଛନ୍ତି ।

ଜୁନ୍ ମାସ ଆରମ୍ଭରୁ ସ୍ୱାମୀଜୀ ମଠ ବା ରାମକୃଷ୍ଣ ମିଶନ ବ୍ୟାପାରରେ ସମ୍ପୂର୍ଣ୍ଣ ଉଦାସୀନତା ପ୍ରକାଶ କରିବାରେ ଲାଗିଲେ; କୌଣସି ବିଷୟରେ ନିଜ ମତାମତ ପ୍ରକାଶ କରୁ ନ ଥିଲେ । ଦୈବାତ୍ କୌଣସି କାର୍ଯ୍ୟରେ ପରାମର୍ଶ ମାଗିଲେ ସେ ବିରକ୍ତ ହୋଇ ନିଜେ ମୀମାଂସା କରି ନେବାକୁ ଶିଷ୍ୟମାନଙ୍କୁ ଆଦେଶ ଦେଉଥିଲେ । ଆଚାର୍ଯ୍ୟ, ନେତା, ଗୁରୁ, ଶିକ୍ଷାଦାତା ପ୍ରଭୃତି ଉପାଧିଗୁଡ଼ିକ ଧୀରେ ଧୀରେ ତ୍ୟାଗ କରି ଏହି ସମୟରେ ସେ ଅଧିକାଂଶ ସମୟ ଧ୍ୟାନାନନ୍ଦରେ ମଗ୍ନ ରହୁଥିଲେ । ଉତ୍ତରୋତ୍ତର ବର୍ଦ୍ଧିତ ଧ୍ୟାନ-ଆକାଙ୍କ୍ଷା ଦେଖି ତାଙ୍କ ଗୁରୁଭାଇମାନେ

ଚିନ୍ତିତ ହୋଇ ପଡ଼ିଲେ । ଶ୍ରୀରାମକୃଷ୍ଣ କହିଥିଲେ, ‘‘ଇଏ ଯେଉଁଦିନ ନିଜକୁ ଚିହ୍ନି ପାରିବ, ସେଦିନ ଆଉ ବଞ୍ଚି ରହିବ ନାହିଁ ।’’ ଏହି କଥା ଥରକୁ ଥର ସମସ୍ତଙ୍କ ମନେ ପଡ଼ିଲା । ଭଗିନୀ ନିବେଦିତା ଲେଖିଛନ୍ତି, ‘‘ଏହି ସମୟରେ ଦିନେ ସ୍ୱାମୀଜୀ ଜଣେ ଗୁରୁଭାଇଙ୍କ ସହିତ ଅତୀତ କଥା ଆଲୋଚନା କରୁଛନ୍ତି, ଏହି ସମୟରେ ସେ ପଚାରିଲେ, ‘ଆଚ୍ଛା, ସ୍ୱାମୀଜୀ ! ଆପଣ କିଏ, ତାହା ବୁଝିପାରିଛନ୍ତି କି ?’ ସହସା ସ୍ୱାମୀଜୀ ଉତ୍ତର ଦେଲେ, ‘ହଁ, ଏବେ ବୁଝିଛି ।’ ସ୍ୱାମୀଜୀଙ୍କ ଗମ୍ଭୀର ଭାବ ଦେଖି କେହି ଆଉ ପଚାରିବାକୁ ସାହସ କଲେ ନାହିଁ ସତ୍ୟ, କିନ୍ତୁ ସମସ୍ତେ ବୁଝିଲେ ଯେ ବର୍ତ୍ତମାନ ଯେ କୌଣସି ମୁହୂର୍ତ୍ତରେ ସେ ଦେହତ୍ୟାଗ କରିପାରନ୍ତି; କିନ୍ତୁ ଏହି ସମୟରେ ତାଙ୍କ ଦେହରୁ ରୋଗର ସବୁ ଲକ୍ଷଣଗୁଡ଼ିକ ତିରୋହିତ ହୋଇ ଯାଇଥିଲା । ଚିନ୍ତିତ ଓ ବିଷଣ୍ଣ ଗୁରୁଭାଇମାନଙ୍କ ସହିତ ହାସ୍ୟପରିହାସ, କ୍ରୀଡ଼ା-କୌତୁକ କରି ସେ ସର୍ବଦା ଛଳନା କରୁଥିଲେ । ସେ ଯେ ସତରେ ଦେହତ୍ୟାଗ କରିବେ, କେହି ବୁଝିପାରିଲେ ନାହିଁ ।

ଦେହ-ତ୍ୟାଗର ସପ୍ତାହକ ଆଗରୁ ଆଚାର୍ଯ୍ୟଦେବ, ସ୍ୱାମୀ ଶୁଦ୍ଧାନନ୍ଦଙ୍କୁ ଖଣ୍ଡିଏ ପାଞ୍ଜି ଆଣିବାକୁ ଆଦେଶ ଦେଲେ । ପାଞ୍ଜି ଆସିବା ପରେ ସେ ନିଜେ ଦେଖି ଘର ଭିତରେ ରଖିଥିଲେ । ମଧ୍ୟେ ମଧ୍ୟେ ସେ ଗଭୀର ମନୋଯୋଗ ସହିତ ପାଞ୍ଜି ପାଠ କରୁଥିଲେ; ସେତେବେଳେ ତାଙ୍କ ମୁହଁର ଭାବ ଦେଖିଲେ ମନେ ହେଉଥିଲା, ଯେପରି କି ସେ କୌଣସି ବିଶେଷ କାର୍ଯ୍ୟ ପାଇଁ ଗୋଟିଏ ଦିନ ବାଛିବାକୁ ଚାହାଁନ୍ତି, ଅଥଚ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରୁ ନାହାନ୍ତି । ସ୍ୱାମୀଜୀଙ୍କ ଦେହାନ୍ତ ପରେ ତାଙ୍କ ଗୁରୁଭାଇମାନେ ବୁଝିପାରିଲେ, ସ୍ୱାମୀଜୀ କାହିଁକି ପାଞ୍ଜି ଦେଖୁଥିଲେ । ଭଗବାନ ଶ୍ରୀରାମକୃଷ୍ଣ ଦେହତ୍ୟାଗର କିଛିଦିନ ଆଗରୁ ଜଣେ ଶିଷ୍ୟଙ୍କୁ ପଞ୍ଜିକା ପଢ଼ିବା ଲାଗି ଆହ୍ୱାନ କରିଥିଲେ । ତା'ପରେ କେତେଦିନ ପଢ଼ିବା ପରେ ଠାକୁର କହିଥିଲେ, ‘ଥାଉ, ଆଉ ଦରକାର ନାହିଁ !’ ସ୍ୱାମୀଜୀ ମଧ୍ୟ ଶ୍ରୀ ଗୁରୁଙ୍କ ପନ୍ଥା ଅନୁସରଣ କରି ମହାଯାତ୍ରାର ଦିନ ସ୍ଥିର କରି ନେଇଥିଲେ; କିନ୍ତୁ ଆଶ୍ଚର୍ଯ୍ୟ ବିଷୟ ଯେ ସ୍ୱାମୀଜୀଙ୍କୁ ପାଞ୍ଜି ପଢ଼ିବାର ଦେଖି କାହାରି ଏକଥା କ୍ଷଣକ ପାଇଁ ସୁଦ୍ଧା ମନେପଡ଼ିଲା ନାହିଁ ।

ଦେହତ୍ୟାଗର ତିନି ଦିନ ଆଗରୁ ସ୍ୱାମୀଜୀ ମଠର ବିସ୍ତୃତ ପ୍ରାଙ୍ଗଣରେ ବୁଲୁ ବୁଲୁ ଯେଉଁଠାରେ ଏବେ ତାଙ୍କ ସମାଧି ମନ୍ଦିର ନିର୍ମିତ ହୋଇଛି, ଏହି ସ୍ଥାନଟି ଆଙ୍ଗୁଠିରେ ଦେଖାଇ ସହସା କହି ଉଠିଲେ, ‘‘ମୋର ମୃତ୍ୟୁ ହେଲେ ଏଇଠି ମୋତେ ପୋଡ଼ିବ ।’’ ଯେଉଁମାନେ ସାଙ୍ଗରେ ଥିଲେ, ସେମାନେ କେବଳ ନୀରବରେ ଶୁଣିଲେ, କୌଣସି ପ୍ରଶ୍ନ ପଚାରିଲେ ନାହିଁ ।

ବୁଧବାର ଦିନ, ଏକାଦଶୀ । ସ୍ୱାମୀଜୀ ଉପବାସ କରିଥାନ୍ତି । ପ୍ରାତଃଭୋଜନ ସମୟରେ ଶିଷ୍ୟମାନଙ୍କୁ ସ୍ୱୟଂ ପରିବେଷଣ କରି ଭୋଜନ କରାଇବାକୁ ଇଚ୍ଛା ପ୍ରକାଶ କଲେ । ପଣସମଞ୍ଜି ସିଝା, ଆଳୁ ସିଝା, ଭାତ ଓ ଦୁଧ—ଏହା ହିଁ

ଥିଲା ଖାଦ୍ୟସାମଗ୍ରୀ । ଭୋଜନ ସମୟରେ ସ୍ୱାମୀଜୀ କୌତୁକ ଆଳାପରେ ସମସ୍ତଙ୍କୁ ହସେଇବାକୁ ଲାଗିଲେ । ସ୍ୱାମୀଜୀ ପ୍ରଫୁଲ୍ଲ ଭାବ ଦେଖି ଶିଷ୍ୟମାନେ ବିଶେଷ ଆନନ୍ଦିତ ହେଲେ । ସ୍ୱାମୀଜୀ ଯେତେବେଳେ ବାଳକ ପରି କ୍ରୀଡ଼ା-କୌତୁକରେ ରତ ଥିଲେ, ଉଚ୍ଚ ହାସ୍ୟ ଓ ମଧୁର ବ୍ୟବହାର ସହିତ ସମସ୍ତଙ୍କ ସଙ୍ଗେ ସରଳଭାବରେ ମିଶୁଥିଲେ, ସେତେବେଳେ ତାଙ୍କ ସମ୍ମୁଖରେ କୌଣସି ଲଜ୍ୟା ବା ସଙ୍କୋଚ ନ ଥିଲା; କିନ୍ତୁ ଯେତେବେଳେ ଗମ୍ଭୀର ଭାବରେ ବସି ରହୁଥିଲେ, ସେତେବେଳେ ତାଙ୍କ ପାଖ ବାଟ ଦେଇ ଲୋକେ ଚାଲିଯିବାକୁ ମଧ୍ୟ ସେମାନଙ୍କ ଛାତି ଧୁଡ୍ତୁ ଧୁଡ୍ତୁ ହେଉଥିଲା । ଆହାର ଶେଷ କରି ସମସ୍ତେ ଉଠିବାପରେ ସ୍ୱାମୀଜୀ ସ୍ୱୟଂ ସେମାନଙ୍କ ହାତ ଓ ମୁହଁ ଧୋଇବା ଲାଗି ପାଣି ଢାଳି ଦେଉଥିଲେ ଏବଂ ଆଚମନ ଶେଷରେ ତଉଲିଆରେ ସେମାନଙ୍କ ମୁହଁ ହାତ ପୋଛି ଦେଉଥିଲେ ।

"ଏ କ'ଣ କରୁଛନ୍ତି, ସ୍ୱାମୀଜୀ ! ଏହିସବୁ କାର୍ଯ୍ୟ ଆମେ କରିବା ଉଚିତ୍ । ଆମେ ଆପଣଙ୍କ ସେବକ, ଆପଣଙ୍କର ସେବା ଗ୍ରହଣ କରିପାରିବୁ ନାହିଁ" — ଏପରି ଆପତ୍ତି ଉଠିବା ମାତ୍ରେ ମହାପୁରୁଷ ଗମ୍ଭୀର ଭାବରେ ସ୍ୱର୍ଗୀୟ ମାଧୁରୀ ଢାଳିଦେଇ କହିଲେ, "ଯୀଶୁଖ୍ରୀଷ୍ଟ କ'ଣ ତାଙ୍କ ଶିଷ୍ୟମାନଙ୍କ ପାଦ ଧୋଇଦେଇ ନ ଥିଲେ ?"

'କିନ୍ତୁ ସେ ଯେ ଶେଷ ଦିନ' — ସମସ୍ତଙ୍କ ମନରେ ଉତ୍ତର ଆସିଲା; କିନ୍ତୁ ବାଷ୍ପରୁଦ୍ଧ କଣ୍ଠରେ ଉଚ୍ଚାରଣ କରିପାରିଲେ ନାହିଁ, ଓଠ ଥରିଉଠିଲା ମାତ୍ର ।

## ମହାସମାଧି

୧୯୦୨ ଖ୍ରୀଷ୍ଟାବ୍ଦ ଜୁଲାଇ ଚାରି ତାରିଖ । ପ୍ରତ୍ୟୁଷରେ ବିଛଣାରୁ ଉଠି ସ୍ୱାମୀଜୀ ଆଜି ସମସ୍ତଙ୍କ ସଙ୍ଗେ ଏକତ୍ର ଧ୍ୟାନ କରିବାକୁ ଗଲେ ନାହିଁ; ଅତୀତର କଥା ମନେପକାଇ ନାବାବିଧ ଗଳ୍ପ କରିବାରେ ଲାଗିଲେ । ପରଦିନ ଅମାବାସ୍ୟା ଓ ଶନିବାର ଥାଏ ବୋଲି ମଠରେ ଶ୍ରୀଶ୍ରୀକାଳୀପୂଜା କରିବା ଇଚ୍ଛା ପ୍ରକାଶ କଲେ । ପୂଜା ଆୟୋଜନ ସମ୍ବନ୍ଧରେ କଥାବାର୍ତ୍ତା ଚାଲିଥାଏ, ଏପରି ସମୟରେ ସ୍ୱାମୀ ରାମକୃଷ୍ଣାନନ୍ଦଙ୍କ ପିତା ଶକ୍ତିସାଧକ ଓ ତନ୍ତ୍ରଶାସ୍ତ୍ରରେ ସୁପଣ୍ଡିତ ଶ୍ରୀଯୁକ୍ତ ଈଶାନଚନ୍ଦ୍ର ଭଟ୍ଟାଚାର୍ଯ୍ୟ ମଠକୁ ଆସିଲେ । ତାଙ୍କୁ ଦେଖି ସ୍ୱାମୀଜୀ ଆନନ୍ଦିତ ହେଲେ । ଭଟ୍ଟାଚାର୍ଯ୍ୟଙ୍କ ସହିତ ପରାମର୍ଶ କରି ସ୍ୱାମୀଜୀ ସେତେବେଳେ ସ୍ୱାମୀ ଶୁଦ୍ଧାନନ୍ଦ ଓ ବୋଧାନନ୍ଦଙ୍କୁ ଆବଶ୍ୟକ ବନ୍ଦୋବସ୍ତ କରିବା ଲାଗି ଆଦେଶ ଦେଲେ । ଏହାପରେ କିଞ୍ଚିତ୍ ଚା'ପାନ କରି ମଠର ଠାକୁର ଘରେ ପ୍ରବେଶ କଲେ । କିଛି ସମୟ ପରେ ଦେଖାଗଲା, ଠାକୁର ଘରର ସମସ୍ତ କବାଟ-ଝରକା ବନ୍ଦ କରି ଦିଆ ହୋଇଛି ।

ଏହିପରି ଭାବରେ ସେ ତ କୌଣସି ଦିନ କବାଟ ଝରକା ବନ୍ଦ କରନ୍ତି ନାହିଁ— ଏହାର କାରଣ କ'ଣ ? କିଏ କହିବ ! ସେଠାରେ ସୁଦୀର୍ଘ ତିନିଘଣ୍ଟା କାଳ କଟାଇ ଭାବାନନ୍ଦରେ ମଗ୍ନ ମହାପୁରୁଷ ଧୀରେ ଧୀରେ ଶିଡ଼ି ତଳକୁ

ଆସିଲେ । 'ମନ, ଚାଲ ନିଜ ନିକେତନେ' ଗୀତଟି ଗାଇ ଗାଇ ମଠ ପ୍ରାଙ୍ଗଣରେ ବୁଲିବାକୁ ଲାଗିଲେ । ଆଜି ସେଦିନ କଥା ମନେପଡ଼େ—ଯେଉଁଦିନ ପ୍ରଥମେ ଗୁରୁଶିଷ୍ୟ ସାକ୍ଷାତ୍ ହେଲା ! ସେଦିନ ବାଳକ ନରେନ୍ଦ୍ରନାଥ ଭାବାନନ୍ଦରେ ଗଦ୍‌ଗଦ ହୋଇ ଦକ୍ଷିଣେଶ୍ୱରର ପବିତ୍ର ଦେବାଳୟରେ ଏହି ଗୀତଟି ଗାଇଥିଲେ; ଆଉ ସମ୍ମୁଖରେ ଅର୍ଦ୍ଧ ବାହ୍ୟଦଶାରେ ଉପବିଷ୍ଟ ଶ୍ରୀରାମକୃଷ୍ଣ ସାଶ୍ରୁନୟନରେ ତାଙ୍କ କୈଶୋରଲାବଣ୍ୟୋଜ୍ଜ୍ୱଳ ସ୍ନିଗ୍ଧ-ମୁଖଛବି ପ୍ରତି ନିର୍ନିମେଷ ନୟନରେ ଚାହିଁଥିଲେ । ସେଦିନ ବାଳକ ଆଖିରେ ଥିଲା—ସକରୁଣ ମୌନ ମିନତି ! ସଂସାରର ଶାଠ୍ୟ, ପ୍ରବଞ୍ଚନା, ଅନ୍ୟାୟ, ଅବିଚାରର ଶତ ଶତ ଶୋଚନୀୟ ଚିତ୍ର ଦର୍ଶନ କରି ବ୍ୟଥିତ-ହୃଦୟ ବାଳକ ସେଦିନ ଚାହିଁଥିଲା—ମୁକ୍ତି, ନିର୍ବାଣ, ଭଗବତ୍-ଦର୍ଶନ । ଆଜି ସେହି ଆଖିରେ ଗଭୀର ସହବେଦନାକାତର କଲ୍ୟାଣବର୍ଷୀ ଶୁଭ୍ରଦୃଷ୍ଟି—ବଦନରେ ବ୍ରହ୍ମବିଦ୍‌ଙ୍କ ଉଦ୍ଭାସିତ ଜ୍ୟୋତି—ଜଗତ୍‌କଲ୍ୟାଣ-ବ୍ରତରେ ପୂର୍ଣ୍ଣ ଆତ୍ମଦାନର ଆନନ୍ଦିତ ମହିମା, ସିଦ୍ଧସଙ୍କଳ୍ପ ମହାଯୋଗୀଙ୍କ ଅସୀମ ପ୍ରଶାନ୍ତି ! ସେ ଗୋଟିଏ ଦିନ, ଆଜି ଆଉ ଗୋଟିଏ ଦିନ ! ଆଉ ଉଭୟଙ୍କର ମଧ୍ୟଭାଗରେ କି ବିପୁଳ ଚେଷ୍ଟା, କି ସୁମହାନ୍ ପ୍ରୟାସ ! ପଦଚାରଣ କରୁ କରୁ ଆତ୍ମସ୍ଥ ମହାଯୋଗୀ କ'ଣ ତାହା ହିଁ ଭାବୁଥିଲେ ? ସେ ନିଜେ ମନକୁ ମନ କ'ଣ ଗୁନି ଗୁନି କହୁଥା'ନ୍ତି । ସ୍ୱାମୀ ପ୍ରେମାନନ୍ଦ ନିକଟରେ ଠିଆ ହୋଇଥିଲେ; ସେ ଶୁଣିପାରିଲେ, ସ୍ୱାମୀଜୀ ନିଜେ ନିଜେ କହୁଥିଲେ, ''ଯଦି ବର୍ତ୍ତମାନ ଆଉ ଜଣେ ବିବେକାନନ୍ଦ ଥାଆନ୍ତା, ତାହାହେଲେ ସେ ବୁଝିପାରନ୍ତା ବିବେକାନନ୍ଦ କ'ଣ କରିଛି ? କିନ୍ତୁ କାଳକ୍ରମେ ଅନେକ ବିବେକାନନ୍ଦ ଜନ୍ମ ଗ୍ରହଣ କରିବେ ।'' ସ୍ୱାମୀ ପ୍ରେମାନନ୍ଦ ଚମକି ପଡ଼ିଲେ; କାରଣ ସେ ଜାଣିଥିଲେ, ସ୍ୱାମୀଜୀଙ୍କ ମନ ଉଚ୍ଚତମ ଭାବଭୂମିରେ ଆରୁଢ଼ ନ ହୋଇଥିଲେ ସେ ଏପରି କଥା କହନ୍ତେ ନାହିଁ ! ମହାମାୟାଙ୍କ ଖେଳ କିଏ ବୁଝିବ ? ସୂକ୍ଷ୍ମ-ଅନ୍ତର୍ଦୃଷ୍ଟି-ସମ୍ପନ୍ନ ମହାପୁରୁଷ ସ୍ୱାମୀ ପ୍ରେମାନନ୍ଦ ଦେଖି ମଧ୍ୟ ଦେଖିପାରିଲେ ନାହିଁ, ବୁଝି ବି ବୁଝିପାରିଲେ ନାହିଁ ଯେ, ସେମାନଙ୍କ ଆଦରର ଗୁରୁଭାଇ ବିବେକାନନ୍ଦ ଆଜି ଦେହତ୍ୟାଗ କରିବା ପାଇଁ ସଂକଳ୍ପ କରି ଯୋଗାରୂଢ଼ ହୋଇଛନ୍ତି !!

ନିୟମିତ ସମୟରେ ଆହାରର ଘଣ୍ଟାଧ୍ୱନି ହେବା ମାତ୍ରକେ ସ୍ୱାମୀଜୀ ଠାକୁରଘରର ତଳମହଲା ବାରଣ୍ଡା ଉପରେ ସମସ୍ତଙ୍କ ସାଙ୍ଗରେ ଭୋଜନ କରିବାକୁ ବସିଲେ ! ସ୍ୱାମୀଜୀ ରୋଗଗ୍ରସ୍ତ ହେବା ପରଠାରୁ ସାଧାରଣତଃ ସମସ୍ତଙ୍କ ସହିତ ଏକାଠି ବସି ଭୋଜନ କରୁ ନ ଥିଲେ । ଆଜି ସହସା ସେ ନିୟମର ବ୍ୟତିକ୍ରମ ଦେଖି ମଧ୍ୟ କାହାରି ହୃଦୟରେ କୌଣସି ସନ୍ଦେହର ସୃଷ୍ଟି ହେଲା ନାହିଁ; ବରଂ ଅପ୍ରତ୍ୟାଶିତ ଭାବରେ ସ୍ୱାମୀଜୀଙ୍କ ସହିତ ଏକତ୍ର ଆହାର କରିବାର ସୌଭାଗ୍ୟ ଲାଭ କରି ସମସ୍ତେ ଆନନ୍ଦିତ ହେଲେ । ସ୍ୱାମୀଜୀ ଅସ୍ୱାଭାବିକ ଆଗ୍ରହ ସହକାରେ ଆହାର କଲେ ଏବଂ ଗୁରୁଭ୍ରାତାମାନଙ୍କ ସହିତ କୌତୁକାଳାପ କରି ବସିଲେ ।

କଥାପ୍ରସଙ୍ଗରେ କହିଲେ, ଅନ୍ୟାନ୍ୟ ଦିନ ଅପେକ୍ଷା ଆଜି ତାଙ୍କୁ ଭାରୀ ଭଲ ଲାଗୁଛି ।

ଭୋଜନ ଶେଷରେ କିଛି ସମୟ ବିଶ୍ରାମ କରି ସ୍ୱାମୀଜୀ ବ୍ରହ୍ମଚାରୀମାନଙ୍କୁ ସଂସ୍କୃତ ଶ୍ରେଣୀକୁ ଡକାଇ ପଠାଇଲେ । ଅନ୍ୟ ଦିନ ସାଢ଼େ ଦୁଇଟା ତିନିଟା ବେଳେ ପାଠ ଆରମ୍ଭ ହେଉଥିଲା; ଆଜି ଗୋଟାଏ ପନ୍ଦର ନ ହେଉଣୁ ଅଧ୍ୟାପନା ଆରମ୍ଭ ହେଲା । ଲଘୁକୌମୁଦୀ ବ୍ୟାକରଣ ପଢ଼ା ଚାଲିଲା — ବିଷୟଟି ନିରସ ହେଲେ ମଧ୍ୟ ସୁଦୀର୍ଘ । ତିନିଘଣ୍ଟା ଭିତରେ କେହି କୌଣସି ପ୍ରକାର ବିରକ୍ତ ବୋଧ କରି ନ ଥିଲେ । ବେଳେ ବେଳେ ହାସ୍ୟୋଦ୍ଦୀପକ କ୍ଷୁଦ୍ର କ୍ଷୁଦ୍ର ଗଳ୍ପ କହି କେତେବେଳେ ଅବା ବିଭିନ୍ନ ପ୍ରକାର କୌତୁକିଆ ବ୍ୟାଖ୍ୟା କରି କଠିନ କଠିନ ସ୍ଥଳଗୁଡ଼ିକୁ ସ୍ୱାମୀଜୀ ସହଜବୋଧ ଓ ହୃଦୟଗ୍ରାହୀ କରି ଦେଇଥିଲେ । ପ୍ରସଙ୍ଗକ୍ରମେ ସ୍ୱାମୀଜୀ କହିଲେ, ଏପରି ଗଳ୍ପ, ଉପମା ଓ କୌତୁକ ସହିତ ସେ ଦିନେ ତାଙ୍କ ସହାଧ୍ୟାୟୀ ବନ୍ଧୁ ଦାଶରଥୀ ସାନ୍ୟାଲଙ୍କୁ ଗୋଟିଏ ରାତ୍ରରେ ଇଂଲଣ୍ଡ ଇତିହାସ ପଢ଼ାଇ ଦେଇଥିଲେ । ବ୍ୟାକରଣ ଅଧ୍ୟାପନା ଶେଷ ହେବାପରେ ସ୍ୱାମୀଜୀ ସାମାନ୍ୟ କ୍ଳାନ୍ତି ଅନୁଭବ କଲେ ।

ଅପରାହ୍ନରେ ସ୍ୱାମୀଜୀ ସ୍ୱାମୀ ପ୍ରେମାନନ୍ଦଙ୍କୁ ସାଙ୍ଗରେ ନେଇ ମଠ ବାହାରକୁ ବୁଲିବାକୁ ଗଲେ । ସେଦିନ ଦୁହେଁ ଗପ କରି କରି ବେଲୁଡ଼ ବଜାର ପର୍ଯ୍ୟନ୍ତ ଯାଇଥିଲେ । ନାନା କଥା ସହିତ ବେଦ-ବିଦ୍ୟାଳୟ କଥା ବି ପଡ଼ିଲା । ସ୍ୱାମୀ ପ୍ରେମାନନ୍ଦ ପଚାରିଲେ, ''ସ୍ୱାମୀଜୀ ! ବେଦ ପଢ଼ିଲେ କ'ଣ ଉପକାର ହେବ ?'' ସ୍ୱାମୀଜୀ ତତ୍‌କ୍ଷଣାତ୍ ଗଭୀର ଭାବପୂର୍ଣ୍ଣ ଅଥଚ ସ୍ୱଳ୍ପ କଥାରେ ଉତ୍ତର ଦେଲେ, ''ଅନ୍ତତଃ ଏହା ଅନେକ କୁସଂସ୍କାର ଦୂର କରିଦେବ ।''

ଭ୍ରମଣ ଶେଷରେ ସ୍ୱାମୀଜୀ ଫେରି ଆସି ମଠ ବାରଣ୍ଡାରେ ବସିଲେ ଏବଂ ସନ୍ନ୍ୟାସୀ ଓ ବ୍ରହ୍ମଚାରୀଗଣଙ୍କ ସହିତ ଆଳାପ ଆଲୋଚନା ଆରମ୍ଭ କଲେ । କନିଷ୍ଠମାନଙ୍କୁ ସସ୍ନେହରେ କୁଶଳ ପ୍ରଶ୍ନ କରି ସମୟୋଚିତ ଉପଦେଶ ଦେଲେ । ସନ୍ଧ୍ୟା ଆରତିର ସମୟ ଆଗତ ଦେଖି ବ୍ରହ୍ମଚାରୀବୃନ୍ଦ ଜଣ ଜଣ ହୋଇ ସ୍ୱାମୀଜୀଙ୍କୁ ପ୍ରଣାମ କରି ଠାକୁରଘରକୁ ଗଲେ । ଆଚାର୍ଯ୍ୟଦେବ ଧୀରେ ଧୀରେ ଉପର ମହଲାରେ ଥିବା ନିଜ ଶୋଇବା ଘରକୁ ବାହାରି ଗଲେ ।

ଜଣେ ବ୍ରହ୍ମଚାରୀ ସର୍ବଦା ସ୍ୱାମୀଜୀଙ୍କ ସଙ୍ଗରେ ଥାଆନ୍ତି । ତାଙ୍କୁ ସ୍ୱାମୀଜୀ ଘରର ସବୁ ଦୁଆର ଓ ଝରକା ଖୋଲି ଦେବାକୁ କହିଲେ । ବାହାରେ ଘନ ଅନ୍ଧକାର, ଭାଗୀରଥୀ ବକ୍ଷରେ ଅଗଣିତ ଆଲୋକ-ପ୍ରତିବିମ୍ବ ମୃଦୁ ତରଙ୍ଗରେ ଦୋହଲୁଥାଏ । ଉପରେ ଅଗଣିତ ନକ୍ଷତ୍ରପୁଞ୍ଜ ବକ୍ଷରେ ଧାରଣ କରି ଆକାଶ ନିସ୍ତବ୍ଧ — ଆତ୍ମମଗ୍ନ ବିବେକାନନ୍ଦ ଧୀରେ ଧୀରେ ବାତାୟନ ସମ୍ମୁଖରେ ଉପସ୍ଥିତ ହୋଇ ଦକ୍ଷିଣେଶ୍ୱର ଆଡ଼େ ଦୃଷ୍ଟି ପକାଇଲେ । ସେହି ଘନାୟମାନ ଅନ୍ଧକାର ଭେଦ କରି ତାଙ୍କ ଦିବ୍ୟ ଦୃଷ୍ଟି କ'ଣ ଦେଖୁଥିଲା — କିଏ କହିବ ?

ବହୁଦିନେ ପୂର୍ବେ କାଶୀପୁରର ଉଦ୍ୟାନ-ଗୃହରେ ଶ୍ରୀରାମକୃଷ୍ଣ ଯେଉଁ ଅନୁଭୂତିର ଦ୍ୱାର ରୁଦ୍ଧ କରିଥିଲେ—ଆଜି କ'ଣ କର୍ମଶ୍ରାନ୍ତ ସନ୍ନ୍ୟାସୀଙ୍କ ନିର୍ନିମେଷ ଦୃଷ୍ଟି ସମ୍ମୁଖରେ ତାହା ଧୀରେ ଧୀରେ ଖୋଲିଯାଉଛି କି ? ବିବେକାନନ୍ଦଙ୍କ ଜ୍ଞାନଦୃଷ୍ଟି ସମ୍ମୁଖରେ ଶ୍ରୀରାମକୃଷ୍ଣକଥିତ 'କାଗଜ ପରି ପତଳା' ଯେଉଁ ଆବରଣଟି ଥିଲା, ସେହି ରହସ୍ୟ ଯବନିକା ଖଣ୍ଡିକ ଧୀରେ ଧୀରେ ଉତ୍ତୋଳିତ ହୋଇ କ'ଣ ଚରମ ଆତ୍ମୋପଲବ୍ଧିର ଆନନ୍ଦ-ନିକେତନ ଉଦ୍‌ଭାସିତ ହୋଇ ଉଠିଲା ! ବହୁ ସମୟ ପରେ ଯେପରି ଅକସ୍ମାତ୍ ଚୈତନ୍ୟ ପ୍ରାପ୍ତ ହୋଇ ବିବେକାନନ୍ଦ ଫେରି ଠିଆ ହେଲେ । ବ୍ରହ୍ମଚାରୀଙ୍କୁ ବାହାରେ ବସି ଜପ କରିବାକୁ ଆଦେଶ ଦେଇ ନିଜେ ଜପମାଳା ହାତରେ ଧରି ପଦ୍ମାସନରେ ବସିଲେ । ଘଣ୍ଟାକ ପରେ ଆସନରୁ ଉଠି ସ୍ୱାମୀଜୀ ତଳେ ଶୋଇ ପଡ଼ିଲେ ଏବଂ ବ୍ରହ୍ମଚାରୀଙ୍କୁ ଡାକି ବିଞ୍ଚିଦେବାକୁ କହିଲେ ।

ଜପମାଳା ହସ୍ତେ ଶାୟିତ ମହାପୁରୁଷଙ୍କ ଦେହ ନିସ୍ପନ୍ଦ ଓ ସ୍ଥିର । ସେତେବେଳେ ରାତ୍ରି ନଅଟା ବାଜିଥାଏ; ଏହି ସମୟରେ ତାଙ୍କ ହସ୍ତ କମ୍ପିତ ହେଲା ଏବଂ ସଙ୍ଗେ ସଙ୍ଗେ ସେ ନିଦ୍ରିତ ଶିଶୁପରି ଅସ୍ଫୁଟ ସ୍ୱରରେ ଟିକିଏ କ୍ରନ୍ଦନ କରି ଉଠିଲେ । ଦୁଇଟି ଗଭୀର ଦୀର୍ଘଶ୍ୱାସ ପତନ ସଙ୍ଗେ ସଙ୍ଗେ ତାଙ୍କ ମସ୍ତକ ଉପାଧାନ ଉପରୁ ଗଡ଼ିପଡ଼ିଲା । ସ୍ୱାମୀଜୀଙ୍କୁ ସେହି ଅବସ୍ଥାରେ ଦେଖି କିଂକର୍ତ୍ତବ୍ୟବିମୂଢ଼ ବ୍ରହ୍ମଚାରୀ ତଳ ମହଲାକୁ ଯାଇ ବୟସ୍କ ସନ୍ନ୍ୟାସୀଗଣଙ୍କୁ ସମ୍ବାଦ ଦେଲେ । ସେମାନେ ଆସି ପରୀକ୍ଷା କରି ଦେଖିଲେ, ଯୋଗୀବର ଅନନ୍ତ ନିଦ୍ରାରେ ଶାୟିତ ! ଅମାନିଶାର ଅନ୍ଧ ତିମିରାବଗୁଣ୍ଠନ ଅନ୍ତରାଳରୁ ଜଗନ୍ମାତା ତାଙ୍କ ରଣଶ୍ରାନ୍ତ ବୀରପୁତ୍ରକୁ ବ୍ୟଗ୍ରବାହୁ ପ୍ରସାରିତ କରି କୋଳକୁ ଉଠାଇ ନେଲେ !!

X X X

ଯାହା ଚକ୍ଷୁ ସମ୍ମୁଖରେ ଥିଲା, ତାହା ଚକ୍ଷୁ ବାହାରକୁ ଚାଲିଗଲା ! କି ଉଦ୍ଦେଶ୍ୟରେ ସଂସାର-ରଙ୍ଗମଞ୍ଚରେ କିଏ ଏହି ଅଭିନୟ କଲା, କିଏ ବିବେକାନନ୍ଦ — କିଏ ରାମକୃଷ୍ଣ ପରମହଂସ ? ମୃତ୍ୟୁର ଯବନିକାରେ ନେପଥ୍ୟଭୂମି ଆବୃତ । କାଳସ୍ରୋତରେ କେତେଦୂର ଗଲେ ଏହି ଅଭିନୟର ପରିସମାପ୍ତି ? ମାନବର କ୍ଷୁଦ୍ର ଜ୍ଞାନ କି ଅତୀତ, କି ଭବିଷ୍ୟତ — କୌଣସି ଦିଗରେ ଶେଷ ପର୍ଯ୍ୟନ୍ତ ପହଞ୍ଚିପାରେ ନାହିଁ । ସେହି ହେତୁ ବର୍ତ୍ତମାନକୁ ଧରି ରଖିବା ଲାଗି ଏତେ ପ୍ରାଣପଣ ଉଦ୍ୟମ; କିନ୍ତୁ ଆଜି ଯାହା ଅଛି, କାଲି ତାହା ରହେ ନାହିଁ — ଅନନ୍ତ କାଳସ୍ରୋତ କେବଳ ବହିଯାଏ; ମଧ୍ୟେ ମଧ୍ୟେ ଉତ୍ତାଳ ତରଙ୍ଗମାଳା କେବଳ ଗର୍ଜି ଉଠେ ।

ବଙ୍ଗାଳୀର ଜୀବନ-ସ୍ରୋତରେ ରାଜା ରାମମୋହନଙ୍କଠାରୁ ଆରମ୍ଭ କରି ଅନେକଗୁଡ଼ିଏ ତରଙ୍ଗର ଉତ୍ଥାନ ଓ ପତନ ଆମେ ନିରୀକ୍ଷଣ କରିଛୁ । ଶତାବ୍ଦୀର ଶେଷ ଓ ପ୍ରଥମ ଭାଗରେ ପୁଣି ଏହା ଗୋଟିଏ ତରଙ୍ଗାଭିଘାତ । ଦକ୍ଷିଣେଶ୍ୱର-ବାହିନୀର ପୂର୍ବତୀରରେ ଦିନେ ଏହାର ଉତ୍ପତ୍ତି — ବେଲୁଡ଼-ବାହିନୀର ପଶ୍ଚିମ ତୀରରେ ଆଉ ଦିନେ ଏହାର ବିଲୟ । ଏହାର ଦୁର୍ନିବାର ବେଗରେ ଆଟ୍‌ଲାଣ୍ଟିକର

ଦୁସ୍ତର ଲବଣାମ୍ବୁରାଶିର ଉଭୟ ତୀର ପ୍ରକମ୍ପିତ—ପ୍ରତିଧ୍ୱନିତ । ଜଣାପଡ଼ିଲା, ଗଙ୍ଗାର ସ୍ରୋତ ଅଛି ଆଉ ବଙ୍ଗାଳୀ ମରି ନାହିଁ; କିନ୍ତୁ ଯାହା ଚକ୍ଷୁ ସମ୍ମୁଖରେ ଭାସି ଉଠେ, ପୁଣି ଦେଖୁ ଦେଖୁ ବୁଡ଼ିଯାଏ, ତାହା କେବଳ ବର୍ତ୍ତମାନରେ ଆବଦ୍ଧ ନୁହେଁ—ଅଥଚ ଏହାର ଅତୀତ ଓ ଭବିଷ୍ୟତ ଆମେ ସମ୍ପୂର୍ଣ୍ଣ ଜାଣିପାରୁ ନାହୁଁ । କିଏ କହିବ, ସ୍ୱାମୀ ବିବେକାନନ୍ଦ କୁଆଡୁ ଆସିଥିଲେ, କିଏ ତାଙ୍କୁ ଆଣିଥିଲା ? ଆଉ କିଏ ବା କହିପାରିବ, ଏହି ଅଭ୍ୟୁଦୟର ପରିସମାପ୍ତି କେବେ—କେତେ ଦୂରରେ—କେଉଁଠାରେ ?

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ

''ହରି ଓଁ ତତ୍ସତ୍''

  